# ଆଜ୍ଞା

## ବିଶ୍ୱନାଥ ପଟ୍ଟନାୟକଙ୍କ ଜୀବନୀ

*ଲେଖକ :*

**ସୁବାସ ଚନ୍ଦ୍ର ମିଶ୍ର**

*ସତ୍ତ୍ୱ :*

ଶ୍ରୀମତୀ ଅନୀତା କୁମାରୀ ଦେବୀ
ମୁକ୍ତା ନିଳୟ, ରାଜୁସାହି, ଜୟପୁର
ଜିଲ୍ଲା : କୋରାପୁଟ - ୭୬୪ ୦୭୩

*ପ୍ରକାଶକ :*

ଶ୍ରୀ ଉତ୍ସବ ଚ଼ନ୍ଦ୍ର ଜେନା
ସମ୍ପାଦକ, ବନବାସୀ ସେବାସମିତି
ବାଲିଗୁଡ଼ା, ଜିଲ୍ଲା - କନ୍ଧମାଳ
ପିନ୍ : ୭୬୨ ୧୦୩

*ମୁଦ୍ରଣ :*

**ରିପ୍ରୋପ୍ରିଣ୍ଟ ପ୍ରା. ଲିଃ.**
ଚୂଆପଲ୍ଲୀ, ଆଇ.ଆର୍.ସି. ଭିଲେଜ୍
ଭୁବନେଶ୍ୱର - ୭୫୧ ୦୧୫
ଦୂରଭାଷ : ୦୬୭୪-୫୫୨୦୬୬/୫୫୦୬୪୨

*ପ୍ରକାଶନ କାଳ :*

ତା ୧୧.୧୧.୨୦୦୨

*ମୂଲ୍ୟ :* ଟ. ୧୮୦/- (ଏକଶତ ଅଶି ଟଙ୍କା ମାତ୍ର)

# ମୁଖବନ୍ଧ :

ତାହା ଅମୃତ ଲଗ୍ନ ଥିଲା ନିଶ୍ଚିତ । ଜୁନ ମାସ ୧୯୯୭ ମସିହା ରାତି ୧୦ଟାରେ ବାଲିଗୁଡ଼ା ବସଷାଣ୍ଡରୁ ଓହ୍ଲାଇ, ପୂଜ୍ୟ ମହମ୍ମଦ ବାଜୀଙ୍କ ସହିତ ବନବାସୀ ସେବା ସମିତିକୁ ଆସିଲି । ବିଶ୍ୱନାଥ ଆଞ୍ଚାଙ୍କ ସହ ସେହି ମୁହୂର୍ତ୍ତର ଦେଖା ଓ ତାଙ୍କ ପିତୃ ସୁଲଭ ମମତ୍ୱ-ବୋଧ ଭିତରେ ହଜିଗଲି କିଛି ସମୟ ପାଇଁ । ଆଗରୁ ଶୁଣିଥିଲି ଆଞ୍ଚାଙ୍କ ବିଷୟରେ ଏବେ ଆଖିରେ ଦେଖିଲି । ବିଶ୍ୱାସ ହେଲା ନାହିଁ ହଠାତ୍ ତାଙ୍କ ଶୁଣିଥିବା ମଣିଷ ପଣିଆର କଥାକୁ । ଆଶ୍ରମରେ ଦୁଇଦିନ ରହଣି ଭିତରେ ଅନୁଭବିଲି ତାଙ୍କ·ପବିତ୍ର ସ୍ପର୍ଶରେ ମହ ମହେଇ ଯାଉଥିବା ଶିଶୁ ସଦନ, ରମାଦେବୀ କନ୍ୟାଶ୍ରମର ବାସ୍ନାକୁ ଆଉ ଏମିତି ମନରେ, କେମିତି ଏକ ଭିଜା ଭିଜା ନିଃସଙ୍ଗତା ଭିତରେ ଇଚ୍ଛାଟିଏ ଗଜୁରି ଗଲା ଆଞ୍ଚାଙ୍କ ସମ୍ବନ୍ଧରେ ସବୁ ଜାଣିବାକୁ, କିଛି ଲେଖିବାକୁ । ସେହି ଇଚ୍ଛାର ପଲ୍ଲବିତ ରୂପ ''ଆଞ୍ଚା''ଙ୍କ ଜୀବନୀ ।

ମୁଖବନ୍ଧ ଆକରେ ସେମାନଙ୍କୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ଯେଉଁମାନେ ମୋତେ ଆଞ୍ଚାଙ୍କ ସମ୍ବନ୍ଧରେ କିଛି ଲେଖିବାର ପ୍ରେରଣା ଦେଇ କୃତାର୍ଥ କରିଛନ୍ତି ।

ଏହି ଗ୍ରନ୍ଥକୁ ମୁଁ ମୋର ମୌଳିକ ରଚନା ବୋଲି ଦାବି କରିବାର ନାହିଁ । ଏହି ଗ୍ରନ୍ଥର ପିଣ୍ଡ ବ୍ରହ୍ମାଣ୍ଡରେ ଯେଉଁମାନଙ୍କ ସ୍ପର୍ଶ, ସେହି 'ଜଙ୍ଗଲକୁ ରାସ୍ତା'ର ବରେଣ୍ୟ ଲେଖକ ଶ୍ରୀଯୁକ୍ତ ଅଭୟ ମହାପାତ୍ର, ''ଧୂଳି ମାଟିର ସନ୍ଥ''ର ବରେଣ୍ୟ ସ୍ରଷ୍ଟା ୰ ଗୋପୀନାଥ ମହାନ୍ତି, ପୂଜ୍ୟ ମନମୋହନ ଚୌଧୁରୀ, ମାନନୀୟ ମହମ୍ମଦ ବାଜୀ ଓ ସର୍ବୋପରି ବନବାସୀ ସେବା ସମିତି, ବାଲିଗୁଡ଼ାର ସଂପାଦକ ଶ୍ରୀଯୁକ୍ତ ଉତ୍ସବ ଚନ୍ଦ୍ର ଜେନାଙ୍କ ପ୍ରେରଣା, ଆଗ୍ରହର ଫଳଶ୍ରୁତି ଏହି ଗ୍ରନ୍ଥ ହୋଇଥିବାରୁ ଏହି ସମସ୍ତ ମହାନୁଭବଙ୍କ ନିକଟରେ ମୁଁ ଋଣ ସ୍ୱୀକାର କରିନେଉଛି, ଏମାନଙ୍କ ପ୍ରଦର୍ଶିତ ମାର୍ଗ ହିଁ ମୋର ଗ୍ରନ୍ଥ ରଚନାର ଚଲାବାଟ ହୋଇଥିବାରୁ ।

ଏହି ଗ୍ରନ୍ଥକୁ ''ଆଈଙ୍କ ଜୀବନୀ'' ବଦଳରେ ତାଙ୍କ ପ୍ରତି ମୋ'ର ମୁଗ୍ଧ ଶ୍ରଦ୍ଧାଞ୍ଜଳି ବୋଲି ଗ୍ରହଣ କରିନେଲେ ନିଜକୁ ଧନ୍ୟ ମନେକରିବି ।

ବନବାସୀ ସେବା ସମିତିର ଅନ୍ତେବାସୀଙ୍କ ବିପୁଳ, ସ୍ନେହ, ଶ୍ରଦ୍ଧା ଓ ମମତା ବିନା ଏ ଗ୍ରନ୍ଥ ରଚନା ସମ୍ଭବ ହୋଇ ନଥାନ୍ତା । ତେଣୁ ଗ୍ରନ୍ଥ ପ୍ରକାଶନ ଅବସରରେ, ସେହି ସ୍ନେହୀ ମଣିଷମାନଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା ଓ ସମ୍ବର୍ଦ୍ଧନା ଜଣାଉଛି ।

ମୋର ଏହି ରଚନା ଯଦି ଉତ୍ତର ପୁରୁଷଙ୍କୁ କିଛିଟା ପ୍ରେରଣା ଦେଇପାରିବ ତା'ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେକରିବି ।

*ବିନୟାବନତ*

**- ସୁବାସ ଚନ୍ଦ୍ର ମିଶ୍ର**

ମୁକ୍ତା ନିଳୟ, ରାଜୁ ସାହି
ଜୟପୁର, ଜିଲ୍ଲା-କୋରାପୁଟ
ତା ୨୨-୦୮-୨୦୦୨/ଗୁରୁବାର

ଯଦ୍ୟଦାଚରତି ଶ୍ରେଷ୍ଠ ସ୍ତତ୍ତଦେବେତରୋ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ, ଲୋକସ୍ତଦନୁବର୍ତ୍ତତେ ॥

[ଶ୍ରୀମଦ୍ଭଗବଦ୍ ଗୀତା-ତୃତୀୟ ଅଧ୍ୟାୟ-
କର୍ମଯୋଗ : ଶ୍ଳୋକ ୨୧]

ଶ୍ରେଷ୍ଠ ମାନବ ଯାହା ଯାହା ଆଚରଣ କରନ୍ତି, ଅନ୍ୟଲୋକ ତାହା ତାହା ହିଁ ଆଚରଣ କରିଥା'ନ୍ତି । ସେହି ଶ୍ରେଷ୍ଠମାନବ ଯାହାକିଛି ପ୍ରମାଣ (ପ୍ରତିପାଦନ) କରିଥା'ନ୍ତି, ଜଗତର ମାନବ ସମାଜ ତାକୁ ହିଁ ଅନୁସରଣ କରି ଜୀବନ ଯାପନ କରନ୍ତି ।

# ସୂଚୀପତ୍ର

| ପରିଚ୍ଛେଦ ସଂଖ୍ୟା | ବିଷୟ | ପୃଷ୍ଠା |
|---|---|---|

| ପରିଚ୍ଛେଦ ସଂଖ୍ୟା | ବିଷୟ | ପୃଷ୍ଠା |
| --- | --- | --- |

| ପରିଚ୍ଛେଦ ସଂଖ୍ୟା | ବିଷୟ | ପୃଷ୍ଠା |
|---|---|---|
| | କୁଜେନ୍ଦ୍ରୀ ଶିକ୍ଷା ଶିବିର (୧୫.୧.୫୨ ରୁ ୨୯.୧.୫୨) | ୧୪୮ |
| | ଗୋପବାବୁ ଓ ରମାଦେବୀଙ୍କ କୋରାପୁଟ ଜିଲ୍ଲାରେ ସର୍ବୋଦୟ ପଦଯାତ୍ରା | ୧୪୯ |
| | ଗୁଣୁପୁରରେ ଭୂମି ମାଲିକଙ୍କ ଫେରାଦ | ୧୫୦ |
| | ଆମ ପୂର୍ବପୁରୁଷଙ୍କ ଜମିଛାଡ଼ | ୧୫୮ |
| | ଚରମ ପଦକ୍ଷେପ | ୧୬୩ |
| | ନିବେଦନ ପତ୍ର | ୧୬୩ |
| | କୋରାପୁଟରେ ଶବର ଗଣ୍ଡଗୋଳ | ୧୬୭ |
| | ଓଡ଼ିଶା ବିଧାନ ସଭାରେ ଧ୍ୱନି-ପ୍ରତିଧ୍ୱନି | ୧୭୧ |
| | ଆପୋଷ ସମାଧାନ ଦିଗରେ ଭୂ-ସତ୍ୟାଗ୍ରହୀ ସମାଜ | ୧୭୨ |
| ୧୬. | ସ୍ପେଶାଲ ଅଫିସର୍ ଗୋପୀନାଥ ମହାନ୍ତି | ୧୭୩ |
| ୧୭. | ଭୂ-ସତ୍ୟାଗ୍ରହ ପରେ ଭୂଦାନ | ୧୭୭ |
| | ବିଶ୍ୱନାଥ ଓ ବିନୋବା ସାକ୍ଷାତ | ୧୭୮ |
| | କୁଜେନ୍ଦ୍ରୀରେ ବିଶ୍ୱନାଥଙ୍କ ଭୂଦାନ ସଭା ଓ ସଫଳତା | ୧୭୯ |
| | ଡୁମ୍ବୁରିଗୁଡ଼ା ଗ୍ରାମରେ କର୍ମୀ ଶିବିର | ୧୮୦ |
| | ବିଶ୍ୱାସରାୟଙ୍କ କର୍ମୀ ପ୍ରୀତି | ୧୮୧ |
| | ମହମ୍ମଦ ବାଜୀ | ୧୮୨ |
| | ଭୂଦାନ ଯଜ୍ଞ ସମିତି ଗଠନ | ୧୮୨ |
| ୧୮. | ବିନୋବାଜୀଙ୍କ ଓଡ଼ିଶା ଗସ୍ତ : ୧୯୫୫ | ୧୮୫ |
| | ପୁରୀରେ ଅଖିଳ ଭାରତୀୟ ସର୍ବୋଦୟ ସମ୍ମିଳନୀ | ୧୮୭ |
| | କୋରାପୁଟ ଜିଲ୍ଲାରେ ବିନୋବାଜୀଙ୍କ ପଦଯାତ୍ରା ଓ କୁଜେନ୍ଦ୍ରୀ ଆଶ୍ରମ | ୧୮୯ |
| | କୁଜେନ୍ଦ୍ରୀ, ୧୯୫୫ ସେପ୍ଟେମ୍ବର ୨୧ରୁ ୨୮ ଯାଏ | ୧୯୨ |
| | ବିନୋବାଙ୍କ ଓଡ଼ିଶାରୁ ବିଦାୟ | ୧୯୪ |
| ୧୯. | କୋରାପୁଟ ଜିଲ୍ଲାରେ ନିର୍ମାଣ କାର୍ଯ୍ୟ | ୧୯୫ |
| | ନିର୍ମାଣ କର୍ମ ଓ କୋରାପୁଟ ଜିଲ୍ଲାରେ ଭୂଦାନ ଆନ୍ଦୋଳନ | ୨୦୦ |

| ପରିଚ୍ଛେଦ ସଂଖ୍ୟା | ବିଷୟ | ପୃଷ୍ଠା |
| --- | --- | --- |

## ପରିଶିଷ୍ଟ :



* * *

# ବିଶ୍ୱନାଥ ପଟ୍ଟନାୟକଙ୍କ ଜନ୍ମ ଓ ଶିକ୍ଷାଲାଭ

୧୯୦୦ ମସିହା ବେଳକୁ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀର ହସ୍ତମୁଦି ମାହାଲ । ବ୍ରହ୍ମପୁର ଗଞ୍ଜାମ ଜିଲ୍ଲାର ସବୁଠାରୁ ବଡ଼ ସହର । ଏହି ସହରରୁ ୨୫ କିଲୋମିଟର ଦକ୍ଷିଣ ଆଡ଼କୁ ଗଲେ ପଡ଼େ ବଡ଼ ଖେମୁଣ୍ଡି ଜମିଦାରଙ୍କ ରହିବା ସ୍ଥାନ ଦିଗପହଣ୍ଡି । ଦିଗପହଣ୍ଡି ଛକ ଯାଗା । ଦକ୍ଷିଣମୁହାଁ ଡାହାଣ ହାତକୁ ଭାଙ୍ଗିଗଲେ ପଡ଼େ ଆସ୍କା ଆଡ଼କୁ ରାସ୍ତା । ପୂର୍ବପଟେ ଚିକିଟି ଆଡ଼କୁ ରାସ୍ତା । ଚିକିଟି ରସ୍ତାରେ ୧୩ କିଲୋମିଟର ଗଲେ ପଡ଼େ କୁମରଡ଼ା ଗ୍ରାମ । ଗଞ୍ଜାମ ଜିଲ୍ଲାର ଅନ୍ୟ ସବୁ ଗାଁ ପରି । ସବୁ ଜାତିର ଲୋକ । ଚଳଣି ସବୁ ଗାଁ'ରେ ଯେମିତି ।

କୁମରଡ଼ା ଗ୍ରାମରେ କେତେଘର ପଟ୍ଟନାୟକ ପରିବାର । ବୃତ୍ତି ଚାଷ ଓ ଲେଖାପଢ଼ା । ସେଦିନ ୧୯୧୬ ମସିହା ନଭେମ୍ବର ମାସ ୧୧ ତାରିଖ, ଉପେନ୍ଦ୍ର ପଟ୍ଟନାୟକଙ୍କ ପତ୍ନୀ ଇନ୍ଦୁମତୀ ଅଷ୍ଟମ ସନ୍ତାନକୁ ଜନ୍ମଦେଲେ । ପରିବାରରେ ଖୁସିହେଲେ ସମସ୍ତେ । ନାହିକଟା ସରିଲା । ଏକୋଇଶା ଦିନ ପୁଅଟିର ନାଁ ଦିଆହେଲା ବିଶ୍ୱନାଥ । କିଏ ଜାଣିଥିଲା ସେଦିନ, ଜଗତର କଲ୍ୟାଣକାରୀ ଦେବ ଦେବ ମହାଦେବ, ବିଶ୍ୱନାଥ ନାମ ନେଇ ଯେପରି ନିରାସକ୍ତ, ସଂସାର-ବିରାଗୀ ହୋଇ ନିଖିଳ ବିଶ୍ୱର ମଙ୍ଗଳପାଇଁ ସର୍ବସ୍ୱ ତ୍ୟାଗକରି ହିମାଳୟବାସୀ ହୋଇଥିଲେ, ସେମିତି ବଡ଼ଦିନରେ ବିଶ୍ୱନାଥ ପଟ୍ଟନାୟକ ସର୍ବସ୍ୱ ତ୍ୟାଗକରି, ବ୍ରହ୍ମଚାରୀ ହୋଇ କୋଳେଇନେବେ ସମାଜର ଦଳିତ, ନିଷ୍ପେଷିତ ମଣିଷ ସମାଜକୁ । ଜୀବନ ହୋଇଯିବ ସେବାମୟ । ସେ କର୍ମଯୋଗୀର ଦୀକ୍ଷାନେଇ, ସେବା ସାଧନାର ପଥଚାରୀ ହୋଇ ସ୍ୱନାମଧନ୍ୟ ହୋଇଯିବେ ।

ବିଶ୍ୱନାଥ ସେତେବେଳକୁ ପିଲା । ବାପା ଉପେନ୍ଦ୍ର ପଟ୍ଟନାୟକଙ୍କ କାଳ ହୋଇଗଲା । ବାପାଙ୍କର ସ୍ନେହ, ମମତା ସେ ଜାଣି ପାରିଲେ ନାହିଁ । ତାଙ୍କର ଚାରି ଭଉଣୀ, ତାଙ୍କୁ ମିଶେଇ ଚାରିଭାଇ । ଏଡ଼େ ବଡ଼ ପରିବାର । ଜମିରୁ ଆସେ ବର୍ଷକୁ ପାଖାପାଖି ୧୨୦ ବସ୍ତା ଧାନ । ବାପାଙ୍କ ମୃତ୍ୟୁପରେ ବିଶ୍ୱନାଥଙ୍କ କକେଇ ସବୁପିଲାଙ୍କର ଭରଣ ପୋଷଣର ଦାୟିତ୍ୱ ନେଲେ । ସେ ନିଃସନ୍ତାନ ଥିଲେ । କକେଇଙ୍କ ସ୍ନେହପାଳିତ ବିଶ୍ୱନାଥ ପାଞ୍ଚ ବରଷରେ ଖଡ଼ି ଛୁଇଁଲେ । ଗାଁ ଅବଧାନଙ୍କ ଠାରୁ ଶିଖିଲେ ଓଡ଼ାଙ୍କ, ଫେଡ଼ାଙ୍କ, ମିଶାଣ । ପଢ଼ିଲେ ଗୋପୀବୋଲି । ଗାଇଲେ ସରସ୍ୱତୀ ବନ୍ଦନା । ଅବଧାନ ପାଠ ସରିଲା ପରେ

ପଢ଼ିବାକୁ ଗଲେ ଗାଁ' ଚାଟଶାଳୀକୁ । ସେଠି ପଢ଼ିଲେ ତୃତୀୟ ଶ୍ରେଣୀ ଯାଏ । ତୃତୀୟ ଶ୍ରେଣୀ ପାସ୍ କରି ୧୯୨୮ ମସିହାରେ ବିଶ୍ୱନାଥ ଗଲେ ଏବେ ଆନ୍ଧ୍ର ପ୍ରଦେଶରେ ଥିବା ଇଚ୍ଛାପୁରକୁ । ସେତେବେଳକୁ ତାଙ୍କୁ ୧୨ ବର୍ଷ ବୟସ ।

ଇଚ୍ଛାପୁରରେ ଓଡ଼ିଶା ପିଲାଙ୍କ ପାଠ ପଢ଼ାର ସୁବିଧା ପାଇଁ ସୁରଙ୍ଗୀ ରାଜା ବସାଇଥିଲେ ହାଇସ୍କୁଲଟିଏ । ତାଙ୍କ ଖର୍ଚ୍ଚରେ ସ୍କୁଲ ଚାଲେ । ବହୁ ଦୂର ଦୂରାନ୍ତରୁ ପିଲା ଆସନ୍ତି । ସେତେବେଳେ ହଷ୍ଟେଲ ବୋଲି କିଛି ନଥିଲା । ସ୍କୁଲରେ ସବୁପାଠ ଇଂରାଜୀରେ ପଢ଼ାହେଉଥିଲା । ପିଲାମାନେ ରହି ପାଠ ପଢ଼ିବାର ସୁବିଧା ପାଇଁ ଇଚ୍ଛାପୁର ଗ୍ରାମର କେତେକ ବ୍ୟକ୍ତି ଦୂରରୁ ଆସିଥିବା ପିଲାମାନଙ୍କୁ ନିଜ ଘରେ ରଖିବାର ବ୍ୟବସ୍ଥା କରିଥିଲେ । ପିଲାମାନେ ରହିବା ଓ ଖାଇବା ବାବଦକୁ ଘର ମାଲିକଙ୍କୁ କିଛି ପଇସା ଦେଉଥିଲେ । ବିଶ୍ୱନାଥ ନିଜ କକେଇ ଓ ବଡ଼ଭାଇ ଘନଶ୍ୟାମ ପଟ୍ଟନାୟକଙ୍କ ସାହାଯ୍ୟରେ ଇଚ୍ଛାପୁରରେ ୧୯୨୮ରୁ ୧୯୩୩ ଯାଏ ୫ ବର୍ଷ ପାଠ ପଢ଼ିଲେ ।

ସେତେବେଳକୁ ଘନଶ୍ୟାମ ପଟ୍ଟନାୟକ ଇଂରାଜୀ ପଢୁଆ ଲୋକ । କୁମରଡ଼ା ଗ୍ରାମ ଚାଟଶାଳୀର ଶିକ୍ଷକ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଡାକରାରେ ସେ ଶିକ୍ଷକ ଥାଇ ସ୍ୱାଧୀନତା ଆନ୍ଦୋଳନ ସହ ସମ୍ପର୍କ ରଖିଥିଲେ ।. ନିରଞ୍ଜନ ପଟ୍ଟନାୟକ ଗାନ୍ଧୀଙ୍କ ଡାକରାରେ ଉଦ୍‌ବୁଦ୍ଧ ହୋଇ ଗାଁ ଗାଁ'ରେ ଲବଣ ସତ୍ୟାଗ୍ରହରେ ଯୋଗଦେବା ପାଇଁ କର୍ମୀ ସଂଗ୍ରହ କଲେ । ବିଶ୍ୱନାଥଙ୍କ ଭାଇ ତାରିଣୀ ଚରଣ ପଟ୍ଟନାୟକ ହୁମା ଯାଇ ଲୁଣ ମାରି ଜେଲଗଲେ । ବିଶ୍ୱନାଥଙ୍କ ମାମୁଁ ପୁଅ ଭାଇମାନେ ମଧ୍ୟ ଲୁଣ ମାରି ଜେଲଗଲେ । ଏ ଖବର ସେ ଇଚ୍ଛାପୁରରେ ପାଠ ପଢୁଥିଲା ବେଳେ ଶୁଣିଲେ । ସେ ନିଜ ପରିବାରର ଦେଶ ପାଇଁ ଜେଲଯିବା ଘଟଣାରେ ପ୍ରଭାବିତ ହେଲେ । ସେଦିନର ସ୍ମୃତିକୁ ମନେପକାଇ ସେ ଲେଖନ୍ତି - ''ମୋର ବଡ଼ଭାଇ ଘନଶ୍ୟାମ ପଟ୍ଟନାୟକଙ୍କର ଦେଶାତ୍ମଭାବ ବିଶେଷ ଥିବାରୁ ସେ ତାଙ୍କ ଚିନ୍ତାଧାରା ଆମ ପରିବାର ମଧ୍ୟରେ ପୂରାଇବାକୁ ଚେଷ୍ଟା କରିଥିଲେ । ତେଣୁ ତାଙ୍କ ଦ୍ୱାରା ମୁଁ ଦେଶକାମ ପାଇଁ ପ୍ରଭାବିତ ହେଲି । ସେ ମୋ ଉପର ଭାଇଙ୍କୁ ମଧ୍ୟ ଲବଣ ସତ୍ୟାଗ୍ରହରେ ଯୋଗଦେବା ପାଇଁ ପଠାଇଥିଲେ । ସେ ଆମ ପରିବାରର ଆମ ଭଳି ଛୋଟପିଲାଙ୍କ ପାଇଁ ଖଦଡ଼ ଲୁଗା ଆଣି ବ୍ୟବହାର କରାଇଥିଲେ । ସେ ନିଜେ ସୂତା ମଧ୍ୟ କାଟୁଥିଲେ ।''

ବିଶ୍ୱନାଥ ଛାତ୍ର ଅବସ୍ଥାରୁ ଦେଶ ପାଇଁ କାମ କରିବାର ପ୍ରେରଣା ତାଙ୍କ ବଡ଼ଭାଇଙ୍କ ଠାରୁ ପାଇ ମନେ ମନେ ଦେଶ ସେବାରେ ନିଜକୁ ଲଗାଇବାର ପ୍ରତିଜ୍ଞା କଲେ । ସେ ଇଚ୍ଛାପୁରରେ ଥାର୍ଡ ଫାରମ୍ (ଅଷ୍ଟମ ଶ୍ରେଣୀ) ପଢୁଥିବା ସମୟରେ ଓଡ଼ିଶାର ପ୍ରସିଦ୍ଧ ନାରୀନେତ୍ରୀ ସରଳାଦେବୀଙ୍କ ଇଚ୍ଛାପୁର ଗସ୍ତକାଳରେ ଦେଶର ଅବସ୍ଥା ଓ କଂଗ୍ରେସର କଥାଶୁଣି ବିଶେଷ ପ୍ରଭାବିତ ହୋଇଥିଲେ । ୧୯୩୩ ମସିହାରେ ଅଷ୍ଟମ ଶ୍ରେଣୀ ପାସ କଲାପରେ ପାଠରେ ଡ଼ୋରି ବାନ୍ଧି, ସେ ନିଜ ଗାଁ କୁମରଡ଼ାକୁ ଫେରିଆସିଲେ । ଘରର ମୁରବୀଙ୍କ ଆର୍ଥିକ ଅବସ୍ଥା ସେତେବେଳକୁ ସ୍ୱଚ୍ଛଳ ନଥିଲା । ଏଣୁ ଆଉ ପାଠ ପଢ଼ିବା ନୋହିଲା ।

ଗାଁ'କୁ ଫେରିବା ପରେ ବିଶ୍ୱନାଥ ଗାଁ ଚାଟଶାଳୀରେ ଶିକ୍ଷକ ହେଲେ । ମାସକୁ ଦରମା ସାତଟଙ୍କା । ୧୯୩୩ ବେଳକୁ ସାତଟଙ୍କା ଦରମା କିଛି କମ ନଥିଲା । ସେଇ ସମୟରେ ସାତ ଟଙ୍କା ଦରମାରେ ପାଞ୍ଚ ଜଣିଆ ପରିବାର ଖାଇ ପିଇ ସୁନ୍ଦର ଭାବରେ ଚଳି ପାରୁଥିଲା, ହେଲେ ବିଶ୍ୱନାଥ ପିଲାବେଳୁ ଥିଲେ ସଂସାର ଉଦାସୀ । ଅନେକ ପ୍ରକାର ଭାବନା ମୁଣ୍ଡରେ; ଦେଶସେବା କରିବେ ନା ଭଗବାନଙ୍କୁ ପାଇବା ପାଇଁ ଚେଷ୍ଟା କରିବେ ? ପିଲାବେଳୁ ପରିବାରର ଧର୍ମ ବିଶ୍ୱାସ ଓ ଦେବ୍‌ତା ବିଶ୍ୱାସ ତାଙ୍କ ମନରେ ଥିଲା । ଗୋଟିଏ ଝୁଙ୍କ ଉଠିଲା ଆଧ୍ୟାତ୍ମିକ ଉନ୍ନତି ପାଇଁ । ଏଠି ତାଙ୍କର ପିଲାଦିନ କଥା ମନେପଡ଼େ ।

ପୁରୀ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ତାଙ୍କ ମନରେ ପ୍ରବଳ ଇଚ୍ଛା ହେଲା । ତେଣୁ ପାଠ ପଢ଼ିଲାବେଳେ ଘରେ, କି ଗାଁ'ରେ କାହାକୁ କିଛି ନକହି ଜଗନ୍ନାଥ ଦର୍ଶନକୁ ବାହାରିଲେ । କୁମରଡ଼ାରୁ ପାଦରେ ଚାଲି ଚାଲି ୪୦ ମାଇଲ ବାଟ ଅତିକ୍ରମ କରି ରମ୍ଭାରେ ପହଞ୍ଚିଲେ । ସେଇଠୁ ସେ ଚିଲିକାରେ ଡଙ୍ଗାରେ ବସି କଣାସରେ ପହଞ୍ଚିଲେ । ଚିଲିକାର ବିସ୍ତୀର୍ଣ୍ଣ ବକ୍ଷରେ ଭାସୁଥିବା ମେଘର ଛାଇ, ଚଢ଼େଇଙ୍କ କଳରାବ, ନାଉରୀର ଅବିଶ୍ରାନ୍ତ କାତମରା ଭିତରେ ଶ୍ରୀ ଜଗନ୍ନାଥଙ୍କ ଆକର୍ଷଣ ତାଙ୍କୁ ଯେମିତି ଆଚ୍ଛନ୍ନ କରି ରଖିଥିଲା । କଣାସରୁ ପୁଣି ପାଦରେ ଚାଲି ଚାଲି ପୁରୀ । ସେତେବେଳେ ଜଗନ୍ନାଥ ସଡ଼କ ଧୂଳିମୟ । ବାଟମଙ୍ଗଳା ପାର ହୋଇ ବଡ଼ଦାଣ୍ଡରେ ପାଦଦେଲେ ସେ । କେତେଦିନ ପରେ ଗାଁ'କୁ ଫେରିଲେ ।

୧୯୩୩ ମସିହା, ବିଶ୍ୱନାଥ କୁମରଡ଼ା ଗ୍ରାମ ଚାଟଶାଳୀର ଶିକ୍ଷକ । ଆଉ ଶିକ୍ଷକତା ଭଲ ଲାଗିଲା ନାହିଁ । ଦେଶକଥା, ଆଧ୍ୟାତ୍ମିକ ଉନ୍ନତିର ଚିନ୍ତା ମନକୁ ଆସିଲା । ଏଇ ଭିତରେ ସେ ଶୁଣିଥିଲେ ଆଚାର୍ଯ୍ୟ ହରିହର ଦାସଙ୍କ ସମାଜ ସେବାର କଥା । ଋଷିପ୍ରାଣ ଆଚାର୍ଯ୍ୟ ପୁରୀରେ ଗଢ଼ିଥାନ୍ତି ପୁରୀ ସେବା ସମିତି ଅନୁଷ୍ଠାନ । ଏହି ଅନୁଷ୍ଠାନର ସ୍ୱେଚ୍ଛାସେବକ

ମାନେ ରଥଯାତ୍ରା ଓ କୋଣାର୍କ ମାଘ ସପ୍ତମୀ ମେଳାରେ ଜନସେବା କରିଥାନ୍ତି । ବିଶ୍ୱନାଥ ଏକଥା ଶୁଣି ୧୯୩୩ରେ ପୁରୀ ଆସି ଆଚାର୍ଯ୍ୟଙ୍କୁ ଭେଟିଲେ । ସେ ପୁରୀ ସେବା ସମିତିର ସ୍ୱେଚ୍ଛାସେବକ ହୋଇ ଜନସେବା କଲେ । ଆଚାର୍ଯ୍ୟ ହରିହର ଦାସ ହୋଇଗଲେ ତାଙ୍କ ପାଇଁ ପଥ ପ୍ରଦର୍ଶକ, ଦୀକ୍ଷାଗୁରୁ । ଆଚାର୍ଯ୍ୟଙ୍କ ପ୍ରଭାବରେ ସେ ଏତେଦୂର ପ୍ରଭାବିତ ହୋଇଗଲେ ଯେ ମାନବ ସେବା ହୋଇଗଲା ତାଙ୍କ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ଯାଯାବର ଜୀବନରେ ଅଭ୍ୟସ୍ତ ବିଶ୍ୱନାଥ ଚାହିଁଲେ ନାହିଁ ଗାଁରେ ବାନ୍ଧି ହୋଇ ରହିବାକୁ ।

ଏ ସମୟରେ ବିହାରର କ୍ୱେଟାରେ ଭୂମିକମ୍ପ ହୋଇ ବହୁ ଧନ ଜୀବନ ନଷ୍ଟ କଲା । ପୁରୀ ସେବା ସମିତିର ସ୍ୱେଚ୍ଛାସେବୀ ଭାବେ ବିଶ୍ୱନାଥ କ୍ୱେଟା ଯିବା ପାଇଁ ଆଚାର୍ଯ୍ୟଙ୍କୁ ଲେଖି ଜଣାଇଦେଲେ ।

ଏହା ୧୯୩୪ ମସିହାର କଥା । ଏ ଭିତରେ କେତେଦିନ ବିତିଗଲା । ବିଶ୍ୱନାଥ ଗାଁ'ରୁ ତାଙ୍କ ସମବୟସ୍କ ଜଣେ କିଶୋର ବନ୍ଧୁ ସହିତ ପୁରୀ ବାହାରିଲେ । ସେ ପୁରୀରେ ପହଞ୍ଚିବା ବେଳକୁ ଆଚାର୍ଯ୍ୟଙ୍କ ନେତୃତ୍ୱରେ ଦଳେ ସ୍ୱେଚ୍ଛାସେବୀ କ୍ୱେଟା ଭୂମିକମ୍ପ ପୀଡ଼ିତ ଲୋକଙ୍କ ସେବା ପାଇଁ ଯାଇ ସାରିଲେଣି । ବିଶ୍ୱନାଥଙ୍କ ମନରେ ଭାରି ଦୁଃଖ ହେଲା । ତାଙ୍କ କ୍ୱେଟା ଯିବା ନୋହିଲା । ପୁରୀରେ ଆଉ ରହିବାକୁ ମନ ଡାକିଲା ନାହିଁ । ଏଣେ ମନରେ ଭଗବାନଙ୍କ ବିଷୟରେ ଜାଣିବାର ତୀବ୍ରଇଚ୍ଛା । ଆଧାତ୍ମିକ ଉନ୍ନତି ପାଇଁ ସାଧୁସଙ୍ଗ ଲୋଡ଼ା ବୋଲି ପିଲାବେଳୁ ଶୁଣିଥିଲେ । ଆଉ ଘରକୁ ଫେରିବାକୁ ଇଚ୍ଛା ହେଲା ନାହିଁ ।

ସାଥିରେ ତାଙ୍କ ସାଙ୍ଗ ପଞ୍ଚାନନ ପାଢ଼ୀ ଥିଲେ । ଦୁହେଁ ପୁରୀ ରେଳଷ୍ଟେସନରୁ କଲିକତା ଯିବା ରେଳରେ ବସିଲେ । ହାତରେ ପଇସା ନାହିଁ । ଟିକଟ କାଟିବା ହେଲା ନାହିଁ । ପହଞ୍ଚିଗଲେ କଲିକତାରେ, ସେଠୁ ବର୍ଦ୍ଧମାନ । ବର୍ଦ୍ଧମାନରୁ ବାହାରିଲେ ବୈଦ୍ୟନାଥ ଧାମ । ସେଇ ବିନା ଟିକଟରେ ଯାତ୍ରା । ଅଚିହ୍ନା ଜାଗା । ଅଜଣା ମଣିଷ । ଟି.ଟି.ଆଇ ବାଟରେ ଓହ୍ଲାଇ ଦେଲା । ଛୋଟିଆ ରେଳଷ୍ଟେସନଟିଏ, ରାତି ହୋଇଯାଇଥିଲା । ସେଠି ବିଶ୍ୱନାଥ ଦେଖିଲେ ଜଣେ ସନ୍ୟାସୀଙ୍କୁ । ତାଙ୍କ ମନରେ ସାହସ ଆସିଲା । ତାଙ୍କ ସାଙ୍ଗରେ ଯିବାକୁ ଅନୁରୋଧ କଲେ ବିଶ୍ୱନାଥ । ସେତେବେଳକୁ ଲୁଗା କାନିର ଗଣ୍ଠିରେ ଥିଲା ମାତ୍ର ଦି'ଅଣା ପଇସା । ପୁଣି ବିନା ଟିକଟରେ ରେଳରେ ବସିଲେ । ବିଶ୍ୱନାଥ ଓ ପଞ୍ଚାନନ ଆଣ୍ଠୁ ଲୁଚୁ ନଥିବା ଖଦଡ଼ ଖଣ୍ଡେ ଖଣ୍ଡେ ପିନ୍ଧିଥିଲେ । କେତେବେଳେ ରେଳରେ ତ କେତେବେଳେ ପାଦରେ ଚାଲିବାକୁ ପଡୁଥାଏ । କେଉଁ କେଉଁ ଗାଁ'ରେ ସାଧୁ ସନ୍ଥମାନଙ୍କୁ ଛତ୍ର

ଦିଆଯାଉଥାଏ । ସାଧୁଙ୍କ ସହିତ ଥିବାରୁ ଖାଇବା ପିଇବା ଅସୁବିଧା ହୁଏ ନାହିଁ । ଖଦଡ଼ ପିନ୍ଧିଥିବାରୁ ଲୋକମାନେ ଏ ଦୁହିଁଙ୍କୁ ସାଧୁଙ୍କ ଚେଲା ମନେକରନ୍ତି । ସଂଜ ହେଲେ କେଉଁ ଗଛମୂଳେ କି କାହା ପିଣ୍ଡାରେ ଶୋଇପଡ଼ନ୍ତି । ଏମିତି ପନ୍ଦର ଦିନ କଟିଗଲା । କାହିଁ କୁମରଡ଼ା ଗାଁ, କାହିଁ ଆଲ୍‌ହାବାଦ ସଙ୍ଗମର କୁମ୍ଭମେଳା !

ସେ ବର୍ଷ କୁମ୍ଭମେଳାରେ ବହୁତ ଲୋକ । କେତେ ଦୋକାନ ବଜାର । ନାଗା ବାବାଜୀଙ୍କ ଭିଡ଼ । ସାରା ଦେଶରୁ ସାଧୁ ମହାରାଜାଙ୍କ ଆଗମନ । ହଜାର ହଜାର ତୀର୍ଥାର୍ଥୀ । ପୁଣ୍ୟ କମେଇବା ପାଇଁ ଆସିଛନ୍ତି ବହୁ ପଶ୍ଚିମା ଯାତ୍ରୀ । ବହୁ ପଣ୍ଡା, ପୁରୋହିତ, ମନ୍ତ୍ରୋଚ୍ଚାର । ସେଠି ସାଧୁମାନେ ରହିବା ପାଇଁ ମଞ୍ଚା ତିଆରି ହୋଇଥାଏ । ଲୋକମାନେ ଚାନ୍ଦାକରି ଏହା ତିଆରି କରିଥାନ୍ତି । ଏମିତି ଗୋଟିଏ ମଞ୍ଚାରେ ଏମାନେ ରହିଲେ । ଆସିଥିବା ସାଧୁଙ୍କ ସହିତ ଛାଇ ପରି ଥାଆନ୍ତି । ସାଧୁ, ସେତ ବାନ୍ଧି ହୋଇ ରହିବା ଲୋକ ନୁହଁନ୍ତି । ଦୁଇ ଦିନ ପରେ ସାଧୁଙ୍କ ସଙ୍ଗ ଛାଡ଼ ହୋଇଗଲା ।

ସହଜେ ବିଦେଶ । ହିନ୍ଦୀ ଜଣା ନାହିଁ । କାହାକୁ ବା କ'ଣ କହିବେ । କେତେ ଯାଗାରେ ସାଧୁମାନେ ପ୍ରବଚନମାନ ଦେଉଥା'ନ୍ତି । ସେଠି ଯାଇ ବସନ୍ତି । କିଛି ବୁଝି ପାରନ୍ତି ନାହିଁ । ଏଣେ ପଞ୍ଚାନନ ମନ ମାରି ବସେ, ମନରେ ସୁଖ ନାହିଁ । ଘରକୁ ଫେରିଯିବାକୁ କେତେଥର କହିଲାଣି ବିଶ୍ୱନାଥଙ୍କୁ । ସାଧୁ ହେବା ଝୁଙ୍କରେ ସେ ପଞ୍ଚାନନ କଥାକୁ ସେତେ ଗୁରୁତ୍ୱ ଦେଉନଥା'ନ୍ତି । ପଞ୍ଚାନନ ଜିଦ୍ କଲା ଯଦି ବିଶ୍ୱନାଥ ନ ଆସନ୍ତି ସେ ଏକୁଟିଆ ଫେରିଯିବ ଘରକୁ । ସେଦିନର ସେହି ପୁରୁଣା କଥା ମନେ ପକାଇ ସେ କହନ୍ତି - ''ଆମେ ଦୁହେଁ ଭଲଭାବେ ହିନ୍ଦୀ କହିବା ଜାଣିନଥିଲୁ, ବାବାଜୀମାନଙ୍କ କାର୍ଯ୍ୟକଳାପ ଦେଖି ଦେଖି ଅଧା ଅଧା କଥା ବୁଝି ସେମାନଙ୍କ ମାହାତ୍ମ୍ୟ ବୁଝିବାକୁ ଚେଷ୍ଟା କରୁ । ମୋର ସାଧୁ ହେବାକୁ ଇଚ୍ଛା ଥିଲା, କିନ୍ତୁ ବାଟ ଜଣା ନାହିଁ । ସାଙ୍ଗ ପିଲାଟି ପଳାଇ ଆସିବାକୁ ବ୍ୟଗ୍ର । ତେଣୁ ଆଠ ଦିନ ପରେ ମେଳାରୁ ପଳାଇ ଆସିଲୁ ।'' ମନୁଷ୍ୟ ପ୍ରାରବ୍ଧ କର୍ମ ନେଇ ଏହି ପୃଥିବୀକୁ ଆସିଥାଏ । ସେ ନିଜମତେ ଚଳିବାକୁ ଚାହିଁଲେ ବି ଆଉ ଜଣେ ତାକୁ ଚଳାଇଥାଏ । ଯଦି ବିଶ୍ୱନାଥ ୧୮ ବର୍ଷ ବୟସରେ ସାଧୁ ଦୀକ୍ଷା ନେଇ ସଂସାର ବିରାଗୀ ହୋଇଥାନ୍ତେ, ହୁଏତ ସନ୍ୟାସୀ ସଂପ୍ରଦାୟର ସେ ଅନ୍ୟଜଣେ ସନ୍ନ୍ୟାସୀ ହୋଇ ସତ୍‌ସଙ୍ଗ ଓ ଭଗବତ ଚର୍ଚ୍ଚାରେ ଜୀବନ କଟାଇଥାନ୍ତେ କିନ୍ତୁ ଏହା ହେବାର ନଥିଲା । ଅନ୍ୟ ଏକ ପୃଥିବୀ, ଅନ୍ୟ ଏକ ଜୀବନଧାରା ଯେମିତି ତାଙ୍କ ବାଟ ଚାହିଁ ବସିଥିଲା । ସେ ବାଟରେ ଗଲେ ପହଞ୍ଚିହେବ ମଣିଷ ପାଖରେ, ଯେଉଁ ମଣିଷ ଦଳିତ, ନିଷ୍ପେଷିତ, ଅଶିକ୍ଷା ଜର୍ଜ୍ଜରିତ, ଅସହାୟ ।

ଚିହ୍ନିହେବ ତା'ର ଜୀବନ ଯନ୍ତ୍ରଣାକୁ, ହା ହୁତାଶ ଭାବକୁ, ତା'ର ଭୟକୁ, ତା'ର ଖଣ୍ଡିତ ବ୍ୟକ୍ତିସତ୍ତାକୁ । ସେମାନଙ୍କ ପାଇଁ ଯେମିତି ବିଶ୍ୱନାଥଙ୍କ ଜୀବନ ଅଭିପ୍ରେତ ଥିଲା । ନିଜ ରକ୍ତରେ ସେ ଯେମିତି ମାଗି ଆଣିଥିଲେ ସମାଜ ସେବାର ଅଭିଳାଷକୁ, ସାଧାରଣ ମଣିଷର ଦୁଃଖ ଦୈନ୍ୟକୁ ଆପଣେଇ ନେଇ ସାଧାରଣ ଭାବେ ବଞ୍ଚିବାକୁ । ଏଣୁ କୁମ୍ଭମେଳାର ଆକର୍ଷଣ, ସାଧୁହେବାର ଇଚ୍ଛା ତାଙ୍କୁ ବାନ୍ଧି ରଖିପାରିଲା ନାହିଁ ।

ସେ ଫେରିଲେ ଗାଁ'କୁ । ପୁଣି ଗାଁ ଚାଟଶାଳୀରେ ଶିକ୍ଷକତା କଲେ ସେଇ ସାତ ଟଙ୍କା ଦରମାରେ । ସେତେବେଳକୁ କୁମରଡ଼ା ଗାଁ କଂଗ୍ରେସ ଓ ମହାତ୍ମାଗାନ୍ଧୀଙ୍କ କଥା ଶୁଣି ସାରିଥାଏ । ଏ ଗାଁ'ର ଲୋକେ ଲୁଣ ମାରି ଦୁଇ, ଚାରି ମାସ ଲେଖାଏଁ ସଜା କାଟି ସାରିଥାନ୍ତି । ଗାଁ'ରେ ଚରଖା ଓ ସୂତାକଟାର ଚଳଣି ଆରମ୍ଭ ହେବାକୁ ଯାଉଥାଏ । ମଝିରେ ମଝିରେ ବହୁ କଂଗ୍ରେସୀ ନେତା ଗାଁ'କୁ ଆସୁଥାନ୍ତି । ବିଶ୍ୱନାଥ ସେତେବେଳକୁ ୧୮ ବର୍ଷର ଯୁବକ । ତାଙ୍କ ବୟସର ପିଲାମାନେ ବାହା ସାହା ହେବା ପାଇଁ ସଜବାଜ ହେଉଥାନ୍ତି ।

ବିଶ୍ୱନାଥଙ୍କ ଭାଇମାନେ ତାଙ୍କ ପାଇଁ ବିଭିନ୍ନ ଆଡୁ ପ୍ରସ୍ତାବ ଆଣିଲେ । ବିବାହ କରିବା ଉପରେ ଜୋର ଦେଲେ, ହେଲେ ମନେଇ ପାରିଲେ ନାହିଁ ତାଙ୍କୁ । ବିବାହ ବନ୍ଧନରେ ବାନ୍ଧି ହୋଇ, ପିଲା କୁଟୁମ୍ବ ନେଇ ସଂସାରୀ ହେବା ଯେମିତି ତାଙ୍କ କପାଳରେ ଲେଖା ହୋଇ ନଥିଲା । ସେ ଜଞ୍ଜାଳରେ ପଶିବାକୁ ମନକଲେ ନାହିଁ । ସେ ମନେ ମନେ କଂଗ୍ରେସର କାମ କରିବା ପାଇଁ ସ୍ଥିର କଲେ । ମନରେ ସୂତାକାଟିବା ଶିଖିବା ପାଇଁ ପ୍ରବଳ ଇଚ୍ଛା ହେଲା । ପରେ ସେ ଜଗନ୍ନାଥ ମିଶ୍ର ଓ କୃଷ୍ଣମୂର୍ତ୍ତିଙ୍କ ସହିତ ବୁଲି କଂଗ୍ରେସର ରଚନାତ୍ମକ କାର୍ଯ୍ୟ ଓ କଥା ଦେଖିଲେ ଓ ଶୁଣିଲେ । ଏଇଠୁ ଆରମ୍ଭ ହେଲା ତାଙ୍କ ଜୀବନର ଯାତ୍ରା ମାନବସେବାର ବ୍ରତନେଇ ।

❋ ❋ ❋

- ଦୁଇ -

# ସେତେବେଳେ କଂଗ୍ରେସର କାମ

୧୯୩୦ ମସିହା ଏପ୍ରିଲ, ମେ ମାସ ସୁଦ୍ଧା ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଓଡ଼ିଶାରେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ସରଳାଦେବୀ, ଆଚାର୍ଯ୍ୟ ହରିହର ଏହାର ଦାୟିତ୍ୱ ନେଲେ । ଏହି ଆନ୍ଦୋଳନ ପ୍ରବଳ ହୋଇଥିଲା । ଗଞ୍ଜାମ ଜିଲ୍ଲାରେ ସେତେବେଳକୁ ନିରଞ୍ଜନ ପଟ୍ଟନାୟକଙ୍କ ଭାରି ଡାକନାମ । ସତ୍ୟାଗ୍ରହୀ ନିରଞ୍ଜନ ଥିଲେ ଜଣେ ଜାତୀୟ ସ୍ତରର ନେତା । ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟୀରେ ପ୍ରଥମ ସମ୍ପାଦକ । ଓଡ଼ିଶାରେ ମହାତ୍ମାଙ୍କ ପ୍ରବର୍ତ୍ତିତ ଖଦୀ ଆନ୍ଦୋଳନର ତତ୍ତ୍ୱାବଧାରକ । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟୀ ଓ ନିଖିଳ ଭାରତ କଂଗ୍ରେସ କମିଟୀର ପ୍ରଭାବଶାଳୀ ନେତା । ସେ ଓଡ଼ିଶା ଓ ଓଡ଼ିଶା ବାହାରେ ଥିବା ଓଡ଼ିଆମାନଙ୍କର ସମସ୍ୟାକୁ ନେଇ 'The Oriya Movement' ନାମକ ଏକ ପ୍ରସିଦ୍ଧ ଗ୍ରନ୍ଥ ଲେଖିଥିଲେ ।

ନିରଞ୍ଜନ ପଟ୍ଟନାୟକ ୧୮୯୬ ନଭେମ୍ବର ୨୪ ତାରିଖ ଦିନ ଗଞ୍ଜାମ ଜିଲ୍ଲାର ଆସିକା ଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଦାମୋଦର ପଟ୍ଟନାୟକ ଆସିକା ମୁନସିଫ୍ ଅଦାଲତରେ ନାଜିର ଥିଲେ । ମା' ହୀରାମଣି ଦେବୀ । ଉଭୟେ ଖଦଡ଼ ପିନ୍ଧୁଥିଲେ । ନିରଞ୍ଜନ ପିଲାବେଳୁ ଖଦଡ଼ ପ୍ରତି ଆକୃଷ୍ଟ ହୋଇଥିଲେ । ୧୯୨୦ରେ କଲିକତା ବିଶ୍ୱବିଦ୍ୟାଳୟରେ ଏମ୍.ଏ ଏବଂ ବି.ଏଲ୍. ପଢୁଥିବା ବେଳେ ଗାନ୍ଧିଜୀଙ୍କ ଡାକରାରେ ପାଠପଢ଼ା ଅଧାରୁ ଛାଡ଼ି ଓଡ଼ିଶାକୁ ଫେରିଆସିଲେ । ବ୍ରହ୍ମପୁରର ହିଲ୍‌ପାଟଣାଠାରେ ଭଡ଼ା ଘରଟିଏ ନେଇ ସେ ସ୍ୱରାଜ୍ୟ ଆଶ୍ରମ ପ୍ରତିଷ୍ଠା କରି ଖଦଡ଼ର ପ୍ରସାର ପାଇଁ କାର୍ଯ୍ୟ ଆରମ୍ଭ କଲେ । ତାଙ୍କ ଉଦ୍ୟମରେ ଗଞ୍ଜାମରେ ବହୁ କଂଗ୍ରେସ କର୍ମୀ ଖଦି ଆନ୍ଦୋଳନରେ ନିଜକୁ ସାମିଲ କଲେ ।

ଭାରତୀୟ ଜାତୀୟ କଂଗ୍ରେସର ଓଡ଼ିଶା ଶାଖା ୧୯୨୧ ମାର୍ଚ୍ଚ ମାସରେ ଗଠିତ ହେଲା । ଏହି ଉଦ୍ଦେଶ୍ୟରେ ମହାତ୍ମା ଗାନ୍ଧୀ ୧୯୨୧ ମାର୍ଚ୍ଚ ୨୩ ତାରିଖରେ କଟକରେ ଥିଲାବେଳେ ନିରଞ୍ଜନ ପଟ୍ଟନାୟକ ମହାତ୍ମାଜୀଙ୍କୁ ଭେଟିଥିଲେ । ତା'ପରେ ତାଙ୍କ ଜୀବନର ଗତିପଥ ବଦଳି ଯାଇଥିଲା । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟୀର ସଭାପତି ହେଲେ ପଣ୍ଡିତ ଗୋପବନ୍ଧୁ ଦାସ ଓ ସଂପାଦକ ଭାଗୀରଥି ମହାପାତ୍ର ହେଲେ । ମହାତ୍ମା ଗାନ୍ଧୀଙ୍କ ଛଅ ଦିନ ଓଡ଼ିଶା ଗସ୍ତ କାଳରେ ସେ ବ୍ରହ୍ମପୁର ଆସିଥିଲେ । ୧୯୨୧ ଜୁନ୍ ମାସରେ

ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟୀ ଗଠିତ ହେଲା । ଏହାର ସଭାପତି ରୂପେ ଜିଲ୍ଲାର ବର୍ଷୀୟାନ ନେତା ଶ୍ରୀବସ୍ତ ପଣ୍ଡା ଓ ସଂପାଦକ ରୂପେ ନିରଞ୍ଜନ ପଟ୍ଟନାୟକ ଦାୟିତ୍ୱ ଗ୍ରହଣ କଲେ ।

ମହାତ୍ମା ଗାନ୍ଧୀ ଖଦୀ କାର୍ଯ୍ୟ ତଦାରଖ ପାଇଁ ୧୯୨୭ ଓ ୧୯୨୯ରେ ଓଡ଼ିଶା ଆସିଥିଲେ । ୧୯୩୦ରେ ନିରଞ୍ଜନ ପଟ୍ଟନାୟକ ହୁମା ଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଏହି ମାର୍ଚ୍ଚ ୧୫ ତାରିଖ ଦିନ କିଶୋରୀମଣି ଦେବୀ (ନିରଞ୍ଜନ ପଟ୍ଟନାୟକଙ୍କ ପତ୍ନୀ), ଦିବାକର ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ର, ନାରାୟଣ ପାତ୍ର, ଜଗନ୍ନାଥ ମିଶ୍ର ତଥା ବିଶ୍ୱନାଥ ପଟ୍ଟନାୟକଙ୍କ ବଡ଼ଭାଇ ତାରିଣୀ ଚରଣ ପଟ୍ଟନାୟକ ଯୋଗ ଦେଇଥିଲେ । କୋରାପୁଟ ଜିଲ୍ଲାରୁ କେବଳ ରାଧାକୃଷ୍ଣ ବିଶ୍ୱାସରାୟ ଯୋଗଦେଇଥିଲେ । ନିରଞ୍ଜନ ପଟ୍ଟନାୟକଙ୍କୁ ଗିରଫ କରି ଭେଲୋର କେନ୍ଦ୍ରୀୟ ଜେଲକୁ ପଠାଇ ଦିଆଗଲା ।

ଏମିତି ଘଡ଼ିସନ୍ଧି ମୁହୂର୍ତ୍ତ ବେଳକୁ ବିଶ୍ୱନାଥ ପଟ୍ଟନାୟକ ଇଚ୍ଛାପୁରରେ ସରଳାଦେବୀଙ୍କ ସ୍ୱାଧୀନତା ସଂଗ୍ରାମର ଭାଷଣ ଶୁଣି ପ୍ରଭାବିତ ହୋଇ ସାରିଥାନ୍ତି । ତାରିଣୀ ପଟ୍ଟନାୟକଙ୍କ ଜେଲଯାତ୍ରା ଓ ପରିବାରରେ ଖଦଡ଼ର ପ୍ରଚଳନ ତାଙ୍କ ପାଇଁ ଦେଶସେବାର ଭିତ୍ତିଭୂମି ଆରମ୍ଭ କରୁଥାଏ ।

## କଂଗ୍ରେସର ଗଠନ ମୂଳକ କାମ :

ମହାତ୍ମା ଗାନ୍ଧୀଙ୍କ ହରିଜନ, ହରିଜନ ସେବକ, ୟଙ୍ଗଇଣ୍ଡିଆ ଆଦି ପତ୍ରିକା ମାଧ୍ୟମରେ କଂଗ୍ରେସର ଗଠନ ମୂଳକ କାମ ସମ୍ବନ୍ଧରେ ଲେଖାମାନ ବାହାରୁ ଥାଏ । ଓଡ଼ିଶାରେ କଂଗ୍ରେସ କମିଟୀ ଗଠନ ହେଲା ପରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ୧୯୨୮ରେ କାଳ ହୋଇଗଲା । ଓଡ଼ିଶା କଂଗ୍ରେସ କମିଟୀକୁ ପୁଣିଥରେ ନୂଆକରି ଗଠନ କରାଗଲା । ଏଥିରେ ନିରଞ୍ଜନ ପଟ୍ଟନାୟକ, ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ଭାଗୀରଥି ମହାପାତ୍ର, ନନ୍ଦ କିଶୋର ଦାସ, ଅଟଳ ବିହାରୀ ଆଚାର୍ଯ୍ୟ, ଗୋଦାବରୀଶ ମିଶ୍ର, ଭୁବନାନନ୍ଦ ଦାସ ଓ ଗୋବିନ୍ଦ ଚନ୍ଦ୍ର ମିଶ୍ର ପ୍ରତିନିଧିତ୍ୱ କଲେ । ଓଡ଼ିଶାରେ କଂଗ୍ରେସର ଗଠନ ମୂଳକ କାମ ସର୍ବ ପ୍ରଥମେ ଗୋପବନ୍ଧୁ ଚୌଧୁରୀଙ୍କ ଅଳକା ଆଶ୍ରମରୁ ଆରମ୍ଭ ହେଲା । ଅଳକା ଆଶ୍ରମ ଜଗତସିଂହପୁର ଠାରେ ୧୯୨୦ରୁ ୧୯୩୩ ମଧ୍ୟରେ ପରିଚାଳିତ ହେଉଥିଲା ।

୧୯୨୧ରେ ଗୋପବନ୍ଧୁ ଚୌଧୁରୀ ଚାକିରି ଛାଡ଼ି ମାର୍ଚ୍ଚ ମାସ ବେଳକୁ ଭାଗୀରଥି ମହାପାତ୍ରଙ୍କ ସହିତ ମିଶି ଜଗତସିଂହପୁର ଠାରେ ଗୋଟିଏ ଜାତୀୟ ବିଦ୍ୟାଳୟ ସ୍ଥାପନ

ପାଇଁ କାମ ଆରମ୍ଭ କଲେ । ତାଙ୍କର ପ୍ରେରଣାର ସ୍ରୋତଥିଲା ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସତ୍ୟବାଦୀ ବନ ବିଦ୍ୟାଳୟ । ଏହି କାର୍ଯ୍ୟରେ ତାଙ୍କୁ ଜଗତସିଂହପୁର ମାଇନର ସ୍କୁଲର ପ୍ରଧାନଶିକ୍ଷକ କିଶୋରୀ ଚରଣ କାନୁନ୍‌ଗୋ, ଜଗତସିଂହପୁର ଗୁରୁଟ୍ରେନିଂ ବିଦ୍ୟାଳୟର ପ୍ରଧାନଶିକ୍ଷକ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ ନିଜ ନିଜର ଚାକିରି ଛାଡ଼ି ସାହାଯ୍ୟ କଲେ । ଏହି ଜାତୀୟ ବିଦ୍ୟାଳୟରେ ଦ୍ୱାରିକାନାଥ ମହାପାତ୍ର, ଗୁଣନିଧି ସାହୁ, କିଶୋରୀ ଚରଣ କାନୁନ୍‌ଗୋ ଶିକ୍ଷକ ଭାବେ ଯୋଗଦେଲେ । କଟକ ସ୍ୱରାଜ୍ୟ ଆଶ୍ରମରୁ ଏଠାରେ ପଢୁଥିବା ୨୦୦ ଜଣ ଛାତ୍ରଙ୍କୁ ତାଲିମ ଦେବା ପାଇଁ ବିଶ୍ୱନାଥ ନନ୍ଦ, ରାମକୃଷ୍ଣ ନନ୍ଦ, ସୁଦର୍ଶନ ପ୍ରହରାଜ, କୃଷ୍ଣଚନ୍ଦ୍ର ପ୍ରଧାନ ତଥା ଖଦୀ କାମରେ ତାଲିମ ଦେବା ପାଇଁ ଫକୀର ମିଶ୍ର ଆସିଲେ । ପ୍ରାୟ ୧୫ ଜଣ ଶିକ୍ଷକ । ବାବାଜିରାମ ଦାସ, ଗୋକୁଳାନନ୍ଦ ମହାନ୍ତି, ନୀଳମଣି ପ୍ରଧାନ, ଉଦୟ ନାଥ ଷଡ଼ଙ୍ଗୀ ମଧ ଯୋଗଦେଲେ । ସମସ୍ତଙ୍କ ପାଇଁ ଜଗତସିଂହପୁରର ଗହଳି ଆମ୍ବତୋଟା ଭିତରେ ଚାରିକୋଣିଆ ବଡ଼ ଘରଟିଏ ତୋଳା ହେଲା । ଝାଟିମାଟି କାନ୍ଥ ଓ ନଡ଼ା ଛପର ଘର ଯେଉଁଠି ୨୦୦ ଛାତ୍ର, ଶିକ୍ଷକ, ସମସ୍ତ ଖଦୀ ସରଞ୍ଜାମ, ଅରଟ, ସୂତା ଓ ରଚନାତ୍ମକ କାମଗୁଡ଼ିକ ପାଇଁ ସ୍ଥାନ କରାହେଲା ।

୧୯୨୧ ମସିହା ମେ ମାସ ୮ ତାରିଖ ଦିନ ଜଗତ୍‌ସିଂହପୁର ଜାତୀୟ ବିଦ୍ୟାଳୟ ଉଦ୍‌ଘାଟିତ ହେଲା । ଯେଉଁ ନୂଆଘର ତିଆରି ହେଲା, ତା'ର ନାଆଁ ଦିଆଗଲା ''ଅଳକା ଆଶ୍ରମ'' । ପରେ ଜଗତ୍‌ସିଂହପୁରର ହରିସିଂହ ଓ ପଞ୍ଚୁସିଂହଙ୍କ ଘରେ ହେଉଥିବା ଜାତୀୟ ବିଦ୍ୟାଳୟ ଅଳକା ଆଶ୍ରମକୁ ଉଠିଗଲା ।

୧୯୨୨ ଜାନୁଆରୀ-ଫେବୃଆରୀ ମାସ ଶ୍ରୀ ପଞ୍ଚମୀ ତିଥିରେ ଅଳକା ଆଶ୍ରମକୁ ପଣ୍ଡିତ ଗୋପବନ୍ଧୁ ଦାସ ଉଦ୍‌ଘାଟନ କରିଥିଲେ । ଏହି ଆଶ୍ରମର ପ୍ରାଣକେନ୍ଦ୍ର ଥିଲେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ପରିବାର । ଏହି ଆଶ୍ରମ ଓଡ଼ିଶା ପାଇଁ ଗୋଟିଏ ଆଦର୍ଶମୟ ଚରନାତ୍ମକ କର୍ମ କେନ୍ଦ୍ରରେ ପରିଣତ ହୋଇ ଅସଂଖ୍ୟ କଂଗ୍ରେସ କର୍ମୀଙ୍କ ପାଇଁ ବାଟ ଦେଖାଇଥିଲା । ପାଠପଢ଼ା, ବଗିଚାକାମ, ସୂତାକଟା, ଲୁଗାବୁଣା, ତୁଳାଭିଣା ଆଦି ସବୁ ହୁଏ ।

ପରବର୍ତ୍ତୀ କାଳରେ ୧୯୩୭ ମସିହାରେ ମହାତ୍ମାଗାନ୍ଧୀ ଓଡ଼ିଶା ଗସ୍ତରେ ଆସିବା ପୂର୍ବରୁ ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଓ ଆଚାର୍ଯ୍ୟ ହରିହର ଦାସଙ୍କ ସହ ପାଣ୍ଠି ସଂଗ୍ରହ ଉଦ୍ଦେଶ୍ୟରେ ଆସିଥିବା କାଳରେ ବିଶ୍ୱନାଥ ପଟ୍ଟନାୟକ ବ୍ରହ୍ମପୁର ରହଣି ଠାରେ ତାଙ୍କ ସହିତ ପ୍ରଥମ ସମ୍ପର୍କରେ ଆସିଥିଲେ ।

ସେ ଶୁଣିଥିଲେ କଂଗ୍ରେସରେ ମିଶିବାକୁ ହେଲେ ସୂତାକାଟିବା, ଅରଟ ଚଳାଇଥିବା ଆଦି ଭଲ ଭାବରେ ଜାଣିବା ଦରକାର । ସେତେବେଳକୁ ବ୍ରହ୍ମପୁରରେ ଚିକିଟିର କୃପାସିନ୍ଧୁ ପଣ୍ଡା ଖଦଡ଼ ଭଣ୍ଡାର ଚଳାଉଥା'ନ୍ତି । ଏହି ଖଦଡ଼ ଭଣ୍ଡାର ଗୋଟିଏ ପେଣ୍ଠ, କଂଗ୍ରେସ କର୍ମୀମାନଙ୍କ ପାଇଁ । ସେଠାରୁ ବିଶ୍ୱନାଥ ପଟ୍ଟନାୟକ ନିଜ ପାଇଁ କିଣିଲେ ଅରଟ ଓ ତୁଳା । ସୂତାକାଟିବା ଆରମ୍ଭ କଲେ । ଏଥିରେ ଗୋବରା ଗାଁର ବାଞ୍ଛାନିଧି ପଟ୍ଟନାୟକ ତାଙ୍କୁ ସାହାଯ୍ୟ କଲେ । ସେ ବର୍ଷ ସେ କଂଗ୍ରେସରେ ମିଶିଲେ, ୪ ଅଣିଆ ସଭ୍ୟ ହେଲେ । ସେତେବେଳକୁ ଆଚାର୍ଯ୍ୟ ହରିହରଙ୍କ ସହ, ଗୋପବାବୁ ଓଡ଼ିଶାରେ ଗଠନ ମୂଳକ କାମ ଚଳାଇବାର ଦାୟିତ୍ୱ ନେଇ ବାହାରିଥାନ୍ତି । ତାଙ୍କ ପାଖରେ କାମ କରିବା ପାଇଁ ଆଗ୍ରହ ହେଲା ବିଶ୍ୱନାଥଙ୍କର ।

୧୯୩୪ ମସିହାରୁ ୧୯୩୬ ମସିହା ଭିତରେ ସେ ସୂତାକଟାରେ ପାରଙ୍ଗମ ହୋଇଗଲେ । ୧୯୦୩ରୁ ଆରମ୍ଭ ହୋଇଥିବା ଉତ୍କଳ ସମ୍ମିଳନୀ ଓଡ଼ିଶାର ଏକୀକରଣ ପାଇଁ ୩୧ ବର୍ଷକାଳ ନିଜର ଚେଷ୍ଟା ଚଳାଇ କିଛି କିଛି ସଫଳ ହେବାକୁ ଆରମ୍ଭ କରୁଥାନ୍ତି । ଏଣେ କଂଗ୍ରେସର କାମ, ସ୍ୱାଧୀନତା ସଂଗ୍ରାମର ପ୍ରସ୍ତୁତି, ତେଣେ ଓଡ଼ିଆଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶର ଗଠନ ପାଇଁ ପ୍ରବଳ ଚେଷ୍ଟା । ଗୋଟିଏ ପଟେ ଭାରତୀୟ ମହାପ୍ରାଣତାର ଆଦର୍ଶ ପଣ୍ଡିତ ଗୋପବନ୍ଧୁ ଦାସ ଓ ଅନ୍ୟପଟେ ଓଡ଼ିଆ ସ୍ୱାଭିମାନର ପ୍ରତୀକ ମଧୁସୂଦନ ଦାସଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱ ଭିତରେ ସଂଘର୍ଷ । ୧୯୨୮ରେ ପଣ୍ଡିତ ଗୋପବନ୍ଧୁ ଓ ୧୯୩୪ରେ କୁଳବୃଦ୍ଧ ମଧୁସୂଦନ କାଳ ହୋଇଗଲେ । ଏହି ଭିତରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ଦେବାକୁ ଘୋଷଣା କରାଗଲା ।

❋ ❋ ❋

# ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା

୧୯୩୬ ମସିହା ମାର୍ଚ୍ଚ ମାସ ୩୧ ତାରିଖ ଯାଏ ଓଡ଼ିଶା ବୋଲି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ନଥିଲା । ଓଡ଼ିଆମାନେ ବଙ୍ଗ, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରେସିଡେନ୍‌ସୀରେ ରହି ପଡ଼ୋଶୀ ଭାଷାଭାଷୀ ଓ ଭିନ୍ନ ସଂସ୍କୃତି ଦ୍ୱାରା ନିର୍ଯ୍ୟାତିତ ହେବା ଯେମିତି ତାଙ୍କର ଭାଗ୍ୟରେ ଥିଲା । ଉତ୍କଳ ସମ୍ମିଳନୀ ମାଧ୍ୟମରେ ମଧୁବାବୁ, ପାରଳା ଗଜପତି କୃଷ୍ଣଚନ୍ଦ୍ର ଦେବ ଓ ବହୁ ନେତୃ ସ୍ଥାନୀୟ ବ୍ୟକ୍ତିଙ୍କ ପ୍ରଗାଢ଼ ଚେଷ୍ଟା ଫଳରେ ଏପ୍ରିଲ ମାସ ଏକ ତାରିଖ ୧୯୩୬ ମସିହା ଦିନ ବ୍ରିଟିଶ ସରକାର ଓଡ଼ିଶାକୁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ବୋଲି ଘୋଷଣା କଲେ । ନଭେମ୍ବର ମାସ ୨୬ ତାରିଖ ୧୯୩୫ ମସିହାରେ ଇଂରେଜ ସରକାରଙ୍କ ଦ୍ୱାରା ବିଧିବଦ୍ଧ ଭାବେ ଓଡ଼ିଶାର ପରିବର୍ତ୍ତିତ ସୀମାର ଚୂଡ଼ାନ୍ତ ମାନଚିତ୍ର ପ୍ରକାଶ ଓ ଘୋଷଣା ହେଲା । ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍‌ସୀରୁ, ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶରୁ ଅଣାଯାଇ ତତ୍ ସହିତ ପୁରୀ, କଟକ, ଓ ବାଲେଶ୍ୱର ଜିଲ୍ଲାକୁ ମିଶାଇ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଭାବେ ସ୍ୱୀକୃତ ହେଲା । ଓଡ଼ିଶାର ବହୁ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ତଥାପି ଆନ୍ଧ୍ର ପ୍ରଦେଶ, ମଧ୍ୟ ପ୍ରଦେଶ, ବିହାର ଓ ପଶ୍ଚିମବଙ୍ଗରେ ରହିଗଲା ଏବଂ ଆଜିଯାଏ ସେହି ଅଞ୍ଚଳଗୁଡ଼ିକ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଭାବେ ବହୁ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଛନ୍ତି । ଭାଷା, ଶିକ୍ଷା, ସଂସ୍କୃତିର ଅବକ୍ଷୟ ଘଟୁଅଛି । ଯାହାହେଉ ୧୯୩୬ରେ ଓଡ଼ିଶା ବୋଲି ଆମର ନିଜର ଆତ୍ମ ପରିଚିତି ପାଇଁ ଏକ ଭାଷା-ଭିତ୍ତିକ ପ୍ରଦେଶ ସୃଷ୍ଟି ହେଲା । ସେତେବେଳକୁ ଓଡ଼ିଶାରେ କଂଗ୍ରେସ କାମ ତୀବ୍ର ବେଗରେ ଆରମ୍ଭ ହେଲା ।

## ଗୋପବନ୍ଧୁ ଚୌଧୁରୀଙ୍କ ବରୀ ଆଶ୍ରମ :

୧୯୩୪ ମସିହା ମେ ମାସ ୬ ତାରିଖ ଦିନ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶାରେ ହରିଜନ ଗସ୍ତ ଆରମ୍ଭ ହେଲା । ଗାନ୍ଧିଜୀ ଝାରସୁଗୁଡ଼ାରେ ଓହ୍ଲାଇଲେ । ଗୋପବନ୍ଧୁ ଚୌଧୁରୀ ଓଡ଼ିଶା ହରିଜନ ସେବକ ସଂଘର ମୁଖ୍ୟ ଭାବରେ ଗାନ୍ଧିଜୀଙ୍କ ସାଙ୍ଗରେ ଥିଲେ । ତାଙ୍କ ସଙ୍ଗେ ଥିଲେ ରମାଦେବୀ, ପୁଅ ମନମୋହନ ଚୌଧୁରୀ ଓ ଝିଅ ଅନ୍ନପୂର୍ଣ୍ଣା । ହଜାର ହଜାର ଜନତା ଗାନ୍ଧିଜୀଙ୍କୁ ଦର୍ଶନ କରିବାକୁ ଆସିଥିଲେ । ଗାନ୍ଧିଜୀ ଥିଲେ ଭାରତର ଆତ୍ମାର ସ୍ୱର । ଦୁଃଖ, ପୀଡ଼ନ, କଷ୍ଟରୁ ମୁକ୍ତି ଦେବାପାଇଁ ଯେମିତି ତାଙ୍କର ଜନ୍ମ । ସେ ସେତେବେଳକୁ

ଭାରତୀୟ ସାଧାରଣ ଜନତାର ଆଶା ବିଶ୍ୱାସର ପ୍ରତୀକ । ଏଣୁ ସ୍ୱତଃ ଲୋକେ ଶ୍ରଦ୍ଧା, ଭକ୍ତି ଓ ସ୍ନେହରେ ଆସିଥିଲେ ତାଙ୍କୁ ଦର୍ଶନ କରିବାକୁ ।

ଝାରସୁଗୁଡ଼ାରୁ ଗାଡ଼ି ବଦଳାଇ ସେ ଆସିଲେ ସମ୍ବଲପୁର । ରହିଲେ ଚନ୍ଦ୍ରଶେଖର ବେହେରାଙ୍କ ଘରେ । ଦୁଇଟି ସଭାରେ ଭାଷଣ ଦେଲେ । ସମ୍ବଲପୁରର ସ୍ତ୍ରୀ ଲୋକମାନେ ହାତବୁଣା ସମ୍ବଲପୁରୀ ଲୁଗା ପିନ୍ଧିଥିବା ଦେଖି ଖୁସି ହେଲେ । ୧୯୩୪ ମସିହା ମେ ମାସ ସାତ ତାରିଖ ଦିନ ଗାନ୍ଧିଜୀ ଗଲେ ଅନୁଗୁଳ । ସେଦିନ ମେରାମଣ୍ଡଳି ରେଳଷ୍ଟେସନରୁ ରେଳରେ ବାହାରି ରାତି ଦଶଟାରେ ପହଞ୍ଚିଲେ ପୁରୀରେ । ସେଠି ବିରାଟ ଜନ ସମାବେଶ । ସମ୍ବର୍ଦ୍ଧନା କହିହେବ ନାହିଁ । ନଅ ତାରିଖରେ ସେ ପଦାଯାତ୍ରାରେ ପୁରୀରୁ କଟକ ବାହାରିଲେ । ମଟରରେ ବସିଲେ ନାହିଁ । ପୁରୀରେ ଥିଲା ବେଳେ ସେ ଶ୍ରୀମନ୍ଦିରକୁ ଗଲେ ନାହିଁ; ଯେହେତୁ ସେଠିକୁ ହରିଜନ ଯିବା ମନାଥିଲା । ତାଙ୍କ ସ୍ତ୍ରୀ କସ୍ତୁରୀ ବାଈ ମନ୍ଦିରକୁ ଯାଇଥିବା ଶୁଣି ସେ ଭାରି ମନ ଦୁଃଖ କଲେ ।

ପଦଯାତ୍ରାରେ ଗାନ୍ଧିଜୀଙ୍କ ସଙ୍ଗରେ ଥିଲେ ଠକ୍‌କର ବାପା, ପଣ୍ଡିତ ନୀଳକଣ୍ଠ ଦାସ, ହରେକୃଷ୍ଣ ମହତାବ ଓ ଅନ୍ୟ ବହୁ କଂଗ୍ରେସ କର୍ମୀ । ଶ୍ରୀମତୀ ମୀରାବେନ୍, ଜୟ ପ୍ରକାଶ ନାରାୟଣଙ୍କ ସ୍ତ୍ରୀ ପ୍ରଭାବତୀ ଦେବୀ, ଯମୁନାଲାଲ ବଜାଜଙ୍କ ଝିଅ ଉମା, ଶ୍ରୀମତୀ ସୁଶୀଳା ବେନ୍, ସମସ୍ତେ ପାଦରେ ଚାଲିଲେ । ଆଉ ସାଙ୍ଗରେ ଚାଲିଲେ ସମାଜ ଖବର କାଗଜର ଦୁଇଜଣ ପ୍ରତିନିଧି । ପଦଯାତ୍ରା ସମୟରେ ଗାନ୍ଧିଜୀ ପୁରୀରୁ ବାହାରି ହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳ, ବୀର ପୁରୁଷୋତ୍ତମପୁର, ପିପିଲି, ଶିଉଳା ଚଳ, ବାଲକାଟି, ସତ୍ୟଭାମା ପୁର, ବାଲିଅନ୍ତା, ତେଲେଙ୍ଗାପେଣ୍ଠ ଓ କଟକରେ ରହିଲେ । ବାଟେ ଘାଟେ ଲୋକ ସମୁଦ୍ର । ଗାଁରେ ଗାଁରେ ହରିଜନ କାମ । ବସ୍ତି ସଫେଇ, ଭେଟି, ସଭା, ପ୍ରାର୍ଥନା, ସମସ୍ତଙ୍କ ସହିତ ମିଶି ଖାଇବା । କର୍ମୀମାନେ ଭାରି ତତ୍‌ପର । କୋଉଠି ଟିକିଏ ଖଇଚା ନାହିଁ । କଟକରେ ପହଞ୍ଚିଲେ । ସମ୍ବର୍ଦ୍ଧନାର ସୀମା ନାହିଁ । କାଠଯୋଡ଼ି ନଈବାଲିରେ ସଭା ହେଲା ।

ସେଠୁ ସେ ଗଲେ ପାଟନା । ସେଠି ନିଖିଳ ଭାରତ କଂଗ୍ରେସ କମିଟୀର ସଭାରେ ଯୋଗଦେଇ ପୁଣି ଫେରିଲେ ଓଡ଼ିଶା ୧୯୩୪ ମସିହା ମେ ମାସ ୨୧ ତାରିଖରେ । ଗାନ୍ଧିଜୀ ବଇରି ଠାରେ ରେଳରୁ ଓହ୍ଲାଇଲେ । ପୁଣି ପଦଯାତ୍ରା । ରହଣି ହେଲା ପଣ୍ଡିତ ଗୋବିନ୍ଦ ମିଶ୍ରଙ୍କ ଚମ୍ପାପୁର ଆଶ୍ରମରେ । ସେଠୁ ସତ୍ୟଭାମାପୁର, ରହଣି ମଧୁବାବୁଙ୍କ ଘରେ ।

ବରୁଆଁ ପୁରୁଷୋତ୍ତମପୁରରେ ଆଚାର୍ଯ୍ୟ ହରିହର ଓ ରମା ଦେବୀ ତାଙ୍କୁ ଭେଟିଲେ । ରମାଦେବୀ ଓ ତାଙ୍କ ନାରୀକର୍ମୀମାନେ ହରିଜନ ବସ୍ତିଗୁଡ଼ିକରେ ବିଶେଷଭାବେ କାମ କରୁଥିବା ଦେଖି ଗାନ୍ଧିଜୀ ଭାରି ପ୍ରଶଂସା କରିଥିଲେ ।

ମହାତ୍ମାଗାନ୍ଧୀ ଓଡ଼ିଶାରେ ହରିଜନ ଗସ୍ତବେଳେ କହିଥିଲେ, ''ମୁଁ ଯେଉଁ ବାଟେ ଗଲି ସେଠି କର୍ମୀମାନେ ଠିକଣା ବାଟରେ କାମକଲେ ତ ପ୍ରତି ପାହୁଣ୍ଡରେ ସୁନା ଫଳନ୍ତା ।'' ସେ ଯେଉଁବାଟେ ଯାଇଥିଲେ ତହିଁରୁ ଗୋଟିଏ ଥିଲା ବରୀ ଅଞ୍ଚଳ । ସବୁବର୍ଷ ନଈବଢ଼ିରେ ଧୋଇ ହେବା ଅଞ୍ଚଳ । ଦୁନିଆଁଠୁ ଅଲଗା । ନଈଘେରା, ପାଟ, ନାଳମୟ ତଥା ବାଟଘାଟ ନଥିବା ଗାଁ ।

ମହାତ୍ମା ଗାନ୍ଧୀ ଗୋପବନ୍ଧୁଙ୍କୁ ଗାଁରେ ରହି ରଚନାତ୍ମକ କାମ କରିବାକୁ ଉପଦେଶ ଦେଲେ । ଗୋପବାବୁ ବରୀକୁ ବାଛିଲେ । ସେଠି ରହି ଲୋକଙ୍କ କାମ କରିବେ । ସେତେବେଳକୁ ସରକାରଙ୍କ କୋପ ଦୃଷ୍ଟିରେ ପଡ଼ି ଅଳକା ଆଶ୍ରମ ଧ୍ୱଂସ ପ୍ରାୟ । ସେ ଆଉ ଫେରିଲେ ନାହିଁ ସେଠାକୁ । ବରୀକୁ ବାଛିଲେ କର୍ମକେନ୍ଦ୍ର କରି । ପୁଣି ନୂଆକରି ସବୁ ଆରମ୍ଭ କରିବାକୁ । ଘର, ଆଶ୍ରମ, ବାଡ଼ି ବଗିଚା । ଗୋପବନ୍ଧୁ ଏକ ବର୍ଷଣ ମୁଖର ଶ୍ରାବଣ ଦିନରେ ଅଗଷ୍ଟ ମାସ ୧୩ ତାରିଖ ୧୯୩୪ ମସିହାରେ କଟକର ପୈତୃକ ଘର, ଛାଡ଼ିଦେଇ ପତ୍ନୀ ରମାଦେବୀ, ଝିଅ ଅନ୍ନପୂର୍ଣ୍ଣା ସହିତ ବରୀ ଚାଲିଲେ । ତାଙ୍କ ସାଙ୍ଗରେ ଗଲେ ସତ୍ୟନାରାୟଣ ସେନଗୁପ୍ତଙ୍କ ଝିଆରୀ ମଙ୍ଗଳାଦେବୀ, ଗୋଦାବରୀ ଦାସ, ଶୋଭାଦେବୀ, ମାଣିକ୍ୟ ଦେବୀ, ସୁଶିଳା ଦେବୀ, ତୁଳସୀ ଦେବୀ । ମାସେ ପରେ ତାଙ୍କ ସହିତ ଯୋଗଦେଲେ ଯୁବକର୍ମୀ ସୁରେନ୍ଦ୍ର ପଟ୍ଟନାୟକ ଓ ବିନୋଦ୍ କାନୁନଗୋ (ପରବର୍ତ୍ତୀ ସମୟରେ ଜ୍ଞାନ ମଣ୍ଡଳର ପ୍ରଣେତା) ।

ଅପନ୍ତରାରେ ନୂଆ ଜୀବନ ବିତାଇବାର ମନ କରି ସବୁ ସୁଖ ଛାଡ଼ି ସେ ଚାଲିଲେ ଏକ ବସ୍ତ୍ରୀ ହୋଇ । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ତଥା ଗୋପ ବାବୁଙ୍କ ମା'ଙ୍କ ଆଖିରେ ଲୁହ ଆସିଗଲା ।

ଡଙ୍ଗାରେ ବରୀ ଗଲେ । ବରୀରେ ରହି ଜାଗା ଖଣ୍ଡିଏ ଖୋଜିଲେ ଘର ତୋଳିବା ପାଇଁ । ଆଶ୍ରମ ହେବ । କୁଆଖିଆ ବଜାର-ବରୁଆଁ-କଳାମାଟିଆ ରାସ୍ତାରେ ୨୩ କି.ମି. ଦୂରରେ ଥିବା ଅଲୋଡ଼ା ଜାଗା ଖଣ୍ଡିଏ ଥିଲା ବାମନ ଚରଣ ଦାସଙ୍କର । ସେହି ଜାଗା ଗୋପବନ୍ଧୁ ବାଛିଲେ, ବାମନ ବାବୁ ତାହା ଆଶ୍ରମକୁ ଦାନ କରିଦେଲେ । ସେଠି ବରୀ

ଆଶ୍ରମର ଶୁଭ ପଡ଼ିଲା ଋଷି ପ୍ରତିମ ଆଚାର୍ଯ୍ୟ ହରିହରଙ୍କ ହାତରେ । କାମ ଆରମ୍ଭ ହେଲା । ଗୋପବନ୍ଧୁ ନିଜେ ମାଟି ହାଣି, କାଦୁଅ ଚକଟିଲେ । ମହତାବଙ୍କ ସ୍ତ୍ରୀ ସୁଭଦ୍ରା ମହତାବ ଶୁଭଖୁଣ୍ଟି ପୋତିଲେ ।

ଝାଟିମାଟିରେ ଘର ତୋଳା ହେଲା । ଗାଁ'ର ଗରିବମାନେ ଯେମିତି ଘରେ ରହନ୍ତି ସେମିତି । ଘର ତିଆରି ପରେ ଗାନ୍ଧିଜୀଙ୍କୁ ପଚାରିଲେ ଗୋପବନ୍ଧୁ ଆଶ୍ରମର ନାମ କ'ଣ ରହିବ ? ଗାନ୍ଧିଜୀ ଉତ୍ତର ଦେଲେ- 'ସେବାଘର' ରଖ । ହେଲେ ଲୋକେ ବରୀଆଶ୍ରମ ବୋଲି କହିଲେ ।

୧୯୩୫ ଏପ୍ରିଲ ୬, ବରୀ ଆଶ୍ରମ କାମ ଆରମ୍ଭ କଲା । ଗୋପବାବୁଙ୍କ ପରିବାର ଓ ଅନ୍ୟମାନେ ବାମନ ଚରଣ ଦାସଙ୍କ ଚୌପାଢ଼ୀରୁ ଆସି ବସାଘରେ ରହିଲେ । ଓଡ଼ିଶାର ଚାରିଆଡୁ କର୍ମୀ ଆସିଲେ । ବହୁ ଝିଅ ଆସିଲେ ତାଲିମ ନେବା ପାଇଁ ଗାଁ ଗହଳିରୁ ।

ବରୀ ଆଶ୍ରମ । ଋଷି ଆଶ୍ରମ । ସୁନ୍ଦର ପରିବେଶ । ସଫା ସୁତୁରା । ଫୁଲ ଫଳରେ ଭରିଗଲା ଆଶ୍ରମର ଖାଲି ଯାଗା । ଚାରିଆଡ଼େ ଗଛଛାଇ । ସବୁଠି ଗୋପବନ୍ଧୁଙ୍କ ପରଶ । ପରିଷ୍କାର, ନିର୍ମଳ, ସୁନ୍ଦର ।

ସାରା ଓଡ଼ିଶାରେ ବରୀର ନାମ ବ୍ୟାପିଗଲା । ବିଶ୍ୱନାଥ ପଟ୍ଟନାୟକ ବରୀରେ ତାଲିମ ନେବା ପାଇଁ ୧୯୩୭ ମସିହା ମେ ମାସରେ ଆବେଦନ କଲେ । କିଛି ଫଳ ହେଲା ନାହିଁ । ମନରେ ଭାରି ଦୁଃଖ । ସେତେବେଳକୁ ଗଞ୍ଜାମ ଜିଲ୍ଲାର ରାମ ମୋହନ ଦାସ ବରୀ ଆଶ୍ରମରେ ଥିବା ଗଞ୍ଜାମ ଜିଲ୍ଲାର ଜଣେ ମାତ୍ର କର୍ମୀ ।

## ଗାନ୍ଧୀ ସେବା ସଂଘ ଓ ଗୋପବାବୁ :

ଓଡ଼ିଶାରେ ୧୯୨୩ରେ 'ଗାନ୍ଧୀ ସେବା ସଂଘ' ଗଠିତ ହେଲା । ଏହି ସଂଘର ମୂଳ ଉଦ୍ଦେଶ୍ୟ ଥିଲା ଏହି ସଂଘର ସଭ୍ୟମାନେ ମହାତ୍ମା ଗାନ୍ଧୀଙ୍କ କଥା ଅନୁସାରେ ତାଙ୍କ ଆଦର୍ଶକୁ ମାନି ଚଳିବେ । ତାଙ୍କ ଭଳି ସମାଜର ଦଳିତ ନିଷ୍ପେଷିତ ଲୋକମାନଙ୍କର ସେବା କରିବେ । ଗାନ୍ଧୀ ସେବା ସଂଘ ଖଦୀର ଉନ୍ନତି, ପ୍ରସାର ପାଇଁ ବିଶେଷ କାମ କରୁଥିଲା । ୧୯୨୮ରେ ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶ ମତେ ଗୋପବାବୁ 'ଓଡ଼ିଶା ଗାନ୍ଧୀ ସେବାସଂଘ'ର ପରିଚାଳନା ଭାର ନେଲେ ଓ ତତ୍ତ୍ୱାବଧାରକ ହେଲେ । ଓଡ଼ିଶାରେ ଖଦୀକାମ କରିବା ପାଇଁ ଜୀବରାମ କଲ୍ୟାଣୀ ଏକଲକ୍ଷ ଟଙ୍କା ଓଡ଼ିଶା ଗାନ୍ଧୀ ସେବା ସଂଘକୁ ଦେଲେ । ସେହି ଟଙ୍କାରେ ଓଡ଼ିଶାର

ବିଭିନ୍ନ ସ୍ଥାନରେ ଗାନ୍ଧୀ ସେବା ସଂଘ ରଚନାତ୍ମକ କାମ କଲେ । ସୂତାକଟା, କପାଚାଷ, ହାତ ତନ୍ତରେ ଖଦଡ଼ ଲୁଗା ବୁଣା, ଲୋକଙ୍କ ଭିତରେ ଖଦଡ଼ ଲୁଗାର ବ୍ୟବହାର ପାଇଁ ପ୍ରଚାର, ପ୍ରସାର ତଥା ବିକ୍ରି ପାଇଁ ବ୍ୟବସ୍ଥା କରାଗଲା । ତାହାଛଡ଼ା ଗ୍ରାମାଞ୍ଚଳର ଉନ୍ନତି ପାଇଁ କେତେକ କାର୍ଯ୍ୟକ୍ରମମାନ ଗ୍ରହଣ କରାଗଲା । ଲୋକଙ୍କ ଭିତରୁ ଅଶିକ୍ଷା ଦୂର କରିବା ପାଇଁ ଚେଷ୍ଟା ହେଲା । ଛୁଆଁ ଛୁଇଁ ଭେଦଭାବକୁ ସବର୍ଣ୍ଣମାନେ ବେଶି ମାନୁଥିବାରୁ ଏହାର ନିବାରଣ ପାଇଁ କର୍ମୀମାନେ ବହୁ ଚେଷ୍ଟା କଲେ ।

ଗାନ୍ଧୀ ସେବାସଂଘ ସ୍ୱାବଲମ୍ବୀ ଅନୁଷ୍ଠାନ ହେଲା ଏବଂ ଭାରତର ବହୁ ପ୍ରଖ୍ୟାତ ଗାନ୍ଧୀବାଦୀ ଏହାର ସଭ୍ୟ ରହିଲେ । ସେମାନଙ୍କ ମଧ୍ୟରେ ଥିଲେ- ସର୍ବଶ୍ରୀ କିଶୋର ଲାଲ ମଶ୍ରୁୱାଲା, ଆଚାର୍ଯ୍ୟ କାକା ସାହେବ କାଲେଲକର, ଦାଦା ଧର୍ମାଧିକାରୀ, ମହାଦେବ ଦେଶାଇ, କୃଷ୍ଣଦାସ ଦାଦୁ, ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଆଚାର୍ଯ୍ୟ ଜେ.ବି. କୃପାଳିନୀ, ଆନ୍ନା ସାହେବ ସହସ୍ରବୁଦ୍ଧେ, କ୍ଷିତୀଶ ଚନ୍ଦ୍ର ଦାସଗୁପ୍ତ, ଆର.ଆର. ଦିବାକର, ଗଙ୍ଗାଧର ରାଓ ଦେଶପାଣ୍ଡେ, ମାମା ସାହେବ ଫାଡ୍‌କେ, ଅପ୍‌ପାସାହେବ ପଟ୍ଟବର୍ଦ୍ଧନ, ଆଚାର୍ଯ୍ୟ ହରିହର ଦାସ, ରମାଦେବୀ, ଗୋପବନ୍ଧୁ ଚୌଧୁରୀ ଓ ଜମୁନାଲାଲ ବଜାଜ୍ ।

## ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ପ୍ରସ୍ତାବ :

୧୯୩୭ରେ କର୍ଣ୍ଣାଟକର ହୁବୁଲି ଠାରେ ଗାନ୍ଧୀ ସେବାସଂଘ ତରଫରୁ ତା'ର ତୃତୀୟ ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହେଲା । ନିମନ୍ତ୍ରିତ ହୋଇ ଓଡ଼ିଶାରୁ ସର୍ବଶ୍ରୀ ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଓ ବିନୋଦ କାନୁନ୍‌ଗୋ ଯୋଗଦେଲେ ।

ସମ୍ମିଳନୀ ସରିବା ପୂର୍ବରୁ ଓଡ଼ିଶାରେ ଗାନ୍ଧୀ ସେବାସଂଘର ଚତୁର୍ଥ ବାର୍ଷିକ ସମ୍ମିଳନୀ କରିବା ପାଇଁ ପଣ୍ଡିତ କୃପାସିନ୍ଧୁ ହୋତା ଗୋପବନ୍ଧୁ ଚୌଧୁରୀଙ୍କୁ ଜଣାଇଲେ । ପ୍ରସ୍ତାବ ଗାନ୍ଧିଜୀଙ୍କୁ ପଚାରି ଆଗତ କରାଗଲା । ଗାନ୍ଧିଜୀ ଚାହୁଁଥିଲେ ଓଡ଼ିଶା ଭଳି ଏକ ଅନଗ୍ରସର ରାଜ୍ୟରେ ଏଭଳି ସମ୍ମିଳନୀ ହେଉ ଯାହାର ପ୍ରଭାବ ଫଳରେ ଲୋକମାନେ ସ୍ୱାବଲମ୍ବୀ ହେବେ, ରୋଜଗାର କରିପାରିବେ, ସାମାଜିକ ଜୀବନରେ କିଛି ପରିବର୍ତ୍ତନ ଆସିବ । ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହେଲା ଯେ ୧୯୩୮ ମସିହା ମାର୍ଚ୍ଚ ୨୫ ରୁ ୩୧, ଏହି

ସାତଦିନ ଓଡ଼ିଶାର ପୁରୀ ଜିଲ୍ଲା ବେରବୋଇ (ଡେଲାଙ୍ଗ) ଠାରେ ସମ୍ମିଳନୀ ହେବ । ପଣ୍ଡିତ କୃପାସିନ୍ଧୁ ହୋତା ଦାୟିତ୍ୱ ମୁଣ୍ଡାଇଲେ । କାରଣ ବେରବୋଇ (ଡେଲାଙ୍ଗ) ରେଳଷ୍ଟେସନ କଡ଼ରେ ତଥା ପୁରୀକୁ ପାଖ । ଏଠାରେ ହୋତା ମହାଶୟଙ୍କର 'ସେବାକୁଟୀର' ଓ ସେବାସଂଘର ଖଦୀ କେନ୍ଦ୍ର ମଧ୍ୟ ଥିଲା । ସୁନାମଣି ଦେବୀ ସମାଜ ସେବିକା ଥିଲେ ।

ହୁବୁଲୀରୁ ବରୀ ଫେରିଲା ପରେ 'ସେବାଘର'ର ସମସ୍ତେ ଆସନ୍ତା ବର୍ଷ ବେରବୋଇ-ଡେଲାଙ୍ଗ ଠାରେ ଗାନ୍ଧୀ ସେବାସଂଘର ସମ୍ମିଳନୀ ବିଷୟ ଜାଣିଲେ । ସମ୍ମିଳନୀର ଆୟୋଜନ ପାଇଁ ବର୍ଷେକ ପୂର୍ବରୁ ଯୋଜନାମାନ କରାଗଲା । ଏହା ଓଡ଼ିଶାର ପ୍ରତିଷ୍ଠାର ବିଷୟ । ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ କୃପାସିନ୍ଧୁ ହୋତା, ବିନୋଦ କାନୁନ୍‌ଗୋ, ରମାଦେବୀ ପ୍ରସ୍ତୁତି ପର୍ବ ଆରମ୍ଭ କଲେ ।

## ଗୋପବାବୁ ଓ ରମାଦେବୀଙ୍କ ବ୍ରହ୍ମପୁର ଆଗମନ :

ଡେଲାଙ୍ଗରେ ଗାନ୍ଧୀ ସେବା ସଂଘର ସମ୍ମିଳନୀ ହେବ । ମହାତ୍ମା ଗାନ୍ଧୀ ଓ ଭାରତର ବହୁ ମନୀଷୀ ଆସିବେ । ଏହି ସମ୍ମିଳନୀର ସଫଳତା ଓଡ଼ିଶା ବାସୀଙ୍କ ଉପରେ ନିର୍ଭର କରେ । ଶାରୀରିକ, ମାନସିକ ତଥା ଆର୍ଥିକ ସହଯୋଗ କାମନା କରି ପାଣ୍ଠି ସଂଗ୍ରହ ପାଇଁ ଆଚାର୍ଯ୍ୟ ହରିହର ଦାସ, ଗୋପବାବୁ ଓ ରମାଦେବୀ ୧୯୩୭ ଜୁଲାଇ- ଅଗଷ୍ଟ ମାସରେ ବ୍ରହ୍ମପୁରରେ ପହଞ୍ଚିଲେ । ବ୍ରହ୍ମପୁରର ନିରଞ୍ଜନ ପଟ୍ଟନାୟକ, ଦିବାକର ପଟ୍ଟନାୟକ, କୃପାସିନ୍ଧୁ ପଣ୍ଡା ଆଦି ବହୁ କଂଗ୍ରେସ କର୍ମୀଙ୍କ ଗହଣରେ ଗୋପବାବୁ ଓ ରମାଦେବୀ ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳ ଗସ୍ତକଲେ । ପହଞ୍ଚିଲେ ଦିଗପହଣ୍ଡିରେ । ଏକଥା ଶୁଣି ବିଶ୍ୱନାଥ ପଟ୍ଟନାୟକ ଗୋପବାବୁଙ୍କୁ ଭେଟିଲେ । ସ୍ୱେଚ୍ଛାସେବକ ହେବାର ଇଚ୍ଛା ଜଣାଇଲେ । ବିଶ୍ୱନାଥ ପଟ୍ଟନାୟକ ୧୯୩୭ରେ ବରୀ ଆଶ୍ରମରେ ତାଲିମ ପାଇବା କଥା ଗୋପବାବୁ ମନେରଖିଥିଲେ । ସେ ସ୍ୱୀକୃତି ଦେଲେ । ୨୧ ବର୍ଷ ବୟସର ବିଶ୍ୱନାଥଙ୍କ ଅସରନ୍ତି ସାଧନା ଆରମ୍ଭ ହେଲା ଏହିଠାରୁ । ସେମିତି ଖଦଡ଼ ଲୁଗା ଖଣ୍ଡେ ପିନ୍ଧି, କାନ୍ଧରେ ଝୁଲାମଣି ଝୁଲାଇ ସେ ହୋଇଗଲେ ଆଚାର୍ଯ୍ୟଙ୍କ ସହ ପଦଯାତ୍ରୀ, ଗୋପବାବୁ ହୋଇଗଲେ ତାଙ୍କ ପରମ ପ୍ରେରଣାର ସ୍ରୋତ, ମାତାର ମମତା ଢାଳିଦେଲେ ରମାଦେବୀ ତାଙ୍କ ଉପରେ । ସେମାନଙ୍କ ସହ ବିଶ୍ୱନାଥ ଗସ୍ତକଲେ ଗାଁରୁ ଗାଁକୁ । ଗୋପବାବୁ ତାଙ୍କୁ କହିଲେ, ''ଡେଲାଙ୍ଗ ଆସ, ବହୁତ ଦେଖିବାକୁ ଅଛି, କରିବାକୁ ଅଛି । ତୁମ ଭଳି ଯୁବକ ଆମର ଲୋଡ଼ା ।''

ଗୋପବାବୁ ସେଇ ମୁହୂର୍ତ୍ତରୁ ଯେମିତି ପାଲଟି ଗଲେ ବିଶ୍ୱନାଥଙ୍କ ମାର୍ଗଦର୍ଶକ । ଦିଗହରା ଜାହାଜ ପାଇଁ ଯେମିତି ବତୀଖୁଣ୍ଟ । ଡେଲାଙ୍ଗ ସମ୍ମିଳନୀ ଆଉ ରହିଲା ୭ ମାସ, ଯା ପୂର୍ବରୁ ତାଙ୍କୁ ଅନେକ କାର୍ଯ୍ୟ କରିବାର ଥିଲା । ନିଜକୁ ଆଶ୍ରମ ଜୀବନର ଅନୁଯାୟୀ କରିବା ପାଇଁ ସେ ଆରମ୍ଭ କଲେ ସରଳ ଜୀବନ ଯାପନ, ଆଡ଼ମ୍ବର ନଥିଲା କେଉଁଥିରେ । ଗାନ୍ଧୀଙ୍କ ପ୍ରଦର୍ଶିତ ଏକାଦଶ ବ୍ରତ ହୋଇଗଲା ତାଙ୍କ ଦୈନନ୍ଦିନ ଅଭ୍ୟାସ ଜୀବନର ଧାରା । ଦୈନିକ ସୂତାକାଟିବା, ଲୋକଙ୍କ ସହିତ ମିଶିବା, ଯେତେଦୂର ସମ୍ଭବ ସାହାଯ୍ୟ କରିବା, ସମସ୍ତଙ୍କ ଦୁଃଖ ସୁଖରେ ଠିଆ ହେବା ଏବଂ ସମାଜର ସବୁଠାରୁ ତଳେ ପଡ଼ିଥିବା ଲୋକଟି ପାଇଁ ସମ୍ବେଦନଶୀଳ ମନଟିଏ ତିଆରି କରିବାର ଦୀକ୍ଷା ଯେମିତି ତାଙ୍କ ରକ୍ତରେ ପଶିଗଲା । ମାନସିକ ସ୍ତରରେ ତାଙ୍କର ଏହି ପରିବର୍ତ୍ତନ ଯେ ନିଃସନ୍ଦେହରେ ତାଙ୍କ ଭିତରେ ଲୁଚି ରହିଥିବା ଆଉ ଗୋଟିଏ ମଣିଷକୁ ଉପରକୁ ଉଠାଉଥିଲା, ୧୯୩୭ ମସିହା ବେଳକୁ ତାହା ସେତେ ସ୍ପଷ୍ଟ ହୋଇନଥିଲା ।

❋ ❋ ❋

- ଚାରି -

# ଗାନ୍ଧୀ ସେବା ସଂଘର ଡେଲାଙ୍ଗ ସମ୍ମିଳନୀ ପ୍ରସ୍ତୁତି

୧୯୩୮ ମସିହା ମାର୍ଚ୍ଚ ମାସ ୨୫ ତାରିଖରୁ ୩୧ ତାରିଖ ଯାଏ ଡେଲାଙ୍ଗ ଠାରେ ଗାନ୍ଧୀ ସେବାସଂଘର ୪ର୍ଥ ବାର୍ଷିକ ସମ୍ମିଳନୀ ହେବା ପାଇଁ ପ୍ରସ୍ତୁତି ଆରମ୍ଭ ହେଲା ।

ଗାନ୍ଧିଜୀଙ୍କ ମତାମତକୁ ଆଖି ଆଗରେ ରଖି ସ୍ଥାନୀୟ ଚେଷ୍ଟାରେ ଯେମିତି ସମ୍ମିଳନୀର ସମସ୍ତ ଆନୁଷଙ୍ଗିକ ଖର୍ଚ୍ଚ ତୁଲେଇହେବ ସେଥିପାଇଁ ଗାନ୍ଧୀ ସେବାସଂଘର କର୍ମୀମାନେ ଚେଷ୍ଟା ଆରମ୍ଭ କଲେ ।

ବର୍ଷେ ଆଗରୁ ସୂତ୍ରଯଜ୍ଞ ପାଇଁ 'ସେବାଘର' ଝିଅମାନେ ବଳଣା ତିଆରି ଆରମ୍ଭ କଲେ । ବେରବୋଇର ଦଶ ମାଇଲ ଅଞ୍ଚଳ ଭିତରେ ସମ୍ମିଳନୀ ବେଳକୁ କେତେ ଖିର ମିଳିପାରିବ ତା'ର ଗୋଟାଏ ଆନୁମାନିକ ହିସାବ କରିବା ପାଇଁ ସେବାଘର (ବରୀ ଆଶ୍ରମ)ରୁ ଶ୍ରୀ ବିଶ୍ୱନାଥ ପରିଡ଼ାଙ୍କୁ ଦାୟିତ୍ୱ ଦିଆଗଲା । ଅନ୍ୟୂନ ବାହାରୁ ଆସିବାକୁ ଥିବା ୫୦୦ରୁ ୮୦୦ ଅତିଥିମାନଙ୍କ ପାଇଁ ଖିର ଲୋଡ଼ା ହେବ । ଘିଅ ସଂଗ୍ରହ ପାଇଁ ବ୍ୟବସ୍ଥା କରାଗଲା ।

ବୈଦ୍ୟନାଥ ଦାସ କଲିକତା ଯାଇ ଖଦୀ ସମ୍ବନ୍ଧରେ ତାଲିମ ନେଇ ଏହା ଶିଖାଇବା ପାଇଁ ବେରବୋଇ ଗଲେ । ସୁରେନ୍ଦ୍ର ପଟ୍ଟନାୟକ, ଗୋଦାବରୀ ଦେବୀ ଆଗତୁରା କାମ ଦେଖିବାକୁ ପହଞ୍ଚିଲେ । ସ୍ତ୍ରୀ ଲୋକମାନଙ୍କୁ ଓ ଗାଁ ଝିଅମାନଙ୍କୁ ସ୍ୱେଚ୍ଛାସେବିକା କାମ ତୁଲାଇବା ପାଇଁ ତାଲିମ ଦେବା କାମ ଗୋଦାବରୀ ଦେବୀ କଲେ ।

ଶ୍ରୀ ସୁରେନ୍ଦ୍ର ପଟ୍ଟନାୟକ ଖାଦ୍ୟ ଶସ୍ୟ ସଂଗ୍ରହ ଓ ସମ୍ମିଳନୀ ବେଳକୁ କିପରି ଯଥେଷ୍ଟ ପନିପରିବା ମିଳିବ ସେଥିପାଇଁ କୃଷକମାନଙ୍କ ସହ ସଂପର୍କ ରଖିଲେ । ଖରାଟିଆ ପନିପରିବା ଚାଷ କରିବା ପାଇଁ ପ୍ରବର୍ତ୍ତାଇଲେ ।

ଶ୍ରୀ ସତ୍ୟବାଦୀ ନନ୍ଦ ବିଭିନ୍ନ ଅଞ୍ଚଳରେ ବୁଲି ଖଦୀ ଗ୍ରାମୋଦ୍ୟୋଗ ପ୍ରଦର୍ଶନୀ ପାଇଁ ନାନା ପ୍ରକାର ସାମଗ୍ରୀ ସଂଗ୍ରହରେ ଲାଗିପଡ଼ିଲେ । ଏହି ପ୍ରଦର୍ଶନୀରେ ସେସବୁ ତିଆରି କରି ଯେଉଁମାନେ ପ୍ରଦର୍ଶନ କରି ପାରିବେ ସେମିତି ଦକ୍ଷ ଲୋକଙ୍କୁ ଠିକ୍ କରିବା ପାଇଁ ସେ ଓଡ଼ିଶା ସାରା ଯାତ୍ରାକଲେ । ସର୍ବଶ୍ରୀ ଉପେନ୍ଦ୍ର କିଶୋର ଦାସ, ମନ ମୋହନ ଚୌଧୁରୀ, ନୀପେନ୍ଦ୍ର ନାରାୟଣ ସେନଗୁପ୍ତ ଖଦୀ ଗ୍ରାମୋଦ୍ୟୋଗ ପ୍ରଦର୍ଶନୀ ଓ ସାଜସଜ୍ଜାର ଦାୟିତ୍ୱ ନେଲେ ।

ବିଭିନ୍ନ ଖାଦ୍ୟ ପ୍ରସ୍ତୁତ ପାଇଁ ରମାଦେବୀ ଯେ ଅଞ୍ଚଳର ଚଞ୍ଚଳ, ଦକ୍ଷ, ମହିଳାଙ୍କ ସଙ୍ଗେ ସମ୍ପର୍କ ରଖିଲେ ।

ପଣ୍ଡିତ କୃପାସିନ୍ଧୁ ହୋତା ମହାଶୟ ପ୍ରାୟ ୫୦୦ ଲୋକ ରହିବା ପାଇଁ ଅସ୍ଥାୟୀ ଘର ତିଆରି କଲେ । ନଡ଼ିଆ, ପଇଡ଼ କିପରି ସୁବିଧାରେ ମିଳିବ ସେଥିପାଇଁ ଚେଷ୍ଟା କଲେ । ସମ୍ମିଳନୀ ଆରମ୍ଭ ହେବାର ସପ୍ତାହେ ପୂର୍ବରୁ ବହୁ ସଂଖ୍ୟକ ପୁରୁଷ ଓ ମହିଳା ସ୍ୱେଚ୍ଛାସେବକ-ସେବିକା ସାରା ଓଡ଼ିଶାରୁ ଆସି ଡେଲାଙ୍ଗରେ ପହଞ୍ଚିଲେ ।

ଶ୍ରୀ ଗୋକୁଳାନନ୍ଦ ମହାନ୍ତି ହିସାବ ଦାୟିତ୍ୱରେ ଓ ଶ୍ରୀ ନିତ୍ୟାନନ୍ଦ କାନୁନଗୋ (ପରେ ମନ୍ତ୍ରୀ ଓ ରାଜ୍ୟପାଳ) ସ୍ୱଫେଇ ଦାୟିତ୍ୱରେ ରହିଲେ ।

ଡେଲାଙ୍ଗ ସମ୍ମିଳନୀ କଂଗ୍ରେସର ରଚନାତ୍ମକ କାର୍ଯ୍ୟର ଏକ ସଫଳ ଚିତ୍ର ପ୍ରସ୍ତୁତ କଲା । ସାମୂହିକ ସହଯୋଗରେ ଯେ ସବୁ ସମ୍ଭବ, ଏହା ଏହି ସମ୍ମିଳନୀରୁ ଜଣାଗଲା ।

## ବିଶ୍ୱନାଥଙ୍କ ଡେଲାଙ୍ଗ ଯାତ୍ରା :

କୁମରଡ଼ା ଗାଁ'ରୁ ଦେଶସେବା ବ୍ରତ ନେଇ ୧୯୩୮ ମସିହା ମାର୍ଚ୍ଚ ମାସ ଦ୍ୱିତୀୟ ସପ୍ତାହରେ ନିଜ ଝୁଲାମୁଣିରେ ଦି'ଖଣ୍ଡ ପାଣି ଗାମୁଛା, ଖଣ୍ଡେ ଖଦଡ଼ ଲୁଗା, ଘଟଣା ଟିପି ରଖିବା ପାଇଁ ଖାତାଟିଏ, ବିଡ଼ାଏ ଦାନ୍ତକାଠି, ଶୁଆବସା କରିବା ପାଇଁ ଖଣ୍ଡେ ସତରଞ୍ଜି ବାନ୍ଧି ବିଶ୍ୱନାଥ ବାହାରିଲେ କେଶପୁର । ରେଳଷ୍ଟେସନରେ ପହଞ୍ଚି ପୁରୀ ଗାଡ଼ିରେ ବସି ଗଲେ ଖୋର୍ଦ୍ଧା । ବାଟରେ ଚିଲିକାର ଦୃଶ୍ୟ, ଚଢ଼େଇ ଉଡୁଥିବାର ଦୃଶ୍ୟ, ସୁନ୍ଦର ପ୍ରକୃତିର ପରିବେଶ ତାଙ୍କ ଆଖିରେ ପଡୁଥିଲେ ମଧ ସେ ମନେ ମନେ ଭାବୁଥିଲେ ଡେଲାଙ୍ଗର କଥା । ସେଠିକି ଯାଇ ଗାନ୍ଧୀଙ୍କୁ ଦେଖିବେ । ଭାବନାର ଥଳକୂଳ ନାହିଁ । ଡେଲାଙ୍ଗରେ ପହଞ୍ଚିଲା ବେଳକୁ ଦିନ ଏଗାରଟା । ରେଳ ଷ୍ଟେସନ ତ ନୁହେଁ ଯେମିତି ମେଳା, ଯାତ୍ରା ବଜାର । କେମିତି ଗୋଟିଏ ବିସ୍ମୟ ଓ ଆଚ୍ଛନ୍ନ ଭାବ ନେଇ ବିଶ୍ୱନାଥ ରେଳଡ଼ବାରୁ ଷ୍ଟେସନରେ ପାଦଦେଲେ । ଷ୍ଟେସନ ପାଖରେ ଅଭ୍ୟର୍ଥନା ସମିତିର ସ୍ୱେଚ୍ଛାସେବକମାନେ ତାଙ୍କୁ ବତେଇଦେଲେ ହୋତା ମହାଶୟଙ୍କ ସେବାକୁଟୀରର ରାସ୍ତା, ଯେଉଁ ପରିସରରେ ଗଢ଼ି ଉଠିଛି ଡେଲାଙ୍ଗ ସମ୍ମିଳନୀର ଜାଗା, ଘର, ପ୍ରଦର୍ଶନୀ ଗୃହ । ତାଙ୍କ ଜୀବନରେ ଏହି ଦିନର ମହତ୍ୱ ସବୁଠାରୁ ଅନନ୍ୟ, ଭିନ୍ନେ ଥିଲା ।

ତାଙ୍କ ସମ୍ବନ୍ଧରେ ଗୋପବନ୍ଧୁ ଚୌଧୁରୀଙ୍କ ସେବାଘର (ବରୀ ଆଶ୍ରମ)ରେ ତାଲିମ ନେଇଥିବା କଂଗ୍ରେସ କର୍ମୀ ଓ ସତ୍ୟାଗ୍ରହୀ ରାମ ମୋହନ ଦାସ ନିଜ ସଂସ୍କରଣରେ ଲେଖିଛନ୍ତି (୧୯୮୯ରେ ଲେଖା) :

୧୯୩୮ ମସିହା ମାର୍ଚ୍ଚ ମାସରେ ବରୀରୁ ତାଲିମ ସମାପ୍ତ କରି ଆମେ ଦଳେ ଡେଲାଙ୍ଗ ଠାରେ ହେଉଥିବା ଗାନ୍ଧୀ ସେବା ସଂଘ ସମ୍ମିଳନୀରେ ଯୋଗଦେବା ପାଇଁ ପହଞ୍ଚିଲୁ । ଆମେ ହରିଦାସପୁର ଷ୍ଟେସନରୁ ଡେଲାଙ୍ଗ ଯାଏ ଟ୍ରେନରେ ଆସୁଥିବା ସମୟରେ କଟକ ଠାରୁ ୰ପୂଜ୍ୟ ଗୋପବାବୁ ଆମ ସହ ମିଶି ଆସିଲେ । ଉକ୍ତ ସମ୍ମିଳନୀରେ ୰ମହାତ୍ମା ଗାନ୍ଧୀ, ୰କିଶୋରଲାଲ ମଶ୍ରୁୱାଲା, ଆଚାର୍ଯ୍ୟ କୃପାଳିନି, ମୌଲାନା ଆଜାଦ, ୰ପ୍ରଫୁଲ୍ଲ ଘୋଷ, ୰ଧୋତ୍ରେଜୀ, ସର୍ଦ୍ଦାର ପଟେଲ ପ୍ରଭୃତି ବହୁ 'ଗାନ୍ଧୀ ବିଚାରରେ ଅନୁପ୍ରାଣିତ' ନେତା ଯୋଗ ଦେଇଥିଲେ । ପ୍ରକୃତରେ ଉକ୍ତ ସମ୍ମିଳନୀଟି ଥିଲା ଓଡ଼ିଶାର ସର୍ବ ପ୍ରଥମ ସର୍ବଭାରତୀୟ ସମ୍ମିଳନୀ । କେତେକ ଉକ୍ତ ସମ୍ମିଳନୀକୁ ମିନି କଂଗ୍ରେସ ବୋଲି କହୁଥାନ୍ତି । ନିଜେ ଗୋପବନ୍ଧୁ, ରମାଦେବୀ ସମ୍ମିଳନୀର ସବୁ ଦାୟିତ୍ୱ ନେଉଥାନ୍ତି । ୰ରମାଦେବୀ ପୁରା ରୋଷେଇବାସ ଦାୟିତ୍ୱରେ ଥିଲେ । ବହୁଲୋକ ସମାଗମ ହୋଇଥିଲେ । ବିରାଟ ପ୍ରଦର୍ଶନୀ ଓ ପ୍ରତିଦିନ ବିରାଟ ସାଧାରଣ ସଭାମାନଙ୍କରେ ନେତାମାନେ ଭାଷଣ ଦେଉଥାନ୍ତି । ଓଡ଼ିଶାର ଖୁବ୍ ବଡ଼ଘରର ଝିଅ ବୋହୂମାନେ ଉକ୍ତ ସମ୍ମିଳନୀରେ ସ୍ୱେଚ୍ଛାସେବିକା କାମ କରୁଥିଲେ ।

ସେହି ସମ୍ମିଳନୀ ଶେଷ ହେବା ଉପରେ । ଦିନେ ନାଳୁଆ ଗଣେଶ (ଦୁଇଜଣ ଗଣେଶ ଥିଲେ, ଜଣେ ନାଳୁଆ ଓ ଅନ୍ୟ ଜଣକ ମହୁ ଗଣେଶ) ମତେ ଜଣେ ନବାଗତ ଯୁବକଙ୍କୁ ଦେଖାଇ କହିଲେ, 'ରାମଭାଇ ଦେଖିଲଣି, ଏ ଟୋକାଟା ଆସିଛି, ବରୀରେ ଚାଟୁବାବୁଙ୍କ ଠାରୁ ତାଲିମ ପାଇବା ପାଇଁ, କ'ଣ ପାରିବ ?' ମୁଁ ଉକ୍ତ ଯୁବକକୁ ତାଙ୍କର ପୂରା ପରିଚୟ ପଚାରି ବୁଝିଲି । ସେ ଉତ୍ତରରେ କହିଥିଲେ ତାଙ୍କ ଗ୍ରାମ କୁମରଡ଼ା (ଗଞ୍ଜାମ ଜିଲ୍ଲା) । ସେ ତାରେଣୀ ଚରଣ ପଟ୍ଟନାୟକଙ୍କ ଭାଇ ଓ ଆନନ୍ଦ ମୋହନ ପଟ୍ଟନାୟକଙ୍କ ସମ୍ପର୍କୀୟ । ସେ ହରିହର ବାବୁ, ଦିବାକର ବାବୁ, ବାଞ୍ଛାନିଧି ବାବୁ, ନିରଞ୍ଜନ ବାବୁ ପ୍ରଭୃତି ସେ ସମୟର ଗଞ୍ଜାମ ଜିଲ୍ଲାର ନେତୃସ୍ଥାନୀୟ ଲୋକଙ୍କୁ ଭଲଭାବେ ଜାଣନ୍ତି । ତାଙ୍କ ବଡ଼ଭାଇ ତାରେଣୀ ଚରଣ ପଟ୍ଟନାୟକ ଓ ତାଙ୍କର ସମ୍ପର୍କୀୟ ୰ଆନନ୍ଦ ମୋହନ ପଟ୍ଟନାୟକ ୧୯୩୦ ଲବଣ ସତ୍ୟାଗ୍ରହରେ କାରାବରଣ କରିଥିଲେ ଓ ବହୁ ନିର୍ଯ୍ୟାତନା ସହିଥିଲେ । ସେ ଆମ ଗଞ୍ଜାମ ଜିଲ୍ଲାର ବୋଲି ଯେତେବେଳେ ଜାଣିଲି ମୋ ଛାତି କୁଣ୍ଢେ ମୋଟ ହୋଇଗଲା । ୧୯୩୬ ମସିହା ଯାଏ ସମଗ୍ର ଗଞ୍ଜାମ ଜିଲ୍ଲା ତତ୍‌କାଳୀନ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା । ସ୍ୱତନ୍ତ୍ର

ଓଡ଼ିଶା ପ୍ରଦେଶ ହୋଇ ମୋଟେ ୨ଟି ବର୍ଷ ହୋଇଛି । ଆମକୁ ସେତେବେଳେ ଉତ୍ତର ଓଡ଼ିଶାର କେହି କେହି ଦକ୍ଷିଣୀ ତେଲେଙ୍ଗା ବୋଲି ଥଟ୍ଟା କରୁଥାନ୍ତି । ସେ ସମୟରେ ସମଗ୍ର ଓଡ଼ିଶାର ଏକମାତ୍ର କର୍ମୀ ତାଲିମ କେନ୍ଦ୍ରରେ ପ୍ରଥମ ଦଳରେ ଗଞ୍ଜାମ ଜିଲ୍ଲାର କେହି ଶିକ୍ଷାର୍ଥୀ ନଥିଲେ । ଦ୍ୱିତୀୟ ଦଳରେ ମୁଁ ଏକମାତ୍ର । ଯା ହେଉ ତୃତୀୟ ଦଳରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଲକ୍ଷ୍ମଣ ସାହୁ ପ୍ରଭୃତି ଯୋଗଦେଇଥିଲେ । ଏହା ମୋ ପକ୍ଷେ କମ୍ ଗର୍ବର ବିଷୟ ନଥିଲା ।''

ବିଶ୍ୱନାଥ ପଟ୍ଟନାୟକ ଡେଲାଙ୍ଗରେ ସ୍ୱେଚ୍ଛାସେବକ ଭାବେ ପହଞ୍ଚିଲେ । ଯୁବକ ବୟସ । ସେଠି ସେ ଦେଖିଲେ ଭାରତର ବହୁ ବିଶିଷ୍ଟ ଗାନ୍ଧୀବାଦୀ ନେତାଙ୍କୁ । ପ୍ରଦର୍ଶନୀର ସ୍ଥାନ ଡେଲାଙ୍ଗ ରେଳଷ୍ଟେସନର ପଶ୍ଚିମ ପଟେ ଥାଏ । ପ୍ରଦର୍ଶନୀର ସାଜସଜ୍ଜା ଓ ବହୁ ମଣ୍ଡପର ସାଜସଜ୍ଜା ମନମୋହନ ଚୌଧୁରୀ ଓ ନୀପେନ୍ଦ୍ରଙ୍କ ଦ୍ୱାରା କରାଯାଇଥିଲା । ଏହା ଏଡ଼େ ସୁନ୍ଦର ହୋଇଥିଲା ଯେ ସେ ବିସ୍ମିତ ହୋଇଯାଇଥିଲେ । ତାଙ୍କୁ ଗୋପବନ୍ଧୁ ଡେଲାଙ୍ଗ ସମ୍ମିଳନୀରେ ମହାତ୍ମାଗାନ୍ଧୀ ରହୁଥିବା କୁଡ଼ିଆ ଆଗରେ ଜଗିବା ଭାରଦେଲେ । ବିଶ୍ୱନାଥ ପଟ୍ଟନାୟକଙ୍କ ପାଇଁ ଏ ସୁଯୋଗ କମ ମହତ୍ୱପୂର୍ଣ୍ଣ ନଥିଲା ।

୧୯୩୮ ମସିହା ମାର୍ଚ୍ଚ ମାସ ୨୫ ତାରିଖରୁ ୩୧ ତାରିଖ ଯାଏ ଗାନ୍ଧିଜୀ, ପତ୍ନୀ କସ୍ତୁରବା, ପୁତ୍ର ମଣିଲାଲ, ଡାକ୍ତର ସୁଶୀଳା ନାୟାର, ନାତି ଅରୁଣ ସହ ବେରବୋଇ ଠାରେ ରହିଥିଲେ । ସଞ୍ଜେ ସକାଳେ ବିଶ୍ୱନାଥ, ଗାନ୍ଧିଜୀଙ୍କ ନିତିଦିନିଆ କାମ, ଆଚରଣ, କଥାବାର୍ତ୍ତା, ଭାଷଣ, ଭାବଧାରା ସଂପର୍କରେ ଆସିଲେ । ସେ ଖାଲି ଦେଖୁଥିଲେ ଡେଲାଙ୍ଗ ସମ୍ମିଳନୀର କାମ । ଭାରତରୁ ଆସିଥିବା ଗାନ୍ଧୀ ସେବାସଂଘର ସଭାପତି କିଶୋରଲାଲ ମଶ୍ରୁୱାଲା, ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଡଃ ରାଜେନ୍ଦ୍ର ପ୍ରସାଦ, ଗଙ୍ଗାଧର ରାଓ ଦେଶପାଣ୍ଡେ, ଆବୁଲ କାଲାମ ଆଜାଦ, ଗୋବିନ୍ଦ ବଲ୍ଲଭ ପନ୍ଥ, ପ୍ୟାରେଲାଲ ଓ ନାମ-ପ୍ରସିଦ୍ଧ ବହୁ ଜ୍ଞାନୀ, ପଣ୍ଡିତଙ୍କ ସଂପର୍କରେ ଆସି ବିଶ୍ୱନାଥ ଗାନ୍ଧିଜୀଙ୍କ ରଚନାତ୍ମକ କର୍ମୀ ହେବାର ମୌଳିକ ଉଦ୍ଦେଶ୍ୟଟିକୁ ବୁଝିବା ପାଇଁ ଚେଷ୍ଟା କଲେ । ମାର୍ଚ୍ଚ ୩୧ରେ ଡେଲାଙ୍ଗ ସମ୍ମିଳନୀ ଶେଷ ହେଲା ଇତିହାସ ତିଆରି କରି ।

## ଗାନ୍ଧୀ-ଦର୍ଶନ ଓ ଗାନ୍ଧୀଙ୍କ କର୍ମ ଏକ ଅନନ୍ୟ ପ୍ରେରଣା :

ଡେଲାଙ୍ଗରେ ବଡ଼ିଭୋରରୁ ରାତିଯାଏ କାମ । ସଫେଇ, ପ୍ରାର୍ଥନା, ସାଧାରଣ ସଭା । ଲୋକଙ୍କ ଭିଡ଼ କହିବା ନୁହେଁ ।

ବେରବୋଇ ଷ୍ଟାର ପଡ଼ିଆ ପାଖ ସାନ ପଦର ଜମିର ହିଡ଼କୁ ସମତୁଲ କରି ତିଆରି ହୋଇଥିଲା ଓଡ଼ିଶାର ହସ୍ତଶିଳ୍ପ ଓ କୁଟୀର ଶିଳ୍ପର ପ୍ରଦର୍ଶନୀ । ଏହାକୁ ମହାତ୍ମା ଗାନ୍ଧୀ ଉଦ୍‌ଘାଟନ କରିଥିଲେ ୨୫-୩-୧୯୩୮ ଦିନ । ଡେଲାଙ୍ଗ ସମ୍ମିଳନୀକୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଉଦ୍‌ଘାଟନ କରି ତ୍ରିରଙ୍ଗ ପତାକା ଉତ୍ତୋଳନ କରି ଭାଷଣ ଦେଇ ସାରିବା ପରେ ।

ଗାନ୍ଧିଜୀ ଏହି ପ୍ରଦର୍ଶନୀକୁ ଉଦ୍‌ଘାଟନ କରି କହିଥିଲେ, "ଓଡ଼ିଶାର ନିଜସ୍ୱ ଆତ୍ମ ବିଶ୍ୱାସ ଓ ଆଶାର ଯଥାର୍ଥତାର ପ୍ରତ୍ୟକ୍ଷ ପ୍ରମାଣର ଏହା ପ୍ରତୀକ" । ଏହି ପ୍ରଦର୍ଶନୀରେ ଦେଖଣାହାରୀଙ୍କ ପାଇଁ ୨ ପଇସା ପ୍ରବେଶିକା ଫିସ୍ ରଖାଯାଇଥିଲା । ୭୫,୦୦୦ ଲୋକ ପ୍ରଦର୍ଶନୀ ଦେଖିଥିଲେ । ୧,୬୦,୦୦୦ ବର୍ଗଫୁଟ ଅଞ୍ଚଳରେ ଖଦୀ ଗ୍ରାମୋଦ୍ୟୋଗ, କୃଷି, ଶିକ୍ଷା ଓ ସ୍ୱାସ୍ଥ୍ୟ, କଳା ବିଭାଗ ଓ ହସ୍ତଶିଳ୍ପ ସମ୍ବନ୍ଧୀୟ ପ୍ରଦର୍ଶନୀ କରାଯାଇଥିଲା । ପ୍ରଦର୍ଶନୀ ଭିତରକୁ ଯିବା ପାଇଁ ଯେଉଁ ଦ୍ୱାର କରାଯାଇଥିଲା ତାହାର ନାମ ଦିଆଯାଇଥିଲା 'କର୍ମଦ୍ୱାର' । ଏହି କର୍ମଦ୍ୱାର ସମ୍ମୁଖରେ ୨୫-୩-୧୯୩୮ ଦିନ ସକାଳ ୮ଘ. ୧୫ମି. ରେ ମହାତ୍ମାଗାନ୍ଧୀ ୫୦,୦୦୦ ସମବେତ ଲୋକଙ୍କୁ ଭାଷଣ ଦେବା ଦେଖିଲେ ବିଶ୍ୱନାଥ ପଟ୍ଟନାୟକ । ଏକ ଅନନ୍ୟ ଅନୁଭୂତି ଓ ଦେଶସେବାର ପ୍ରେରଣା ମହାତ୍ମାଜୀଙ୍କ ଭାଷଣ ଶୁଣିବା ପରେ ତାଙ୍କ ମନରେ ଜାଗ୍ରତ ହେଲା । ସେ ମନେ ମନେ ସଂକଳ୍ପ କଲେ ବରୀ ଯାଇ ତାଲିମ ନେବେ ।

## ବିଶ୍ୱନାଥଙ୍କ ବରୀଯାତ୍ରା :

ଡେଲାଙ୍ଗ ସମ୍ମିଳନୀ କାହା ପାଇଁ କେଉଁ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଥିଲା, କିନ୍ତୁ ଗୋଟିଏ କଥା ସତଯେ ମହାତ୍ମାଗାନ୍ଧୀଙ୍କ ପ୍ରେରଣା ସମସ୍ତଙ୍କୁ ଅଳ୍ପେ ବହୁତ ଛୁଇଁଲା । ସେଠି ବିଶ୍ୱନାଥ ପଟ୍ଟନାୟକ ମନମୋହନ ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରଣା ଓ ନିଜ ବୟସର ବହୁ ଯୁବ-ସ୍ୱେଚ୍ଛାସେବୀଙ୍କ ସହ ମିଶିଲେ । ସହଜେ ମିତଭାଷୀ, ଦିଆଯାଇଥିବା କାମକୁ ନିଷ୍ଠାର ସହ ପାଳନ କରିବା ମନୋବୃତ୍ତି, ବ୍ରହ୍ମଚାରୀ ଜୀବନ, ଏକୁଟିଆ ଚାଲିବାର ଅଭ୍ୟାସ ତଥା ଆଶ୍ରମ ଜୀବନ ସହ ପରିଚିତ ହୋଇ, ସେମିତି ଦିନ ବଞ୍ଚିବାର ଅଭିଳାଷ ତାଙ୍କୁ ବରୀ ଯାଇ ତାଲିମ ନେବାର ଇଚ୍ଛାଟିକୁ ବଢ଼ାଇଦେଲା ।

ବରୀ ଆଶ୍ରମର ଅନ୍ୟମାନଙ୍କ ସହ ବିଶ୍ୱନାଥ ଡେଲାଙ୍ଗ ରେଳ ଷ୍ଟେସନରୁ ଗାଡ଼ି ଚଢ଼ି ଚାଲିଲେ ବରୀ । ଧୋୟା ଅଞ୍ଚଳରେ ଥିବା ନଈ ନାଳ ଡେଇଁ, ପନ୍ତରା ଅପନ୍ତରା ମାଡ଼ି, କାନ୍ଧରେ ଝୁଲାମୁଣି ଝୁଲାଇ, କେତେବେଳେ ଗୋହିରୀ ତ କେତେବେଳେ ଟିକରା,

କେତେବେଳେ କେନାଲ କଡ଼ ରାସ୍ତା ତ କେତେବେଳେ ତୋଟାମାଳ ଦେଇ ତାଙ୍କର ଯାତ୍ରା ଚାଲିଲା ଏପ୍ରିଲ ପ୍ରଥମ ସପ୍ତାହ ୧୯୩୮ ମସିହାରେ । ଗୋଟିଏ ନୂଆ ଲକ୍ଷ୍ୟ, ନୂଆ ଅନୁଭୂତି ନେଇ । ବରୀ ଅଞ୍ଚଳ ବୋଇଲେ ଏବର ବିଞ୍ଝାରପୁର ବ୍ଲକ୍ । ଏପଟେ ଖରସୁଆଁ ସେପଟେ ବିରୂପା ନଈ । ମଝିରେ ଥିବା ଧୋୟା ଅଞ୍ଚଳ, ବରୀ-ବରୁଆଁ ହରିପୁର ଠାରୁ ଇନ୍ଦୁପୁର ଯାଏ ଏହାର ବିସ୍ତୃତ । ୧୯୩୬-୩୮ ବେଳକୁ ସେଠାକୁ ଯିବାକୁ ବାଟ ଘାଟ କିଛି ନଥିଲା । ବିଲ, ବୁଦା, ଗହଳ ପାଟରେ ଭର୍ତ୍ତି । ଯିବା ଆସିବା ଭାରି କଷ୍ଟ ।

ବସରେ କଟକରୁ ଯାଜପୁରକୁ ଆସି, ସେଠୁ ପୁଣି ବସରେ, ମାଟିରୋଡ଼ରେ ଧକଡ଼-ଚକଡ଼ ହୋଇ ସାତ ମାଇଲ ପରେ ଅରେଇ ଛକରେ ଓହ୍ଲେଇ ପାଦରେ ଦୁଇ ମାଇଲ ଚଲା । ସେଠି 'ଗୁଆଳି'ରେ ନଈ ପାରି ହୋଇ ପୁଣି ତିନି ମାଇଲ ପାଦରେ ବାଟ ସାରିବାକୁ ହୁଏ । ବର୍ଷାଦିନେ ବଡ଼ ବଢ଼ିହେଲେ ଖରସୁଆଁ ନଈ ଉଛୁଳେ । ସେତେବେଳେ ଖରସୁଆଁ ନଈ ବନ୍ଧରୁ ଡଙ୍ଗାରେ ବସି ସିଧାଗଲେ ପଡ଼େ ରମ୍ଭା ଗାଁ । ସେଠି ଡଙ୍ଗାରୁ ଓହ୍ଲାଇ ବରୁଆଁ କଳାମାଟିଆ ରାସ୍ତାରେ ଚାଲିବାକୁ ହୁଏ ବରୀ । ଖରାଦିନେ ବସରେ ଝାଳନାଳ, ଧୂଳିଧୂସର ହୋଇ ଯାଜପୁରରୁ ଅରେଇ ଆସି ସେଠୁ ପାଦରେ ଚାଲିବାକୁ ହୁଏ । ଦୁଇଘଣ୍ଟାରେ ପ୍ରାୟ ବାଟ ଚାରିକୋଶ ଚାଲିଲେ ବରୀରେ ପହଞ୍ଚି ହୁଏ । ହରିଦାସପୁର ଷ୍ଟେସନ ବାଟେ ମଧ୍ୟ ବରୀକୁ ଯାଇହୁଏ । ହରିଦାସପୁରରୁ ନେଉଳପୁର-ପାଟପୁର-ବନ୍ଧଡ଼ିହ-ବାଲିଆ-ଦାରପୁର ବାଟଦେଇ ଗଲେ ବରୀପଡ଼େ ୧୯ ମାଇଲ ପରେ । ମଝିରେ ବ୍ରାହ୍ମଣୀ ଓ କେଲୁଆ ନଈ ପାର ହେବାକୁ ହୁଏ । ବରୀକୁ ଆଉ ଗୋଟେ ବାଟ କେନ୍ଦ୍ରାପଡ଼ା ଦେଇ, ଇନ୍ଦୁପୁର ହୋଇ । ସବୁ ବାଟ ସମାନ କଷ୍ଟପ୍ରଦ । ବିଶ୍ୱନାଥ ବରୀରେ ପହଞ୍ଚିଲେ ।

## ବରୀ ଆଶ୍ରମରେ (ସେବାଘରେ) ବିଶ୍ୱନାଥଙ୍କ ଦୁଇବର୍ଷ (୧୯୩୮-୧୯୪୦) :

ବରୀରେ ପହଞ୍ଚିଲା ପରେ ବିଶ୍ୱନାଥଙ୍କର ଏକ ନୂଆ ଜୀବନ ଆରମ୍ଭ ହେଲା । ନୂଆ ଦିନଚର୍ଯ୍ୟା ଯାହା ଆଗରୁ ନଥିଲା । ଭୋର ସାଢ଼େ ଚାରିଟାରୁ ସମସ୍ତେ ଉଠନ୍ତି । ନିତ୍ୟକର୍ମ ସାରି, ଏକାଠି ବସି ପ୍ରାର୍ଥନା କରନ୍ତି । ତା'ପରେ କଂସା ବାସନ, ରୋଷେଇ ବାସନ ମଜା ହୁଏ । ଘର, ଅଗଣା ଓଳିଆ । ପାଇଖାନା ସଫେଇ । ତା'ପରେ ବାଡ଼ି ବଗିଚାର କାମ । ମାଟିହଣା, ମାଟି ଖୋସା, ପାଣିବୁହା । ଯାହାକୁ ଯେଉଁ କାମ ଦିଆ ଯାଇଥାଏ ସେ ସେହି କାମକରେ । ତା'ପରେ ସୂତାକଟା ଓ ଅନ୍ୟକାମ ।

ବେଳେ ବେଳେ ସେ ରମ୍ଭା ହରିଜନ ସାହି ବା ବାଗଦା ହରିଜନ ସାହିକୁ ଯାଆନ୍ତି ସଫେଇ କରିବାକୁ । ବିନୋଦ କାନୁନ୍‌ଗୋ ଓ ସୁରେନ୍ଦ୍ର ପଟ୍ଟନାୟକଙ୍କଠୁ ଶିଖନ୍ତି ବହୁତ କଥା । ଦେଖନ୍ତି ଏହି ହରିଜନ ବସ୍ତିରେ ଲୋକମାନଙ୍କର ଦରିଦ୍ର ଅବସ୍ଥା । ହରିଜନ ସେବା ଆଶ୍ରମର ମୁଖ୍ୟ କାମ । ମଙ୍ଗଳାଦେବୀ ଅରଙ୍ଗାବାଦ ହରିଜନ ସାହି, ଶୋଭା ଦେବୀ ଏରଡ଼ା, ଗୋଦାବରୀ ଦେବୀ ରତ୍ନଗିରିରେ ସେବା କରନ୍ତି । ଏହି ଦଳିତମାନଙ୍କୁ ସମାଜରେ ଉଠିଆ କରିବାକୁ ଏତେ ଚେଷ୍ଟା । ବିଶ୍ୱନାଥ ଦେହ ପରିଶ୍ରମ କରନ୍ତି । ଖାଇ ସାରିଲା ପରେ କିଛି ପଢ଼ାପଢ଼ି, ଆଲୋଚନା । ଉପରଓଳି ପୁଣି ବଗିଚା କାମ ।

ଗୋ-ପାଳନ, ସପବୁଣା, ଲୁଗାବୁଣା ସବୁ ସେ ବରୀ ଆଶ୍ରମରୁ ଶିଖିଲେ । ମିଶିଲେ ବହୁ ଲୋକଙ୍କ ସାଥିରେ । ବରୀ ଆଶ୍ରମର ଖଟଣି, ଖଦୀପିନ୍ଧା, ସରଳ ଜୀବନଯାପନ, ନିରାମିଷ ଖାଦ୍ୟ, ପ୍ରାର୍ଥନା ଓ ମନ୍ତ୍ରର ପବିତ୍ର ସ୍ପର୍ଶ ବିଶ୍ୱନାଥଙ୍କୁ ଏମିତି ଛୁଇଁଗଲା ଯେ ସେ ଗୋଟାପଣେ ଗୋପବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଗଲେ । ଅନ୍ତରରେ ଭକ୍ତିଭାବ ଆସିଲା । ସେ ପାଲଟିଗଲେ ଆଉ ଏକ ମଣିଷ । ନୀରବ ନିରଳସ କର୍ମୀ । ଗୋପବାବୁ ହୋଇଗଲେ ତାଙ୍କ ଆଦରର ବାପା, ରମାଦେବୀ ମା । ଯା'ଙ୍କୁ ବାପା-ମା ସମ୍ବୋଧନ କରି ବିଶ୍ୱନାଥ ପାଇଲେ ନିର୍ମଳ ଆନନ୍ଦ ।

କଥା ପ୍ରସଙ୍ଗରେ ବିଶ୍ୱନାଥ ଶୁଣିଲେ ଗୋପବାବୁଙ୍କ ଠାରୁ ମରମ ଉପଦେଶ, ମନୁଷ୍ୟ ପ୍ରୀତି ଓ ସଂପର୍କର କଥା । କର୍ମୀ ହେଲେ ଖାଲି ସଭା ସମିତି କରିବା, ଭାଷଣ ଦେବା କିମ୍ବା କାଗଜପତ୍ର କାମ କରିବା ନୁହେଁ, ଆହୁରି ଅଧିକ କିଛି କରିବାକୁ ପଡ଼ିବ । ନାନା ପ୍ରକାର ଗଠନ ମୂଳକ କାମ । ଲୋକମାନଙ୍କ ସହିତ ଚିହ୍ନା ପରିଚୟ ବଢ଼ାଇବାକୁ ହେବ । ମିଶିବାକୁ ହେବ । ତାଙ୍କ ଦୁଃଖ ସୁଖରେ, ଭଲ ମନ୍ଦରେ ଛିଡ଼ା ହେବାକୁ ହେବ । ତାଙ୍କୁ ଶ୍ରଦ୍ଧା, ବିଶ୍ୱାସ କରିବାକୁ ହେବ । ଶ୍ରଦ୍ଧା ବିଶ୍ୱାସ ଅର୍ଜିବାକୁ ହେବ । ଲୋକଙ୍କ ସହିତ ଲୋକଙ୍କ ପରି ନହେଲେ ଫାଙ୍କ ରହିଯିବ । ସେମାନଙ୍କ ସେବା ଦେହ ଦେଇ, ମନ ଲଗାଇ, କଥା କହି କରିବାକୁ ହେବ । ସେମାନଙ୍କୁ ନିଜ ପ୍ରତି, ନିଜ ପରିବେଶ ପ୍ରତି ସଚେତନ କରାଇବାକୁ ହେବ । ସେଗୁଡ଼ିକୁ ସୁଧାରିବା ପାଇଁ କର୍ମୀ କାମ କରିବ । ଲୋକେ ନିଜେ ପରିଶ୍ରମ କରିବେ, ନିଡ଼ର ହେବେ, ଭୟ ଛାଡ଼ିବେ, ନାନା ପ୍ରକାର ମନରେ ବସା ବାନ୍ଧିଥିବା କୁ-ସଂସ୍କାର ଛାଡ଼ିବେ । ନୀତିକୁ ମାନି ଚଳିବେ । ନିଜ ନିଜ ଭିତରେ ଏକତା ରଖିବେ । ଗାନ୍ଧିଜୀଙ୍କ ବିଚାରକୁ ମାନିବେ । ସେଇ ଅନୁସାରେ ନିଜକୁ କର୍ମୀମାନେ ମଧ୍ୟ ଗଢ଼ିବେ । ''ସେଥିପାଇଁ କର୍ମୀମାନଙ୍କର ଦରକାର ଗାଁ ଗାଁ'ରେ ବୁଲିବା, ଲୋକଙ୍କ ସଙ୍ଗେ ମିଶିବା ।''

''ବିଶ୍ୱନାଥ ବାବୁ ବରୀ ଆଶ୍ରମରେ ଯେଉଁ ଦୁଇ ବର୍ଷ ତାଲିମ ନେଲେ, ସେ ଭିତରେ ସେ ଦେଖିଲେ ବୁଢ଼ା ବୟସରେ ଆଚାର୍ଯ୍ୟ ହରିହରଙ୍କ କାମ; ଦେଖିଲେ ଆଶ୍ରମକୁ ଆସୁଥିବା ମହତାବ ବାବୁ, ଭାଗୁବାବୁ, ନନ୍ଦ କିଶୋର ଦାସ, ପ୍ରାଣକୃଷ୍ଣ ପଢ଼ିହାରୀଙ୍କୁ; ଦେଖିଲେ ନବବାବୁ, ମାଳତୀ ଦେବୀଙ୍କୁ; ଦେଖିଲେ ଭାରତ ବାହାରୁ ଆସୁଥିବା କାକା କାଲେଲକର, ପ୍ୟାରେଲାଲ, ଶଙ୍କରରାଓ ଦେଓ, ଧୋତ୍ରେଜୀ, ଠକ୍କର ବାପା, ସତୀଶ ଚନ୍ଦ୍ର ଦାସଗୁପ୍ତା, ବଦ୍ରିନାଥ ଉପାଧ୍ୟାୟ, ଆର୍ଯ୍ୟନାୟକମ୍, ଆଶାଦେବୀଙ୍କୁ । ଏମାନଙ୍କ ବ୍ୟକ୍ତିତ୍ୱ, କାର୍ଯ୍ୟ କରିବାର ପ୍ରଣାଳୀ, ସମୟାନୁବର୍ତ୍ତିତା, ମିତଭାଷଣ ବିଶ୍ୱନାଥଙ୍କ ମନ ଉପରେ ବିଶେଷ ପ୍ରଭାବ ପକାଇଥିଲା ।

ଏଣେ ୧୯୩୮-୩୯ ବେଳକୁ ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ପ୍ରଜାମାନଙ୍କ ଉପରେ ହେଉଥିବା ଜୁଲମ ଚରମ ସୀମାରେ ପହଞ୍ଚିଲା । ମୋଗଲବନ୍ଦୀ ଅଞ୍ଚଳରେ ତୁଳନାତ୍ମକ ଭାବେ ପ୍ରଜାମାନେ ଏକ ରକମ ଥିଲେ । ଢେଙ୍କାନାଳ, ତାଳଚେର ଆଦି ଗଡ଼ଜାତ ଅଞ୍ଚଳରେ ଅନ୍ଧ-ଜମିଦାରୀ ଶାସନ । ପ୍ରଜା, ରୟତମାନେ ତ୍ରାହି ତ୍ରାହି ଡାକ ଛାଡୁଥିଲେ ।

ଜମିଦାରମାନେ ପ୍ରଜାଙ୍କୁ ବେଠି ଖଟାଉଥିଲେ । ମାଡ଼ ମାରୁଥିଲେ । ଗଉଡ଼ ମାନେ ବିନା ପଇସାରେ ଦୁଧ, ଦହି, ଘିଅ ଯୋଗାଇବା ପାଇଁ ବାଧ ହେଉଥିଲେ । ଜମିଦାର ଓ ତାଙ୍କ ପାଖଲୋକଙ୍କ ଶୁଆରି କାନ୍ଧେଇବାକୁ ସେମାନଙ୍କୁ ପଡୁଥିଲା । ବର୍ଷା ଆଗରୁ ମାଗଣା ଘର ଛପର କରାନ୍ତି, ଲୋକଙ୍କ ଠାରୁ ନଡ଼ା, ଛଣ, ବତା, ଦଉଡ଼ି ନେଇ । ଭଲରେ ମନ୍ଦରେ, ବାହାଘର ବ୍ରତଘର ବେଳେ, ଜନ୍ମ ଓ ମୃତ୍ୟୁ ଦିବସରେ ମାଗଣାରେ ପାଣମାନେ ବାଇଦ ବଜାଇବେ । ଏଇଟା ଥିଲା ସେମିତି ବିଧି । ବାଡ଼ିର ଫଳ ଜମିଦାରଙ୍କର । ଦୁଧିଆଳୀ ଗାଈ ଜମିଦାରଙ୍କର । ଘରେ କଜିଆ ହେଲେ ଜୋରିମାନା ଦେବାକୁ ହୁଏ ଜମିଦାରଙ୍କୁ । କାହା ସ୍ତ୍ରୀ, ବୋହୂ କି ଝିଅ, ଯଦି ସୁନ୍ଦର ଦିଶିଲା କଥା ସରିଲା । ପୋଷାକ ପିନ୍ଧିଲେ ଦଣ୍ଡ, ନିଶ ରଖିଲେ ଦଣ୍ଡ । ହାତରୁ ଖାଇ ବେଠି ଖଟଣି । ଅତ୍ୟାଚାର ସୀମା ଟପୁଥିଲା । ଯା ଭିତରେ ଗଡ଼ଜାତ ଲୋକେ ବି ଶୁଣିଲେ କଂଗ୍ରେସର ଆନ୍ଦୋଳନର କଥା । ତାଙ୍କୁ ଏହି ଅନ୍ଧାର ଭିତରେ କିଛି କିଛି ଆଲୁଅ ଦିଶିଲା । ଏହି ଅତ୍ୟାଚାର ସହୁଥିବା ପ୍ରଜାମାନେ ମେଳି କରିବା ପାଇଁ ପାଞ୍ଚିଲେ । ଜମିଦାରଙ୍କ ଅଦଉତି ଆଉ ସହିବାର ନୁହେଁ ।

## ପ୍ରଜାମଣ୍ଡଳ ଆନ୍ଦୋଳନ ଓ ଶରଣାର୍ଥୀ ସମସ୍ୟା :

୧୯୩୮ ମସିହାରେ ଢେଙ୍କାନାଳରେ ଯେଉଁ ପ୍ରଜାମଣ୍ଡଳ ଆନ୍ଦୋଳନ ହୋଇଥିଲା ତାହା ଯେ କି ଭୀଷଣ ଆକାର ଧାରଣ କରିଥିଲା ସେ ସମ୍ବନ୍ଧରେ ସଂଗ୍ରାମୀ ବୈଷ୍ଣବ ଚରଣ ପଟ୍ଟନାୟକ ଅଙ୍ଗେ ନିଭେଇଥିବା ଅନୁଭୂତିକୁ ଏମିତି କହନ୍ତି :

"୧୯୩୮ ମସିହା ବେଳକୁ ଅତ୍ୟାଚାରୀ ଢେଙ୍କାନାଳ ରାଜାର ପ୍ରଜାମାନଙ୍କ ଉପରେ ଯେଉଁ ଲୋମ ହର୍ଷଣକାରୀ, ଅକଥନୀୟ, ବର୍ବର ଅତ୍ୟାଚାର ଚାଲିଥିଲା, ତାହା ଆଇମା କାହାଣୀ ଭଳି ଆଜି ମଧ୍ୟ ଘରେ ଘରେ କୁହାଯାଇଥାଏ। କେତେକ କହିଥାନ୍ତି, 'ଉକ୍ତ ଆନ୍ଦୋଳନ ଢେଙ୍କାନାଳର ଅତ୍ୟାଚାରୀ ରାଜା ବିରୁଦ୍ଧରେ ହୋଇଥିଲା' କିନ୍ତୁ ଏହା କହିବା ଅପେକ୍ଷା ଢେଙ୍କାନାଳର ପ୍ରଜାମଣ୍ଡଳ ଆନ୍ଦୋଳନ 'ଭାରତର ସ୍ୱାଧୀନତା ସଂଗ୍ରାମ' ଥିଲା କହିବା ଅଧିକ ଠିକ୍ ହେବ।"

ପ୍ରଜାମଣ୍ଡଳ ଆନ୍ଦୋଳନ କଂଗ୍ରେସର ନୀତି ମାନୁ ନଥିଲା ବୋଲି ତତ୍‌କାଳୀନ କଂଗ୍ରେସ ନେତାମାନେ ଏହି ଆନ୍ଦୋଳନକୁ ଏକ ସ୍ଥାନୀୟ ସମସ୍ୟା ବୋଲି ଚିତ୍ରଣ କରୁଥିଲେ। ତଥାପି ଏହି ଆନ୍ଦୋଳନ ଭୟଙ୍କର ରୂପ ନେବା ପୂର୍ବରୁ ୧୯୩୭ ମସିହା ଜୁନ ୨୪ ତାରିଖରେ ଗଡ଼ଜାତ ପ୍ରଜାମାନେ ସଭାକଲେ। ଏହି ସଭାରେ ଶ୍ରୀ ପଟ୍ଟାଭି ସୀତାରାମେୟା ସଭାପତିତ୍ୱ କରିଥିଲେ। ପ୍ରଜାମାନେ ରାଜାଙ୍କ ବିରୋଧରେ ବହୁ ଅଭିଯୋଗ ମାନ ଆଣିଲେ। ପ୍ରଜାଙ୍କ ଦୁରବସ୍ଥା ସମ୍ବନ୍ଧରେ ଜାଣିବା ଓ ଅନୁସନ୍ଧାନ କରିବା ପାଇଁ ଗୋଟିଏ ଅନୁସନ୍ଧାନ କମିଟୀ ଗଠନ କରାଗଲା। ଏହାର ସଭାପତି ହେଲେ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ବଳବନ୍ତରାୟ ମେହେଟା ଓ ଶ୍ରୀ ଲାଲମୋହନ ପଟ୍ଟନାୟକ। କମିଟୀ ରିପୋର୍ଟ ଦେଲା।

ପ୍ରଜା ମଣ୍ଡଳ ଗଠନ ହେଲା। ଆନ୍ଦୋଳନ ତେଜିଲା। ନବକୃଷ୍ଣ ଚୌଧୁରୀ ଏହାର ନେତୃତ୍ୱ ନେଲେ।

## ଆନ୍ଦୋଳନର ଗତି :

୧୯୩୮ ମସିହା ସେପ୍ଟେମ୍ବର ଏକ ତାରିଖ। ସେଦିନ କଟକ ଜିଲ୍ଲାର ଢେନାପୁରଠାରେ ମୋଗଲବନ୍ଦୀ ଅଞ୍ଚଳର ୫୦,୦୦୦ ଚାଷୀ ସଭା କରିଥିଲେ, କୃଷକ ସଭାର ଆୟୋଜନରେ। କେବଳ ଢେଙ୍କାନାଳରୁ ଆସିଥିଲେ ୧୦,୦୦୦ ଚାଷୀ। ଏମାନେ ଖୋଲାଖୋଲି ପ୍ରଜାମଣ୍ଡଳ ଗଠନ କଲେ।

୧୯୩୮ ସେପ୍ଟେମ୍ବର ବାର ତାରିଖ ଦିନ ଢେଙ୍କାନାଳ ଅଞ୍ଚଳର ପ୍ରାୟ ୫୦,୦୦୦ ରୟତ, ଚାଷୀ, ମୂଲିଆ ଢେଙ୍କାନାଳର ଅତ୍ୟାଚାରୀ ରାଜାଙ୍କ ନଅର ଘେରାଓ କଲେ। ରାଜା ନଅର ଛାଡ଼ି ପଳାଇ ଗୋରା ସରକାରଙ୍କ ଶରଣ ପଶିଲେ।

ଏହି ଆନ୍ଦୋଳନକୁ ଦମନ କରିବା ପାଇଁ ଗୋରା ସରକାର ''କିଙ୍ଗସ୍ ଓ୍ୱନ ସ୍କଟିସ୍ ବର୍ଡ଼ରର'' ନାମକ କେବଳ ଇଂରେଜମାନଙ୍କୁ ନେଇ ଗଠିତ ଏକ ପଲଟଣ ଢେଙ୍କାନାଳ ପଠାଇଲେ । ଏମାନଙ୍କ ସହିତ ଆସିଲେ ଭାରତର ବିଭିନ୍ନ ଅଞ୍ଚଳରୁ ଗୋର୍ଖା, ଡୋଗ୍ରା, ପଞ୍ଜାବ, ହାଇଦ୍ରାବାଦ ଓ ଛତିଶଗଡ଼ ପଲଟଣ । ଏଥିରୁ ଅନୁମାନ କରିହେବ ପ୍ରଜାଙ୍କର ଅତ୍ୟାଚାର ସହିବା ଶକ୍ତି ସୀମା ଟପିଲେ, ଅତ୍ୟାଚାରୀଙ୍କ ଅବସ୍ଥା କ'ଣ ନହୁଏ । ପ୍ରଜାମଣ୍ଡଳର ଆନ୍ଦୋଳନ ଓ ସରକାରୀ କଳର ଦମନ ଯେଉଁ ପରିସ୍ଥିତି ସୃଷ୍ଟି କଲା ତାହା ହୋଇଗଲା ଇତିହାସ । ସେତେବେଳକୁ ଢେଙ୍କାନାଳ ପଲିଟିକାଲ ଏଜେଣ୍ଟ ବେଜେଲଗେଟ ସାହେବ । କ୍ରୂର, ହିଂସ୍ର, ପ୍ରତିଶୋଧ ପରାୟଣ । ତାଙ୍କ ପ୍ରରୋଚନାରେ ଯେଉଁ ଗୁଳିକାଣ୍ଡ ହୋଇ ନିରସ୍ତ୍ର ଜନତା ମୃତ୍ୟୁବରଣ କଲେ ତା'ର ଫଳ ହେଲା ରଣପୁରରେ ଉଗ୍ର ଜନତା ଦ୍ୱାରା ବେଜେଲଗେଟ ହତ୍ୟା । ଅବଶ୍ୟ ଏହି କାର୍ଯ୍ୟକୁ ନୀତିଗତ ଭାବେ କଂଗ୍ରେସ ସମର୍ଥନ କରିନଥିଲା । ପ୍ରଜାମଣ୍ଡଳର କାର୍ଯ୍ୟକଳାପକୁ ଦମନ କରିବା ପାଇଁ ୧୯୩୮ ସେପ୍ଟେମ୍ବର ୧୨ ତାରିଖ ଠାରୁ ୧୯୩୮ ନଭେମ୍ବର ୧୧ ତାରିଖ ପର୍ଯ୍ୟନ୍ତ ଦୁଇ ମାସ ଭିତରେ ସାତ ସାତ ଥର ଗୁଳିକରାଯାଇ ବହୁ ପ୍ରଜାଙ୍କୁ ଆହତ ଓ କେତେକଙ୍କୁ ହତ୍ୟା କରାଯାଇଥିଲା ।

୧୯୩୮ ମସିହା ଅକ୍ଟୋବର ୧୧ ତାରିଖ ଦିନ ପ୍ରଜାମଣ୍ଡଳର ନିଷ୍ପତ୍ତିକ୍ରମେ ଗୋରା ପଲଟଣକୁ ନଦୀ ପାର କରାଇ ନଦେବାରୁ ବାର ବରଷର ବାଳକ 'ବାଜି ରାଉତ'କୁ ହତ୍ୟା କରାଗଲା । ବାଜି ରାଉତ ପ୍ରଭୃତି ଛଅ ଜଣଙ୍କର ଶବ କଟକରେ ଦାହ କରାଗଲା । ବାଜିରାଉତର ଚରମ ବଳିଦାନକୁ କବି ସଚ୍ଚି ରାଉତରାୟ ଶ୍ରଦ୍ଧାଞ୍ଜଳି ଜଣାଇ ଲେଖିଲେ :

ନୁହେଁ ବନ୍ଧୁ ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ
ଏ ଅଲିଭା ମୁକତି ସଳିତା
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳି ପୋଡ଼ି ଦେବାକୁ ଧସାଇ ।

x x x

ଲହୁ ଢାଳି ତହିଁପରେ
ଲେଖିଲା ସେ ମୁକତିର ଛବି
ଛବି ନୁହେଁ, ତୂଳୀ ନୁହେଁ, ନୁହେଁ ରଙ୍ଗ
ସେ ରକ୍ତ କରବୀ

ଏ ମାଟିର ସ୍ତନ୍ୟ ପିଇ
ଗାଇଲା ସେ ଏ ମାଟିର ଜୟ
ବିଶ୍ୱର ଦୂରନ୍ତ ଶିଶୁ ମୃତ୍ତିକାର ଚିର ସ୍ତନନ୍ଧୟ ।

ପଦଚିହ୍ନ ତା'ର
ଶମଶାନେ କଲା ତୀର୍ଥ
ଦେବାଳୟ ହେଲା ଶବାଗାର ।
ନୁହେଁ ବନ୍ଧୁ ନୁହେଁ ଏହା ଚିତା
ସେ ତୁମର କ୍ଷମାହୀନ
ମୃତ୍ୟୁମିଶା ଅମର କବିତା ।।

ପ୍ରଜାମଣ୍ଡଳକୁ ଦମନ କରିବାର ପଣ ନେଇ ଶାସକ ବର୍ଗ ଯେଉଁ ଅମାନୁଷିକ ବର୍ବରତା ଦେଖାଇଲେ ତାହା ଶୁଣି ୧୯୩୯ ଜାନୁଆରୀ ୨୮ ତାରିଖ 'ହରିଜନ' ପତ୍ରିକାରେ ମହାତ୍ମାଗାନ୍ଧୀ ଲେଖିଥିଲେ - ''ଗଡ଼ଜାତମାନଙ୍କ ଭିତରେ ମୁକ୍ତିର ଆନ୍ଦୋଳନ ଏକ ନୂତନ ପର୍ଯ୍ୟାୟରେ ପହଞ୍ଚିଛି । ଇତିହାସର ପୁନରାବର୍ତ୍ତନ ହେବାକୁ ଯାଉଛି । ଦମନ କାର୍ଯ୍ୟରେ ତାଳଚେର ଓ ଢେଙ୍କାନାଳ ବାଟ ଦେଖାଇଛି । ମୋଟ ୭୫,୦୦୦ ଲୋକ ସଂଖ୍ୟାରୁ ୨୬,୦୦୦ ଲୋକ ତାଳଚେରରୁ ବ୍ରିଟିଶ ଓଡ଼ିଶାକୁ ବାହାରି ଆସିବା କିଛି ସାମାନ୍ୟ କଥା ନୁହେଁ । ଏହି ଶରଣାର୍ଥୀମାନଙ୍କର ମର୍ମନ୍ତୁଦ ଦୁଃଖର କାହାଣୀ ଅଧ୍ୟାପକ ରଙ୍ଗା ପ୍ରକାଶ କରିଛନ୍ତି । ଯେ କୌଣସି ଆଡୁ ଆସୁ ପଛକେ ଦୁଃଖର ଡାକ ଶୁଣିଲେ ଯେ ଜବାବ ଦିଅନ୍ତି, ସେହି ଠକ୍କର ବାପା ରଙ୍ଗାଙ୍କ ବର୍ଣ୍ଣନାକୁ ସମର୍ଥନ କରୁଛନ୍ତି । ଶରଣାର୍ଥୀମାନେ ଦୁଇ ମାସ ହେଲା ଘରଦ୍ୱାର ଛାଡ଼ି ଆସି ପଡ଼ିଛନ୍ତି । ସେମାନେ ଘରକୁ ଫେରିଯିବେ ବୋଲି ମୁଁ ଆଶା କରିଥିଲି, ମାତ୍ର ଏମାନଙ୍କ ପାଇଁ ବର୍ତ୍ତମାନ ସୁଦ୍ଧା ଶାନ୍ତି ନାହିଁ ବୋଲି ମନେହେଉଛି ।''

## ଶରଣାର୍ଥୀ ସମସ୍ୟା ଓ ବିଶ୍ୱନାଥ ବାବୁ :

ଗଡ଼ଜାତରୁ ଅନୁଗୁଳ ସରହଦକୁ ପ୍ରାୟ ୨୫,୦୦୦ରୁ ୨୬,୦୦୦ ଶରଣାର୍ଥୀ ହୋଇ ଆସିଲେ । କିଏ ଗଛମୂଳେ ରହିଲା ତ କିଏ ଖୋଲା ପଡ଼ିଆରେ । ସେତେବେଳକୁ ଗୋପବାବୁ ନିଖିଳ ଓଡ଼ିଶା କଂଗ୍ରେସ କମିଟି ସଭାପତି ପଦରୁ ଇସ୍ତଫା ଦେଇଦେଲେ । ତଥାପି ଶରଣାର୍ଥୀଙ୍କ ପାଇଁ ତିନୋଟି ଶିବିର ତିଆରି କରାଗଲା । କୋଶଳା, କମଶଳା ଓ

ବୁଢ଼ାପଙ୍କରେ । ଲୋକେ ପତ୍ର କୁଡ଼ିଆ କଲେ । ଏତେ ଲୋକ, ଅଭାବ ଯେ କହିବାର ନୁହେଁ । ଚାରିଆଡ଼େ ଅବ୍ୟବସ୍ଥା । ଅପରିଷ୍କାର, ଅପରିଚ୍ଛନ୍ନତା । ରୋଗରେ ସଢ଼ିଲେ କେତେ, ମଲେ କେତେ । ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ପବିତ୍ର ମୋହନ ପ୍ରଧାନ ଏମାନଙ୍କ ପାଇଁ ସାହାଯ୍ୟ ଯୋଗାଡ଼ କରୁଥାନ୍ତି । ଅନେକ କର୍ମୀ ସ୍ୱେଚ୍ଛାସେବକ ଆସିଲେ । ଉତ୍କଳ ପ୍ରଦେଶ କଂଗ୍ରେସ କମିଟୀ ସାହାଯ୍ୟ ଦେଉଥାନ୍ତି ।

ସେତେବେଳେ ସେଠିକି ଗୋପବାବୁ ବରୀ ଆଶ୍ରମରୁ ନାରୀକର୍ମୀ ଓ ପୁରୁଷ କର୍ମୀଙ୍କୁ ପଠାଇଲେ । ଏମାନଙ୍କ ଭିତରେ ଥିଲେ ବିଶ୍ୱନାଥ ପଟ୍ଟନାୟକ । ସେ ଶରଣାର୍ଥୀଙ୍କ ସେବାରେ ଲାଗିଲେ । ଗାନ୍ଧୀ ସେବାସଂଘ ଚାରି ହଜାର ଟଙ୍କା ସାହାଯ୍ୟ ଦେଲେ । ବିଶ୍ୱନାଥ ବାବୁ ସୂତାକଟା, ଖଦୀବୁଣା ଶିଖାଇଲେ । ଏମିତି ୪ ମାସ କାଳ ସେଠି କାମ କଲାପରେ ସେ ପାରାଦ୍ୱୀପ ଅଞ୍ଚଳକୁ ଗଲେ ସୂତାକଟା, ଖଦୀବୁଣା ତାଲିମ ଦେବା ପାଇଁ । ସେ ହିଜ୍‌ରାତ କ୍ୟାମ୍ପର କର୍ମୀ ହିସାବରେ ଏକନିଷ୍ଠ ଭାବେ ଯେଉଁ କାମ କଲେ ଗୋପବାବୁ ଓ ରମାଦେବୀ ସେହି କର୍ମର ପ୍ରଶଂସା କଲେ । ଶରଣାର୍ଥୀ ହିଜରାତ୍ କାମ ସରିଲା ପରେ ବିଶ୍ୱନାଥ ବାବୁ ରାହାମା, ଚଟୁଆ, ଗଡ଼ ପାରାଦ୍ୱୀପରେ ପ୍ରାୟ ଅନେକ ଦିନ ତାଲିମ ଦେବା ପରେ ଗୋପବାବୁଙ୍କୁ ଜଣାଇ ଘରକୁ ଫେରିଲେ ।

## ବିଶ୍ୱନାଥ ବାବୁ ଗାନ୍ଧୀ ସେବା ସଂଘର ଅଫିସ୍ ଆସିଷ୍ଟାଣ୍ଟ :

ଘରେ ଦୁଇ, ତିନି ମାସ ରହିଛନ୍ତି କି ନାହିଁ ଗୋପବାବୁ ତାଙ୍କୁ ଡକାଇ ପଠାଇଲେ ବରୀକୁ । ଏଥର ଅନ୍ୟକାମ ଦେଲେ । ବିଶ୍ୱନାଥ ବାବୁ ହେଲେ ଗାନ୍ଧୀ ସେବା ସଂଘର, ଓଡ଼ିଶା ଶାଖାର ଅଫିସ୍ ଆସିଷ୍ଟାଣ୍ଟ । ଲେଖାପଢ଼ା, ଚିଠି ଲେଖା, କାର୍ଯ୍ୟାଳୟ ପରିଚାଳନା ସେ ସୁଚାରୁ ରୂପେ ପରିଚାଳନା କଲେ ! ଏମିତିରେ କଟିଗଲା ଦୀର୍ଘ ୧ ବର୍ଷ । ଲୋକେ ସମ୍ପର୍କ ଓ କାର୍ଯ୍ୟଭାର ଉଭୟକୁ ବିଶ୍ୱନାଥ ବାବୁ ତୁଲାଇଲେ ଭଲଭାବରେ ।

❋ ❋ ❋

- ପାଞ୍ଚ -

# ''ବରୀରୁ ଗୁଣୁପୁର''

୧୯୩୮ ମସିହାରୁ ୧୯୩୯ ମସିହା ମାର୍ଚ୍ଚ ଯାଏ ବରୀ ଟ୍ରେନିଂ, ହିଜରାତ୍ କ୍ୟାମ୍ପ, ପାରାଦ୍ୱୀପର ପଟୁଆ ଠାରେ ଖଦୀ କାମ ଓ ୧୯୪୦ ଆରମ୍ଭରୁ ଏକ ବର୍ଷ ଗାନ୍ଧୀ ସେବାସଂଘର ଅଫିସ୍ ଆସିଷ୍ଟାଣ୍ଟ ଭାବେ କାର୍ଯ୍ୟକଲା ପରେ ବିଶ୍ୱନାଥଙ୍କ ମନରେ ଏକ ନୂତନ ସଂକଳ୍ପ ଆସିଲା । ସେ ଚାହିଁଲେ କୌଣସି ଗ୍ରାମାଞ୍ଚଳକୁ ଯାଇ ଲୋକଙ୍କର ସେବା କରିବେ । ସେ ଗୋପବାବୁଙ୍କ ରଚନାତ୍ମକ କର୍ମ ଦେଖି ଏତେ ଅନୁପ୍ରାଣିତ ହୋଇ ଯାଇଥିଲେ ଯେ, ଗୋପବାବୁଙ୍କ ଅନୁମତି ନେଇ ଏକ ଦୂର ଗ୍ରାମାଞ୍ଚଳ ଭିତରେ ଦଳିତ, ନିଷ୍ପେଷିତ ଲୋକଙ୍କ ପାଇଁ କାମ କରିବାକୁ ମନସ୍ଥିର କରିନେଲେ । ଏହା ୧୯୩୯ ମସିହା ଶେଷ ଆଡ଼ର କଥା ।

ସେଇ ସମୟକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ପ୍ରାୟ ପନ୍ଦର ମାସ ହୋଇଗଲାଣି । ବିଲାତ ସରକାର ଭାରତକୁ ଯୁଦ୍ଧରେ ସାମିଲ କରିଦେଲେ । ଯୁଦ୍ଧ ଖର୍ଚ୍ଚ ତୁଲାଇବା ପାଇଁ ଭାରତୀୟଙ୍କ ଉପରେ ଚାନ୍ଦା ପକେଇଦେଲେ ଗୋରା ସରକାର । କଂଗ୍ରେସ ଦଳ କିମ୍ବା ନେତାମାନଙ୍କ ସହିତ କଥାବାର୍ତ୍ତା କରିବା ମଧ ସରକାର ଉଚିତ ମଣିଲେ ନାହିଁ । ୧୫-୯-୧୯୩୯ରେ କଂଗ୍ରେସ ଓ୍ୱାର୍କିଂ କମିଟୀ ଗୋଟିଏ ଦୀର୍ଘ ପ୍ରସ୍ତାବ ଗ୍ରହଣ କଲେ । ଏହି ପ୍ରସ୍ତାବ ଚିଠା କରିଥିଲେ ପଣ୍ଡିତ ନେହେରୁ । ତହିଁରେ ଫାସିବାଦ, ନାଜୀବାଦ, ଜର୍ମାନୀର ପୋଲାଣ୍ଡ ଆକ୍ରମଣକୁ ନିନ୍ଦା କରାଯାଇଥିଲା, ତା' ସହିତ ଭାରତୀୟଙ୍କ ମତ ନନେଇ ଭାରତକୁ ଯୁଦ୍ଧରେ ଜଡ଼ିତ କରାଇଦେବା ଘଟଣାର ବିରୋଧ କରାଯାଇ ଉଦ୍‌ବେଗ ପ୍ରକାଶ କରାଗଲା ।

ସେହି ପ୍ରସ୍ତାବରେ ଲେଖାଗଲା, ''ଏକ ମାତ୍ର ଭାରତର ନେତା ହିଁ ଶାନ୍ତି ଓ ଯୁଦ୍ଧ ବିଷୟରେ ନିଷ୍ପତ୍ତି ନେଇ ପାରିବେ । x x x ସାମ୍ରାଜ୍ୟବାଦ ଉଦ୍ଦେଶ୍ୟରେ ତାଙ୍କର ସମ୍ବଳ ଶୋଷିତ ହେଉ, ବିନିଯୁକ୍ତ ହେଉ ଏହା ସେମାନେ କରାଇ ଦେଇ ନପାରନ୍ତି । ଯଦି ସହଯୋଗ ଲୋଡ଼ା, ତା' ହେବ ସମାନ ସମାନଙ୍କ ମଧ୍ୟରେ, ଦୁଇପକ୍ଷର ରାଜିରେ ଓ ସେହିଭଳି ଉଦ୍ଦେଶ୍ୟରେ ଯାହା ଦୁଇପକ୍ଷଙ୍କ ମନଃପୂତ । କୁହାଯାଉଛି ଏ ଯୁଦ୍ଧଟା ଡେମୋକ୍ରେସି ସମ୍ପର୍କୀୟ ସ୍ୱାଧୀନତା ସକାଶେ, କିନ୍ତୁ ଯେତେବେଳେ ଭାରତକୁ ସେ ସ୍ୱାଧୀନତା ଦିଆଯାଉ ନାହିଁ ବରଂ ଯେଉଁ ଟିକକ ଅଛି ତାହା ଛଡ଼ାଇ ନିଆଯାଉଛି, ଭାରତ ସେପରି ଯୁଦ୍ଧ ସହିତ କୌଣସି ସମ୍ପର୍କ ରଖିବ ନାହିଁ ।'' ୧୦-୧୦-୧୯୩୯ରେ ଅଖିଳ ଭାରତ କଂଗ୍ରେସ କମିଟୀ

ଏ ଘୋଷଣାକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ କହିଲେ, ''ଇଂରେଜ ସରକାର ଭାରତକୁ ସ୍ୱାଧୀନ ବୋଲି ଘୋଷଣା କରନ୍ତୁ ଓ ସଙ୍ଗେ ସଙ୍ଗେ ଯେତେ ଅଧିକ ପରିମାଣରେ ସମ୍ଭବ, ସେତେ ଅଧିକ ପରିମାଣରେ ତା'ର ସ୍ୱାଧୀନତା କାର୍ଯ୍ୟକାରୀ କରନ୍ତୁ ।''

୧୯୪୦ ମସିହା ବେଳକୁ ମୁସଲିମ୍ ଲିଗ୍ ଭାରତରୁ ଅଲଗା ହେବା ଲାଗି ଏକ ସ୍ୱତନ୍ତ୍ର ରାଷ୍ଟ୍ର ଦାବି କରିବା ମସୁଧା ଆରମ୍ଭ କରିଦେଇଥିଲା । ଏହାର ସଭ୍ୟମାନେ କଂଗ୍ରେସ ଦଳର କୌଣସି କଥା ମାନିବାକୁ ପ୍ରସ୍ତୁତ ନଥିଲେ । ୧୯୪୦ ଜୁଲାଇ ୨୭ ଓ ୨୮ ତାରିଖରେ ପୁନାଠାରେ ଅଖିଳ ଭାରତୀୟ କଂଗ୍ରେସ କମିଟୀର ଅଧିବେଶନରେ ଗୋଟିଏ ଜାତୀୟ ସରକାର ଗଢ଼ାଗଲେ କଂଗ୍ରେସ ଭାରତର ପ୍ରତିରକ୍ଷାରେ ସାହାଯ୍ୟ କରିବ ବୋଲି ପ୍ରସ୍ତାବ ପାଶ୍ ହେଲା ।

୧୯୪୦ ଅଗଷ୍ଟ ୮ରେ କଂଗ୍ରେସର ଦାବି ଦେଖି ଇଂରେଜ ସରକାର ଗୋଟିଏ ନୂଆ ନୀତି ଘୋଷଣା କଲେ ଯେ, ଲାଟସଭାରେ ସଭ୍ୟସଂଖ୍ୟା ବଢ଼ିବ ଓ ସରକାରଙ୍କୁ ପରାମର୍ଶ ଦେବା ପାଇଁ ଗୋଟିଏ ଯୁଦ୍ଧ କମିଟି ଗଢ଼ା ହେବ । ଯେଉଁମାନେ ସଂଖ୍ୟାଲଘୁ ସଂପ୍ରଦାୟ, ସେମାନଙ୍କ ସ୍ୱାର୍ଥହାନି ହେଲା ଭଳିଆ କୌଣସି ଶାସନ ପଦ୍ଧତି ହେବ ନାହିଁ । ଯୁଦ୍ଧ ସରିଲା ପରେ ଗୋଟିଏ ସର୍ବଭାରତୀୟ ଦଳ ଗଠନ କରାଯିବ ଓ ନୂଆ ସମ୍ବିଧାନ ତିଆରି ହେବ । ସରକାରଙ୍କ ଏହି ଘୋଷଣା କଂଗ୍ରେସ କିମ୍ବା ମୁସଲିମ୍ ଲିଗକୁ ସନ୍ତୁଷ୍ଟ କରିପାରିଲା ନାହିଁ । ମୁସଲିମ୍ ଲିଗ୍ ଭାରତ ଭାଗହେଉ ବୋଲି ଦାବିକଲା । କଂଗ୍ରେସ ସ୍ଥିରକଲା ଯେ ଗାନ୍ଧିଜୀଙ୍କ ନେତୃତ୍ୱରେ ସାରା ଭାରତରେ ଗଣ-ଆନ୍ଦୋଳନ ଆରମ୍ଭ କରାଯିବ । ଏହି ଆନ୍ଦୋଳନ କେବଳ ସ୍ୱାଧୀନତା ପାଇଁ ହେବ ତା' ନୁହେଁ, ଯୁଦ୍ଧ ବିରୁଦ୍ଧରେ ମଧ୍ୟ ପ୍ରଚାର କରି କର୍ମୀମାନେ ସତ୍ୟାଗ୍ରହୀ ଭାବେ ସ୍ୱଇଚ୍ଛାରେ ବହୁସଂଖ୍ୟାରେ, ଆଗରୁ ସରକାରଙ୍କୁ ସୂଚନା ଦେଇ ଗିରଫ ହେବେ ଓ ଜେଲ ଯିବେ । ଏମିତି ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେବ ।

ବ୍ୟକ୍ତିଗତ ସତ୍ୟାଗ୍ରହ ୧୯୪୦ ଅକ୍ଟୋବର ୧୭ରେ ଆରମ୍ଭ ହେଲା । ଗାନ୍ଧିଜୀଙ୍କ ପରାମର୍ଶରେ ବିନୋବାଭାବେ ''ଇଂରେଜ ସରକାରର ଯୁଦ୍ଧ ଉଦ୍ୟମରେ ଧନ ବା ଜନ ଦେଇ ସାହାଯ୍ୟ କରିବା ପାପ'' ଧ୍ୱନି ଦେଇ ଗିରଫ ହେଲେ । ସେ ହେଲେ ୧୯୪୦ ମସିହାର ପ୍ରଥମ 'ବ୍ୟକ୍ତିଗତ ସତ୍ୟାଗ୍ରହୀ' । ଏହି ବ୍ୟକ୍ତିଗତ ସତ୍ୟାଗ୍ରହରେ କେବଳ ଓଡ଼ିଶାରୁ ୫୦୦ ଜଣ 'ବ୍ୟକ୍ତିଗତ ସତ୍ୟାଗ୍ରହ' କରି ଜେଲ ଗଲେ । କୋରାପୁଟ ଜିଲ୍ଲାର ସତ୍ୟାଗ୍ରହୀ ସଦାଶିବ ବେହେରା, କୋରାପୁଟ ଜେଲରେ ୧୯୪୧ରେ ପୋଲିସ ଅତ୍ୟାଚାରରେ

ମୃତ୍ୟୁବରଣ କଲେ । କୋରାପୁଟ ଜିଲ୍ଲାର ବହୁକର୍ମୀ ୧୯୪୦-୪୧ ମସିହାରେ 'ବ୍ୟକ୍ତିଗତ ସତ୍ୟାଗ୍ରହ' କରି ଗିରଫ ହୋଇଥିଲେ ।

ଗାନ୍ଧିଜୀ, ରଚନାତ୍ମକ କର୍ମୀମାନେ 'ବ୍ୟକ୍ତିଗତ ସତ୍ୟାଗ୍ରହ'ରେ ସାମିଲ ନହୋଇ ସମାଜର ଦଳିତ ବର୍ଗମାନଙ୍କ ପାଇଁ କାମ କରିବାକୁ ତାଙ୍କ ସଂପାଦିତ ପତ୍ରିକା ଗୁଡ଼ିକରେ ଲେଖା ଲେଖିଲେ । ବରୀ ଆଶ୍ରମରେ ଗୋପବାବୁ ଗାନ୍ଧିଜୀଙ୍କ ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବାକୁ ନିଷ୍ପତ୍ତି ନେଲେ । ଫଳରେ ବିଶ୍ୱନାଥ ବାବୁ ରଚନାତ୍ମକ କର୍ମୀଭାବେ ଓଡ଼ିଶାର କୌଣସି ଗୋଟିଏ ଗାଁରେ ବ୍ୟକ୍ତିଗତ ଭାବେ କାମ କରିବା ପାଇଁ ଗୋପବାବୁଙ୍କ ପରାମର୍ଶ ଚାହିଁଲେ । ସେତେବେଳର କଥାକୁ ସଂଗ୍ରାମୀ ଓ ରଚନାତ୍ମକ କର୍ମୀ ରାମ ମୋହନ ଦାସ, ତାଙ୍କ ସଂସ୍ମରଣରେ ଲେଖିଛନ୍ତି (୨୪-୫-୮୯) :

''୧୯୩୯ରେ ଦ୍ୱିତୀୟ ପୃଥିବୀ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଭାରତକୁ ଯୁଦ୍ଧରେ ଜବରଦସ୍ତ ପୂରାଇ ଦିଆଗଲା । ସମଗ୍ର ଭାରତରେ ଅଶାନ୍ତି ବ୍ୟାପିଗଲା । କଂଗ୍ରେସର ନିର୍ଦ୍ଧାରଣ ଅନୁସାରେ ୧୯୪୦ ମସିହାରେ ସରକାରରୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ । ବ୍ୟକ୍ତିଗତ ସତ୍ୟାଗ୍ରହ ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶରେ ଓ ନୀତିରେ ଚାଲିଲା । ଉକ୍ତ ସତ୍ୟାଗ୍ରହରେ ଯୋଗଦେଇ ମୁଁ ବି ଜେଲ ଯିବା ପାଇଁ ଛଟପଟ ହେଲି । କିନ୍ତୁ ମୁଁ ତ ସେପରି ସତ୍ୟାଗ୍ରହ କରି ପାରିବି ନାହିଁ । ସତ୍ୟାଗ୍ରହ କରିବା ପାଇଁ ମତେ କଂଗ୍ରେସ ମନୋନୀତ କରିବାକୁ ହେବ । ସେତେବେଳେ ପ୍ରତ୍ୟେକ ପ୍ରଦେଶରେ ମହାତ୍ମା ଗାନ୍ଧୀଙ୍କ ମନୋନୀତ ପ୍ରତିନିଧିମାନେ ଥିଲେ । ପ୍ରାଦେଶିକ କଂଗ୍ରେସ କମିଟୀ ଦ୍ୱାରା ମନୋନୀତ ତାଲିକା ପ୍ରାଣକୃଷ୍ଣ ପଡ଼ିହାରୀ ଓ ମନମୋହନ ଚୌଧୁରୀ ଗାନ୍ଧୀଙ୍କ ନିକଟକୁ ପଠାଉଥିଲେ । ତାକୁ ଗାନ୍ଧୀ ମଞ୍ଜୁର କଲେ ସେମାନେ ସତ୍ୟାଗ୍ରହରେ ଯୋଗଦେଉଥିଲେ । ସତ୍ୟାଗ୍ରହୀମାନଙ୍କର ଯୋଗ୍ୟତା ଭିତରେ ସୂତାକଟା ଥିଲା ପ୍ରଧାନ । ମୁଁ ସେତେବେଳେ ଉତ୍କଳ ଚରଖା ସଂଘର ସଦର ଅଫିସ କେନ୍ଦୁପାଟଣାରେ ଥାଏ । ଉତ୍କଳ ଚରଖା ସଂଘର ସମ୍ପାଦକ ଥିଲେ ୰କୃପାସିନ୍ଧୁ ପଣ୍ଡା । ୰ ଗୋପବନ୍ଧୁ ଚୌଧୁରୀ ଥିଲେ ନିଖିଳ ଭାରତ ଚରଖା ସଂଘର ଓଡ଼ିଶା ପାଇଁ ସମ୍ପାଦକ । ଗୋପବାବୁ ଓ ରମାଦେବୀ ଦିନେ ପହଞ୍ଚିଲେ କେନ୍ଦୁପାଟଣାରେ । ସଂଧ୍ୟା ପ୍ରାର୍ଥନାପରେ ଗୋପବାବୁ ପଚାରିଲେ କୃପାସିନ୍ଧୁ ବାବୁଙ୍କୁ ଯେ, ଚରଖା ସଂଘରୁ କେହି ସତ୍ୟାଗ୍ରହ କରିବାକୁ ଇଛା ପ୍ରକାଶ କରିଛନ୍ତି କି ? କୃପାସିନ୍ଧୁ ବାବୁ ମୋ ନାମ କହିଲେ । ତା'ପରେ ସମସ୍ତେ ଉଠି ଚାଲିଯିବା ପରେ ଗୋପବାବୁ ମତେ ଡାକି କହିଲେ, ''ଯେଉଁମାନେ ଖଦୀ, ହରିଜନ ସେବା ପ୍ରଭୃତି ଗଠନ ମୂଳକ କାମ କରୁଛନ୍ତି, ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶ

ସେମାନେ ସତ୍ୟାଗ୍ରହ ନକରି ବରଂ ସେହି କାମରେ ଅଧିକ ମନଯୋଗ ଦେଇ ଲାଗିଯିବା ଉଚିତ । ତେବେ ତମେ ଯଦି ସତ୍ୟାଗ୍ରହ କରିବାକୁ ଇଚ୍ଛା କରୁଛ ତେବେ ସତ୍ୟାଗ୍ରହୀଙ୍କୁ ତାଲିମ ଦେବା କାମ କରିବ । ସେମାନଙ୍କୁ ସୂତାକଟା ଶିଖାଇବ ଓ କିପରି ଅହିଂସା ଆଚରଣ କରିବାକୁ ହେବ ସେ ବିଷୟରେ ଶିକ୍ଷାଦେବ । ସେହି କାମରେ ତମକୁ ଲଗାଯିବ ଓ ତମେ କୋରାପୁଟ ଜିଲ୍ଲାକୁ ଯିବ । ମୁଁ ସ୍ୱୀକୃତ ଦେଲି ।''

ଏହିପରି ବରୀ ଆଶ୍ରମରୁ ତାଲିମ ନେଇ ରାମମୋହନ ଦାସ କୋରାପୁଟ ଆସିଲେ । ସେହିପରି ବିଶ୍ୱନାଥ ପରିଡ଼ା ଓ ବିଶ୍ୱନାଥ ପଟ୍ଟନାୟକ ଉଭୟେ ରଚନାତ୍ମକ କର୍ମୀଭାବେ ଗ୍ରାମାଞ୍ଚଳରେ କାର୍ଯ୍ୟ କରିବାକୁ ଚାହାନ୍ତି ବୋଲି ଗୋପବାବୁଙ୍କୁ ଜଣାଇଲେ । ସେତେବେଳକୁ ଢେଙ୍କନାଳ ଜିଲ୍ଲାର ଅନୁଗୁଳ ଓ କୋରାପୁଟ ଜିଲ୍ଲାର ଗୁଣୁପୁର ଠାରେ ବ୍ୟାପକଭାବେ କପାଚାଷ ହେଉଥାଏ ।

ଗୋପବାବୁ ୧୯୪୧ ମସିହା ଜାନୁଆରୀ, ଫେବୃଆରୀ ମାସରେ ବିଶ୍ୱନାଥ ବାବୁଙ୍କୁ ଗୁଣୁପୁର ଅଞ୍ଚଳର କପା ଚାଷ ଓ ଖଦୀକାମ ଦେଖିବା ପାଇଁ ପଠାଇଲେ । ୧୯୪୧ ମସିହା, କୋରାପୁଟ ଜିଲ୍ଲାରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହୋଇଯାଇଥାଏ । ଗୁଣୁପୁରର ପ୍ରହ୍ଲାଦ ପାଣିଗ୍ରାହୀ, ସେ ଅଞ୍ଚଳର ଜଣେ ବଡ଼ କଂଗ୍ରେସ କର୍ମୀ । ଗୋପବାବୁ ଖଣ୍ଡେ ଚିଠିରେ ତାଙ୍କୁ ବିଶ୍ୱନାଥ ବାବୁଙ୍କୁ ସାହାଯ୍ୟ କରିବା ପାଇଁ ଲେଖି, ବିଶ୍ୱନାଥଙ୍କ ହାତରେ ଧରାଇଦେଲେ ।

ସେହି ଚିଠି ଖଣ୍ଡକୁ ଧରି ବିଶ୍ୱନାଥ ବାବୁ ୧୯୪୧ରେ ଟ୍ରେନରେ ବରୀରୁ କଟକ ଦେଇ ନଉପଡ଼ା ଆସି, ପରଳାଖେମୁଣ୍ଡି ଗୁଣୁପୁର ମିଟରଗେଜ୍ ଟ୍ରେନ୍‌ଧରି ଗୁଣୁପୁରରେ ପହଞ୍ଚିଲେ । ସେତେବେଳକୁ ସୂର୍ଯ୍ୟ ଅସ୍ତ ହେଉଥିଲେ ।

## ଗୁଣୁପୁର : ଜୟପୁର ଇଷ୍ଟେଟର ଅଞ୍ଚଳ :

୧୯୪୧ ମସିହା ବେଳକୁ ଗୁଣୁପୁର ଜୟପୁର-ଇଷ୍ଟେଟ (କୋରାପୁଟ ଜିଲ୍ଲା)ର ଏକ ନଈ, ବଣ, ପାହାଡ଼ ଘେରା ସଉରା ଓ କନ୍ଧ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । କୋରାପୁଟ ଜିଲ୍ଲା, ରାୟଗଡ଼ା ତହସିଲର ପୂର୍ବଦିଗରେ ବିଷମକଟକ ତହସିଲର ୫୯୭ ବର୍ଗ ମାଇଲ ଅଞ୍ଚଳ ତଥା ବିଷମକଟକ ଥାନାର ୪୯୧ଟି ଗ୍ରାମ, ଅମ୍ବାଦୋଲା ଥାନାର ୩୭୩ଟି ଗ୍ରାମ ତଥା ଗୁଣୁପୁର ତହସିଲର ୧୦୫୨ ବର୍ଗ ମାଇଲ ଅଞ୍ଚଳ ମଧ୍ୟରେ ଥିବା ଗୁଣୁପୁର ଥାନାର ୧୮୦ଟି ଗ୍ରାମ, ପୁଟାସିଙ୍ଗ ଥାନାର ୬୩ଟି ଗ୍ରାମ, ଗୁଡ଼ାରୀ ଥାନାର ୩୪୬ଟି ଗ୍ରାମ ତଥା

ପଦ୍ମପୁର ଥାନାର ୧୦୨ଟି ଗ୍ରାମ ଓ ଗୁଣୁପୁର ସହରକୁ ନେଇ ଗଠିତ ଅଞ୍ଚଳ । ବଂଶଧାରା ଓ ନାଗାବଳୀ ନଦୀ ଏହି ଅଞ୍ଚଳରେ ପ୍ରବାହିତ । ପୂର୍ବଘାଟ ପର୍ବତମାଳାର ଅଂଶ ବିଶେଷ ବହୁ ସାନ ବଡ଼ ପାହାଡ଼କୁ ନେଇ ଏହି ଅଞ୍ଚଳ ଗଠିତ । ବହୁ ବ୍ରୋରୁ (ପାହାଡ଼) ଓ କନ୍ଧମାନଙ୍କର ବହୁତଙ୍ଗର, କୋଣ୍ଡା (ପାହାଡ଼)କୁ ନେଇ ଏହି ଅଞ୍ଚଳ । ସାଧାରଣତଃ ଏହି ଆଦିବାସୀମାନେ ସେମାନଙ୍କ ଲୋକ ଦେବତାଙ୍କ ନାମ ଅନୁସାରେ ପାହାଡ଼ଗୁଡ଼ିକର ନାମ ଦେଇଥାନ୍ତି ଯଥା ଏଲ୍‌ଦାସିଙ୍ଗ୍ ବ୍ରୋରୁ (ଦେବତାମାନଙ୍କ ବସା ପର୍ବତ), ସୁଡ଼ା ବ୍ରୋରୁ (ଦେବତାମାନେ ସୁନାଦେଇ ଫେରସ୍ତ ନେଉଥିଲେ), ଦା ଆଡ଼ାଙ୍ଗ୍ ବ୍ରୋରୁ (ବଡ଼ ବଡ଼ ସାପ ଥିବା ପର୍ବତ), ଗାଲ୍‌ପାଲ ବ୍ରୋରୁ (କୁମ୍ଭାର ହାଣ୍ଡି ନେଉଥିଲା ବେଳେ ଦେବତା ହାଣ୍ଡିନେଲେ), ଲୁରୁନି ବ୍ରୋରୁ (ପାଣି ଝରିବା ପାହାଡ଼) । ଏମିତି କେତେ ନାଆଁ, ତା' ପଛରେ କେତେ କାହାଣୀ, କେତେ କିମ୍ବଦନ୍ତୀ । ଏହି ଆଦିବାସୀ ଅଞ୍ଚଳରେ ଯେତେବେଳେ ସଂଜ ହୁଏ, ଆଦିବାସୀ ଘରେ ଘରେ ଶୁଖିଲା ମୁଣ୍ଡାକାଠରେ ନିଆଁ ଲଗାଇ ପରିବାର ଲୋକେ ହାତ ସେକନ୍ତି । ଆମ୍ବଟାକୁଆ ଚୂନାର ଜାଉ, ମାଣ୍ଡିଆପେଜ ଲୁଣ ଲଗାଇ ଖାଆନ୍ତି । ଜହ୍ନ ଉଏଁ । କେଉଁଠି ବାଇଦ ବାଜେ । ନାଚ ଆରମ୍ଭ ହୁଏ । କେତେଗୀତ ଶୁଭେ । ଜମି ଓ ପୋଡୁଚାଷରୁ ଫସଲ ଅମଳ ବେଳେ ସଉରାମାନେ ଗାଆନ୍ତି ମେରିଆ ଗୀତ। ଆନନ୍ଦ ପାଇଁ, ଜୀବନକୁ ଜୀଇଁବା ପାଇଁ ।

ସଉରା ଗାଁ ନିଦେଇ ଯାଏ ରାତିର ଅନ୍ଧାରରେ । ଆକାଶରେ ଜହ୍ନ ଆଉ ତାରା । ଆକାଶରୁ ଶାଳଗଛର ଫାଙ୍କ ଦେଇ କାକର ଝରେ ଟୁପ୍‌ଟାପ୍ । ଜହ୍ନ ଆଲୁଅର ଛାଇ ଆଲୁଅ ଖେଳ ଧୂସର ମାୟା ସର୍ଜିଯାଏ ମନରେ । ଏକାନ୍ତ ଆଦିମ ସ୍ୱପ୍ନରେ ବିଭୋର ହୋଇଯାଏ ସଉରା ଯୁବକର ମନ । ଯୁବତୀର ଖୋସାରେ ମହକି ଯାଏ କୁନ୍ଦଫୁଲ । କନ୍ଧଯୁବକ ଗାଏ ତା'ର ବରଷାର ଗୀତ । ସେ ଗୀତ ବିଜୁଳି ଆଲୁଅ ପରି ଝଲମଲ, କଳାମେଘ ପରି ନିବିଡ଼ । ବର୍ଷା ଝରଣା ପରି ଚଞ୍ଚଳ । ଫୁଟନ୍ତା କଦମ୍ବ ପରି ଆକର୍ଷକ ହୁଏ । ଏମିତି ସେ ଗୁଣୁପୁର, ଆଦିମ ମଣିଷର ବାସଭୂମି, ଆଦିଭୂମି, ଯାହା ୧୯୪୦ ବେଳକୁ ଅତ୍ୟାଚାରର କର୍କଶ ସ୍ପର୍ଶରେ ଲହୁଲୁହାଣ ହୋଇଥିଲା । ଦଳିତ, ନିଷ୍ପେଷିତ ବନବାସୀ ମଣିଷ, ଧୋବ ଧାଉଳିଆ ମଣିଷର ପ୍ରପଞ୍ଚରେ ମରି ମରି ଜୀଇଁଥିଲା, ସେତେବେଳେ ବିଶ୍ୱନାଥ ପଟ୍ଟନାୟକ ପାଦଦେଲେ ଏଇ ମାଟିରେ । ଏକ ନୂଆ ପାଣି, ପବନ, ମାଟିର ସ୍ପର୍ଶରେ କେମିତି ଏକ ନୂଆ ଅନୁଭୂତିକୁ ନେଇ ଦୁଃଖ, ଯନ୍ତ୍ରଣା, ଅଶିକ୍ଷା, କୁସଂସ୍କାର, ଅନ୍ଧ ବିଶ୍ୱାସ ଭିତରେ ବଞ୍ଚୁଥିବା ମଣିଷକୁ ସେ ଦେଖିଲେ ଅତି ନିକଟରୁ । ତାଙ୍କର ମନେପଡ଼ିଲା ବରୀ ଆଶ୍ରମରେ ଗାଉଥିବା ପ୍ରାର୍ଥନାରୁ ପଦେ :

''ଯେଉଁଠାରେ ଖାଲି ଲୁହ ମହାପ୍ରଭୁ, ସେଇଠାକୁ ମୋତେ ନିଅ ।'' ତା'ପରେ ୧୯୪୧ରୁ ୧୯୫୮, ଦୀର୍ଘ ଅଠର ବର୍ଷ ସେ ରହିଗଲେ ଏହି ମାଳ ଅଞ୍ଚଳରେ ମଣିଷର ସେବାକରି ।

## ବିଶ୍ୱନାଥଙ୍କ ନିଜ ଭାଷାରେ ଗୁଣୁପୁର ପ୍ରବେଶ :

''ଯେତେବେଳେ ଗୁଣୁପୁରରେ ପହଞ୍ଚିଲି ପ୍ରହଲ୍ଲାଦ ବାବୁଙ୍କଠାକୁ ପୂଜ୍ୟ ଗୋପବାବୁଙ୍କର ଚିଠି ନେଇ ଆସିଥିଲି ଏବଂ ଗୁଣୁପୁରରେ ଖଦୀ ଭଣ୍ଡାର ଥିଲା । ତା'ର ମ୍ୟାନେଜରଙ୍କଠାକୁ ମଧ ଚିଠି ଗୋପବାବୁ ଦେଇଥିଲେ । ଗୁଣୁପୁରରେ ପହଞ୍ଚି ଖାଦ୍ୟ ହୋଟେଲରେ ରହି (ସଂପ୍ରତି ବସଷ୍ଟାଣ୍ଡ ହୋଇଥିବା ଯାଗା), ତାଙ୍କଠାରୁ ପହଲ୍ଲାଦ ପାଣିଗ୍ରାହୀଙ୍କର ଏବଂ ଖଦୀ ଭଣ୍ଡାରର ଖବର ନେଇ ସେମାନଙ୍କୁ ସାକ୍ଷାତ କରି କଥାବାର୍ତ୍ତା କଲି । ଖଦୀ ଭଣ୍ଡାର ମ୍ୟାନେଜର ବିଶେଷ କିଛି କଲେ ନାହିଁ । ପ୍ରହଲ୍ଲାଦ ବାବୁ ଧର୍ମଶାଳାରେ ରହିବା ବ୍ୟବସ୍ଥା କରିଦେଲେ । ମୁଁ ସେଠାରେ ରହି ଗାଁ ଗାଁ ବୁଲି ଗ୍ରାମବାସୀଙ୍କ ସହ ସଂପର୍କ ରଖିବାକୁ ଚେଷ୍ଟାକଲି ।

ଗାଁ ଲୋକେ ସେତେବେଳେ ଭୟଭୀତ ତେଣୁ ସହଯୋଗ ସେମାନଙ୍କ ଠାରୁ ନମିଳିଲେ ମଧ ପ୍ରଥମେ ମୁଁ ଲୋକଙ୍କ ମଧ୍ୟରୁ ଡର ଛଡ଼ାଇବା ପାଇଁ ଉଦ୍ୟମ କଲି । ଲୋକଙ୍କ ମଧ୍ୟରୁ ଭୟ କିପରି ଦୂର ହେବ, ସରକାରଙ୍କ ବିରୋଧରେ କହିବାକୁ କିପରି ସାହସ ହେବ, ସରକାରଙ୍କ ଅନ୍ୟାୟ, ଅସତ୍ୟ, ଜୁଲୁମ୍, ବେଠି, ଭେଟି ଆଦି ବିରୋଧରେ କହିବାକୁ କିପରି ସାହସ ହେବ, ସେ ଉଦ୍ୟମରେ ଗାଁ ମାନ ବୁଲିଲି । କେଉଁ ଗାଁରେ ଆଶ୍ରୟ ନେବାକୁ ଚେଷ୍ଟା କରି ୨/୫ ଦିନ ରହିବା ପରେ ପୁଣି ମନାକରିବା ଦେଖି ଗୁଣୁପୁରରେ ରହି ଯିବାଆସିବା କଲି । ଦିନେ ଗୁଣୁପୁରରେ ପ୍ରହଲ୍ଲାଦବାବୁଙ୍କ ସହ ଥିବା ସମୟରେ କୁଢେନ୍ଦ୍ରୀ ଗାଁର ବାଇରୁ ଗମାଙ୍ଗୋ ସହ ଦେଖାହେଲା ।

ପ୍ରହଲ୍ଲାଦ ବାବୁ ବାଇରୁ ଗମାଙ୍ଗୋକୁ କହିଲେ, ''ବିଶ୍ୱନାଥ ଆଞ୍ଚା ଆସିଛନ୍ତି । ତାଙ୍କୁ ତୁମ ଗାଁ'ରେ ଜାଗା ଟିକିଏ ଦିଅ । ସେ ତୁମ ଗାଁ'ରେ ରହି ସୂତାକଟା ଆଦି ସହ ଗାନ୍ଧୀ କଥା ମଧ କହିବେ । ପିଲାଙ୍କୁ ପାଠ ପଢ଼ାଇବେ ।''

ବାଇରୁ ଗମାଙ୍ଗୋ, ଗୁଣୁପୁର ଠାରୁ ଦକ୍ଷିଣ ଦିଗରେ ଥିବା ବଣ ପାହାଡ଼ ଘେରା ଗୋଟିଏ ଆଦିବାସୀ ଗାଁ କୁଢେନ୍ଦ୍ରୀର ମୁଖିଆ । ସେ ଅଞ୍ଚଳର ମାନ୍ୟଗଣ୍ୟ ବ୍ୟକ୍ତି । କିଛି

ପାଠ ପଢ଼ିଥିବା, ସଉରା ଭାଷା, ତେଲୁଗୁ କହି ପାରୁଥିବା, କିଛି କିଛି ଓଡ଼ିଆ ବୁଝି କହି ପାରୁଥିବା ବ୍ୟକ୍ତି । ପ୍ରଥମ ଦେଖାରେ ବିଶ୍ୱନାଥ ବାବୁଙ୍କୁ ପସନ୍ଦ କରିଗଲେ । ଆଦିବାସୀ ମଣିଷ ଥରେ ଯାହାକୁ ବିଶ୍ୱାସ କରିଯାଏ, ସେ ବିଶ୍ୱାସ ସହଜରେ ତୁଟେ ନାହିଁ । ବାଇରୁ ଗମାଙ୍ଗୋ ବିଶ୍ୱନାଥ ବାବୁଙ୍କୁ ତାଙ୍କ ଗାଁ'କୁ ଆସିବାକୁ କହିଲେ ନିଜ ଖଣ୍ଡି ଓଡ଼ିଆରେ ।''

## ଗୁଣୁପୁରରୁ କୁଜେନ୍ଦ୍ରୀ :

୧୯୪୧ ମସିହା ଫେବୃଆରୀ ମାସ ପ୍ରଥମ ସପ୍ତାହ । କୋରାପୁଟିଆ ଶୀତ । ଦେହର ମଞ୍ଜ ଥରେଇ ଦଉଛି । ଘନ କୁହୁଡ଼ି ଭିତରେ ସାରା ଗୁଣୁପୁର । ହାତକୁ ହାତ ଦିଶୁ ନାହିଁ । ବଡ଼ି ଭୋରରୁ ଉଠିଲେ ବିଶ୍ୱନାଥ ବାବୁ । ସେତେବେଳକୁ ଧର୍ମଶାଳାର କାଁ ଭାଁ କୌଣସି କୋଠରୀ ଖୋଲାଥିଲା । ବରୀ ଆଶ୍ରମର ଅଭ୍ୟାସ ମତେ ବିଶ୍ୱନାଥ ବାବୁ ନିତ୍ୟକର୍ମ ସାରି ପ୍ରାର୍ଥନା କଲେ । ଘଣ୍ଟାଏ ସୂତା କାଟିଲେ । ଚାରିଆଡ଼ ଉଜ୍ଜ୍ୱଳ ହେଲା । ଆଣ୍ଠୁ ନଳୁଚା ଖଦଡ଼ ଲୁଗା ଖଣ୍ଡେ ପିନ୍ଧି, ଖଣ୍ଡେ ଚାଦର ଘୋଡ଼ି ହୋଇ, କାନ୍ଧରେ ଝୁଲାମୁଣି ଝୁଲାଇ ସେ ବାହାରିଲେ ଗୁଣୁପୁର ଠାରୁ ୬ ମାଇଲ ଦକ୍ଷିଣରେ ଥିବା ସଉରା ଆଦିବାସୀଙ୍କ ଗାଁ କୁଜେନ୍ଦ୍ରୀକୁ ପାଦରେ ଚାଲି ଚାଲି, ଆତ୍ମ ବିଶ୍ୱାସକୁ ନେଇ । ଯୁଆଡ଼େ ଦେଖ ଗଛବୃଛ, ଦ୍ରୁମ, ଦାରୁ । ଶୀତୁଆ ପବନ । ପାଦଚଲା ରାସ୍ତା । ଚାରିଆଡ଼େ ଛୋଟ ବଡ଼ ଅନେକ ପାହାଡ଼ : କାଚି ବ୍ରୋରୁ, ରାଗାଇ ବ୍ରୋରୁ, ଆଡ଼ାମ୍ ବ୍ରୋରୁ, ଜାଲମେତା ବ୍ରୋରୁ, ଗୁଡ଼ା ବ୍ରୋରୁ । ଏମାନଙ୍କ ଭିତରେ ବାଟ କାଢ଼ି ବୋହି ଯାଉଛି ବଂଶଧାରା ନଈ, କଳାହାଣ୍ଡିର ଲାଞ୍ଜିଗଡ଼ ଅଞ୍ଚଳରୁ ବାହାରି ଅମ୍ବାଦୋଲା, ବିଷମ କଟକ, ଗୁଡ଼ାରି, ବାମିନି, ଚାଲକମ୍ପା, ଗୁଣୁପୁର ହୋଇ ଦକ୍ଷିଣକୁ, ପଶିଯାଇଛି ଆନ୍ଧ୍ର ଭିତରେ, ତା'ପରେ ସାଗର ମୁହାଁ । ପଡ଼ାଣି, ଉଠାଣି ବାଟ ଦେଇ ବଣ ପାହାଡ଼ ପାର ହୋଇ ବିଶ୍ୱନାଥ ବାବୁ ପହଞ୍ଚିଲେ କୁଜେନ୍ଦ୍ରୀ ଗାଁରେ, ଦିନ ସେତେବେଳକୁ ସକାଳ ଆଠଟା ଖଣ୍ଡେ ହେବ ।

## କୁଜେନ୍ଦ୍ରୀ ଗ୍ରାମ ଓ ସଉରାମାନଙ୍କ ଜୀବନ ଓ ଜୀବିକା :

ସେତେବେଳ ଗୁଣୁପୁର ଗୋଟିଏ ବଡ଼ ଗାଁ । ସେହି ଗାଆଁରେ ଥାନା ଥାଏ । ତହସିଲ ଅଫିସ ବି ଥାଏ । ଗୁଣୁପୁରର ସବ୍‌ଡ଼ିଭିଜନ ଅଫିସ୍ ରାୟଗଡ଼ାରେ । ଗୁଣୁପୁରରେ ବେଶୀ ଭାଗ ଲୋକ ଅଣ ଆଦିବାସୀ । ଆନ୍ଧ୍ର ତେଲେଙ୍ଗାଙ୍କ ସଂଖ୍ୟା ବି କିଛି କମ୍ ନୁହେଁ ।

ଏମାନଙ୍କ ହାତରେ ବେପାର ବାଟ । ଓଡ଼ିଶା ଲୋକ ଏଠି ତେଲେଙ୍ଗା କହନ୍ତି ଖୁବ୍ ଭଲ ଭାବେ । ଆଦିବାସୀ ଲୋକ ରହନ୍ତି ବଣରେ, କାଁ ଭାଁ ଆସନ୍ତି ଏଠାକୁ, ସେମିତି ଦରକାର ପଡ଼ିଲେ, ହାଟ ବାଟ କରିବାକୁ । ବଣ, ପର୍ବତ, ନଈ, ନାଳ, ବଣ ପଶୁ ମେଳରେ ଏମାନଙ୍କ ଜୀବନ କଟେ । ଆବଶ୍ୟକତା ଖୁବ୍ କମ୍ । ପେଜ, ଜାଉ, ଭାତ, କେତେବେଳେ କେମିତି ମାଂସ ଟିକିଏ, ପୋଡ଼ା ଶୁଖୁଆ । ମଦ ନହେଲେ ନଚଳେ । ଅଣ୍ଡିରାଏ ମଦ ପିଇ ମାତାଲ ହୁଅନ୍ତି । ମଦ ପିଆକୁ ନେଇ ଝଗଡ଼ାଝାଟି ହୁଏ । ଅଭାବୀ ଜୀବନ । ଋଣ କରି ମଦ ପିଇ ଉଚ୍ଛନ୍ନ ହେବା, ଧୋବ ଧଉଳା ବାବୁଙ୍କ ଅଦଉତି ସହି କଷ୍ଟ ପାଇବା ଯେମିତି ଏମାନଙ୍କ ନିୟତି । କୁଜେନ୍ଦ୍ରୀରେ ପହଞ୍ଚିଲେ ବିଶ୍ୱନାଥ ପଟ୍ଟନାୟକ ବାଟ ପଚାରି ପଚାରି ବାଇରୁ ଗମାଙ୍ଗୋ ଘରେ । ସେଠି ବାଇରୁ ଗମାଙ୍ଗୋ ତାଙ୍କୁ ନିଜ ଘରେ ଠାଆ ଦେଲେ ନାହିଁ । ଅନ୍ୟ ବାରଣ୍ଡାରେ ବେଢ଼େଇ ଦେଲେ ଖଜୁରି ପତ୍ର ତିଆରି ତାଟିଟିଏ । ସେଇ ପିଣ୍ଡା ହେଲା ତାଙ୍କ ବୈଠକ ଖାନା, ବସାଘର । ସେଠି ଶୁଆ, ବସା ଆଉ ସବୁ କାମ । ମନଥିଲେ ଉପାୟ ଦିଶେ । ସାଧନା ସାଧକୁ ଛୁଏଁ । ଲକ୍ଷ ଅପହଞ୍ଚ ହୁଏ ନାହିଁ । ଆରମ୍ଭ ହେଲା ବିଶ୍ୱନାଥଙ୍କ ଜନସେବାର ପ୍ରଥମ ପାଠ । ଲୋକ ଚରିତ୍ର ପଢ଼, ତାଙ୍କ ଅନୁସାରେ ନିଜକୁ ଗଢ଼ । ତାଙ୍କ ପରି ହେବାକୁ ଚେଷ୍ଟାକର । ତାଙ୍କ ପରି ନହେଲେ, ଯାହାଙ୍କ ପାଇଁ ଏତେ ଦିନ ସରା, ରାତି ଅନିଦ୍ରା, ସେମାନେ ଦୂରେଇ ଯିବେ । ଥରେ ଦୂରେଇ ଗଲେ ଅବିଶ୍ୱାସର ଖାଇ ଓସାରିଆ ହୋଇଯିବ, ପୋତିବାକୁ ବିଶ୍ୱାସର ମାଟି ପାଇବ ନାଇଁ । ଏଣୁ କୁଜେନ୍ଦ୍ରୀରେ ପ୍ରଥମ ଦିନ ଗାଁ ବୁଲା, ମଣିଷ ଦେଖା, ଚାଲି ଚଳଣ ଅନୁଧ୍ୟାନରେ ଗଲା । ଶୀତ ଦିନ । ସଂଜ ହେଲା, ଘରେ ଘରେ ମାଟି ଦୀପ, ପୋଲାଙ୍ଗ ତେଲରେ ଜଳିଲା । ମଞ୍ଜ ଥରେଇ ଆସିଲା ଶୀତ । ଘର ମଥାନ ଭେଦି ଧୂଆଁ ଉଠିଲା ଉପରକୁ । ମୁଣ୍ଡା କାଠରେ ନିଆଁ ଲଗେଇ ସଉରାମାନେ ବସି ହାତ ସେକିଲେ, ଧୂଙ୍ଗିଆ ପିକା ଲଗାଇଲେ । ମାତାଲ ହୋଇ କିଏ ଗାଇଲା ଗୀତ ତ କାହା ପାଟିରୁ ଶୁଭିଲା ଗାଳି । ବିଶ୍ୱନାଥ ପଟ୍ଟନାୟକ ଦେଖିଲେ କୁଜେନ୍ଦ୍ରୀ ଗାଁକୁ । ପ୍ରାୟ ୧୦୦ଟି ସଉରା ପରିବାରକୁ ନେଇ ଗାଁ । କେତେଘର କନ୍ଧ ପରିବାର, ସାହୁକାର, ହରିଜନ ଓ ଅନ୍ୟବର୍ଗର କିଛି ପରିବାର ମଧ ବାସ କରନ୍ତି । ମହୁଲ, ତେନ୍ତୁଳି, ଶାଳ ଗଛ ଘେରା ଗାଁ । ଚାରି ପାଖରେ ସାନ ବଡ଼ ମୁଣ୍ଡିଆ । ଗାଁକୁ ଲାଗି ଧାନ ଜମି । ଡଙ୍ଗର ଜମି । ଘର ବୋଇଲେ ଝାଟି, ମାଟିର ଗୋଟିଏ କବାଟ ବା ତାଟି ଥିବା ଖଣ୍ଡିଏ ଘର । ସଉରା ପରିବାର ସେଇ ବଖୁରାଏ ଥିବା ଘରେ ରହନ୍ତି ନିଜ ଗାଈ, ଗୋରୁ, ଛେଳି ମେଣ୍ଢା ସହିତ । ଘର ମଝିରେ ମୁଣ୍ଡାକାଠାର ନିଆଁ ଜଳେ । ଘର ଭିତର ସାରା

ଧୂଆଁ । ଦରଶୁଖିଲା ଗୋରୁ ମାଂସର ନାକଫଟା ଆଇଁଷିଣିଆ ଗନ୍ଧ । ଗାଈ ଗୋବର ମୂତର ଗନ୍ଧରେ ଘର ସାରା ରଣଭଣ । ଦର ଲଙ୍ଗଳା ପିଲା, ଲେଙ୍ଗୁଟି ପିନ୍ଧା ମଣିଷ, କୋପୀନ ଓ ଗାମୁଛା ବେଢ଼ଣ ପିନ୍ଧିଥିବା ସ୍ତ୍ରୀକୁ ନେଇ ଗାଁ । ଆଦିମ ମଣିଷ; ଆଦିମ ରହଣି ସହଣି, ଆଦିମ ବିଶ୍ୱାସ, କୁସଂସ୍କାର, ଅନ୍ଧବିଶ୍ୱାସକୁ ନେଇ ବଞ୍ଚୁଥିବା ମଣିଷ; ପୂଜା ପାର୍ବଣ, ପୂଜାରୀ, ଦିସାରୀରେ ଅଖଣ୍ଡ ଆସ୍ଥା ସ୍ଥାପନ କରୁଥିବା ମଣିଷ; କଇଁଛ, ବିଲୁଆ, ସାପ, କୁକୁଡ଼ା, ଛେଳି, ଗୋଧି, ବାଘ, ମୟୁର ଆଦି ପଶୁପକ୍ଷୀଙ୍କୁ ନିଜ ଗୋତ୍ର ପୁରୁଷ ମାନୁଥିବା ମଣିଷଙ୍କୁ ସେ ଦେଖିଲେ ବହୁତ ପାଖରୁ । ବହୁ ଦେବଦେବୀଙ୍କୁ ଏମାନେ ମାନନ୍ତି ।

ଏମାନଙ୍କ ଜୀବନ ଦର୍ଶନ ବି ଅଲଗା । ଏମାନେ ମାନନ୍ତି ମଣିଷର ଦୁଇଟି ଆତ୍ମା ଥାଏ । ସୁଦା ପୁରଦାନ ବା ବଡ଼ ଆତ୍ମା, ସାନ ପୁରାଦାନ ବା ସାନ ଆତ୍ମା । ଏହି ସାନ ଆତ୍ମାକୁ ପୁଣି ବେଲଙ୍ଗ ପୁରାଦାନ ବା ରୂପ ପୁରାଦାନ ବୋଲି ବି କୁହାଯାଏ । ଏମାନଙ୍କ ମତରେ ପାତାଳଭୂମି ମଧ ଏଇ ପୃଥିବୀ ପରି, କେବଳ ଏତିକି ତଫାତ୍ ସେଠି ସବୁବେଳେ ଜହ୍ନ ଆଲୁଅ ପଡ଼ିଥାଏ । ଏହି ପାତାଳରେ ସେମାନଙ୍କ ପୂର୍ବପୁରୁଷ ରହନ୍ତି । ବେଳେ ବେଳେ ବାଟ ପାଇ ପାତାଳରୁ ଆସି ଭୂମଣ୍ଡଳରେ ଉତ୍ପାତ ମଚାନ୍ତି । ଏମାନେ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ନାହିଁ ।

ଏମାନଙ୍କ ମତରେ ଏମାନଙ୍କ ଦେବତାମାନେ ଯାଯାବର ଶ୍ରେଣୀର । ଗୋଟିଏ ଜାଗାରେ ବନ୍ଧା ହୋଇ ରହିବା ଏମାନଙ୍କ ଦ୍ୱାରା ହୁଏ ନାହିଁ । ଆଜି ଏଠି ତ କାଲି ସେଠି । ଏମାନଙ୍କ ଦେବତା ପୂଜାରୀ 'ସମନ' ଜାଣି ପାରନ୍ତି ନାହିଁ କେଉଁ ନିର୍ଦ୍ଦିଷ୍ଟ ସମୟରେ କେଉଁ ଦେବତା କେଉଁଠାରେ ଥାଆନ୍ତି । ସଉରାମାନଙ୍କ ଦେବତା ସୃଷ୍ଟିର ସୀମା ନାହିଁ । ଏମାନଙ୍କ ପୂର୍ବପୁରୁଷ ମରିଗଲା ପରେ ପାତାଳବାସୀ ପାଲଟନ୍ତି ଆଉ 'ଇଦାଇସୁମ' ବା ଦେବତାଭାବେ ପରିଚିତ ହୁଅନ୍ତି । ସଉରାଙ୍କ ବିଶ୍ୱାସରେ 'କିଟୁଂ' ଦେବତା ହେଉଛି ସମଗ୍ର ସୃଷ୍ଟିର ସ୍ରଷ୍ଟା, ସେହି ସୃଷ୍ଟି କରିଛନ୍ତି ମାନବକୁ ଓ ମଣିଷକୃତ ଅନୁଷ୍ଠାନମାନଙ୍କୁ । ସଉରା ଗାଁରେ ଥିବା ପୁରୋହିତ ବୁୟା । ଧର୍ମୀୟ ଅନୁଷ୍ଠାନମାନ କୁରାନମାରାନ, ସମନମାନଙ୍କ ଦ୍ୱାରା କରାଯାଏ । ଏମାନେ ଦେବତାର କ୍ରୋଧ ଶାନ୍ତ କରିବା, ରୋଗର ନିଦାନ କରି ଔଷଧ ଦେବା କାମ କରିଥାନ୍ତି । ଏମାନେ ଏକାଧାରରେ ଡାକ୍ତର, ବଇଦ, ପୁରୋହିତ, ମଣିଷର ମନକଥା ଜାଣିବା ଲୋକ, ଗୁଣି ଗାରେଡ଼ି କରିବା ଲୋକ ଓ ସର୍ବୋପରି ନିଜ ପରମ୍ପରା, ରୀତି ନୀତି ଚାଲି ଚଳଣିର ଜାଗ୍ରତ ପ୍ରହରୀ ଭାବେ କାମ କରିବା ଲୋକ ଭାବେ ସମାଜର ସର୍ବମାନ୍ୟ ହୋଇଥାନ୍ତି । ଦେବତାଙ୍କୁ ସନ୍ତୁଷ୍ଟ କରିବା, ରୋଗ ବଇରାଗରୁ ମୁକ୍ତି ପାଇବା,

ଭଲ ବର୍ଷା ଓ ଫସଲ ପାଇଁ, ବାଘ ଘୋଷଡ଼ା ଓ ଟଣାରୁ ରକ୍ଷା ପାଇବା ପାଇଁ ଦେବତା ନିକଟରେ ବଳି ଦିଅନ୍ତି ।

ଏମିତି ଏକ ଆଦିମ ଜୀବନ ଯାପନ କରୁଥିବା, ବାହାର ସଂସାର ଠାରୁ ଦୂରରେ, ନିଜ ବିଶ୍ୱାସକୁ ପୁଞ୍ଜି କରି ବଞ୍ଚୁଥିବା ସରଳ ସଉରା ମଣିଷକୁ ଦେଖିଲେ ବିଶ୍ୱନାଥ ବାବୁ କୁଜେନ୍ଦ୍ରୀ ଗାଁରେ, ଆଉ ଦେଖିଲେ ସେମାନଙ୍କ ନିଷ୍ପେଷିତ, ପୀଡ଼ିତ, ଶୋଷଣଗ୍ରସ୍ତ ଜୀବନକୁ, ବାହାର ସ୍ୱାର୍ଥାନ୍ୱେଷୀ, ସଭ୍ୟ ବୋଲାଉଥିବା ଲୋକଙ୍କ ଅମାନବୀୟ ବ୍ୟବହାରକୁ । କୁଜେନ୍ଦ୍ରୀ ଗାଁର ଲୋକଙ୍କୁ ବଦଳାଇବା ପାଇଁ ସେ ମନେ ମନେ ପ୍ରତିଜ୍ଞା କଲେ । କୁଜେନ୍ଦ୍ରୀ ସବୁ ଆଦିବାସୀ ଗାଁ ପରି । ଅପରିଷ୍କାର ଅପରିଚ୍ଛନ୍ନ । ଅସ୍ୱାସ୍ଥ୍ୟକର ପରିବେଶ । ଆକାଶରେ ସୂର୍ଯ୍ୟ ଉଠିଲେ, ଗାଁ ଦାଣ୍ଡରେ ଖରାପଡ଼େ । ଖରା ଟିକିଏ ଟାଣ ହେଲେ ଗାଁ ଲୋକେ ଖଜୁରି ପଟି, ବାଉଁଶ ପଟିରେ ଗୋରୁ ମାରି ମାଂସ ଖଣ୍ଡ ଖଣ୍ଡ କରି ଶୁଖାନ୍ତି । ସେଗୁଡ଼ିକୁ ଶୁଖାଇ ମଡ଼ ମଡ଼ ହେଲା ପରେ ଖାଇବା ପାଇଁ ସାଇତି ରଖନ୍ତି । ତା'ର ଦୁର୍ଗନ୍ଧ ଗାଁ ପବନରେ ଖେଳିବୁଲେ । ଏହି ପବନ ଯେ ଦେହ ଖରାପ ହେବାର ଗୋଟେ କାରଣ, ଏହା ତାଙ୍କୁ କେହି କେବେ ବୁଝାଇ ନାହାନ୍ତି ।

ଗାଁ ସାରା ପଲ ପଲ ଘୁଷୁରି । ଘୁଷୁରି, ମାଈ ଘୁଷୁରି, ପିଲାପିଲି ଘରେ ଘରେ । ଯେତିକି ଲୋକ ତା'ର ଚାରିଗୁଣ ଘୁଷୁରୀ । ଗାଁ ସାରା ଘୁଷୁରି ଲଣ୍ଡି । ପାଦେ ଚାଲିହେବ ନାହିଁ । ଏମିତି ଦୁର୍ଗନ୍ଧ ଯେ ମନଭିତର ଯାଏ ଘୁଣେଇ ଯିବ । ଗାଁ ପରିମଳ ଏଠି ଖୋଜିବା ନିରର୍ଥକ ।

ଏ ଗାଁ'ର ଲୋକେ ଭାରି ଅଭାବୀ । ବାଇରୁ ଗମାଙ୍ଗୋ ଓ ତା'ପରି କେତେଜଣ ସ୍ୱଚ୍ଛଳ, ଆଉ ସବୁ ମୁଣ୍ଡ ଝାଳ ତୁଣ୍ଡରେ ମାରି ବି' ଓଳି ପେଟପୂରା ମୁଠେ ଖାଇବାକୁ ପାଆନ୍ତି ନାହିଁ । ଦିନସାରା ହାଡ଼ଭଙ୍ଗା ଖଟଣି ଖଟି ବି ପେଟପୂରେ ନାହିଁ । ଏମାନେ ସାଧାରଣତଃ କାଙ୍ଗୁ, ସୁଆଁ, ଜନା ଓ ମାଣ୍ଡିଆ ପେଜ (ଜାଉ) ଖାଆନ୍ତି । ଯେତେବେଳେ ଏହା ବି ଖାଇବାକୁ ମିଳେ ନାହିଁ ସେତେବେଳେ ଏମାନେ ବାଧ ହୋଇ ଅଭାବରେ ପଡ଼ି ଅଖାଦ୍ୟ ଖାଆନ୍ତି । ସଲପ ମଞ୍ଜିର ଚୂନା, ଆମ୍ବ କୋଇଲିର ଗୁଣ୍ଡ, ବଣରେ ମିଳୁଥିବା ଓଲୁଓ, ବିଷାକ୍ତ ବାଘ କନ୍ଦା ଖାଆନ୍ତି । ସଲପ ଗଛ ମଝିରେ ଥିବା ଶସକୁ ବାହାର କରି ଖରାରେ ଶୁଖାଇ ତା'ର ଚୂନାକୁ ଗରମ ପାଣିରେ ସିଝାଇ ଲୁଣ ସହିତ ମଡ଼ାଇ ଖାଆନ୍ତି । ଏହି ଚୂନାର କଷାଗୁଣକୁ ଦୂର କରିବା ପାଇଁ କନାରେ ବାନ୍ଧି ପଥରଚାପା ଦେଇ ଝରଣା

ପାଣିରେ ରଖିଦିଅନ୍ତି । ପାଣିରେ ଧୋଇ ହୋଇ କସା ଓ ପିତା ଗୁଣ କମିଗଲା ପରେ ତାକୁ ରାନ୍ଧି ଖିଆଯାଏ । ବାଘ କନ୍ଦା ବିଷାକ୍ତ ଓ କଷା । ତାକୁ ଲୋକେ ଖଣ୍ଡ ଖଣ୍ଡ କରି କାଟି ଦୁଇ ତିନିଥର ପାଣିରେ ସିଝାଇ ବହୁ କଷ୍ଟରେ ଖାଇ ପେଟର ଭୋକ ମେଣ୍ଟାନ୍ତି ।

ଖୁସି-ବାସି ସମୟରେ ଏହି ଆଦିବାସୀ ମହୁଲ, ଅଳସୀ ଗୁଣ୍ଡ ଖାଇଥାନ୍ତି । ମହୁଲ ଫୁଲରୁ ମଦ ତିଆରି କରି ପିଅନ୍ତି । ଟୋଲଫଳର ମଞ୍ଜିକୁ ଓ କେତେକ ତୈଳବୀଜର ପିଡ଼ିଆକୁ କୁଟି ଟେଳା କରି ଖାଦ୍ୟଭାବେ ବ୍ୟବହାର କରିଥାନ୍ତି । ଟେଳାଏ ଖାଇ, ପାଣି ପିଇ ରହନ୍ତି । ଭାତ ଏମାନଙ୍କ ବହୁ କଷ୍ଟ ଲବ୍ଧ ଫଳ । କିଛି ପରିମାଣରେ ଡଙ୍ଗର ଧାନ ଯାହା ପାଚିଲା ପରେ ଏଠା ଆଦିବାସୀ ଅମଳ କରନ୍ତି, ନୂଆଖିଆ, ଲୁଗାପଟା, ଦଶହରା, ଦିଆଲିରେ ସରିଯାଏ । ଦାରିଦ୍ର୍ୟ ଏମାନଙ୍କର ଭାଗ୍ୟ ଯେମିତି । ବିଶ୍ୱନାଥ ପଟ୍ଟନାୟକ ପ୍ରଥମ କରି ଦେଖିଲେ ଏମିତି ମଣିଷକୁ, ତା'ର ଜୀବନକୁ । ସେ ଦେଖିଥିଲେ ଢେଙ୍କାନାଳ, ତାଳଚେର ରାଜାଙ୍କ ଦ୍ୱାରା ଅତ୍ୟାଚାରିତ ଶରଣାର୍ଥୀଙ୍କୁ; ସେମାନଙ୍କ ଦୁଃଖ, ଦୟନୀୟତାକୁ; ସେମାନଙ୍କ ନିଃସହାୟତା, ନିରାଶାକୁ; ସେମାନଙ୍କ ସ୍ୱପ୍ନଭଙ୍ଗକୁ; ସେ ଅଙ୍ଗେ ନିଭେଇଥିଲେ ମଣିଷର ଅଭାବୀ ଜୀବନର ଦାରୁଣ କଷ୍ଟକୁ । କୁଜେନ୍ଦ୍ରୀରେ ସେ ଦେଖିଲେ ବନବାସୀ, ଗିରିଜନଙ୍କର ଭୟରେ କାଟୁଥିବା ଜୀବନକୁ, ନିତି ମରି ମରି ଜୀଉଁଥିବା ଜୀବନକୁ । ଜମିଦାର, ସାହୁକାର, ମହାଜନ, ଶୁଣ୍ଢୀଙ୍କ ଦୌରାତ୍ମ୍ୟ ଓ ଶୋଷଣରେ ହାରି ନିଷ୍ପ୍ରାଣ ହୋଇ ପଡୁଥିବା, ହା ହୁତାଶମୟ ମଣିଷର ଅକିଞ୍ଚନତାକୁ ।

କୁଜେନ୍ଦ୍ରୀ ଓ ଆଖ ପାଖ ଆଦିବାସୀଙ୍କ ଅବସ୍ଥାର ଉନ୍ନତି କରିବା ଯେମିତି ହୋଇଗଲା ତାଙ୍କ ନିତିଦିନିଆ କାମ । ସେମାନଙ୍କୁ ଅଜ୍ଞତା, ଅଶିକ୍ଷାରୁ ମୁକ୍ତ କରିବା, ଅନ୍ୟାୟର ବିରୋଧରେ ସାହସର ସହିତ ଛିଡ଼ା ହେବାର ମନଟିକୁ ତିଆରି କରିବା, ସର୍ବୋପରି ନିର୍ଭୀକ କରାଇବା ଏତେ ସହଜ ନଥିଲା ତାଙ୍କ ପକ୍ଷେ । ନା ସେ ଜାଣିଥିଲେ ସଉରାଙ୍କ ଭାଷା, ନା ତାଙ୍କ ଜୀବନ ଦର୍ଶନ । ସେ ଥିଲେ ସେମାନଙ୍କ ପାଇଁ ଅନ୍ୟମାନଙ୍କ ପରି ବାହାରର ଲୋକ, ଗଡ଼ିଆ ସହରିଆ । ତାଙ୍କ ସଙ୍ଗେ ମିଶି ତାଙ୍କ ପରି ନହେଲେ ଆଦିବାସୀ ପ୍ରତେ ଯିବେ ନାହିଁ ଯାଙ୍କ କଥାକୁ, କାମକୁ । ତାଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ସେ ଚେଷ୍ଟା ଆରମ୍ଭ କଲେ । ଆଦିବାସୀ ମନରେ ଥାନ ପାଇବାକୁ ହେଲେ ତାଙ୍କ ପରି ହେବାକୁ ହେବ ଭାଷାରେ, ବେଶରେ, ଖାଇବା ପିଇବାରେ, ଅଭ୍ୟାସରେ । ସଂବେଦନଶୀଳ ମନ ନଥିଲେ ହେବ ନାହିଁ ଏମିତି । ଆଦିବାସୀ ସଂପର୍କ ଯୋଡ଼ିବାରେ ସଭ୍ୟ ମଣିଷ ଠାରୁ ଆହୁରି ସଭ୍ୟ । ବୟସ ଭେଦରେ ସେ ସଂପର୍କ ଯୋଡ଼ି ମଣିଷ ସହିତ ମାନ୍ୟ ଧର୍ମ ରଖେ । ପରକୁ ଆପଣେଇ

ନିଏ, ଅନ୍ତରଙ୍ଗ କରିନିଏ । ମନ ମାନିଲେ ନିଜର ହୋଇଯାଏ ଗୋଟାପଣେ । ମାମା, ଦାଦି, ବଡୁ, ଆତା, ଆୟା, ବୁବା କରି ତୁଲେଇ ନିଏ ନିବିଡ଼ ସମ୍ପର୍କକୁ ମଲାଯାଏ । ମିତ, ମାପ୍ରସାଦ ବସେ । ବନ୍ଧୁ ପଣିଆରେ କୁଣ୍ଢେଇ ନିଏ ବିଶ୍ୱାସୀ ମଣିଷକୁ । ବିଶ୍ୱନାଥ ବାବୁ ପ୍ରଥମେ ସଉରାମାନଙ୍କ ଭାଷା, କନ୍ଧମାନଙ୍କ ଭାଷା ଶିଖିବା ପାଇଁ ଚେଷ୍ଟାକଲେ । ବାଇରୁ ଗମାଙ୍ଗୋ ସାହାଯ୍ୟ କଲେ ତାଙ୍କୁ । ଭାଷା ହିଁ ମଣିଷକୁ ଯୋଡ଼େ ମଣିଷ ସହିତ । ସଫଳତାର ରାସ୍ତାରେ ପ୍ରଥମ ପାଦଟି ପକାଇଲେ ସେ, ଚାଲିବା ଆରମ୍ଭ ହେଲା ତାଙ୍କର ।

ଶିକ୍ଷା, ସଭ୍ୟତା ଠାରୁ ଦୂରରେ ବଣ ପାହାଡ଼ ଝୋଲା ଝରଣା ଘେରା ନିପଟ ଆଦିବାସୀ ଗାଁର ଆଦିବାସୀଙ୍କ ସହିତ ମିଶି ବିଶ୍ୱନାଥ ପଟ୍ଟନାୟକ ହୋଇଗଲେ କାର୍ଯ୍ୟ, ଚିନ୍ତା ଓ ଚେତନାରେ ଏକ ନମ୍ର, ସହନଶୀଳ ସେବକ । ଶିକ୍ଷକତା କରିଥିଲେ । ଶିକ୍ଷକ ହେବାର ଗୁଣ ଆଗରୁ ଥିଲା । ସେ ଅନୁଧ୍ୟାନ କରି ଜାଣିଲେ ଅଜ୍ଞତା, ଅଶିକ୍ଷା ଓ ଭୟ ଏହି ତିନୋଟି ମୂଳ କାରଣ; ଏମାନଙ୍କ ଜୀବନର ସବୁ ଦୁର୍ଗତି, ଦୁଃସ୍ଥିତିର କେନ୍ଦ୍ରବିନ୍ଦୁ । ଏହା ଦୂର ନହେଲା ଯାଏ ଦୁର୍ଦ୍ଦଶା ଘୁଞ୍ଚିବ ନାହିଁ ।

ବିଶ୍ୱନାଥ ବାବୁ ସ୍ଥାନୀୟ ଆଦିବାସୀମାନଙ୍କ ଭାଷା ପ୍ରଥମେ ଶିଖିବାକୁ ଚେଷ୍ଟାକଲେ । ସଉରା ଓ କନ୍ଧଭାଷାରେ ଏମାନେ କଥାବାର୍ତ୍ତା କରନ୍ତି, ଓଡ଼ିଆ ସହିତ କୌଣସି ଭାଷାଗତ ସଂପର୍କ ନାହିଁ ବରଂ ପୁରୁଷମାନେ କିଛି ତେଲୁଗୁ ବୁଝିପାରନ୍ତି, କହିପାରନ୍ତି, ସ୍ତ୍ରୀମାନେ କେବଳ ନିଜର ଭାଷା କହିଥାନ୍ତି । ଜାତାପୁ ଦୋରା କନ୍ଧମାନେ, ତେଲୁଗୁ, ଓଡ଼ିଆ ଓ କନ୍ଧଭାଷା ବୁଝିପାରନ୍ତି । ବିଶ୍ୱନାଥ ବାବୁ ଯେହେତୁ ଓଡ଼ିଶା-ଆନ୍ଧ୍ର ସୀମାନ୍ତ ଗାଁ'ର, ସେ ଓଡ଼ିଆ ଓ ତେଲୁଗୁ କହିପାରନ୍ତି । ଯେତେବେଳେ କଥା କହିବା ଓ ବୁଝିବାରେ ଅସୁବିଧା ହୁଏ ସେ ବାଇରୁ ଗମାଙ୍ଗୋଙ୍କ ସାହାଯ୍ୟ ନିଅନ୍ତି । ଅଳ୍ପଦିନ ଭିତରେ ସେ ସଉରା ଭାଷା କିଛି କିଛି ଶିଖିଗଲେ । ପ୍ରଥମେ କଥା ବୁଝିବାକୁ ଚେଷ୍ଟାକଲେ । ସଉରା ଭାଷା ସହିତ ଓଡ଼ିଆ ମିଶାଇ କହିଲେ । ଏମିତି ଭାଷା ଶିଖା, ଲୋକ ସମ୍ପର୍କର ଏକ ସେତୁ ହୋଇଗଲା । କ୍ରମେ ପୁରୁଷ ଲୋକେ ଓଡ଼ିଆ କହିବା, ଶୁଣିବା ପସନ୍ଦ କଲେ କିନ୍ତୁ ସ୍ତ୍ରୀମାନେ ନିଜ ଭାଷା ଛଡ଼ା ଅନ୍ୟଭାଷା କହିବାକୁ ନାରାଜ । ବିଶ୍ୱନାଥ ବାବୁ ସେମାନଙ୍କ ସହ ସଉରା ଭାଷାରେ କଥା ହେଲେ । ଏମିତି ସେ ହୋଇଗଲେ ଗ୍ରାମବାସୀଙ୍କର ପ୍ରିୟ ।

## ଗାଁରେ ସଂସ୍କାର ଆରମ୍ଭ କଲେ :

ଗାଁ ଲୋକଙ୍କ ଯୁଗ ଯୁଗର ଧାରଣା ବିଶ୍ୱାସକୁ ବଦଳାଇ, ନୂଆ କିଛି ଶିଖାଇବା ବହୁ ସାଧନାର ଅପେକ୍ଷା ରଖେ । ପ୍ରଥମେ ନିଜେ ସଜାଡ଼ି ହେଲେ ଯାଇ ଅନ୍ୟକୁ ସଜାଡ଼ି ହେବ । ଏଇ କଥା ସେ ଶିଖିଥିଲେ ଗୋପବାବୁଙ୍କ ଠାରୁ, ବରୀ ଆଶ୍ରମର ଅନ୍ୟମାନଙ୍କ ଠାରୁ । ତାଙ୍କର ଆଦର୍ଶ ଥିଲେ ଆଚାର୍ଯ୍ୟ ହରିହର ଦାସ । ସେ ଗ୍ରାମ ସଫେଇରୁ ସଂସ୍କାର କାର୍ଯ୍ୟ ଆରମ୍ଭ କଲେ ।

ମାଘ ମାସର ବାଘ ପରି ଶୀତ । ହେମାଳ ପବନ । ଗଛପତ୍ରରୁ ଝରୁଛି କାକର ଟୁପ୍ ଟାପ୍ । କୁହୁଡ଼ି ଘୋଡ଼େଇ ପକେଇଛି ଆକାଶ ପୃଥିବୀ । ଚାରିଆଡ଼େ ଧଳାମୟ । ହାତକୁ ହାତ ଦିଶୁନାହିଁ । ଭୋର ହେବାକୁ ଯାଉଛି । ବାଇରୁ ଗମାଙ୍ଗୋର ଖଜୁରି ଟାଟିଘେରା ବାରଣ୍ଡାରୁ ବିଶ୍ୱନାଥ ଉଠିଲେ, ମୁହଁ ଧୋଇଲେ ଖଣ୍ଡେ ଦୂରରେ ଥିବା ହାଣ୍ଡିରୁ କାଲୁଆ ପାଣି ନେଇ । ବାହାରିଲେ ଦାଣ୍ଡକୁ । ଗାଁ ଦାଣ୍ଡ ଘୁଷୁରି ଗୁହରେ ସଲବଲ । ମଇଳା, ଅପରିଷ୍କାର । କେଉଁ ଯୁଗରୁ ଦାଣ୍ଡ ସଫା ହେଇନି ଯେମିତି ।

ପ୍ରଥମେ ଗାଁ ଦାଣ୍ଡକୁ ସଫା କରିବା ପାଇଁ ସେ ସ୍ଥିର କଲେ । ଗୋଟିଏ ହାତରେ ଭଙ୍ଗା ହାଣ୍ଡିର ଖପରା ଛେଲୁଆ, ଆର ହାତରେ ଖଡ଼ିକା ଝାଡୁ । ସେ ନିର୍ବିକାର ମନରେ ଘୁଷୁରି ଲଣ୍ଡି ଝାଡୁରେ ଖରକି ଖପରା ଛେଲୁଆରେ ନେଇ ଗାଁ ଠାରୁ ଦୂରରେ ଗାତରେ ପୋପାଡ଼ିଲେ । ପ୍ରତିଦିନ ଏଇକାମ । କୁଜେନ୍ଦ୍ରୀ ଗାଁ ଦେଖିଲା ଗୋଟିଏ ନୂଆ କଥା । ହଠାତ୍ ଗାଁ ଲୋକେ ଭାବିପାରିଲେ ନାହିଁ କ'ଣ ହେଉଛି । କିଛିଦିନ ଏମିତି ଚାଲିଲା ପରେ ଗାଁ ଲୋକେ ତାଙ୍କ ସହିତ ମିଶିଲେ, ଦାଣ୍ଡ ସଫା କଲେ । ନିଜର ଘରବାଡ଼ିର ଅରମା ସଫା କଲେ । ଖାଇ ଖମା ପୋତିଲେ । ପରିମଳ ଆରମ୍ଭ ହେଲା ବିଶ୍ୱନାଥଙ୍କ ଏକକ ବିଶ୍ୱାସରୁ । ଗାଁ ଲୋକେ ବିଶ୍ୱନାଥ ବାବୁଙ୍କ କାମ ଦେଖି ତାଙ୍କୁ ନିଜ ଲୋକ ମଣିଲେ । ପୁରୁଣା ବିଶ୍ୱାସ ନୂଆ ରୂପ ନେଲା ।

ବିଶ୍ୱନାଥ ବାବୁ ଆଉ ଗୋଟିଏ ସଂସ୍କାର ଆଣିଲେ ସେ ଗାଁରେ । ସେତେବେଳକୁ ଆଦିବାସୀମାନେ ଘୁଷି ବା କୌପୀନ ମାରନ୍ତି । ସ୍ତ୍ରୀ ପୁରୁଷ ଉଭୟେ କୌପୀନ ପିନ୍ଧନ୍ତି । ପୋଷାକ ବୋଇଲେ ସେତିକି ସ୍ତ୍ରୀମାନେ ଅଧିକା କୌପୀନ (ଘୁଷି) ଉପରେ ବେଢ଼େଇ ହୋଇଥାନ୍ତି ଗାମୁଛା ପରି ଅଣ ଓସାରିଆ ଲୁଗାଖଣ୍ଡେ । ଅଣ୍ଟାଠୁ ଉପରକୁ ନିର୍ବସ୍ତ୍ର । ବେକ-

ଠାରୁ ଅଣ୍ଟାଯାଏ ଖୋଲା । ଖରା, ବର୍ଷା, ଶୀତ ସବୁକାଳେ ସ୍ତ୍ରୀମାନଙ୍କ ଲୁଗାପିନ୍ଧା ଏମିତି । ଦାରିଦ୍ର୍ୟ, ଅର୍ଥାଭାବ ଏହି ସୀମିତ ଲୁଗା ବ୍ୟବହାରର ଏକ ବଡ଼ କାରଣ ଥିଲା । ସେତେବେଳେ ପଇସା ଦୁର୍ମୂଲ୍ୟ । ଆଠଘଣ୍ଟା ହାଡ଼ଭଙ୍ଗା ଖଟଣି ଖଟିଲେ ମଜୁରୀ ମିଳୁଥିଲା ଦି ପଇସା । ତାହା ବି କେବେ କେମିତି । ସେତିକିରେ ଦେହ ସାରା ଘୋଡ଼ାଇବାକୁ ଲୁଗା କିଣିବା ସମ୍ଭବ ହେଉନଥିଲା । ଏଣୁ ବିଶ୍ୱନାଥ ବାବୁ କପା ଚାଷ, ସୂତାକଟା ଓ ଲୁଗାବୁଣା ଉପରେ କାମ ଆରମ୍ଭ କରିବା ପାଇଁ ସ୍ଥିର କଲେ । ଏଥିପାଇଁ ଲୋକଙ୍କ ମନରେ ଆଗ୍ରହ ସୃଷ୍ଟି କରିବା, ତାଲିମ ଦେବା, ତକଲି, ତୁଳା, ତନ୍ତର ବ୍ୟବସ୍ଥା କରିବା ଓ କାର୍ଯ୍ୟକାରୀ କରିବା ପାଇଁ ଗୋପବାବୁଙ୍କ ନିକଟକୁ ଚିଠି ଲେଖିଲେ । ଏହା ରଚନାତ୍ମକ କାମର ଗୋଟିଏ ପ୍ରମୁଖ ଅଙ୍ଗ ଥିଲା । ଗୁଣୁପୁର ୧୯୪୧ ମସିହା ବେଳକୁ କପାଚାଷର ଏକ ମୁଖ୍ୟ କେନ୍ଦ୍ର ଥିଲା । ଗୁଣୁପୁର ଓ ଅନୁଗୁଳରେ କପାଚାଷ ପାଇଁ ବିଶେଷ କାମ କରାଯାଉଥିଲା ।

## କୁକେନ୍ଦ୍ରୀ ଗାଁ'ରେ ତାଙ୍କ ଦୈନିକ କାମ :

ସକାଳୁ ଉଠି ମଇଳା ସଫା କରିବା ତାଙ୍କର ନିତି ଦିନିଆ କାମ ହୋଇଗଲା । ଆଦିବାସୀଙ୍କ ଜୀବନ ପ୍ରଣାଳୀରେ କେମିତି ପରିବର୍ତ୍ତନ ଆଣିବେ ସେଇ ଚିନ୍ତାରେ ସବୁବେଳେ । ବଡ଼ି ଭୋରରୁ ଉଠି ଗାଁ' ଦାଣ୍ଡ, ବାଡ଼ି ସଫେଇ କରି ସକାଳ ହେଲେ ଗାଧୋଇ- ପାଧୋଇ, ଘଣ୍ଟାଏରୁ ଅଧିକ ସୂତା କାଟନ୍ତି । ସୂତାକାଟି ସାରିଲା ପରେ ବେଳେ ବେଳେ ଆଦିବାସୀଙ୍କ ସହ ବଣକୁ ଯାଆନ୍ତି । ସେମାନେ ବଣରେ କାଠ କାଟିଲାବେଳେ, କନ୍ଦା ଖୋଳିଲା ବେଳେ, ଫଳ ତୋଳିଲା ବେଳେ ତାଙ୍କ ସହ ଗପ ସପ କରନ୍ତି । ସେମାନଙ୍କୁ ନିକଟରୁ ଦେଖନ୍ତି, ଜାଣନ୍ତି । ସ୍ତ୍ରୀ ଲୋକମାନଙ୍କ ସଙ୍ଗେ ମିଶି ପରିବା କାଟନ୍ତି । ରନ୍ଧା- ରନ୍ଧିରେ ସାହାଯ୍ୟ କରନ୍ତି । ପୁରୁଷ ଲୋକମାନଙ୍କ ସହିତ ଜମିକୁ ଯାଇ ଅଣ୍ଟା ଲଗାଇ ଘଣ୍ଟା ଘଣ୍ଟା ତଳି ରୁଅନ୍ତି । ଚାଷ କାମରେ ସାହାଯ୍ୟ କରନ୍ତି ।

ନୂଆ ପରିବେଶ, ନୂଆ ଲୋକ ଚରିତ୍ର, ଭିନ୍ନ ଜୀବନ ଦର୍ଶନ ଭିତରେ ବନବାସୀ ମଣିଷ ସମାଜରେ ବିଶ୍ୱନାଥ ଦେଖୁଥିଲେ ଏକ ନୂତନ ସମ୍ଭାବନାକୁ । କେତେ ଭିନ୍ନ ସତେ ଏମାନେ ପାଠ ପଢୁଆ, ଶିକ୍ଷିତ, ସହରୀ ମଣିଷଙ୍କ ଠାରୁ । ସେଠି ସେମାନଙ୍କ ପରି ସେ ନିଜ ଜୀବନକୁ ଗଢ଼ିଲେ । ସେ ପ୍ରାୟତଃ ଆଦିବାସୀଙ୍କ ରୋଷେଇରେ ଖାଆନ୍ତି । ଆଦିବାସୀ ସଂସ୍କୃତିରେ ଆତିଥ୍ୟ ଦେବା ଯେମିତି ଜନ୍ମଜାତ । କେହି ଘରକୁ ଆସିଲେ, ଯଦି ସେ ନିଜ କୁଳ, ଗୋତ୍ରର ହୋଇନଥାନ୍ତି, ସେମାନେ ଭାତିଆ ଯୋଗାଡ଼ି ଦିଅନ୍ତି, ନିଜ ସାମର୍ଥ୍ୟମତେ ।

କାଠ, ପାଣି, ନିଆଁର ବ୍ୟବସ୍ଥା କରି ଦିଅନ୍ତି । ଅତିଥିଙ୍କୁ ନିଜେ ରାନ୍ଧି ଖାଇବାକୁ ଅନୁରୋଧ କରନ୍ତି । ସହଜରେ ସେମାନେ ବାହାର ଲୋକଙ୍କୁ ନିଜର ଖାଦ୍ୟ ଖାଇବାକୁ ଦେବାକୁ ସଂକୋଚ କରିଥାନ୍ତି । ଭାବନ୍ତି ଏ ବଡ଼ ଲୋକ, ଆମ ଘରେ ଖାଇବ କି ନାଇଁ । ବିଶ୍ୱନାଥ ବାବୁ ଦିନେ ଦିନେ ଚାଉଳ ଡାଲି ପରିବା କାହା ଘରକୁ ପଠାଇ ଦିଅନ୍ତି । ସେଠି ତାହା ଶିଝା ହୋଇ ଆସେ । ବାଇରୁ ଗମାଙ୍ଗୋ ମଧ ତାଙ୍କ ଘରୁ ଦିନେ ଦିନେ ରାନ୍ଧି ପଠାଇ ଦିଅନ୍ତି । ବିଶ୍ୱନାଥ ମାଛ ମାଂସ ଖାଆନ୍ତି ନାହିଁ । ଆଠବର୍ଷ ତଳୁ ଛାଡ଼ି ଦେଇଛନ୍ତି ସେ ସବୁ, ୧୯୩୩ରୁ । କେବେ ବି ପତ୍ରେ ପଡ଼େ ନାଇଁ ଆଇଁଷ । ହେଲେ କୁଢେନ୍ଦ୍ରୀ ଆଦିବାସୀ ମାଣ୍ଡିଆ ଜାଉ ସହିତ ମାଂସ ଖାଆନ୍ତି । ତେଣୁ ସେ କହନ୍ତି ମାଂସ-ରନ୍ଧା ହାଣ୍ଡି ଧୋଇ ପେଜ ରାନ୍ଧିଦେଲେ ସେ ଖାଇବେ । ସେ ଗ୍ରାମବାସୀଙ୍କ ସହ ଗୋଟିଏ ରୋଷେଇରେ ଖାଆନ୍ତି, ଯେମିତି ପରିବାରର ଲୋକ । ଏମିତି ଦିନ କଟେ । ସୂର୍ଯ୍ୟ ଉଏଁ, ବୁଡ଼େ, ଚିରାଚରିତ ରୀତିରେ ଜୀବନ ଧାଏଁ ଦିନରାତି ହୋଇ । ତାଙ୍କ ପାଇଁ ଦିନ ଯେତିକି ଗଡ଼ିଲା ଲୋକଙ୍କ ସମସ୍ୟାକୁ ସେ ସେତେ ଅନୁଭବିଲେ । କେମିତି ଶୋଷଣର ଶିକାର ହୋଇ ତିଳ ତିଳ ଆଦିବାସୀ ଭୟରେ ସଢୁଛନ୍ତି ତାହା ସେ ଜାଣିବାକୁ ପାଇଲେ । ସେ ଉପାୟ ପାଞ୍ଚିଲେ କ'ଣ କଲେ ଏମାନେ ଭୟମୁକ୍ତ ହେବେ, ସାହସର ସହିତ ବିରୋଧ କରିବେ ଅତ୍ୟାଚାରକୁ ।

୧୯୩୬ରୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲେ ମଧ ୧୯୪୧ ଭିତରେ ବଦଳି ନଥିଲା ପୂର୍ବର ରୀତି, ରାଜା ରାଜୁଡ଼ା ଶାସନର ଅଦଉତି । ସେମିତି ସାହୁକାର, ଗଣ୍ଡା, ଚଲାଣ, ଗାଁ ନାୟକ, ପୋଲିସ, ଫରେଷ୍ଟ ବାଲା, ଅମିନଙ୍କ ଶୋଷଣ ରହିଥିଲା । ଆଦିବାସୀଙ୍କ ଦୁର୍ଦ୍ଦଶା କଥା କହିଲେ ନସରେ । ମାଡ୍ରାସ ସରକାରଙ୍କର ନଜରରେ ୧୯୩୬ ପୂର୍ବରୁ ଜୟପୁର ଜମିଦାରୀ ଥିଲା (partially excluded territory) ପଛୁଆ ଅଞ୍ଚଳ । ଏଣୁ ରାଜା ଏଠି ସର୍ବେସର୍ବା । ତାଙ୍କ କଥା ନିଆରା । ତାଙ୍କ କର୍ମଚାରୀ ଶୋଷଣର ଅବତାର, ରାକ୍ଷସଠୁ କିଛି କମ ନୁହନ୍ତି । ସେ କାଳର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଅବସ୍ଥା ନ ଜାଣିଲେ ଶୋଷଣର ସ୍ୱରୂପ ବିଶେଷତଃ ଆଦିବାସୀଙ୍କ ନିଷ୍ପେଷିତ ଜୀବନ ସମ୍ବନ୍ଧରେ ଧାରଣା କରିହେବ ନାହିଁ । ବିଶାଳ ଜମିଦାରୀ, ପୁରୁଣା ଶାସନ ବ୍ୟବସ୍ଥା, ବଣ ଜଙ୍ଗଲରେ ରହୁଥିବା ଆଦିବାସୀଙ୍କ ବାହାର ଲୋକଙ୍କ ସମ୍ପର୍କରେ ଆସିବାର ଅନିଚ୍ଛା, ବାହାର ଲୋକଙ୍କ ସ୍ୱାର୍ଥପରତା, ଆଦିବାସୀଙ୍କ ରାଜଭକ୍ତି ଓ ରକ୍ଷଣଶୀଳତା ତଥା ଇଂରେଜମାନଙ୍କ ବିଲାତି ଢାଞ୍ଚାର ନୀତି ନିୟମର ପ୍ରଣୟନ ଓ ପ୍ରୟୋଗ, ଏଠି ସୃଷ୍ଟି କରିଥିଲା ଏକ ବିଚିତ୍ର ପରିସ୍ଥିତି ।

## ହରିଜନ ସେବା :

କୁ ଚେନ୍ଦ୍ରୀକୁ ଆସିଲା ପରେ ବିଶ୍ୱନାଥ ବାବୁ ଦେଖିଲେ ଏଠା ଦଳିତ ହରିଜନଙ୍କ ସମାଜରେ ସ୍ଥାନ ଓ ସେମାନଙ୍କ ପ୍ରତି ସବର୍ଣ୍ଣମାନଙ୍କ ଆଚରଣ ଓ ବ୍ୟବହାର । ୧୯୪୧ ବେଳକୁ ଅନ୍ୟାନ୍ୟ ଅଞ୍ଚଳ ପରି ଆଦିବାସୀମାନଙ୍କ ମଧ୍ୟରେ ବି ଜାତିଆଣ ଛୁଆଁ ଅଛୁଆଁ ବିଚାର ରହିଥିଲା ।

ଏହି ଛୁଆଁ ଅଛୁଆଁ ଭାବ ଆମ ଦେଶର କଳଙ୍କ । ଜାତିର କଳଙ୍କ । ଆମ ସଂସ୍କୃତି ଓ ସଭ୍ୟତାର ନିନ୍ଦନୀୟ ଦିଗ । ସବୁ ମଣିଷ ଯେ ସମାନ, ସେଇ ଏକା ଲାଲ ରକ୍ତ ସବୁରି ଦେହରେ, ଏକଥା କେତେ ବୁଝିବି ବୁଝନ୍ତିନି । ଯୁଗ ଯୁଗରୁ ମଣିଷକୁ ହୀନ ଦେଖିବା ପ୍ରବୃତ୍ତି ଏମାନଙ୍କର । ଡମ, ହାଡ଼ି, ବାଉରୀ, ପାଣ ଏମିତି କେତେ ସଂଜ୍ଞା ଦେଇ ସବୁବେଳେ ଦୂରେଇ ରଖିବାର ଷଡ଼ଯନ୍ତ୍ର । ସେମାନଙ୍କ ଛାଇ ପଡ଼ିଲେ ଏମାନଙ୍କ ସାତ ପୁରୁଷ ମାରା ହୋଇଯିବେ । ଅଛବ ନାଁ ଦେଇ ଦଳିତ କରି ରଖିବା ଯୁଗ ଯୁଗର ଅଭ୍ୟାସ । ଏମାନଙ୍କୁ ଘୃଣା କରିବା ଯେମିତି ରକ୍ତରେ ପଶିଯାଇଛି ସମାଜର କେତେ ଶ୍ରେଣୀର ଲୋକଙ୍କ ଠାରେ । ଏହି ଛୁଆଁ ଅଛୁଆଁ ଭାବକୁ ଦୂର କରିବା ପାଇଁ ମହାତ୍ମାଗାନ୍ଧୀ ବହୁକାମ କଲେ । ମଣିଷ ମନ ବଦଳାଇବା ପାଇଁ କେତେ ଲେଖା ଲେଖିଲେ । ଅଛବମାନଙ୍କୁ ନାଆଁ ଦେଲେ ହରିଜନ, ଭଗବାନଙ୍କ ମଣିଷ ।

ମହାତ୍ମା ଗାନ୍ଧୀ ହରିଜନ ସେବା ସମ୍ବନ୍ଧରେ 'ହରିଜନ' ପତ୍ରିକାରେ ବହୁ କଥା ଲେଖିଲେ । ତାଙ୍କ ସହିତ ଭାରତର ବଡ଼ ବଡ଼ ମନୀଷୀ, ଜ୍ଞାନୀ ଓ ପଣ୍ଡିତ ଲୋକେ ମଧ୍ୟ ଅସ୍ପୃଶ୍ୟତାକୁ ଆମ ଦେଶରେ କୌଣସି ଧର୍ମଶାସ୍ତ୍ର ଅନୁମୋଦନ କରେ ନାହିଁ ବୋଲି ପ୍ରମାଣ ଦେଇ ଲେଖିଲେ । ଏଣେ ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ, ମା ରମାଦେବୀ ହରିଜନଙ୍କ ସେବାରେ ସମୟ ଦେଲେ । ମା' ରମାଦେବୀ ୧୯୩୨ ମସିହା ଅକ୍ଟୋବର ୭ ତାରିଖରେ ହଜାରି ବାଗ୍ ଜେଲରୁ ମୁକୁଳିଲେ । କଟକ ଆସି ଦେଖିଲେ କଟକର ବହୁ ପୁରୁଷ ଓ ନାରୀ ଅସ୍ପୃଶ୍ୟତା ନିବାରଣ ଲାଗି ବହୁକାମ କରୁଛନ୍ତି । ମାଳତୀଦେବୀ, କଟକର ବିଶିଷ୍ଟ ଓକିଲ ୰ ବନ ବିହାରୀ ପାଲିତଙ୍କ ଝିଅ ବୀଣାପାଣି ଦେବୀ, ସତ୍ୟନାରାୟଣ ସେନଗୁପ୍ତଙ୍କ ଭାଉଜ କିରଣବାଳା ସେନ ହରିଜନ ବସ୍ତିକୁ ଯାଇ ସେମାନଙ୍କ ସହ ମିଶୁଛନ୍ତି ।

କଟକର ଅସ୍ପୃଶ୍ୟତା ନିବାରଣ ସମିତି ପରେ ପରେ ହରିଜନ ସେବକ ସଂଘ ହେଲା । ଗାନ୍ଧିଜୀ ହରିଜନ ସେବକମାନେ କିପରି ହରିଜନ ବସ୍ତିକୁ ଯାଇ ବସ୍ତି ସଫା କରିବେ,

ମଲାଗୋରୁର ମାଂସ ନ ଖାଇବା ପାଇଁ ଲୋକମାନଙ୍କୁ ବୁଝାଇବେ, ମଦଖିଆ ଛଡ଼ାଇବା ପାଇଁ ତାହା କିପରି ହାନିକାରକ ବୁଝାଇବେ, ବସ୍ତିର ଛୋଟ ଛୋଟ ପିଲାମାନଙ୍କୁ ସଫା କରିବେ, ଗାଧୋଇ ପାଧୋଇ ଦେବେ, ତାଙ୍କ ଲୁଗାପଟା ସଫା କରିବେ, ସେମାନଙ୍କୁ ଖାଇବା ପିଇବାର ଆଚରଣ ଶିଖାଇବେ ତା' ସହିତ ସଞ୍ଜ ହେଲେ ହରିଜନ ବସ୍ତିର ପୁରୁଷ ଲୋକମାନେ କେମିତି ଭଜନ କରିବେ, କୀର୍ତ୍ତନ କରିବେ, ପୁରାଣ ପାଠ ଶୁଣିବେ, ସ୍ତ୍ରୀ ଲୋକମାନେ କେମିତି ରାମାୟଣ ଶୁଣିବେ, ଏଥି ପାଇଁ ନିର୍ଦ୍ଦେଶ ଦେଉଥାନ୍ତି । ୧୯୩୫ରୁ ୧୯୪୧ ଯାଏ ଏକାମ ପୂରା ଜୋରସୋର୍‌ରେ ଚାଲିଲା । ବହୁ ବିରୋଧ ହେଲା । ସମାଜର ଅନ୍ୟବର୍ଗର ଲୋକେ ହଠାତ୍ ଏସବୁକୁ ଗ୍ରହଣ କରିବାକୁ ରାଜିହେଲେ ନାହିଁ । ଗୋପବନ୍ଧୁ ଚୌଧୁରୀଙ୍କ ଦ୍ୱାରା ବରୀ ଅଞ୍ଚଳରେ ହରିଜନ ସେବା ଚାଲିଲା । ସେତେବେଳକୁ ସମାଜରେ ବହୁତ ହୋ ହାଲ୍ଲା । ଠିକ୍ ଏମିତି ସମୟରେ ବିଶ୍ୱନାଥ ପଟ୍ଟନାୟକ ତାଲିମ ନେବା ପାଇଁ ୧୯୩୮ରେ ବରୀ ଆଶ୍ରମରେ ପହଞ୍ଚିଲେ ।

ସେଠି ସେ ଦେଖିଲେ ଗୋପବନ୍ଧୁ ଚୌଧୁରୀ ଓ ମା' ରମାଦେବୀ ଓ ବହୁ କର୍ମୀଙ୍କ ହରିଜନ ସେବାରେ ନିଜକୁ ଉତ୍ସର୍ଗ କରିଦେବାର କର୍ମପ୍ରଣାଳୀକୁ । ଚିର ଦଳିତ, ନିଷ୍ପେଷିତ ମଣିଷର ଆତ୍ମ ସମ୍ମାନର ସହିତ ବଞ୍ଚିବା ପାଇଁ ଏମାନଙ୍କର ପ୍ରେରଣା କିଛି କମ୍ ନଥିଲା । କେଉଁକାଳରୁ ଦେଶର ଏକ ବୃହତ ମଣିଷ ଗୋଷ୍ଠୀକୁ ସାମାଜିକ ଅନ୍ୟାୟ ଭିତରେ ସଢ଼ିବାକୁ ବାଛି ଦିଆଯାଇଥିଲା ତା'ର ହିସାବ ନାହିଁ । ଗାନ୍ଧୀ କହିଥିଲେ ''ଏହି ପାପ ପାଇଁ ପ୍ରାୟଶ୍ଚିତ ଲୋଡ଼ା ।'' ଗାନ୍ଧିଜୀ ନିଜ ଲେଖା ମାଧ୍ୟମରେ ଦେଶବାସୀଙ୍କୁ ସତର୍କ କରାଇ ଦେଇଥାନ୍ତି ଯେ କେବଳ ଆପଣମାନେ ନୁହଁନ୍ତି, ଆପଣମାନଙ୍କ ପୂର୍ବପୁରୁଷମାନେ ଓ ଆପଣଙ୍କ ସମାଜ ଏତେ ବଡ଼ ଗୋଷ୍ଠୀକୁ ଅଛୁଆଁ କରି ରଖିଛନ୍ତି, ନୀଚ ହୀନ ଅବସ୍ଥାରେ ରଖିଛନ୍ତି, ସେହି ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ଆପଣଙ୍କୁ ହରିଜନ ସେବା କାମ କରିବାକୁ ହେବ ।

ବହୁ ଚିନ୍ତାଶୀଳ ବ୍ୟକ୍ତି ଏହି କୁପ୍ରଥା ବିଷୟରେ ଲେଖି ଜନ ସଚେତନତା ଆଣିଲେ । ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ ହୃଦୟର ଆର୍ତ୍ତିକୁ କବିତାରେ ଏମିତି ରୂପଦେଲେ –

ହେ ମୋର ଦୁର୍ଭାଗାଦେଶ ଯାଦେର କରେଛ ଅପମାନ
ଅପମାନେ ହତେ ହବେ ତାହାଦେଇ ସବାର ସମାନ ।
ମାନୁଷେର ପରଶେରେ ପ୍ରତିଦିନ ଠେକାଇଆ ଦୂରେ
ଘୃଣା କରିଅଛ ତୁମି ମାନୁଷେର ପ୍ରାଣେର ଠାକୁରେ ।

x x x

ବିଧାତାର ରୁଦ୍ରରୋଷେ ଦୁର୍ଭିକ୍ଷେର ଦ୍ୱାରେ ବସେ
ଏକ ସାଥେ ଖେତେହବେ ଅନ୍ନପାନ ।''

ଏମାନଙ୍କ ପାଇଁ ଗାନ୍ଧିଜୀଙ୍କ ପ୍ରେରଣାରେ ଗୋପବାବୁ ବରୀ ଅଞ୍ଚଳରେ ଯେଉଁ ହରିଜନ ସେବାକାମ କଲେ ତାହାକୁ ଅଙ୍ଗେ ନିଭେଇବା ଅନୁଭୂତି ଆସିଲା ବିଶ୍ୱନାଥ ପଟ୍ଟନାୟକଙ୍କର । ୧୯୩୫ରୁ ୧୯୪୧ ଦୀର୍ଘ ୬ ବର୍ଷ କାଳ ବରୀ ଆଶ୍ରମଠୁ ମାଇଲିଏ ପରିଧି ଭିତରେ ଥିବା ହରିଜନ ବସ୍ତିଗୁଡ଼ିକରେ କର୍ମୀମାନେ ସେବାକାମ କରିଥିଲେ । ସେମାନେ ଅଛୁଆଁ ପ୍ରଥା ଭାଙ୍ଗିଥିଲେ । ପ୍ରଥମ ଥର ପାଇଁ ବିଶ୍ୱନାଥ ପଟ୍ଟନାୟକ ଅନୁଭବ କଲେ ହରିଜନ ସେବାର ମହତ୍ୱ । ଯେଉଁଦିନ ବରୀରେ ତାଲିମ ପାଉଥିବା ବହୁ ବନ୍ଧୁଙ୍କ ସହ ନିଜେ ହରିଜନମାନେ ହାତରେ ରାନ୍ଧିଥିବା ଖାଦ୍ୟ ସେମାନଙ୍କ ସଙ୍ଗରେ ବସି ସେମାନଙ୍କର ସହିତ ପଂକ୍ତି ଭୋଜନ କଲେ, ଯୁଗ ଯୁଗର ଏକ କୁସଂସ୍କାର ଯେମିତି ଦୂର ହୋଇଗଲା ସବୁଦିନ ପାଇଁ । ସେ ଦେଖିଲେ ବରୀ, ରମ୍ଭା, ବାଗଦା, କଣ୍ଡପୋଇ, ଅରୁଆ, ରେଢାପୁର, ଅରଙ୍ଗାବାଦ ଆଦି ଗାଁରେ ବସ୍ତିରେ କାମ । ନିଜେ ସେଇ ସେବାକାମରେ ନିଜକୁ ସାମିଲ କରିଦେଲେ ।

ଏଠି ସେ ନିଜ ଅନୁଭୂତିରୁ ଅରଙ୍ଗାବାଦରେ ହରିଜନ ସେବାର କଥା କହନ୍ତି । ସେଦିନ ୧୯୩୮ ମସିହା ମେ ମାସର ଗୋଟିଏ ଦିନ । ଅରଙ୍ଗାବାଦ ଗାଁ'ର ପ୍ରତିଷ୍ଠିତ ଲୋକ ଶ୍ରୀ ବାମନ ଚରଣ ଦାସ । ଏହି ବାମନ ଚରଣ ଦାସ ୧୯୩୪ ମସିହାରେ ଓଡ଼ିଶାରେ ଗାନ୍ଧୀଙ୍କ ପଦଯାତ୍ରା ସମୟରେ ତାଙ୍କ ଘରେ ଗାନ୍ଧିଜୀ ଓଳିଏ ରହିବା ପାଇଁ ଅନୁରୋଧ କରି ସଫଳ ହୋଇଥିଲେ । ସେହି ଗାଁ'ରେ ହରିଜନମାନଙ୍କୁ ମନ୍ଦିର ପ୍ରବେଶ ମନାଥିଲା । ଶ୍ରୀ ବାମନ ଚରଣ ଦାସଙ୍କ ନିଜର ଘରୋଇ ମନ୍ଦିର ଥାଏ । ଠାକୁର ବଳଦେବ ଜୀଉ ସେଠି ପୂଜା ପାଆନ୍ତି । ଶ୍ରୀ ବାମନ ଚରଣ ଦାସଙ୍କୁ ପ୍ରଭାବିତ କରି ଗୋପବନ୍ଧୁ ଓ ରମାଦେବୀ ସେହି ମନ୍ଦିର ହରିଜନମାନଙ୍କ ପାଇଁ ଖୋଲାଇଲେ । ସେଦିନର ଏହି ଭେଦବାଡ଼ ଉଠିଯିବା କମ୍ କଥା ନଥିଲା । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ, ଶ୍ରୀ ବିନୋଦ କାନୁନଗୋ ବି ସେଠି ଥିଲେ । ବିଶ୍ୱନାଥ ପଟ୍ଟନାୟକ ନିଜ ଆଖିରେ ଏସବୁ ଦେଖିଲେ । ସେଦିନର କଥାକୁ ସ୍ମରଣ କରି ସେ ଲେଖନ୍ତି –

''୧୯୩୮ ମଇ ମାସରେ ପୂଜ୍ୟ ଗୋପବାବୁ ଓ ମା' ରମାଦେବୀ ବରୀ ଅଞ୍ଚଳର ସର୍ବସାଧାରଣଙ୍କୁ ଏବଂ ମନ୍ଦିର ପ୍ରତିଷ୍ଠାତା ଶ୍ରୀ ବାମନ ଚରଣ ଦାସଙ୍କୁ ପ୍ରଭାବିତ କରାଇ ଅରଙ୍ଗାବାଦରେ ଥିବା ଗୋପାଳଜୀ ମନ୍ଦିର ହରିଜନଙ୍କ ପାଇଁ ଖୋଲିଥିଲେ ।

ସେଦିନ ମନ୍ଦିର ପ୍ରବେଶ ଆଗରୁ ପୂଜ୍ୟ ଗୋପବାବୁ ଆବେଗପୂର୍ଣ୍ଣ ସ୍ୱରରେ ଜନତାକୁ ଉଦ୍‌ବୋଧନ ଦେଇ କାନ୍ଦି ପକାଇବାରଦୃଶ୍ୟ ମଧ୍ୟ ଦେଖିବାକୁ ମିଳିଥିଲା ।''

ବିଶ୍ୱନାଥ ଦେଖୁଥିଲେ ଶାନ୍ତ ସୌମ୍ୟ ଗୋପବାବୁଙ୍କୁ । ଉପସ୍ଥିତ ଜନତା ଦେଖୁଥିଲେ ଗୋପବାବୁଙ୍କ ବ୍ୟଥିତ ପ୍ରାଣର ଦୁଃଖ କେମିତି ଲୁହ ହୋଇ ବୋହି ଯାଉଥିଲା । ତାଙ୍କ କାନ୍ଦ କେତେ ବେଦନାର କଥା କହୁନଥିଲା ସତେ । ଏହି ଦୃଶ୍ୟ, ଏହି ସ୍ମୃତିକୁ ଅନୁଭବ କରି ବିଶ୍ୱନାଥ ମାନବ ସେବାର ଦୀକ୍ଷା ନେଇ ୧୯୪୧ ମସିହାରେ ଆସିଲେ କୁଢେନ୍ଦ୍ରୀକୁ ।

କୁଢେନ୍ଦ୍ରୀ ମଧ୍ୟ ଛୁଆଁ ଅଛୁଆଁ ଭେଦଭାବରୁ ମୁକ୍ତ ନଥିଲା । ଏଠା ହରିଜନମାନଙ୍କ ପ୍ରତି ମଧ୍ୟ ସେଇ ଘୃଣା, ସେଇ ଅମାନବୀୟ ବ୍ୟବହାର, ସେହି ହୀନ, ନୀଚ ଦୃଷ୍ଟିକୋଣ, ସେଇ କୂଅ-ପାଣି, ମନ୍ଦିର-ପ୍ରବେଶ ମନା । ସେଇ ସାମାଜିକ ଅନ୍ୟାୟ । ଏହା ଦେଖିଲେ ବିଶ୍ୱନାଥ ପଟ୍ଟନାୟକ । ଏକୁଟିଆ ମଣିଷ, ହେଲେ ମନରେ ଅଟଳ ବିଶ୍ୱାସ । ସେମାନଙ୍କ ସେବା ପାଇଁ ସେ ତତ୍ପର ହେଲେ । ଯୁଗଯୁଗର ଅନ୍ଧବିଶ୍ୱାସ, କୁସଂସ୍କାରକୁ ଦୂର କରି ସମସ୍ତଙ୍କ ମନରେ ଏହି ନିଷ୍ପେଷିତ ଗୋଷ୍ଠୀର ସାମୁହିକ ଉନ୍ନତିରେ ଏକ ସହଯୋଗୀ ମନୋଭାବ ତିଆରି କରିବା ପାଇଁ ସେ କାର୍ଯ୍ୟ ଆରମ୍ଭ କଲେ । ହରିଜନ ବସ୍ତିକୁ ଯାଇ ଯେଉଁଦିନ ସେ ଖପରା ଛେଲୁଆ ଧରି ଗାଁ ଦାଣ୍ଡର ଘୁଷୁରି ଗୁହ ନିଜ ହାତରେ ସଫାକଲେ ସେଦିନ ସେହି ହରିଜନ ବସ୍ତି ଲୋକଙ୍କର ମନରେ କି ପ୍ରକାର ଚିନ୍ତା ସୃଷ୍ଟି ହୋଇଥିବ, ସେମାନଙ୍କ ଚେତନାରେ କି ଭାବର ଲହରୀ ଉଠିଥିବ କଳ୍ପନା କରିହେବ ନାହିଁ । ହେଲେ ସେମାନେ ନିଜ ଭିତରେ ଏମିତି ଜଣେ ମଣିଷର ସ୍ପର୍ଶ ନିଶ୍ଚୟ ଅନୁଭବ କରିଥିବେ, ଯାହା ଭାଷାରେ ପ୍ରକାଶ କରିହେବ ନାହିଁ । ତାହା ଏକ ବିସ୍ମୟର ଲଗ୍ନ ହୋଇଥିବ । କେମିତି ଏକ ବିମୂଢ଼ ବିସ୍ମୟଭାବ ଘେରି ଯାଇଥିବ ସେମାନଙ୍କୁ । ବିଶ୍ୱାସ ଅବିଶ୍ୱାସ ଭିତରେ ସେମାନେ ଉବୁଟୁବୁ ହୋଇଥିବେ । ତା'ପରେ ସେମାନେ ତାଙ୍କୁ ନିଜର ମନେକରି ହାତ ବଢ଼େଇ ଦେଇଥିବେ । ଏମିତି ହିଁ ହୋଇଥିଲା କୁଢେନ୍ଦ୍ରୀରେ ।

## କୁଜେନ୍ଦ୍ରୀରେ ହରିଜନଙ୍କ ମନ୍ଦିର ପ୍ରବେଶ :

୧୯୪୧ ମସିହା ଅକ୍ଟୋବର ମାସ ଦୁଇ ତାରିଖ । ସେଦିନ ଗାନ୍ଧୀ-ଜୟନ୍ତୀ । କୁଜେନ୍ଦ୍ରୀର ଇତିହାସରେ ଗୋଟିଏ ବଡ଼ଦିନ ହେବାକୁ ଯାଉଥିଲା । କୁଜେନ୍ଦ୍ରୀର ଗାଁ ନାୟକ, ମୁଖିଆ ବାଇରୁ ଗମାଙ୍ଗୋ, ଓଡ଼ିଆ ବୁଝି ପାରନ୍ତି, କହିପାରନ୍ତି, ତେଲୁଗୁରେ ବୁଝାଇ ପାରନ୍ତି । ତାଙ୍କୁ ବିଶ୍ୱନାଥ ପଟ୍ଟନାୟକ ବୁଝାଇ ପାରିଥିଲେ । ଏହି ହରିଜନ ଛୁଆଁ ଅଛୁଆଁ ଯେ କେଡ଼େ ଅମାନବୀୟ କଥା । ସେ ଗାଁରେ ବୈଶ୍ୟରାଜୁ ଲକ୍ଷ୍ମୀନାରାୟଣଙ୍କ ପରିଚାଳନାରେ ଥାଏ ରାଧାକୃଷ୍ଣ ମନ୍ଦିର । ସେଠି ହରିଜନ ଦେବ ଦର୍ଶନ କରିବା ତ ଦୂରର କଥା, ଭାବିବା ମଧ୍ୟ ଅପରାଧ ବୋଲି ମନେ କରାଯାଉଥିଲା । ଗାଁ'ର କୂଅର ପାଣି ସେମାନେ ବ୍ୟବହାର କରି ପାରିବେ ନାହିଁ । ସବୁଠି ବଡ଼ଜାତିଙ୍କ ଆଧିପତ୍ୟ । ଏମାନେ ସମାଜର ନିୟାମକ । ଯାଙ୍କ ପ୍ରତିଷ୍ଠା, ଯାଙ୍କ ସଂସ୍କାରର ପ୍ରଭାବ ସବୁଠି ସ୍ୱୀକୃତ । ଆଉ ହରିଜନ ସତେଯେମିତି କେବଳ ଅନ୍ୟଙ୍କ ଦୟାର ପାତ୍ର ହୋଇ ବଞ୍ଚିବା ପାଇଁ ଜନ୍ମ । ଦୀନ, ହୀନ, ଅସହାୟ, ସାହା ଭରସା ଶୂନ୍ୟ, ଏକ ଦଳିତ ଗୋଷ୍ଠୀ । ଏହି ସାମାଜିକ ଅବସ୍ଥାର ପରିବର୍ତ୍ତନ ପାଇଁ ଗାନ୍ଧୀ, ଗୋପବାବୁ ଦେଖିଥିବା ସ୍ୱପ୍ନର ସାର୍ଥକତା ପାଇଁ ସେ ଦିନ ବିଶ୍ୱନାଥ ପଟ୍ଟନାୟକ, ବାଇରୁ ଗମାଙ୍ଗୋ ଓ ଗାଁ'ର ଜନସାଧାରଣଙ୍କ ସହିତ ବୈଶ୍ୟରାଜୁ ଲକ୍ଷ୍ମୀନାରାୟଣଙ୍କୁ ପ୍ରଭାବିତ କରାଇ ହରିଜନମାନଙ୍କ ସହିତ ମନ୍ଦିର ପ୍ରବେଶ କରିଥିଲେ । ହରିଜନଙ୍କ ସହିତ ପଂକ୍ତି ଭୋଜନର ବ୍ୟବସ୍ଥା ମଧ୍ୟ କରାଯିବାର ବ୍ୟବସ୍ଥା ହେଲା ।

ସେଦିନ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ ଓ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ପୌରୋହିତ୍ୟରେ ହରିଜନ ଓ ସବର୍ଣ୍ଣମାନେ ଏକା ସଙ୍ଗରେ ଯେତେବେଳେ ରାଧାକୃଷ୍ଣ ମନ୍ଦିରରେ ପ୍ରବେଶ କଲେ, ତାହାର ପ୍ରଭାବ ଚାରିଆଡ଼କୁ ବ୍ୟାପିଲା । ଏ ସଂସ୍କାର ଫଳରେ ହରିଜନ ମାନେ ଏକ କୂଅରୁ ପାଣି ନେବା ସୁବିଧା ପାଇଲେ । ଏହା ଯେ ନିଶ୍ଚିତ ଭାବେ ନୈତିକତାର ପ୍ରଭାବ ଥିଲା ଏଥିରେ ସନ୍ଦେହ ନାହିଁ ।

କ୍ରମେ କ୍ରମେ କୁଜେନ୍ଦ୍ରୀ ଗ୍ରାମର ଗ୍ରାମବାସୀମାନେ ମଧ୍ୟ ଏହି ଛୁଆଁ ଅଛୁଆଁ ଭାବଛାଡ଼ି, ହରିଜନଙ୍କ ଘରେ ଖାଇବାର କଟକଣା ମଧ୍ୟ ରଖିଲେ ନାହିଁ ।

ଏହାପରେ ବିଶ୍ୱନାଥ ପଟ୍ଟନାୟକ ସେବାର ମହାମନ୍ତ୍ର ଜପି କୋରପୁଟ ମାଳର ସବୁ ଅଞ୍ଚଳରେ ସେଇ ଗୋଟିଏ କାମକଲେ, ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଦୁଃସ୍ଥ ଦଳିତ ମଣିଷର ସେବା । ସେ ହୋଇଗଲେ ସମାଜରେ ତଳେ ପଡ଼ିଥିବା ମଣିଷର ଭାଇ ବନ୍ଧୁ କୁଟୁମ୍ବ ।

## ତତ୍କାଳୀନ ଶାସନ ଓ ଶୋଷଣର ସ୍ୱରୂପ (ଆଦିବାସୀ ଜୀବନ) :

୧୯୦୦-୧୯୪୦, ଦୀର୍ଘ ୪୦ ବର୍ଷର ପୃଷ୍ଠଭୂମିରେ ଯଦି ଆମେ ଜୟପୁର ଜମିଦାରୀ (ଯାହା ୧୯୩୬ରେ କୋରାପୁଟ ଜିଲ୍ଲା ହେଲା)ର ଏକ ସାମଗ୍ରିକ ଚିତ୍ରକୁ ଦେଖିବା ତା'ହେଲେ ଦେଖିବା ଯେ ଏହି ଜିଲ୍ଲାରେ ଦୁଇ ଶ୍ରେଣୀର ଲୋକଥିଲେ । ଗୋଟିଏ ସୁବିଧା ଭୋଗୀ ଶ୍ରେଣୀ ଓ ଅନ୍ୟ ଗୋଟିଏ ଦଳିତ ଶ୍ରେଣୀ । ଯେଉଁମାନେ ସୁବିଧା ଭୋଗୀ ଥିଲେ ସେମାନେ ହେଲେ ରାଜା, ରାଜ ପରିବାର, ରାଜ କର୍ମଚାରୀ, ବାହାରୁ ଆସିଥିବା କିଛି ଶିକ୍ଷିତ ଲୋକ, ବ୍ୟବସାୟୀ ଗୋଷ୍ଠୀ, ଇଂରେଜ ଶାସନର ପ୍ରତିନିଧି, ପୋଲିସ, ରାଜସ୍ୱ କର୍ମଚାରୀ, ଜଙ୍ଗଲ ଦେଖାରଖା କରୁଥିବା କର୍ମଚାରୀ ଏବଂ ଗ୍ରାମ ସ୍ତରରେ ନାୟକ, ଗଣ୍ଡା, ଚଲାଣ, ବାରିକ ।

୧୯୪୧ ମସିହା ବେଳକୁ ଜୟପୁର ଯଦିଓ କୋରାପୁଟ ଜିଲ୍ଲା ହୋଇ ସାରିଥିଲା ହେଲେ ଜୟପୁର ରାଜା ରାଜର୍ଷି ବିକ୍ରମଦେବ ବର୍ମା ଶାସନ କରୁଥିଲେ ୧୦ ହଜାର ବର୍ଗମାଇଲ ବିଶିଷ୍ଟ ରାଜ୍ୟକୁ । ପ୍ରଥମତଃ ବୟସ ଭାରରେ ନଇଁ ପଡ଼ିଥିବା ଆଦର୍ଶବାଦୀ ଓ ସାହିତ୍ୟ ରଚନାରେ ସମୟ କଟାଉଥିବା ରାଜା ରାଜ୍ୟ ଶାସନ ପାଇଁ ବହୁ ପରିମାଣରେ ନିର୍ଭର କରୁଥିଲେ ଦେବାନ୍‌ମାନଙ୍କ ଉପରେ । ରାଜାଥିଲେ ରକ୍ଷଣଶୀଳ, ପରମ୍ପରାଶ୍ରୟୀ ଶାସକ । ତାଙ୍କ ଦେବାନ୍ ଥିଲେ ଇଂରେଜୀ ପାଠ ପଢୁଆ ଅତ୍ୟାଧୁନିକ । ଏବଂ ୧୯୩୬ ମସିହାରେ ପ୍ରଥମ କରି ଏହି ଜିଲ୍ଲା ପାଇଁ ଜଣେ ମାଜିଷ୍ଟ୍ରେଟ ସବୁ ସମୟ ପାଇଁ ନିଯୁକ୍ତ ହେଲେ । ଏହି ତିନୋଟି ସଂସ୍ଥା ଜିଲ୍ଲା ଶାସନର ଦାୟିତ୍ୱ ନେଲେ । ଓଡ଼ିଶାର ଅନ୍ୟ କୌଣସି ଅଞ୍ଚଳରେ ଏମିତି ହୋଇନଥିବ ।

ଏମିତି ପରିସ୍ଥିତିରେ ଏଡ଼େ ବଡ଼ ବଞ୍ଚଳର ପ୍ରତ୍ୟକ୍ଷ ଶାସନରେ ରାଜା ସକ୍ରିୟ ହେବା ସମ୍ଭବ ନଥିଲା । ଉଭୟ ତେଲୁଗୁ ଓ ଓଡ଼ିଆ ଗୋଷ୍ଠୀଙ୍କୁ ସନ୍ତୁଷ୍ଟ କରିବାରେ ରାଜାଙ୍କର ସମୟତକ କଟୁଥିଲା । ତେଣୁ ତଳିଆ କର୍ମଚାରୀଙ୍କ ଶୋଷଣ ସମ୍ବନ୍ଧରେ ଅନୁସନ୍ଧାନ କରିବା, ଦୋଷୀକୁ ଦଣ୍ଡଦେବା, ଅତ୍ୟାଚାରର ନିରାକରଣ କରିବା ଏବଂ ପ୍ରଜାମାନଙ୍କ ଦୁଃଖ ଦୂର କରିବା ତାଙ୍କ ଦ୍ୱାରା ହୋଇପାରୁନଥିଲା ।

ରାଜାଙ୍କର ଏହି ଦୁର୍ବଳତାର ସୁଯୋଗ ନେଉଥିଲେ ଶୋଷକ ଦଳ । ଏହି ଜିଲ୍ଲାରେ ମୂଳ ଅଧିବାସୀ ଭାବେ ବାସ କରୁଥିବା ୭ ଲକ୍ଷ ବିଭିନ୍ନ ଗୋଷ୍ଠୀର ଆଦିବାସୀଙ୍କୁ ପ୍ରାୟ ଏକ ହଜାର ପରିବାର ଶୋଷଣ କରୁଥିଲେ ବିଭିନ୍ନ ଉପାୟରେ ।

ତତ୍‌କାଳୀନ ଆଦିବାସୀ ସମାଜ ଓ ଜୀବନରେ ଶୋଷଣତନ୍ତ୍ରର ପ୍ରଭାବ ସମ୍ବନ୍ଧରେ ଆଲୋଚନା ନକଲେ ବିଶ୍ୱନାଥ ଆଜ୍ଞାଙ୍କ ସଂଘର୍ଷ ସମ୍ପର୍କରେ ଧାରଣା କରିବା ସହଜ ହେବ ନାହିଁ । ଶୋଷଣର ଏକ କରାଳ ଚିତ୍ର ଆମେ ଦେଖିବା କୋରାପୁଟ ଜିଲ୍ଲାରେ ସେ କାଳରେ ପ୍ରଚଳିତ ଥିବା ଗୋତି ପ୍ରଥାରେ ।

ଗୋତି ପ୍ରଥା ଏକ ଅମାନବୀୟ, ନିଷ୍ଠୁର ପ୍ରଥା । ଏହା ଗଡ଼ଜାତ ଅଞ୍ଚଳର ରାଜା, ଜମିଦାର ଓ ରାଜ କର୍ମଚାରୀଙ୍କ ଘରେ ଖଟଣି ଖଟୁଥିବା ମଣିଷର ପ୍ରଥା ପରି । ଏହାର ମୂଳରେ ରହିଛି ଆଦବାସୀ ମଣିଷର ଆର୍ଥିକ ଦୁରବସ୍ଥା, ଦାରିଦ୍ର୍ୟ ଓ ସରଳ ବିଶ୍ୱାସ । କୌଣସି ଲୋକ ଅଭାବରେ ପଡ଼ି ମହାଜନଠାରୁ ବା କୌଣସି ସ୍ୱଚ୍ଛଳ ଲୋକଠାରୁ ଋଣ ନେଇଥିବ, ସେ ଯଦି ଇଚ୍ଛାକରେ ଋଣ ସୁଝାଣ ବାବଦରେ ଶରୀର ଶ୍ରମ କରି ଉକ୍ତ ଅର୍ଥ ପରିଶୋଧ କରିଦେଇପାରିବ ବା ମୂଳ ସୁଧ ଫେରାଇ ଦାୟମୁକ୍ତ ହୋଇପାରିବ । କିନ୍ତୁ ଆର୍ଥିକ ସମ୍ବଳ ଦୃଷ୍ଟିରୁ ଦରିଦ୍ର ଆଦିବାସୀଟିଏ ଋଣ କରେ ଅଭାବରେ ପଡ଼ି । ଝିଅର, ପୁଅର ବାହାଘର, ମଲାଲୋକ ପାଇଁ ଦଶାଖଟିବା, ଜାତିହେବା, ମଦପିଇ ବାକିଥିବା ପଇସା ସୁଝିବା ଆଦି ପାଇଁ ସେ କରଜ କରେ । ସଦା ଅଭାବୀ, ଋଣ ସୁଝିପାରେ ନାହିଁ । ଋଣଦାତା ଘରେ ଖଟେ ଋଣର ସୁଧ ମଜୁରା କରିବା ପାଇଁ । ମୂଳ ସେମିତି ଅସୁଝା ରହେ, ସେ ମଲାଯାଏ ଗୋତି ଖଟେ । ମଲେ ତା' ବଂଶଧରକୁ ଋଣ ସୁଝିବାକୁ ପଡ଼େ ନାହିଁ । ଏହାକୁ ଛଡ଼ିଣି ଗୋତି କୁହାଯାଏ । ଯଦି ସୁଧ ମୂଳ ମିଶି ଋଣର ପରିମାଣ ବହୁତ ହୋଇଥାଏ ତା'ହେଲେ ଋଣ ସୁଝି ନପାରି ଋଣ କର୍ତ୍ତା ମରିଗଲେ ତା' ପୁଅ, ନାତିମାନେ ଋଣ ଦାତା ଘରେ ଗୋତି ହୋଇ ଋଣ ସୁଝନ୍ତି, ଏହାକୁ ଲାଗୁଣି ଗୋତି କହନ୍ତି । ଏହି ଗୋତି ପ୍ରଥା ଆଦିବାସୀ ଜୀବନରେ ଯେଉଁ ଦୁଃଖ ଆଣୁଥିଲା ତାହା ଯେ ଆଫ୍ରିକାର କ୍ରୀତଦାସ ପ୍ରଥାରୁ କୌଣସି ଗୁଣରେ ନ୍ୟୂନ ନଥିଲା ।

ଆଦିବାସୀ ଗୋତି ଖଟି ଖଟି ମରି ମରି ବଞ୍ଚୁଥିଲା । ଋଣଦାତା ଥିଲା ତା'ର ମା'ପ୍ରୁ । ସେ ନିଜକୁ ସମର୍ପି ଦେଉଥିଲା ଏକ ରାକ୍ଷସୀୟ ପ୍ରଥାର ହାତରେ ଜୀବନ ସାରା । ସକାଳୁ ରାତିଯାଏ ହାଡ଼ଭଙ୍ଗା ଖଟଣି । ଦୁମ୍ୱାଏ ମାଣ୍ଡିଆ ପେଜ, ବର୍ଷକୁ ଥରେ ଦୁଇଟି ଛଅ ହାତ ଲମ୍ବର ଖଦଡ଼ ଲୁଗା, ଧାନ ମଳା ପରେ ପୋଲଧାନ ଦୁଇ ପୁଟି କି ପାଞ୍ଚ ପୁଟିରେ ତା'ର ଜୀବନ ସରେ । ଋଣ ସୁଝା ସରେ ନାହିଁ କେବେ । ତା'ରି ଶ୍ରମରେ ଋଣଦାତା ମେଢ଼ ମଣ୍ଡପ କରେ । ଜମି ଉଠିଆ କରାଏ । ଧନୀ ହୁଏ । ଧନ, ଜନ, ଗୋପ, ଲକ୍ଷ୍ମୀରେ ସେ ଅୟସ କରେ । ଆଦିବାସୀ ମଣିଷ ଏହାକୁ ରୀତି ବୋଲି ଧରିନିଏ । ଶୋଷଣ ତା'ର ଦେହ ସୁହା

ହୋଇଯାଏ, ଏହାକୁ ହିଁ ସେ ଜୀବନ ବୋଲି ବୁଝେ । ପ୍ରତିବାଦ କରିବାର ଜୁ ନଥାଏ । ପ୍ରତିବାଦ କଲେ ଓସ୍ତର ଠେଙ୍ଗା, ଜମାନର ଡରାଣ ତାକୁ ହନ୍ତସନ୍ତ କରେ । ତା' ଘରର କୁକୁଡ଼ା ଚିଆଁଟିଏ ବି ରହେ ନାହିଁ ।

## ଗଡ଼ମ୍ ପ୍ରଥା :

୧୯୩୦ ମସିହା ବେଳକୁ ଜୟପୁର ଇଷ୍ଟେଟର ଜମିଦାର ଥିଲେ ଚତୁର୍ଥ ରାମଚନ୍ଦ୍ର ଦେବ । ସେ କୋରାପୁଟ ଜିଲ୍ଲା (ଜୟପୁର ଇଷ୍ଟେଟ) ପ୍ରଜାମାନଙ୍କ ଠାରୁ ରାଜସ୍ୱ ଆଦାୟ କରିବା ପାଇଁ ଗାଁ' ନାୟକ ପ୍ରଥାର ପ୍ରଚଳନ କରାଇଥିଲେ । ସଂପ୍ରତି କେତେଗୋଟି ରାଜସ୍ୱ ଗ୍ରାମକୁ ନେଇ ଗୋଟିଏ ଗୋଟିଏ ରେଭେନ୍ୟୁ ଇନ୍ସପେକ୍ଟର ସର୍କଲ କରାଗଲା ପରି ସେତେବେଳେ ଜୟପୁର ଇଷ୍ଟେଟରେ ରାଜସ୍ୱ ଆଦାୟର ନିମ୍ନତମ ବ୍ୟକ୍ତିଥିଲେ ମୁଠାଦାର ନାୟକ (ନାଇକ) । ଏହି ନାୟକ ୧୨ ପାଲି (୧୨ ଖଣ୍ଡ ଗାଁ')ର ରାଜ-ପ୍ରତିନିଧି ଭାବେ ବର୍ଷକୁ ତିନିଥର ରୟତମାନଙ୍କ ଠାରୁ ରାଜସ୍ୱ ଆଦାୟ କରୁଥିଲେ । ନାୟକମାନଙ୍କୁ ଏହି ସେବା ପାଇଁ ରାଜା ଜମି ଦେଇଥାନ୍ତି ଚାଷ କରି ଜୀବିକା ନିର୍ବାହ ପାଇଁ । ନାୟକମାନେ ରାଜାଙ୍କ ଦ୍ୱାରା ମନୋନୀତ ହୋଇଥିବାରୁ ରାଜା ଓ ରାଜକର୍ମଚାରୀଙ୍କ ପ୍ରତି ବିଶେଷ ଅନୁରକ୍ତ ରହନ୍ତି ଓ ଆନୁଗତ୍ୟ ପ୍ରକାଶ କରନ୍ତି । ଏହି ମୁଠାଦାର ମାନେ ରାଜ କର୍ମଚାରୀ ଓ ସରକାରୀ ଲୋକ ଗାଁକୁ ଆସିଲେ ସେମାନଙ୍କ ରହିବା, ଖାଇବା, ପିଇବା, ସୁଖ ସୁବିଧା ଖଞ୍ଜିବା ପାଇଁ ଗାଁ ଲୋକଙ୍କ ଠାରୁ ଭାତିଆ ଆଦାୟ କରି ନିଜେ ଅଧେ ରଖନ୍ତି ଓ ବଳକାତକ ବାବୁମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଖର୍ଚ୍ଚ କରନ୍ତି ।

ସେତେବେଳେ ରାଜସ୍ୱ ଭାବେ ଶସ୍ୟ ଆଦାୟ କରାଯାଉଥିଲା । ରୟତମାନେ ବର୍ଷା ପୂର୍ବରୁ ଚାଷ ପାଇଁ ବିହନ ଓ ଅର୍ଥ ଦରକାର କରନ୍ତି । ରୟତମାନଙ୍କ ଅଭାବର ସୁଯୋଗ ନେଇ ନାୟକ, ଗଣ୍ଡା ଓ ସମ୍ପନ୍ନ ବ୍ୟକ୍ତିମାନେ ବିହନ ଓ ଅର୍ଥ ରୟତମାନଙ୍କୁ ଯୋଗାଇ ଦେଇ ଫସଲ ଆଦାୟ ପରେ ରୟତମାନଙ୍କ ଠାରୁ ଚାରି ପାଞ୍ଚ ଗୁଣ ଆଦାୟ କରନ୍ତି । ଏହାକୁ ଗଡ଼ମ୍ ପ୍ରଥା କୁହାଯାଏ । ରୟତ ଦେଇ ଦେଇ ଉଚ୍ଛନ୍ନ ହୁଏ । ଏହି ପ୍ରଥା ଶୋଷଣର ବାଟ ଫିଟାଇ ଥାଏ । ଧାନ ବଦଳରେ ଧାନ, ବିରି ବଦଳରେ ବିରି, କାନ୍ଦୁଲ ବଦଳରେ କାନ୍ଦୁଲ ଦେଲାପରେ ରୟତର ନିଜ ପାଇଁ କିଛି ରହେ ନାହିଁ । ସାହୁକାର ଋଣ ଅସୁଲ ବାବଦକୁ ଜମିର ଠିଆ ଫସଲକୁ କଟାଇ ନେଇଯାଏ । ଆଦିବାସୀ ଜୀବନରେ ଶୋଷଣ ଯେମିତି ସୂର୍ଯ୍ୟଚନ୍ଦ୍ର ପରି ସତ୍ୟ । ପାଟି ଫିଟାଇଲେ ମାଡ଼ରେ ପିଠି ଫାଟେ ।

## ଆଦିବାସୀ ଜମି ଅଧିକାର :

ରାଜା ଥିଲେ ସମସ୍ତ ଭୂ-ସମ୍ପତ୍ତିର ମାଲିକ । ବଣ ତାଙ୍କର, ବେଡ଼ା ତାଙ୍କର । ଜମି ଅଧିକାର ସମ୍ପର୍କରେ ରାଜାଙ୍କର ବିଚାର ବିଚିତ୍ର । ସେ ମନେକରୁଥିଲେ ଜୟପୁର ଜମିଦାରୀର ଯେଉଁ ଅଞ୍ଚଳରେ ଚାଷ କରାଯାଇ ପାରିବ ତାକୁ ରୟତମାନେ ଉଠିଆ କରିବେ । ସ୍ଥାନୀୟ ଲୋକେ ବଣ କାଟି, ପଥର ତାଡ଼ି, ଝାଳନାଳ ହୋଇ, ରକ୍ତ ପାଣି କରି ଜମି ଉଠିଆ କରିବେ, ଏଣୁ ରାଜା ତାଙ୍କ କର୍ମଚାରୀଙ୍କ ମାର୍ଫତରେ କିଛି କିଛି ଜମି ଦିଆଣି କରାନ୍ତି ଆଦିବାସୀମାନଙ୍କୁ । ଏହା ଆଦିବାସୀମାନଙ୍କ ପାଇଁ ଆଶୀର୍ବାଦ ହେବା ବଦଳରେ ଅଭିଶାପ ହୋଇଯାଏ । ଆଦିବାସୀ ବଣ କାଟେ, ମୂଳତାଡ଼େ, ପଥର ବାହାର କରି ପଡ଼ିଆ ଉଠିଆ କରେ ଫସଲ କରିବ ବୋଲି । ମାଟି ସମତୁଲ କରେ ।

ରାଜା ପଡ଼ିଆ, ପଥୁରିଆ ପାଣିର ସୁବିଧା ନଥିବା ଜମିକୁ ଆଦିବାସୀକୁ ଦିଅନ୍ତି, ସେ ଜମି କରିବ, ଫସଲ ଅମଳ କରିବ, ରାଜାଙ୍କୁ ସିସ୍ତ ବା ପାନ୍ଥ (ରାଜସ୍ୱ) ଦେବ । ଆଦିବାସୀ ମଣିଷଟି ତା' ପରିବାର ସହ ସେ ଜମିକୁ ଉଠିଆ କରେ, ଏହି ଆଶାରେ ଯେ, ଚାଷକଲେ ଦି ଓଳି ଦି ମୁଠା ଖାଇବାକୁ ମିଳିବ । କିନ୍ତୁ ସେ ଜମି ତା' ପାଖରେ ସ୍ଥାୟୀ ହୋଇ ରହେ ନାହିଁ । ତା'ର ଅଭାବର ସୁଯୋଗ ଦେଇ ଅଣ-ଆଦିବାସୀମାନେ ତାକୁ ପଇସା-ପତ୍ର, ମଦ ଦେଇ, ତା'ର ସରଳତାର ସୁଯୋଗ ଓ ଅଶିକ୍ଷାର ଫାଇଦା ଉଠାଇ କଳେ ବଳେ କୌଶଳେ ସେ ଜମି ତା ହାତରୁ ନେଇଯାଆନ୍ତି, ବନ୍ଧକ ସୂତ୍ରେ ହେଉ କି କମ୍ ମୂଲ୍ୟରେ କିଣି ନେଇ ହେଉ । କବଲା ଲେଖାହୁଏ । କୋଡ଼ିଏ ଟଙ୍କା ନେଇ ସେ ଲେଖାଇ ଦିଏ ଦୁଇଶହ ଟଙ୍କା ନେଇଛି ବୋଲି । ସେ ସେମିତି ରହେ ଚିର ଦରିଦ୍ର ହୋଇ । ଚାଲାକ ମଣିଷ ତା'ର ତ୍ରୁଟି ଧରି ତାକୁ ବସ୍ ଉଠ୍ କରାଏ । ସାରା ଜୀବନ ସେ ଡରି ଡରି ଜୀଏଁ । ରାଜା ତା ପାଇଁ ଦେବତା । ରାଜାଘର ଲୋକେ ମା'ପ୍ରୁ । ସେ ସମସ୍ତଙ୍କ ପାଦର ପାଣେଇ । ପ୍ରଭୁସତ୍ତାର ଅହଙ୍କାର ନିକଟରେ ସେ ହୁଏ ନିରୀହ ସମର୍ପିତ ପ୍ରାଣ, ବଳି ବୋଦା । ବିଶ୍ୱନାଥ ଆଞ୍ଚା କୁଜେନ୍ଦ୍ରୀକୁ ଆସି ସାଧାରଣ ମଣିଷର ଏହି ଦୁଃଖ ଦୁର୍ଦ୍ଦଶା ଦେଖିଲେ । ସମାଜର ତଳ ସ୍ତରର ଲୋକେ ଏମିତି ଆଶାଶୂନ୍ୟ ଜୀବନ ଜୀଉଁଥିଲେ ୧୯୪୦-୪୧ ବେଳକୁ କୋରାପୁଟ ଜିଲ୍ଲାରେ । ଭୟରେ ଜଡ଼ସଡ଼, ଧଳା ଲୁଗା ପିନ୍ଧା ଲୋକକୁ ଦେଖିଲେ ଦଉଡ଼ି ଯାଇ ବଣରେ ଲୁଚୁଥିବା ମଣିଷ ଥିଲେ ଏମାନେ ।

## ବେଠି ପ୍ରଥା :

ସେତେବେଳକୁ ରାଜସ୍ୱ କର୍ମଚାରୀ ଥିଲେ ଠାଣାଦାର । ରୟତମାନେ ଠାଣାଦାରଙ୍କ ଠାରେ ଆଣି ସିସ୍ତ ବାନ୍ଧୁଥିଲେ । ଠାଣାଦାର ଅମୀନମାନେ ଥିଲେ ରାଜ ସରାର ପ୍ରତିନିଧି । ଭାରି ଭୟଙ୍କର । ଏମାନେ ଦୟାକଲେ ରୟତ ହାତରେ ଜମି ରହୁଥିଲା ନହେଲେ ଜମି ଛଡ଼ାଇ ନିଆଯାଉଥିଲା । ଗାଁ'ର ନାୟକ, ଗାଉଁଣ୍ଡିଆ, ଗଣ୍ଡା, ଚଲାଣ ଏମାନଙ୍କ ହାତ ବାରିସି । ଏମାନେ ଶାସନର ମୂଳପିଣ୍ଡ ଥିଲେ । ଏମାନେ ଗାଁ ଗାଁରୁ ସବଳ ଲୋକଙ୍କୁ ଅଣାଇ ବେଠି ଖଟାଉଥିଲେ, ସକାଳୁ ସଞ୍ଜଯାଏ । କେଉଁଠି ରାସ୍ତା ତିଆରି ହେବ ତ କେଉଁଠି ପୋଖରୀ ଖୋଳାହେବ । କେଉଁଠି ତୋଟା ଲଗାହେବ ତ କେଉଁଠି ଜଇଲ ଘର ତିଆରି ହେବ । ନିଜ ହାତରୁ ଭାତିଆ ଖାଇ ଆଦିବାସୀ ବେଠି ଖଟୁଥିଲେ । ଟିକିଏ ବସିପଡ଼ିଲେ ମାଡ଼ରେ ଦରମରା ହେବା ସାର ହେଉଥିଲା । ଗୁଣୁପୁରରୁ ଲୋକେ ଜୟପୁର ବେଠି ଖଟିବାକୁ ଚାଲି ଚାଲି ଯାଉଥିଲେ ଦୀର୍ଘ ୧୦୦ ମାଇଲ୍ । କାଉଡ଼ିରେ ଭାତିଆ ବୋହି । ଅଧା ଲଙ୍ଗଳା ମଣିଷର ଏ ଯାତ୍ରା, କେବଳ ଖଟିବା ପାଇଁ ଯେମିତି ଏମାନଙ୍କର ଜନ୍ମ ।

## ଡୋଲି ବୁହା :

ଏହା ଅନ୍ୟ ଏକ ପ୍ରକାର ବର୍ବର ପ୍ରଥା । ସେତେବେଳେ ସେତେ ରାସ୍ତାଘାଟ ନଥିଲା । ସରକାରୀ କର୍ମଚାରୀମାନେ ଯେହେତୁ ପ୍ରତିଷ୍ଠାବାନ ଲୋକ, ଶାସନ କରିବା ଲୋକ, କୌଣସି ସ୍ଥାନକୁ ପାଦରେ ଚାଲିକରି ଯିବା ତାଙ୍କ ପାଖେ ସମ୍ମାନର ପ୍ରଶ୍ନ । ଏଣୁ ଏମାନେ ଡୋଲିବୁହା ପ୍ରଥା ଆରମ୍ଭ କରିଥିଲେ । କୌଣସି ସରକାରୀ କର୍ମଚାରୀ, ଠାଣା ଅମୀନ ହେଉ କି ପୋଲିସ୍ ଜମାନ୍, ଫରେଷ୍ଟ ଗାର୍ଡ଼ ହେଉ, କି କୌଣସି ଉଚ୍ଚ ପଦସ୍ଥ କର୍ମଚାରୀ ହେଉ, ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଗଲେ ସେମାନଙ୍କୁ ସ୍ଥାନୀୟ ଲୋକମାନେ ସବାରୀ ପରି ଗୋଟିଏ ଯାନରେ ବୋହି ନେଉଥିଲେ, ଏହାକୁ ଡୋଲି କୁହାଯାଉଥିଲା । ପ୍ରତି ଦୁଇକୋଶରେ ଆଠ ଜଣ ଲୋକ ବଦଳୁଥିଲେ ଡୋଲି ବୋହିବା ପାଇଁ । ଏହି ଡୋଲି ବୋହି ଲୋକେ ପାହାଡ଼ ଚଢ଼ୁଥିଲେ, ବଣ ପାର ହେଉଥିଲେ । ଏମିତିକି ବାବୁମାନଙ୍କ ପାଇଁ ରୋଷେଇ କରିବାର ଡେକ୍‌ଚି ମଧ୍ୟ ଡୋଲିରେ ବୁହା ହୋଇ ଯାଉଥିଲା । ଏଥିପାଇଁ ଲୋକମାନଙ୍କୁ କୌଣସି ପାରିଶ୍ରମିକ ମିଳୁନଥିଲା । ବରଂ ଖାଉଥିଲା ଗାଳି, ମାଡ଼ ଓ

ପାଉଥିଲା ଶାରୀରିକ କଷଣ । ଏହା ଥିଲା ଆଦିବାସୀ ଜୀବନ । ଦଳିତ, ଶୋଷିତ, ପୀଡ଼ିତ ପ୍ରାଣର ହାହାକାରୀ ଆର୍ତ୍ତନାଦ ଶୁଣିବା ପାଇଁ କିଏ ଯେମିତି ନଥିଲେ ସେତେବେଳେ ।

## ଆଦିବାସୀ ଜୀବନ ଓ ଶୁଣ୍ଡୀ ଶୋଷଣ :

ମଦ ଆଦିବାସୀ ଜୀବନରେ ମାଣ୍ଡିଆ ପେଜ ଠାରୁ ଅଧିକ ମହତ୍ୱ ରଖେ । ଆଦିବାସୀ ସଂସ୍କୃତିରେ ମଦର ଆବିଷ୍କର୍ତ୍ତା ଭାବରେ ଭୀମା ଦେବତା ପୂଜା ପାଆନ୍ତି । ପୁଣ୍ୟ-ପର୍ବରେ, ଜନ୍ମ, ବିବାହ, ମୃତ୍ୟୁରେ ମଦ ନହେଲେ ନଚଳେ । ଏହା ଚଳଣି । ପ୍ରତ୍ୟେକ ଧାର୍ମିକ ଅନୁଷ୍ଠାନରେ ଶିରା-ଦିସାରୀ, ପୂଜାରୀ· ମଦର ବ୍ୟବହାର କରନ୍ତି । ଆଦିମ ଯୁଗରୁ ମଦ ଏମାନଙ୍କୁ କବଳିତ କରି ରଖିଛି । ପୂର୍ବେ ଜଙ୍ଗଲ ଭିତରେ ଏମାନେ ମଦ ରାନ୍ଧୁଥିଲେ । ଅବାଧ ଥିଲା ଏହାର ବ୍ୟବହାର । ମଦ ପିଇ ମାତାଲ ହୋଇ କେତେ ଘର ଉଜୁଡ଼ି ଯାଉଥିଲା । ପରିବାରରେ ସୁଖ ରହୁନଥିଲା । ସଲପ ଗଛର ରସରେ, ଖଜୁରି ଗଛର ରସରେ ନିଶାହେବା ପାଇଁ ଚେର ମୂଳ ମିଶାଇ ଆଦିବାସୀ ମଣିଷ ପିଉଥିଲା ଏହି ନିଶାପାଣି ।

କ୍ରମେ ଆସିଲେ ଶୁଣ୍ଡିମାନେ ଆନ୍ଧ୍ରରୁ, ଗଞ୍ଜାମରୁ । ଏମାନଙ୍କ ପେଶା ହେଲା ମଦ ତିଆରି କରାଇ ଆଦିବାସୀଙ୍କୁ ବିକିବା । ସେମାନଙ୍କୁ ସର୍ବସ୍ୱାନ୍ତ କରାଇ ଧନ ଅର୍ଜିବା । କଳ କୌଶଳ କରି ସେମାନଙ୍କ ଜମି ବାଡ଼ି ହାତେଇବା । ସେତେବେଳକୁ ସରକାରୀ ଅବକାରୀ ଲୋକଙ୍କ ଦୌରାତ୍ମ୍ୟ କମ୍ ନଥିଲା । ଆଦିବାସୀ ମଦ ରାନ୍ଧିବାର ଜାଗା ଅବରୋଧ କରିବା, ସେମାନଙ୍କ ନାମରେ କେସ୍ କରିବା, ସଜା କରାଇବା ଆଉ ସେମାନଙ୍କୁ ଡରାଇ ଧମକାଇ ହାତରେ ରଖି ମଧୁର କଥାକହି ଶୋଷଣ କରୁଥିଲେ । ବାବୁ, ନାଇନା କରି ମଦ ଦେଉଥିଲେ ବାକିରେ, ସୁଝି ନପାରିଲେ ମକଦ୍ଦମା କରି ତା'ର ଜମି, ଘର ବିକ୍ରି କରି ନେଉଥିଲେ । ଆଦିବାସୀ ଅଣ୍ଟିରୁ କେମିତି ପଇସା ଖଲାସ କରି ହେବ, ସେହି ପାଞ୍ଚରେ ଶୁଣ୍ଡିମାନେ ଥିଲେ ଚତୁର । ଶୁଣ୍ଡିଆଣି ମଦ ବିକେ ଆଦିବାସୀକୁ । ଗରାଖକୁ ଦେଖିଲେ ତା' କଳା ଦିହରେ ବିଜୁଳି ଝଲସି ଯାଏ । ମଣ୍ଡଣି ହୋଇଥିବା ସୁନା ଝଲସାଇ, ଓଠରେ ଚହଟାଇ ଦିଏ ସେ ସରୁ ହସ, ଏଇଠି ଆଦିବାସୀର ଘର ଉଜୁଡ଼ିବା ଆରମ୍ଭ ହୁଏ । ଶୁଣ୍ଡି ଘରେ ତା'ର ଧନ ପଶେ । ନିଶାରେ ଅଜ୍ଞାନ ଆଦିବାସୀ ସବୁ ହରାଇ ହୋଇଯାଏ ନିଃସ୍ୱ । ଏହା ବି ଦେଖିଲେ ବିଶ୍ୱନାଥ ଆଞ୍ଚା ଗୁଣୁପୁର ଓ ତା'ର ନିକଟବର୍ତ୍ତୀ ଅଞ୍ଚଳରେ । ସବୁଠି ଶୋଷଣର ରାକ୍ଷସ କାୟା ମେଲାଇ ଗ୍ରାସି ଯାଉଛି ଆଦିବାସୀ ଜୀବନକୁ ।

## ଅଣ ଆଦିବାସୀଙ୍କ ଶୋଷଣ ଯନ୍ତାରେ ପୁନଷ୍ଟ ଆଦିବାସୀ :

ଆଦିବାସୀ ହିସାବ କରି ପାରେ ନାହିଁ । ସଂଖ୍ୟା ଗଣନାରେ ବାଟ ଝୁଣ୍ଟି ପଡ଼େ । ଟଙ୍କା ପଇସା ଋଣ ନେଲାବେଳେ ଦଶଥର ଗଣି ବି ଠିକ୍ ଜାଣିପାରେ ନାହିଁ । କୋଡ଼ି ହିସାବ । ଚାଳିଶ ଟଙ୍କା କହିଲେ ସେ କହେ ଦୁଇ କୋଡ଼ି ଟଙ୍କା । ଗୁଣୁପୁର କେବଳ ନୁହେଁ ସାରା ଜୟପୁର ଇଷ୍ଟେଟରେ ରହୁଥିବା ଆଦିବାସୀଙ୍କର ଏହି ଅବସ୍ଥା । ବାହାରୁ ଆସିଥିବା ବ୍ରାହ୍ମଣ, କୁମୁଟି, ଅନ୍ୟମାନେ ଜମି ବନ୍ଧକ ରଖିବା, ଗୋଡି ରଖିବା ସହ ଋଣ ମଧ ଦେଉଥିଲେ । ଯଦି କିଏ ପୁଟିଏ (ପ୍ରାୟ ୫୦ କି.ଗ୍ରା ହେବ) ମାଣ୍ଡିଆ ଋଣ ନେଇଛି ସୁଝିଲା ବେଳକୁ ସୁଧ ମୂଳ ମିଶି ତାହା ହୋଇଯିବ ଚାରି ପୁଟି । ହିସାବ ଏମିତି : ତୁ ନେଲୁ ପୁଟିଏ, ମୁଁ ଦେଲି ପୁଟିଏ, ମୂଳ ପୁଟିଏ, ସୁଧ ପୁଟିଏ, ହେଲା ଚାରିପୁଟି । ଆଦିବାସୀଟି କହିବ, ଚିଦ୍‌ମ ମାହାପ୍ରୁ' (ତୁ ଯାହା କହୁଛୁ ଠିକ୍) । ଅଣ ଆଦିବାସୀ ଖୁସି ହୁଏ ସେ ଠକି ପାରିଛି ବୋଲି ଫଳରେ ଲୋକମୁଖରେ ଆଦିବାସୀର ଏହି ଅଜ୍ଞାନକୁ ନେଇ ତମାଳିଟିଏ ''ଦେଶିଆ ଓଲୁ, ଭୂଇଁନେ ଢୁଲୁ ।'' ଦେଶଜ ମଣିଷକୁ ଏମାନେ ଓଲୁ ମନେକରନ୍ତି ।

ଆଉ କେତେକ ଋଣ ଫେରସ୍ତ ନେଲାବେଳେ ମାପିବେ ମାଣେ, ଦିମାଣ, ତିନିମାଣ, ପାଞ୍ଚ, ଛ ମାଣ ମାପି ସାରିଲା ପରେ ପୁଣି ଆରମ୍ଭ କରିବେ ଏକ ମାଣରୁ । ମଝିରେ ନେଲା ବାଲା ଠକିଁ ନେବ ଦି ତିନି ମାଣ ଅଧିକ । ତେଲେଙ୍ଗା ସାହୁକାର ଡାକିବେ ତେଲଗୁରେ ଅକଟିଁ, ରଣ୍ଡୁ, ମୁଡ୍ଡୁ, ନାଲୁଗୁ, ଆଇଦୁ, ଆରୁ ଆଉ ଚାରିମାଣ ଦେଇଥିଲେ ନେବ ପାଦାହାରୁ ବା ଷୋଳ ମାଣ । ଆଦିବାସୀ ଜାଣେ ମାଣେ ମାଣ୍ଡିଆ ନେଇଥିଲେ ୬ ମାସ ପରେ ତାକୁ ଦେବାକୁ ହେବ ଚାରି କି ପାଞ୍ଚ ମାଣ । ଏହା ପୂର୍ବର ରୀତି । ଚଳିଆସିଚି ବାପ, ଦାଦା ଅମଳରୁ ।

ହାଟରେ ବେପାରୀ ସାହୁକାର ଓଜନରେ ଠକନ୍ତି । ବଡ଼ ମାଣ, ସେର ଛଟାଙ୍କିରେ କିଣନ୍ତି ସାନ ମାଣରେ ବିକନ୍ତି । ଏସବୁ ସତ୍ତ୍ୱେ ଆଦିବାସୀଙ୍କର ଏମାନଙ୍କ ଉପରେ ବିଶ୍ୱାସ ଥାଏ । ସେ ଜାଣେ ରାତି ଅଧରେ କୁମୁଟି କିଛି ପଇସା ଧାର ମାଗିଲେ ଦେବ । ଶୁଣ୍ଢି ଦେବ ମଦ । ବ୍ୟବସାୟୀ ଚାଷ ହେବା ଆଗରୁ ଗଡ଼ମ୍ ପାଇଁ ପଇସା ଦେବ । ଫସଲ ଅମଳ ହେଲେ ଚାରିଗୁଣ ନେଉପଛେ, ଯେହେତୁ ଦରକାର ବେଳେ ସେ ସାହାଯ୍ୟ କରୁଛି, ଏଣୁ ସେ ବିଶ୍ୱାସୀ ଲୋକ । ଆଦିବାସୀ ବିଶ୍ୱାସ ଭାଙ୍ଗିବ ନାହିଁ । ମୁହଁ ଖୋଲି ଅନ୍ୟାୟର ପ୍ରତିବାଦ କରିବ ନାହିଁ । ସହିବାରେ ପଥର ପରି ସେ । ଆଦିବାସୀର ଏହି ଚରିତ୍ରକୁ ଭଲ ଭାବରେ ଦେଖି ପରଖି ଅଣ ଆଦିବାସୀ ଶୋଷଣ କରନ୍ତି । ଏମାନେ କେରାଣ୍ଡି ଗୁଛି ଶେଉଳ ଧରିବା ଜାଣନ୍ତି ବୋଲି ମେଢ଼

ମଣ୍ଡପ, ବେଡ଼ା ଖାଡ଼ା, ସୁନା ବାନାରେ ଅୟସ କରନ୍ତି । ଆଦିବାସୀ ଋଣ ସୁଝି ନପାରି ଗୋତି ହୁଏ, ବେଳେ ବେଳେ ଜେଲ ଯାଏ, ମଦ ପିଇ ମାତାଲ ହୁଏ । ଶୋଷକ ସମାଜର ଦୃଷ୍ଟିଭଙ୍ଗୀ ଓ ଶୋଷିତ ଆଦିବାସୀ ସମାଜ ଭିତରେ ଥିବା ଏହି ଆର୍ଥିକ ସମ୍ପର୍କର ସୂତ୍ରକୁ ସୂକ୍ଷ୍ମ ଭାବରେ ଅନୁଭବ କଲେ ବିଶ୍ୱନାଥ ଆଜ୍ଞା । ସେ ଜାଣିଥିଲେ ଏସବୁ ଘଟୁଛି ଅଶିକ୍ଷାରୁ, ପାରମ୍ପରିକ ବିଶ୍ୱାସ ବୋଧରୁ । ପୁରୁଣାକୁ ଛାଡ଼ି ନୂଆ କଥାରେ ଆସ୍ଥା ରଖିବା, ଯୁଗ ଯୁଗର ଧାରାକୁ ବଦଳାଇ ନୂଆ ଧାରାକୁ ଗ୍ରହଣ କରିବାର ମାନସିକତା ଯଦିଓ କେଉଁଠି କେଉଁଠି ମୁଣ୍ଡ ଟେକୁଥିଲା ହେଲେ ଏହା ସଂଗଠିତ ନଥିଲା । ଘୋର ଅଶିକ୍ଷା, ଦାରିଦ୍ର୍ୟ, କୁ-ସଂସ୍କାର, ସମର୍ପଣ ଭାବ, ସରଳତା ଯୋଗୁଁ ଆଦିବାସୀ ମଣିଷ ଶୋଷଣର ଶିକାର ହେଉଥିଲା, ଏଣୁ ବିଶ୍ୱନାଥ ବାବୁ କୁଜେନ୍ଦ୍ରୀକୁ କେନ୍ଦ୍ର କରି, ବରୀ ଢାଞ୍ଚାରେ ଆଶ୍ରମଟିଏ କରିବାର କଳ୍ପନା କଲେ । ପ୍ରଥମେ ପିଲାଙ୍କୁ ପାଠ ପଢ଼ାଇବାକୁ ହେବ । ଆଗରୁ ସେ ଥିଲେ ଶିକ୍ଷକ । ମଣିଷ ଗଢ଼ିବାର ସୂକ୍ଷ୍ମଚେତନାଟି ପୁଣି ତାଙ୍କୁ ଏଠି ସେହି କାମ କରିବାକୁ ଚେତେଇଦେଲା ।

## ବିଶ୍ୱନାଥଙ୍କ କୁଜେନ୍ଦ୍ରୀର ନାରୀଶିକ୍ଷା :

ନାରୀ ପରିବାରର ମୁଖ୍ୟା । ପୁରୁଷ ବାହାର କାମ ଦେଖେ । ଚାଷ, ଶିକାର । ଘରର ସବୁ କାମ ସ୍ତ୍ରୀ କରେ; ରନ୍ଧା ବଢ଼ା, ପିଲା ପିଲିଙ୍କ କାମ୍, ଗୁହାଳ-ଗୋବର । ତାକୁ ନେଇ ଗଢ଼ି ହୁଏ ତା'ର ପରିବାର । ସଉରା ମାଇକିନା ଖଟଣିରେ ପୁରୁଷର ଦୁଇଗୁଣ । ଏହି ନାରୀମାନଙ୍କ ମଧ୍ୟରେ ଜାଗରଣ ଆଣିବା ପାଇଁ ଚେଷ୍ଟାକଲେ ବିଶ୍ୱନାଥ ଆଜ୍ଞା ।

ବାଇରୁ ଗମାଙ୍ଗୋ, କୁଜେନ୍ଦ୍ରୀର ଅଳ୍ପ ପାଠ ପଢୁଆ ଲୋକ । ଓଡ଼ିଆ ଅଳ୍ପ ବୁଝି ପାରନ୍ତି । ତେଲୁଗୁ କହି ପାରନ୍ତି ନିଜ ମାତୃଭାଷା ସଉରା ମଧ୍ୟ । ବିଶ୍ୱନାଥ ପିଣ୍ଡାରେ ତାଟି ଘେରାଇ ରହୁଥିଲେ । ଗାଁ ଗାଁ ବୁଲି କପା ଚାଷ କରାଉଥିଲେ । ସୂତାକଟା ଶିଖାଉଥିଲେ । ତାଙ୍କ ଚେଷ୍ଟାରେ କେତେ ସଉରା ଯୁବକ ମଧ୍ୟ ସହଯୋଗ କରିବା ଆରମ୍ଭ କଲେ । ଆଦିବାସୀ ସହଜରେ ବାହାର ଲୋକଙ୍କୁ ବିଶ୍ୱାସ କରେ ନାହିଁ, କିନ୍ତୁ ବିଶ୍ୱନାଥଙ୍କ କ୍ଷେତ୍ରରେ ଆଦିବାସୀଙ୍କର ଏହି ଭାବ ନଥିଲା । ସେମାନେ ତାଙ୍କ ପରି, ତାଙ୍କ ନିଜ ଲୋକପରି ମଣିଥିଲେ ବିଶ୍ୱନାଥଙ୍କୁ । ଏହା ହୋଇ ପାରିଥିଲା ବିଶ୍ୱନାଥଙ୍କ ସଉରା ଓ କନ୍ଧମାନଙ୍କ ସହ ଏକାତ୍ମଭାବ ଯୋଗୁଁ । ତାଙ୍କ ପରି ଖଦଡ଼ ପିନ୍ଧି, ତାଙ୍କ ପରି ଖାଇ, ତାଙ୍କ ଭାଷା ଶିଖି ସେ ହୋଇଗଲେ ସେମାନଙ୍କ ଅତି ଆପଣାର, ତାଙ୍କ ଭିତରର ଲୋକ ।

* * *

- ଛଅ -

# ବିଶ୍ୱନାଥଙ୍କ ପଦଯାତ୍ରା

ବିଶ୍ୱନାଥ ବାବୁ ରଚନାତ୍ମକ କର୍ମୀ । ରଚନାତ୍ମକ କର୍ମୀମାନେ ଗ୍ରାମରେ କିପରି ରଚନାତ୍ମକ କର୍ମମାନ କରିବେ ସେ ବିଷୟରେ ଗାନ୍ଧିଜୀ ତାଙ୍କ ପତ୍ରିକାରେ ବିସ୍ତାରରେ ଲେଖୁଥାନ୍ତି । ଗୋପବାବୁ ଓଡ଼ିଶାର ବହୁ ଯାଗାରେ ଆଶ୍ରମମାନ ଖୋଲି ଲୋକ ସେବାରେ ଦିନ ରାତି ଲାଗି ପଡ଼ିଥାନ୍ତି । ତାଙ୍କ ଆଦର୍ଶରେ ଗୋଟାପଣେ ଅନୁପ୍ରାଣିତ ବିଶ୍ୱନାଥ କୁଜେନ୍ଦ୍ରୀ ଅଞ୍ଚଳ ଓ ଆଖ ପାଖ ଗାଁ ଗୁଡ଼ିକରେ ସଉରା ଓ କନ୍ଧ ବସତିକୁ ଯାଇ ସେମାନଙ୍କ ଗହଣରେ ସକାଳୁ ସଞ୍ଜଯାଏ କାମ କରନ୍ତି । ଯେଉଁ ଗାଁ'ରେ ସଞ୍ଜହୁଏ, ସେଠି ରହିଯାଆନ୍ତି କାହା ଓଳିତଳେ ତ କାହା ପିଣ୍ଡାରେ । ଛପା ମିଳିଲେ ଭଲ, ନହେଲେ ତଳେ ଶୋଇପଡ଼ନ୍ତି ଗାମୁଛା ପାରି । ବଣର ଭୟଙ୍କରତା, ପର୍ବତର ଅଟଳତା, ପାହାଡୀ ଝରଣାର ଚଳଚଞ୍ଚଳ ସ୍ରୋତର ଶବ୍ଦ, ବିଲୁଆଙ୍କ ହୁକେ ହୋ, ଦୂରରେ କେଉଁଠି ବାଘର ହେଣ୍ଟାଳ, କୁତ୍ରା, ସମ୍ବର, ଜିଆଦଙ୍କ ଛନ୍ନ ଛନ୍ନ ଦଉଡ଼ା, ମାଙ୍କଡ଼ାଙ୍କ ଖେଁ ଖାଁ ଭିତରେ ଆଦିମ ମଣିଷର ରାତି ଜାଅଁନ୍ତି ବିଶ୍ୱନାଥ ଗୁଣୁପୁର ତାଲୁକରେ । ଏହା ୧୯୪୧ ବେଳର ଶେଷ ଆଡ଼ର କଥା ।

## ବିଶ୍ୱନାଥଙ୍କ ପଦଯାତ୍ରା :

୧୯୪୧ ମସିହା । ଦେଶସାରା ଗାନ୍ଧୀଙ୍କ ଘୋଷଣା ଅନୁସାରେ ବାଣୀ ସତ୍ୟାଗ୍ରହ କରିବେ କଂଗ୍ରେସ କର୍ମୀମାନେ । ଇଂରେଜ ସରକାରକୁ ବାଧ କରିବେ ଦେଶ ଛାଡ଼ି ଚାଲିଯିବାକୁ । କର୍ମୀମାନେ ନିଜ ଇଛାରେ ସତ୍ୟାଗ୍ରହ କରି ଜେଲ ଯିବେ । ଯେଉଁ କର୍ମୀମାନେ କଂଗ୍ରେସର ନୀତିନିୟମ ମାନି ଚଳୁଥିବେ, ସୂତାକାଟୁଥିବେ, ଖଦଡ଼ ପିନ୍ଧୁଥିବେ, ହରିଜନ ସେବା କରୁଥିବେ, ଛୁଆଁ ଅଛୁଆଁ ଭେଦଭାବ ନଥିବ, ଅହିଂସା ଓ ଶାନ୍ତିରେ ବିଶ୍ୱାସ କରୁଥିବେ, ଅନ୍ୟାୟକୁ ଅହିଂସାରେ ପ୍ରତିରୋଧ କରିବା ପାଇଁ ମନଟିଏ ରଖିଥିବେ, ସତ କହୁଥିବେ ଆଉ ବୟସ ଅଠର ବର୍ଷରୁ ଅଧିକ ହୋଇଥିବ, ସେମାନେ ବାଣୀ ସତ୍ୟାଗ୍ରହ କରିବେ । ଗାନ୍ଧୀ ଜିଲ୍ଲା କଂଗ୍ରେସ କମିଟୀ ଓ ପ୍ରଦେଶ କଂଗ୍ରେସ କମିଟୀର ସୁପାରିଶ କ୍ରମେ କେଉଁ କର୍ମୀମାନେ ସତ୍ୟାଗ୍ରହ କରିବେ ସେମାନଙ୍କ ନାମ ତାଲିକା ଅନୁମୋଦନ କରିବେ ।

କର୍ମୀ ବାଛିବା ଭାର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ ସଭାପତି ଗୋପବନ୍ଧୁ ଚୌଧୁରୀଙ୍କୁ ଗାନ୍ଧୀ ଦେଲେ । ଗାନ୍ଧୀ ଚାହୁଁନଥିଲେ ରଚନାତ୍ମକ କର୍ମୀମାନେ ଏହି ଆନ୍ଦୋଳନରେ ସାମିଲ ହୁଅନ୍ତୁ । ଏମାନେ ଲୋକ ସେବାରେ ମନ ଦିଅନ୍ତୁ । ଏଣୁ ଗୋପବାବୁ ରଚନାତ୍ମକ କର୍ମୀମାନଙ୍କ ନାମ ସୁପାରିଶ କଲେ ନାହିଁ । ମନଥାଇ ମଧ୍ୟ ବିଶ୍ୱନାଥ ବାଣୀ ସତ୍ୟାଗ୍ରହରେ ଯୋଗ ଦେଇପାରିଲେ ନାହିଁ ସତ କିନ୍ତୁ ଅନୁଭବ କଲେ ତାଙ୍କର ଲୋକସମ୍ପର୍କ ଓ କାର୍ଯ୍ୟପ୍ରଣାଳୀ ଯେ ଦିନେ ସରକାରଙ୍କ କୋପ ଦୃଷ୍ଟିରେ ପଡ଼ିବ, ଏହା ସତ୍ୟ । ସେ ମନେ ମନେ ଜେଲ ଯିବା ପାଇଁ ପ୍ରସ୍ତୁତ ହେଲେ । ପଦଯାତ୍ରାରେ କେତେଜଣ କନ୍ଧ ଓ ସଉରା ଯୁବକ ସହ ସେ ବୁଲିଲେ ଗାଁ'ରୁ ଗାଁ'କୁ । ଅନେକ ଗାଁ ଯେମିତିକି ବୋଡ଼ିବାଲି, ଖାରିଗୁଡ଼ା, ମିଟିଖିଲଗି ରାଇ, ମୁଳିପୁଟୁ, ଗୁଡ଼ିଆବନ୍ଧ, ଖମ୍ବାପଦର, ମେରିଙ୍ଗୀ, ଗରଣ୍ଡା, ତୁମ୍ବାକଣା, କାର୍ଣ୍ଣୀଗୁଡ଼ା, ଡ଼ାମିଣି, ଜୋରଡ଼ି, ଡିବିରିସିଙ୍ଗି । ତାଙ୍କ ଚେଷ୍ଟାରେ କନ୍ଧ ଓ ସଉରା କପା ଚାଷ କଲେ । ତିନିହଜାର ଚରଖାର ଘର୍ ଘର୍ ଶବ୍ଦରେ ଏକ ନୂଆ ଜୀବନ ଆରମ୍ଭ କଲେ କୁଜେନ୍ଦ୍ରୀ ଅଞ୍ଚଳରେ ଲୋକ ।

## ବେଠି ବେଗାରୀ ବନ୍ଦ କରିବାର ଉପାୟ :

ବିଶ୍ୱନାଥ ଦେଖିଲେ ଆଦିବାସୀଙ୍କ ସମସ୍ୟା ଅନେକ । ସମାଧାନ ନାହିଁ । ଶାସନ ନିଷ୍ଠୁର । ଭୟ ଓ ରାଜାନୁଭକ୍ତି ଯେମିତି ସେମାନଙ୍କ ରକ୍ତରେ । ଏଠି ଟିକିଏ ଦଶହରା ଯାତ୍ରା କଥା ପଡୁ । ଏହି ଯାତ୍ରା ଆରମ୍ଭ ହେବା ଆଗରୁ କେମିତି ଶୋଷଣର ଘେରରେ ପଡ଼ନ୍ତି ଏ ଦେଶର ଆଦିବାସୀ ଟିକିଏ ଫଳେଇ ଦେବା, ଯାହା ଆମକୁ ସେ କାଳର ଜୀବନ ଯନ୍ତ୍ରଣାର କଥାଟିକୁ ସୂଚାଇ ଦବ ।

ଜୟପୁର ସମସ୍ଥାନମ୍‌ର ବଡ଼ ଯାତ୍ରା ଦଶହରା । ଷୋଳଦିନ ପର୍ବ । ଗୁଣୁପୁର ତାଲୁକା ଠାରୁ ମାଡ଼ଗୁଳ ଯାଏ, ପାନ୍ନାବେଡ଼ା (ଚନ୍ଦାହାଣ୍ଡି) ମୁଠାରୁ ପାଡୁଆ ଯାଏ ଏ ଯାତ୍ରାର ଆଦର । ଚୈତ୍ରମାସ ପ୍ରତିପଦା ଠାରୁ ନବମୀ ଯାଏ, ଜୟପୁର ସମସ୍ଥାନମ୍‌ର ରାଜଧାନୀ ଜୟପୁରର ରାଜ ଦରବାର ଉତ୍ସବ ମୁଖରିତ ହୁଏ । ରାଜାଙ୍କ ଇଷ୍ଟଦେବୀ କନକଦୁର୍ଗାଙ୍କ ମାଜଣା, ପୂଜା ଅର୍ଚ୍ଚନା ହୁଏ । ଦେବୀ ଭଗବତୀଙ୍କ ପବିତ୍ର ଶ୍ଳୋକର ଉଚ୍ଚାରଣ କରି ଷୋଡ଼ଶ ଉପଚାରରେ ପୂଜା କରନ୍ତି ରାଜା ବିକ୍ରମ ଦେବ ବର୍ମାଙ୍କ କୁଳ ପୁରୋହିତ ବାଚସ୍ପତି ମଧୁସୂଦନ ମିଶ୍ର ଶର୍ମା । ଘଣ୍ଟ, ମହୁରୀ, ତୂରୀ, କାହାଳୀ, ଭେରୀ, ଶିଙ୍ଗା ଓ ନିଶାଣ ବାଦ୍ୟର ଗୁରୁ ଗମ୍ଭୀର ଧ୍ୱନିରେ ଯେମିତି ଦେବୀ ପୁନଃଜୀବିତ ହୁଅନ୍ତି ସଂସାରର ସମସ୍ତ ତାପ ନଷ୍ଟ

କରିବାକୁ । ରାଜାଙ୍କ ଆଦେଶରେ ସାରା ଜୟପୁର ଜମିଦାରୀର ନାୟକ, ଗଣ୍ଡା, ଚଲାଣ, ପୂଜାରୀ, ଶିଶା, ଶମନ, ଭୁଣ୍ଡା, ଗାଉଁଣିଆ ଦଶହରା ଭେଟି ନେଇ ଛାମୁରେ ହାଜର ହୁଅନ୍ତି, ରାଜାଙ୍କ କୃପା ପାଇବା ପାଇଁ । ରାଜା ନାୟକମାନଙ୍କ ମୁଣ୍ଡରେ ଶିରିପା ବାନ୍ଧି ରାଜାନୁଗ୍ରହ ପ୍ରଦର୍ଶନ କରନ୍ତି । ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସୁନା କଙ୍କଣ ଦିଅନ୍ତି । ଏହି ଆଡ଼ମ୍ବର ପଛରେ ଶୋଷଣର ଯେଉଁ ହାହାକାରୀ ଘଟଣାଟି ଲୁଚି ରହିଥାଏ, ତାହା କେହି ଦେଖିବାକୁ ଚାହାନ୍ତି ନାହିଁ, ବିଶେଷତଃ ଶାସନ କଳରେ ଥିବା ମଣିଷ ।

ଦଶହରା ଆସିଲେ ଅମୀନ ବା ରାଜସ୍ୱ କର୍ମଚାରୀମାନଙ୍କୁ ଛେଳି, ମେଣ୍ଢା ଭେଟି ଦେବାକୁ ପଡ଼େ । ଯେହେତୁ ଏମାନେ ବିଲ, ଜମିର ମାଲିକ ଚାହିଁଲେ ଜଣେ ରୟତକୁ ଜମି ଦେଇପାରିବେ । ଅସନ୍ତୁଷ୍ଟ ହେଲେ ଜମି ଛଡ଼ାଇ ନେଇ ହନ୍ତସନ୍ତ କରିପାରିବେ, ଏଣୁ (ଦଶରା ପରବ) ଏହି ଯାତ୍ରାରେ ଭେଟି ସେମାନଙ୍କର ହକ । ଅମୀନ ଗାଁ ନାୟକକୁ ଭେଟି ସଂଗ୍ରହର ଦାୟିତ୍ୱ ଦିଏ । ନାୟକ ଯେହେତୁ ଗାଁ ମୁଠାଦାର, ରାଜ ପ୍ରତିନିଧି, ଅଖଣ୍ଡ କ୍ଷମତାର ଅଧିକାରୀ ଗାଁ ଲୋକଙ୍କ ଉପରେ, ସେ ଗାଁର ରୟତମାନଙ୍କ ଠାରୁ ଛେଳି, ମେଣ୍ଢା, ପାରା, ଭଲ ଘିଅ, ସରୁ ଚାଉଳ, ମୁଗ, କାନ୍ଦୁଲ, ବିରି, କୋଳଥ, ମାଣ୍ଡିଆ ଅସୁଲ କରି ନିଜ ପାଇଁ କିଛି ରଖେ, କିଛି ଅମୀନକୁ ଦିଏ, କିଛି ଠାଣାଦାରକୁ ।

ପ୍ରତି ଗାଁ'ରୁ ଗୋଟିଏ ଲେଖାଏଁ ଛେଳି ହିସାବରେ ଛେଳି କିମ୍ବା ଛେଳିର ଦାମ ଅସୁଲ କରି ନାୟକ ଅମୀନକୁ ଦିଏ । ନାୟକ (ନାଇକ, ଗାଁ'ର ମୁଖିଆ) ଉପରକୁ ଥାଏ ପେଷିଣୀ ବା ପେଷିନୀ । ଯା'ର ଘୋଡ଼ା ଥାଏ । ଘୋଡ଼ାରେ ଗାଁ'କୁ ଗାଁ ବୁଲେ । କେତେଖଣ୍ଡ ଗାଁ ଯା ଅଧୀନରେ । ପେଷିଣୀ ଅମୀନକୁ ଦଶହରା ଭେଟି ଅସୁଲରେ ସାହାଯ୍ୟ କରେ । ଅସୁଲ ଭେଟିକୁ କାଉଡ଼ିରେ ନେଇ ରୟତମାନେ ରାଜ ଦରବାରରେ ହାଜର ହୁଅନ୍ତି । ହାତରୁ ଭାତିଆ ଖାଇ । ଚୈତ୍ର ନବମୀ ଦିନ ରାଜା ଦରବାରକୁ ବିଜେ ହୁଅନ୍ତି । ଭେଟିଆଙ୍କ ଠାରୁ ଭେଟି ଗ୍ରହଣ କରନ୍ତି । କାହାକୁ ଶିରିପା ଦିଅନ୍ତି ତ କାହାକୁ ଲୁଗା ଯୋଡ଼, କାହାକୁ ପାନପତ୍ର ତ କାହାକୁ ଗୁଆ । ରାଜାଘର ତରଫରୁ ଭେଟି ଆଣିଥିବା ଲୋକଙ୍କୁ ରାନ୍ଧି ଖାଇବାକୁ ଭାତିଆ ଦିଆଯାଏ ।

ବିଭିନ୍ନ ଗ୍ରାମ ଦେବତୀଙ୍କ ଲାଠି, ଆସନ୍ତି ମହା ସମାରୋହରେ ଜୟପୁରକୁ । ଦନ୍ତେଶ୍ୱରୀ ଲାଠି, ବୀର ଧୁରୁଆ ଲାଠି, ପେଣ୍ଡାଣୀ ଲାଠି, ଭଣ୍ଡାର ଘରଣୀ ଲାଠି, ଖମ୍ବେଶ୍ୱରୀ ଲାଠି, ସାତ ଭଉଣୀ ଲାଠି, ମୂତ୍ୟାଲୁମା ଲାଠି, ମାଜି ଗୌରୀ ଲାଠି । ଦେବୀଙ୍କ ପ୍ରତିନିଧି

ଲାଠି ଆସେ ଗୁଣୁପୁର, ରାୟଗଡ଼ା, ବିଷମ କଟକ, କଲ୍ୟାଣ ସିଂହପୁର, କୋରାପୁଟ, ନନ୍ଦପୁର, ମାଲକାନ୍‌ଗିରି, ବୈପାରୀଗୁଡ଼ା, ଜୟପୁର, ବୋରିଗୁମ୍ମା, କୋଟପାଡ଼, ନବରଙ୍ଗପୁର, ଉମରକୋଟ, ରାଇଘର, ମଇଦଲପୁର ଅଞ୍ଚଳରୁ । ଜୟପୁର କିଲାଦାରଙ୍କ ଘରେ ପ୍ରଥା ଅନୁସାରେ ବଳିଭୋଗ ଖାଇ ଲାଠି ସବୁ ବିଜେ ହୁଅନ୍ତି ଜୟପୁର ଦିବାନବଙ୍ଗଳା ପଛପଟେ ଦଶହରା ପଦାରେ । ଯାତ୍ରା ତମାମ ସେଠି ଲାଠିଗୁଡ଼ିକୁ ଦେଶିଆ ପୂଜାରୀମାନେ ପାରମ୍ପରିକ ରୀତିରେ ପୃଥିବୀର ପଶୁପକ୍ଷୀର, ମଣିଷର ମଙ୍ଗଳ କାମନା କରି ପୂଜା କରନ୍ତି । ନାଟ ଗୀତ ବାଦ୍ୟର ସମାରୋହରେ ଦଶହରା ପର୍ବ ସମସ୍ତଙ୍କ ପାଇଁ ହୁଏ ଆନନ୍ଦ ଉଲ୍ଲାସର ପର୍ବ । କେଉଁଠି ଅଭିନୀତ ହୁଏ ରାଜା ରାମଚନ୍ଦ୍ର ଦେବଙ୍କ ରଚିତ ନାଟ କୁମ୍ଭାସୁର ବଧ ତ କେଉଁଠି ବୀରବାବୁ ବଧ ନାଟ । ଲୋକ ସଂସ୍କୃତିର ଏକ ବଡ଼ ମିଳନ କ୍ଷେତ୍ର ପାଲଟି ଯାଏ ଜୟପୁର । ଲୋକନାଟକ, ଲୋକ ସଙ୍ଗୀତ, ଲୋକ ବାଦ୍ୟର ଅପୂର୍ବ ସମନ୍ୱୟ ଘଟେ ଦଶହରା ଯାତ୍ରାରେ । ଲୋକ ଜମନ୍ତି ହଜାର ହଜାର । ହାତୀରେ ବସି ରାଜା ଆସିନ୍ତ । ରାଜ-ଉଆସରୁ ଦଶହରା ପଦାଯାଏ ଦୀର୍ଘ ଦୁଇ ମାଇଲ ଶୋଭାଯାତ୍ରା ଓ ଲାଖବିନ୍ଧା ପ୍ରତିଯୋଗିତା ଦେଖିବାକୁ ରାଜଦାଣ୍ଡର ଦୁଇ ପାଖରେ ଅସୁମାରୀ ଲୋକ । ଘରେ ଘରେ କଦଳୀ ଗଛର ସ୍ତମ୍ଭ କୁମ୍ଭ ଓ ଆମ୍ବ ତୋରଣ । ସଧବାଙ୍କ ହୁଳହୁଳିରେ ଉଛୁଳିପଡ଼େ ରାଜଦାଣ୍ଡ । ଏହି ସବୁ ଭିତରେ ବଣ ଜଙ୍ଗଲର ମଣିଷ, ନିଜର ପୁଞ୍ଜି, ଛେଳି, ମେଣ୍ଢା, ଖାଦ୍ୟ ପଦାର୍ଥ ଦଶହରା ଭେଟି ଦେଇ ନୀରବରେ ଲୁହ ଢାଳୁଥାଏ । କର୍ମକୁ ନିନ୍ଦୁଥାଏ । ଶାସନର ଶୋଷଣରେ ଶୋଷିତ ପ୍ରତିବାଦ ଶୂନ୍ୟ, ଅସହାୟ ଜୀବନ ଜୀଉଁଥାଏ । ଆହା ବୋଲିବାକୁ କିଏ ନାହିଁ । ସାହା ହେବାକୁ କେହି ନାହିଁ । ଗୁଣୁପୁରୁ ଅଞ୍ଚଳରେ ଏସବୁ ଶୋଷଣ ନିଜ ଆଖିରେ ଦେଖି ଏହି ବେଠି ବେପାରୀ ବନ୍ଦ କରିବାର ଉପାୟ ସେ ପାଞ୍ଚିଲେ । ସେ ଲୋକଙ୍କୁ ଭେଟି ନଦେବାକୁ, ବେଗାରୀ ନ ଖଟିବାକୁ ପ୍ରବର୍ତ୍ତାଇବା ପାଇଁ ସ୍ଥିର କଲେ । କ'ଣ କଲେ ଲୋକଙ୍କ ମନରୁ ଭୟ ଯିବ । ସେମାନେ ପୋଲିସ, ବଣ ବିଭାଗ ଓ ରାଜସ୍ୱ ବିଭାଗର କର୍ମଚାରୀମାନଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇବେ ଏହା ଚିନ୍ତାକଲେ ଏବଂ ସମସ୍ତେ ଏକାଠି ହୋଇ ଏସବୁର ପ୍ରତିବାଦ ଅହିଂସା ଉପାୟରେ କେମିତି କରିପାରିବେ ସେଥିପାଇଁ ଲୋକ ସମ୍ପର୍କ ବଢ଼ାଇଲେ । ସେମାନଙ୍କ ମନରେ ପ୍ରଥମେ ସାହସ ଆଣିବା ପାଇଁ ଉଦ୍ୟମ କଲେ । ତାଙ୍କ ଚେଷ୍ଟାରେ ଆଦିବାସୀମାନେ ଦଶହରା ଭେଟି, ରଥ ଦଉଡ଼ି ଭେଟି ବନ୍ଦ କରିଦେଲେ । ବେଳେ ବେଳେ ସଂଗ୍ରହ ହୋଇଥିବା ଭେଟି ଜିନିଷମାନ ନଷ୍ଟ କରିଦେଉଥିଲେ । ବିଶ୍ୱନାଥ ରାଜ କର୍ମଚାରୀ, ନାଇକ, ପେଷିଣିମାନଙ୍କୁ କହନ୍ତି, ''ଏ ଖବର ରାଜାଙ୍କୁ ଜଣାଇ ଦିଅ ଯେ ଆମେ ଭେଟି ବନ୍ଦ କରି ଦେଇଛୁ ।''

ଯେଉଁମାନେ ପର ସମ୍ପତ୍ତିରେ ମଉଜ କରୁଥିଲେ, ହାତ ଚିକ୍କଣ କରୁଥିଲେ, ନିଜ ଘୋଡ଼ାରେ ଚଢ଼ି ପ୍ରଜାଙ୍କୁ ଘୋଡ଼ା ଖୁରା ଦେଖାଉଥିଲେ, ବିଲର ଧାନ, ବାଡ଼ିର ଝଟା, କଦଳୀକାନ୍ଧି, ବୋଇତାଳୁ, ସରୁ ଚାଉଳ, ଦୁଧିଆଳି ଗାଈ, ଛେଳି ମେଣ୍ଢା ନିଜର ମନେକରୁଥିଲେ, ହଠାତ୍ ଏମିତି ଏକ ପ୍ରତିରୋଧର ସମ୍ମୁଖୀନ ହୋଇ ବିଶେଷତଃ ଅମୀନମାନେ ବିଶ୍ୱନାଥଙ୍କୁ ନିଜ ରାସ୍ତାର କଣ୍ଟା ମଣିଲେ । ରକ୍ତ ଚାଉଳ ଚୋବାଇଲେ । କିନ୍ତୁ ଲୋକେ ତାଙ୍କୁ ବିଶ୍ୱାସ କଲେ । ତାଙ୍କ ପଛରେ ଛିଡ଼ା ହେଲେ ।

ଏହି ଖବର ପ୍ରତିଗାଁରେ ବ୍ୟାପିଗଲା । ଗାଁ ଲୋକେ ଜଣେ ତାଙ୍କ ଭଲ ପାଇଁ ଏତେ କାମ କରିବା ଜାଣି ତାଙ୍କୁ ଦେଖିବାକୁ ଆସିଲେ । କିଏ ଆସିଲା ରାୟଗଡ଼ା ଠାଣା (ଥାନା)ରୁ ତ କିଏ ଚନ୍ଦ୍ରପୁର, ଗୁଡ଼ାରି ଠାଣାରୁ, କିଏ ରାମନାଗୁଡ଼ା, କୈଳାସକୋଟା, ବିଷମକଟକ, ଗୁଣୁପୁରରୁ । କୁଜେନ୍ଦ୍ରୀ ଗାଁ ହେଲା ପ୍ରେରଣାର ସ୍ରୋତ ସେମାନଙ୍କ ପାଇଁ । ସେମାନେ ଶୁଣିଲେ ବିଶ୍ୱନାଥଙ୍କୁ । ସେ ଯେମିତି ତାଙ୍କ ମନର ରୁଦ୍ଧ ଆବେଗ ଗୁଡ଼ାକୁ ବାଟ ଫିଟାଇ ଚାଲିଯିବାକୁ ବାଟ ବତେଇ ଦଉଛନ୍ତି । ସାହସୀ ହେଲେ ଡର, ଭୟ ନ ରହିବା କଥା କହୁଛନ୍ତି । ଲୋକଙ୍କର ଅନେକ ଅଭିଯୋଗ । ଅମୀନ, ତା'ର ଛେଳି ମାଗୁଛି, ଫରେଷ୍ଟଗାର୍ଡ଼ ପଇସା ମାଗୁଛି । ଜଙ୍ଗଲ ଆକଟ କରୁଛି, ଦାନ୍ତକାଠି ଖଣ୍ଡେ ମିଳୁନାହିଁ । ରାଜାଘର ଲୋକ ସେମାନେ ବାଘଠୁ ବଳୁଆ । ତାଙ୍କ ହାତରେ ଡମ୍ଫ, ଘାସିଆ, କ୍ଷମତା । ସେମାନେ ଅନୁରୋଧ କରନ୍ତି ବିଶ୍ୱାନାଥଙ୍କୁ ଆମକୁ ବୁଦ୍ଧିଦିଅ, ଜ୍ଞାନ ଦିଅ, ରକ୍ଷା ପାଇବାର ବାଟ ବତାଅ । ଲମ୍ୱା, କାଳିଆ, ଧେଡ଼ିଆ ଦେହର, ଆଣ୍ଠୁ ଲୁଚୁନଥିବା ଖଦଡ଼ ଲୁଗା ପିନ୍ଧୁଥିବା ମଣିଷ ବିଶ୍ୱନାଥ ହଠାତ୍ ଯେମିତି ପାଲଟି ଯାଆନ୍ତି ସେମାନଙ୍କ ଆଖିରେ ଦେବତା ।

## ଆଦିବାସୀ ପିଲାଙ୍କୁ ପାଠ ପଢ଼ା ଓ ପ୍ରାର୍ଥନା ଶିକ୍ଷା :

"ସବୁ ସମସ୍ୟାର ସମାଧାନ ପାଇଁ ସ୍ଥିର କଲି ଆଦିବାସୀମାନଙ୍କୁ କିଛି ପାଠ ପଢ଼ାଇବି । କୁଜେନ୍ଦ୍ରୀରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟିଏ ଥାଏ । ସ୍କୁଲଟିରେ ତୃତୀୟ ଶ୍ରେଣୀ ଯାଏ ପଢ଼ା ହେଉଥିଲା । ସାହୁକାର ଓ ରାଜ କର୍ମଚାରୀମାନେ କହନ୍ତି ଯେ ଆଦିବାସୀ ପିଲା ପାଠ ପଢ଼ିବା କଥା ନୁହେଁ । ଶିକ୍ଷିତ ହୋଇଗଲେ ତାଙ୍କୁ ଖମାରି ମିଳିବନି, ଲୋକେ ବେଠି କରିବେନି, ଭେଟି ଦେବେନି, ତାଙ୍କୁ କେହି ମାନିବେନି । କୁଜେନ୍ଦ୍ରୀର ଛୋଟ ପୁଅ ଝିଅମାନଙ୍କୁ ଏକାଠି କରି ସନ୍ଧ୍ୟାରେ ପ୍ରାର୍ଥନା ଶିଖାଏ, କିଛି କିଛି ପଢ଼ାଏ । ଯେଉଁମାନେ

ମଇଁଷି ଚରାଇ ଯାଆନ୍ତି, ସେ ପିଲାମାନଙ୍କ ମୁଣ୍ଡରେ ଲଗାଇଥିବା ଟୋପର ବା ପତ୍ର ଝାମ୍ପରେ କାଗଜଟିଏ ଲେଖି ଖୋସିଦିଏ । କହେ, 'ତୁ ଯାଆ, ପୋଢ଼ ଚରାଉଥିବୁ, ଯେତେବେଳେ ସୁବିଧା ହେବ, ଯେତେବେଳେ ତୋ'ର ମନହେବ, ଦୁଇ ଅକ୍ଷର ପଢ଼ିବୁ ।'

ଏମିତି କୁଜେନ୍ଦ୍ରୀରେ ବିଶ୍ୱନାଥଙ୍କ କାମ ଆରମ୍ଭ ହୋଇଗଲା । ସକାଳୁ ସଞ୍ଜଯାଏ ଆଦିବାସୀ କଲ୍ୟାଣରେ ମନଦେଇ ନିରଳସ ଭାବେ, ନିଃସ୍ୱାର୍ଥପର ଭାବେ ସେ କାମ କରି ଚାଲିଲେ । ଯେତେବେଳେ ସଞ୍ଜ ହୁଏ, ଚଢ଼େଇ ବସାକୁ ଫେରନ୍ତି, ଗୋରୁ ଗୁହାଳକୁ ଲେଉଟନ୍ତି, ଘରେ ଘରେ ଦୀପ ଜଳେ, ରାତି ବଣ ପାହାଡ଼ ଉପର ଦେଇ ଓହ୍ଲେଇ ଆସିବ ଆସିବ ହେଉଥାଏ, ବିଶ୍ୱନାଥ ଛୋଟ ପିଲାଙ୍କୁ ଏକାଠି କରି ସ୍ୱରଦେଇ ତାଙ୍କ ସାଙ୍ଗରେ ପ୍ରାର୍ଥନା ଗାଆନ୍ତି, ସମସ୍ତଙ୍କ ମଙ୍ଗଳ ପାଇଁ, ଆତ୍ମାର ଉନ୍ନତି ପାଇଁ ଏମିତି :

ଭଲ ବାଟ ମୋତେ ଦେଖାଅ ତୁମେ ଉଢ଼ାଳେ ଥାଇ,
ଦାଉ ଧକ୍କା ଯେତେ ଆସିବ ସବୁ ଯିବି ଏଡ଼ାଇ ।

ସତ ମିଠା ବୋଲି ଦିଅହେ ସଦା ତୁଣ୍ଡରେ ମୋର,
ଦେଶ ଦୁନିଆର କାମେ ନ ମଣେ ଆପଣା ପର ।

ଦୁଃଖୀ ରଙ୍କି ଶୋଷୀ ସକାଶେ ଝରୁ ଆଖିରୁ ପାଣି,
ତାଙ୍କ ସେବା ଲାଗି ସାହସ ବଳ ଦିଅ ହେ ଆଣି ।

ସମ୍ପଦେ ନହୁଏ ବିଭୋର ବିପଦରେ ଅଧୀର
ସତଲାଗି ଛାଡି ପାରେ ମୁଁ କଟୁ ପଛେ ମୋ ଶିର ।

ଟଙ୍କା ସୁନା ପଉରୁଷକୁ ମନ ନ ବଳୁ ତିଳେ
ନତକର ସଦା ମୋ ମଥା ତୁମ ଚରଣ ତଳେ ।

ସେ ଜାଣିଥିଲେ ପ୍ରାର୍ଥନା ମନରେ ଶାନ୍ତି ଦିଏ । ସତ୍ କର୍ମର ପ୍ରେରଣା ଦିଏ । ମନରୁ ଆବିଳତା ଦୂରାଏ । ସମାଜକୁ, ମଣିଷକୁ, ପରିବେଶକୁ ଭଲ ପାଇବା ଓ ଏମାନଙ୍କ ଭିତରେ ଭଲ ଦେଖିବାକୁ ପ୍ରାର୍ଥନା ବାଟ ଦେଖାଏ । ପ୍ରାର୍ଥନା, ମୌନତା, ଧ୍ୟାନ ବଳରେ ମଣିଷ ବହୁ କଥା କରିପାରେ ଏହା ବିଶ୍ୱନାଥ ଶିଖିଥିଲେ ବରୀ ଆଶ୍ରମ ଜୀବନରୁ । ନିଜ ପଠନ, ପାଠନ ଓ ଅଭ୍ୟାସରୁ ।

## ଗାନ୍ଧୀ ସେବା ସଂଘର କର୍ମୀ ଓ କୁଢେନ୍ଦ୍ରୀ ଆଶ୍ରମ :

ବିଶ୍ୱନାଥ କୁଢେନ୍ଦ୍ରୀ ଗାଁରେ ବରୀ ଆଶ୍ରମ ଢାଞ୍ଚାରେ ଆଶ୍ରମଟିଏ ବସାଇଲେ । ନିଜେ ମାଟି ଝାଟିର କୁଡ଼ିଆଟିଏ କରି ସେଠି ଆରମ୍ଭ କଲେ ନିଜର ସାଧନା । ଗାଁ ଲୋକଙ୍କ ସାହାଯ୍ୟରେ ବାଡ଼ି ବଗିଚା କୂଅ ସବୁ ହେଲା । ଫୁଲ ଫୁଟିଲା ଆଶ୍ରମରେ ଋତୁ ଅନୁସାରେ । କଦଳୀ, ଆମ୍ବର ବଗିଚା ମୁଣ୍ଡ ଟେକିଲା । ଋତୁ କାଳୀନ ପନିପରିବା ଚାଷ ହେଲା । ଆଶ୍ରମର ନାଆଁ ଚାରିଆଡ଼େ । ବଣ ମୂଲକର ମଣିଷ ପାଇଁ ଏକକ ମଣିଷର ନିରବଛିନ୍ନ ପ୍ରୟାସ ଏହି ଆଶ୍ରମ । ସେବା, ତ୍ୟାଗର ଭିତ୍ତିଭୂମିରେ ଗଢ଼ି ଉଠିଲା କୁଢେନ୍ଦ୍ରୀ ଆଶ୍ରମ, ପ୍ରକୃତିର ସୁନ୍ଦର ପରିବେଶ ଭିତରେ । ଏହି ଆଶ୍ରମର ଆକର୍ଷଣ ଏଠିକୁ ଟାଣି ଆଣିଥିଲା ଋଷି ପ୍ରତିମ ଆଚାର୍ଯ୍ୟ ହରିହରଙ୍କୁ, ଗୋପବାବୁଙ୍କୁ । ଯାହା କିଛି ବି ଅଭାବ ଥିଲା ଏହି ଦୁଇ ମହାପୁରୁଷଙ୍କ ସ୍ପର୍ଶରେ ତାହା ଦୂର ହୋଇଗଲା । ଗୋପବାବୁ, ଆଚାର୍ଯ୍ୟ ହରିହର, ବିଶ୍ୱନାଥ ଯେତେବେଳେ ଏକାଠି ଆଶ୍ରମରେ କାମ କଲେ, ଦିହ ଖଟାଇଲେ, ଏକାଠି ଅନ୍ତେବାସୀଙ୍କ ସହ ବସି ଖାଇବା ବେଳେ ମନ୍ତ୍ର ଉଚ୍ଚାରିଲେ, ସଂଜରେ ଆଶ୍ରମ ପାଖ ପଡ଼ିଆରେ ପିଲାଙ୍କ ସହ ଭଜନ ଗାଇଲେ ସତେ ଯେମିତି ବାୟୁମଣ୍ଡଳରେ ସଂଚରିଗଲା ଦୟା, କରୁଣା ଓ ପ୍ରେମର ବାୟବୀୟ ସ୍ରୋତ, ଈଶ୍ୱରୀୟ ହୋଇଗଲା ପଞ୍ଚଭୂତ ଆତ୍ମା । ପବିତ୍ର ହୋଇଗଲା ମନ, ଆତ୍ମା-

ଯେଉଁଠରେ ଖାଲି ଲୁହ ପ୍ରଭୁ ହେ !
ସେହିଠାରେ ମୋତେ ନିଅ ।
ଆଜୀବନ ଯିଏ କାନ୍ଦୁଛି ଖାଲି
ପୋଛିବି ତା' ଆଖି ଲୁହ ପ୍ରଭୁ ହେ' । ପଦ ।

ଜୀବନକୁ ଯିଏ ମଣିଅଛ ଭାର
ଚିରଦିନ ମୁଦା ହସର ଦୁଆର
ଜୀବନ ମରଣ ଭେଦ ନ ବୁଝିଣ
ବଞ୍ଚିବା ତା ଦୁର୍ବିସହ, ପ୍ରଭୁ ହେ ।

ଏହି ଆଶ୍ରମକୁ ଆସିଲେ ଈଶ୍ୱରଲାଲ ବ୍ୟାସ, ଛତିଆବଟ ପାଖର କଲକଲା ଗ୍ରାମର ଅଲେଖ ପ୍ରସାଦ ଦାସ, ଧୋତ୍ରେଜୀ । ଏମାନଙ୍କ ପ୍ରେରଣାରେ ଆଶ୍ରମ ଜୀବନ ହୋଇଗଲା

ସର୍ବାଙ୍ଗ ସୁନ୍ଦର । ବିଶ୍ୱନାଥଙ୍କ ଆଶ୍ରମ କ୍ରମେ ଓଡ଼ିଶାର ବହୁ ଲୋକଙ୍କର ଆକର୍ଷଣର କେନ୍ଦ୍ର ହେଲା । ଏହା ସ୍ଥାନୀୟ ଆଦିବାସୀଙ୍କ ଅର୍ଥନୈତିକ ପ୍ରଗତିର ତଥା ପରପର୍ତ୍ତୀ କାଳରେ ସ୍ୱାଧୀନତା ସଂଗ୍ରାମର ପୀଠ ହେଲା ।

## ସଂସ୍କାରକ ବିଶ୍ୱନାଥ : ଚରଖା ଓ ତନ୍ତ ସଂସ୍କାର :

ଗୁଣୁପୁର ଅଞ୍ଚଳର ବଂଶଧାରା ନଦୀ ଅବବାହିକା ତଥା କୁଢେନ୍ଦ୍ରୀ ଓ ଆଖପାଖ ଅଞ୍ଚଳରେ ପୂର୍ବରୁ କପାଚାଷ ହେଉଥିଲା । ୧୯୪୨ ମସିହା ପୂର୍ବରୁ ଏହି ଅଞ୍ଚଳରୁ ପ୍ରାୟ ପାଞ୍ଚ ହଜାର ଟଙ୍କାର କପା ଖରିଦ କରାଯାଇ କଟକ ଚରଖା ସଂଘକୁ ପଠାଯାଇଥିଲା ।

ଏପରି ଏକ ବ୍ୟାପକ ଭିତ୍ତିଭୂମିରେ ବିଶ୍ୱନାଥବାବୁଙ୍କ କୁଢେନ୍ଦ୍ରୀକୁ ଆସିବା ନିଶ୍ଚିତ ଭାବେ ଶୁଭ ସଙ୍କେତ ଥିଲା । ସେ ସେତେବେଳେ ସେଠାରେ ପ୍ରଚଳିତ ଚରଖାରେ ସଂସ୍କାର ଆଣିଥିଲେ । ପ୍ରଥମେ ଚରଖାରେ ବୁଲାଇବା ପାଇଁ ପଥର ଲାଗୁଥିଲା । ଚରଖା ବୁଲାଇବା ସେତେ ସହଜ ହେଉନଥିଲା । ତେଣୁ ପଥର ଚକ ବଦଳରେ କାଠଚକି ଲଗାଇଲେ । ତା'ପରେ କାଠ ବଦଳରେ ଲୁହାରଡ଼ ଲଗାଇଲେ । ଚରଖା ଉନ୍ନତ ହେଲା ଏବଂ ପୂର୍ବ ଅପେକ୍ଷା ଭଲ କାମ ହେଲା । ତା'ପରେ ସେ ଟାକୁଡ଼ି (ତକଲି)ର ସଂସ୍କାର କଲେ । ହାତେ ଲମ୍ବା ଟାକୁଡ଼ି । ଟାକୁଡ଼ି ତଳେ କାଠ ଚକି ଲଗୁଥିଲା । ତାକୁ ବଦଳାଇ ବିଶ୍ୱନାଥ ବାବୁ ଛୋଟ ପିତଳ ଚକି ଲଗାଇଲେ ।

ଏଥର ତନ୍ତର ସଂସ୍କାର ପାଇଁ ମନଦେଲେ । ସେତେବେଳେ ଡମ୍ବମାନେ ପାରମ୍ପରିକ ରୀତିରେ ଲୁଗା ବୁଣନ୍ତି । ସେତେବେଳେ ବିଶା ଓଜନ । ସେଇ ଓଜନରେ ସୂତା ନେଇ ଲୁଗା ବୁଣି ଦିଅନ୍ତି । ତନ୍ତରେ ୨୭ ଇଞ୍ଚ ଚଉଡ଼ାରୁ ଅଧିକ ପାନିଆ ଲାଗିପାରେ ନାହିଁ, ଫଳରେ ଲୁଗା ଅଣ ଓସାରିଆ ହୁଏ । ଏଣୁ ସେ ତନ୍ତର ସଂସ୍କାର କରି ଚଉଡ଼ା ଲୁଗା ବୁଣିବାର ବ୍ୟବସ୍ଥା କରିଥିଲେ ଯାହା ଫଳରେ ଚଉଡ଼ା ଲୁଗା ବୁଣା ହୋଇପାରିଲା ।

ବହୁ ସ୍ଥାନୀୟ ଲୋକେ ତୁଳାଭିଣି, ସୂତାକାଟି, ଲୁଗାବୁଣି ଆତ୍ମନିର୍ଭରଶୀଳ ହେବାର ସୁଯୋଗ ପାଇଲେ । ଏମାନେ ବିଶ୍ୱନାଥଙ୍କୁ ଅତି ଅନ୍ତରଙ୍ଗ ମନେକଲେ ଓ ସେ ହୋଇଗଲେ ସେହି ଅଞ୍ଚଳର ବିଶ୍ୱନାଥ ଆଜ୍ଞା, ଶିକ୍ଷକ, ବାଟକଢ଼ାଇବା ଲୋକ ।

❋ ❋ ❋

- ସାତ -

# ସ୍ୱାଧୀନତା ପାଇଁ ସଂଗ୍ରାମ

ସଉରା, କନ୍ଧ ଅଧ୍ୟୁଷିତ ରାୟଗଡ଼ା, ଗୁଣୁପୁର ମାଳାଞ୍ଚଳ । ଆଦିମ ମଣିଷର ଆଦିମ ଜୀବନ ଯାପନ ପ୍ରଣାଳୀ । ସେଇ ବଣ, ନଈ, ନାଳ, ପଶୁ, ପକ୍ଷୀକୁ ନେଇ ଜୀବନ । ସେମାନେ ରାଜାର ପ୍ରଜା । ଶୁଣ୍ଢି ସାହୁକାରର ଶୋଷଣ, ମଦ, ରାଜସ୍ୱବାଲାଙ୍କ ଅତ୍ୟାଚାର, ଫରେଷ୍ଟବାଲାଙ୍କ ଶୋଷଣରେ ନିତି ମରି ମରି ଜୀଉଁଥିବା ଜୀବନ ସେମାନଙ୍କର । ପୁରୁଣା ପରମ୍ପରା, ରୀତିରିବାଜ, ଅନ୍ଧବିଶ୍ୱାସ, କୁ-ସଂସ୍କାର ଭିତରେ ଦିନର ହାଡ଼ଭଙ୍ଗା ପରିଶ୍ରମ କରି ଖାଇବାକୁ ମୁଠାଏ ପାଉନଥିବା, ଲେଙ୍ଗୁଟି ପିନ୍ଧୁଥିବା ମଣିଷର ଭିତରେ ଯୁଗଯୁଗର ଜଡ଼ତା ଓ ଭୟକୁ ଦୂର କରି ନୂଆ ଚେତନାର କଥା ଶୁଣାଇ ସେମାନଙ୍କୁ ବଦଳାଇବା କାଠିକର ପାଠ ଥିଲା ୧୯୪୧ ବେଳକୁ । ଏହା ବେଶ୍ ଭଲ ଭାବେ ଅନୁଭବ କରି ପାରିଥିଲେ ବିଶ୍ୱନାଥ ବାବୁ । ଏଇ ବଣ ମୂଲକରେ ରହୁଥିବା ମଣିଷର ଉନ୍ନତି ପାଇଁ ସେ ନିଜର ଦିନରାତି ସମର୍ପି ଦେଲେ ।

ପାହାଡ଼ୀ ଝରଣା । ବଂଶଧାରା ନଈ । ଘଞ୍ଚ ଜଙ୍ଗଲ । ଅସୁମାରୀ ବଣ ଜନ୍ତୁ । ବାଘ, କଲରାପତରିଆ ବାଘ, ହେଟାବାଘ, ହାତୀ, ବିଲୁଆ, ଶିଆଳ କେତେ ନାଁ କେତେ । କେବଳ ଜଙ୍ଗଲ । ଚାରିଆଡ଼େ ଛୋଟ ବଡ଼ ଅନେକ ପାହାଡ଼ । ମଝିରେ ମଝିରେ ଦଶ, ପନ୍ଦର, କୋଡ଼ିଏ ଘରକୁ ନେଇ ସଉରା ଗାଁ, କନ୍ଧ ଗାଁ । ଲୋକ ଯାଆନ୍ତି କାଠ ହାଣି, ପତର ତୋଳି, କନ୍ଦା ଖୋଳି । କେହି କେହି ଘରକୁ ଫେରନ୍ତିନି । ବଣରୁ ବାଘ ଘୋଷାରି ନେଇଯାଏ । ବିଶ୍ୱନାଥ ନିଜ ଅନୁଭୂତିରୁ କହନ୍ତି :-

''ସେତେବେଳେ କୁଜେନ୍ଦ୍ରୀ ପାଖରେ ଜଙ୍ଗଲ । ବାଘ ଦିନରେ ଗାଆଁ ପାଖ ଜଙ୍ଗଲରୁ ଲୋକ ନେଇଯାଏ । ମୁଁ ଯେଉଁବର୍ଷ ଗଲି, ସେ ବର୍ଷ, ଦିନେ ସକାଳେ ଜଣେ ଲୋକ ସହ କଥାବାର୍ତ୍ତା ହୋଇଥିଲି । ଦଶଟା ବେଳକୁ ଶୁଣିଲି ସେ ଲୋକଟିକୁ ବାଘ ନେଇଯାଇଛି । ଲୋକଟି ଚାରି ଛଅ ଜଣ ସହିତ କାଠ ଗୋଟାଇବାକୁ, କନ୍ଦା ଖୋଳିବାକୁ ଓ ଫଳ ସଂଗ୍ରହ କରିବାକୁ ଯାଇଥିଲା । ଗୋଟିଏ ମହାବଳ ବାଘ ଲୋକଟିକୁ ଛକି ରହି ନେଇଗଲା । ତା'ପରେ ଗାଁ ଲୋକେ ଏକାଠି ହୋଇ ନିଆଁ, ବାଜା ଇତ୍ୟାଦି ନେଇ ଲୋକଟିର ସନ୍ଧାନ ନେବାକୁ ଗଲେ । କିନ୍ତୁ କେବଳ ଦୁଇଖଣ୍ଡ ଛିଣ୍ଡା କନା ଛଡ଼ା ଲୋକଟିର ପତ୍ତା ମିଳିଲା ନାହିଁ । ବୋଧେ ବାଘ କୌଣସି ଅଗମ୍ୟ ନିକାଞ୍ଚନ ଯାଗାରେ ମଢ଼ଟିକୁ ଲୁଚାଇ ଦେଇଥିଲା ।

ଆଉଥରେ ଦିନରେ ମୁଁ ଗୋଟିଏ ଗାଆଁରେ ବସିଥାଏ । ପାଖ ଜଙ୍ଗଲରେ ଗଛ ଭାଙ୍ଗିବାର ମଡ୍‌ମାଡ୍‌ ଶବ୍ଦ ହେଲା । ଲୋକଙ୍କୁ ପଚାରିବାରୁ ସେ କହିଲେ ହାତୀ ପଲ ବରଡ଼ାଳ ଭାଙ୍ଗୁଛନ୍ତି ।''

ଏହି ମାଳ ଅଞ୍ଚଳ ବାଘ, ମ୍ୟାଲେରିଆର ଖେଳଘର । ଯେତେ ବାଘ ଖିଆରେ ମରନ୍ତି ତା'ଠୁ ବେଶୀ ମରନ୍ତି ମ୍ୟାଲେରିଆରେ, ଯକ୍ଷ୍ମା ରୋଗରେ ।

୧୯୪୧ ଶେଷ ଆଡ଼କୁ ବିଶ୍ୱନାଥ ମ୍ୟାଲେରିଆ ଭୋଗିଲେ । ଗୋପବାବୁ ଶୁଣି ବ୍ୟସ୍ତ ହେଲେ । ଚିଠି ଲେଖିଲେ ବରୀକୁ ଯିବାକୁ । ସେଠାକୁ ଯାଇ ବିଶ୍ୱନାଥ ଚିକିତ୍ସିତ ହେଲେ । ସେଠି କିଛି ଦିନ ରହିଲେ । ହେଲେ ଲୋକଙ୍କ କାମ ପାଇଁ ଭାରି ମନ । ବରୀରେ ରହିବାକୁ ମନ ହେଲା ନାହିଁ । ପୁଣି ଫେରି ଆସିଲେ ଗୁଣୁପୁର । ସେ କହନ୍ତି, ''କାମର ଝୁଙ୍କରେ ଜରର ପ୍ରକୋପ ଜଣାପଡ଼େ ନାହିଁ । ଜର ହେଲେ କାହା ବାରଣ୍ଡାରେ ଶୋଇପଡ଼େ । ଜର ଛାଡ଼ିଲେ ପୁଣି ଚାଲିବାକୁ ଆରମ୍ଭ କରେ । ଚନ୍ଦ୍ରପୁରର ଅନେକ ଗାଆଁରେ କୁଷ୍ଠରୋଗୀ ବହୁ ସଂଖ୍ୟାରେ ଥିଲେ, ଏବେ ମଧ୍ୟ ଅଛନ୍ତି । ଚନ୍ଦ୍ରପୁର ଗସ୍ତରେ ଗଲାବେଳେ ତାଙ୍କ ଘରେ ରହେ, ତାଙ୍କରି ପାଖରେ ଶୁଏ ।''

ମଣିଷର ସେବା, ବିଶେଷତଃ ଦୁଃଖି, ରୋଗୀଙ୍କର ସେବା ଯେମିତି ହୋଇଗଲା ତାଙ୍କ ଜୀବନର ବ୍ରତ ଆଉ ଗୁଣୁପୁର ହୋଇଗଲା ତାଙ୍କ ସାଧନାର ପୁଣ୍ୟପୀଠ ।

## ଏକାଧାରରେ ରଚନାତ୍ମକ କର୍ମୀ ଓ ସ୍ୱାଧୀନତା ସଂଗ୍ରାମୀ : ବିଶ୍ୱନାଥ —

୧୯୪୨ ବେଳକୁ ପୃଥିବୀ ସାରା ଯୁଦ୍ଧ ଗୋଳ । ଭାରତର ଚାରିଆଡ଼େ ଇଂରେଜ ଶାସନ ବିରୁଦ୍ଧରେ ସ୍ୱଇଚ୍ଛାରେ ଜେଲଯିବା ଆନ୍ଦୋଳନ । ବାଣୀ ସତ୍ୟାଗ୍ରହ । ଦଳକୁ ଦଳ କଂଗ୍ରେସ କର୍ମୀ ଜେଲ ଯାଉଥାଆନ୍ତି । କି ବଣ, ପାହାଡ଼, ଗାଆଁ, ଗଣ୍ଡା, ସବୁଠି ଗାନ୍ଧୀଙ୍କ ବାର୍ତ୍ତା । ସାରା ଦେଶ ହୁଲ୍‌ସ୍ଥୁଲ । ଗୁଣୁପୁର ବା ବାଦ ଯାଆନ୍ତା କୁଆଡୁ । ସହଜେ ତ ଆନ୍ଧ୍ର ପ୍ରଦେଶକୁ ପାଖ । ଗୁଣୁପୁର ଅଞ୍ଚଳର ବେପାର, ବଣିଜ ସମ୍ପର୍କ ସବୁ ସୀମାନ୍ତ ଆନ୍ଧ୍ର ସହିତ । ସେହି ସୂତ୍ରରେ କଂଗ୍ରେସ ବି ଆନ୍ଧ୍ର ଦେଇ ଏଠାକୁ ଆସିଥିଲା ଦେଶ ସ୍ୱାଧୀନତାର ବାର୍ତ୍ତା ନେଇ । ବେଳେ ବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀର ସଭ୍ୟମାନେ ବି ଆସନ୍ତି ଏଠିକି । ଏହି ଅଞ୍ଚଳର ଦାୟିତ୍ୱ ନେଇଥାଆନ୍ତି ରାଧାକୃଷ୍ଣ ବିଶ୍ୱାସରାୟ, କୋରାପୁଟ ଜିଲ୍ଲା

କଂଗ୍ରେସ ସଭାପତି, କଂଗ୍ରେସର ଚାରିଅଣିଆ ସଭ୍ୟ ସଂଗ୍ରହ ଠାରୁ ଆନ୍ଦୋଳନର ବାର୍ତ୍ତା ପହଞ୍ଚାଇବା ପାଇଁ ରାଧାକୃଷ୍ଣ ବିଶ୍ୱସରାୟଙ୍କ ଚେଷ୍ଟା ସଫଳ ହୋଇଥିଲା । ତାଙ୍କ ପାଇଁ କୁଚ୍ଚେନ୍ଦ୍ରୀ ଆଶ୍ରମ ଏକ ମୁଖ୍ୟ ଜାଗା । ବିଶ୍ୱନାଥଙ୍କ ସହିତ ତାଙ୍କ ସଂପର୍କ ନିବିଡ଼ ହେଲା ।

ସେତେବେଳକୁ ଗୁଣୁପୁର ସହରରେ କଂଗ୍ରେସ ବୋଇଲେ ପ୍ରହଲାଦ ପାଣିଗ୍ରାହୀଙ୍କୁ ବୁଝାଉଥିଲା । ତାଙ୍କୁ କଂଗ୍ରେସ କାମରେ ସାହାଯ୍ୟ କରୁଥିଲେ ଭଗବାନ ସେନାପତି, ସୁରି ନାରାୟଣା । ବିଶ୍ୱନାଥ ପଟ୍ଟନାୟକ ମଧ୍ୟ ଗୁଣୁପୁର କଂଗ୍ରେସ କମିଟୀ ସଭ୍ୟ ହେଲେ । ୧୯୪୨ ବେଳକୁ ଗୁଣୁପୁର କଂଗ୍ରେସର ସଭ୍ୟସଂଖ୍ୟା ପ୍ରାୟ ୫୦୦ ହୋଇଥିଲା । ୧୫-୧୦-୧୯୩୯ ବେଳକୁ ଏହି ସଂଖ୍ୟା ମୋଟ ୩୦୪ ଥିଲା । ସାରା ଜିଲ୍ଲାରେ ୨୬,୦୦୦ ସଭ୍ୟ ଥିଲେ । ଗୁଣୁପୁରରେ ଖଦଡ଼ ଦୋକାନ ଥାଏ । ପ୍ରହଲାଦ ପାଣିଗ୍ରାହୀ କଂଗ୍ରେସର ପ୍ରଚାର କରୁଥାନ୍ତି । ସେତେବେଳକୁ ଦେଶ ମିଶ୍ରଣର ନେତା ୰ଗୋପୀନାଥ ବକ୍ସିପାତ୍ରଙ୍କ ପୁଅ କୃଷ୍ଣଚନ୍ଦ୍ର ବକ୍ସିପାତ୍ର ଗୁଣୁପୁର ହାଇସ୍କୁଲ ଛାତ୍ର । ପାଠ ପଢ଼ିବା ଓ କଂଗ୍ରେସର କାମ କରିବାରେ ସେ ଆଗୁଆ ଥିଲେ । କିନ୍ତୁ କଂଗ୍ରେସ କାମରେ ପ୍ରତି ଗାଁଗଣ୍ଡାକୁ ଯିବା ଏମାନଙ୍କ ଦ୍ୱାରା ସମ୍ଭବ ହୁଏ ନାହିଁ । ବିଶ୍ୱନାଥ କଂଗ୍ରେସ କାମ କରିବାକୁ ଅଣ୍ଟା ଭିଡ଼ିଲେ । ଅକ୍ଲାନ୍ତ ପଦଯାତ୍ରୀ ସେ । ପାଦରେ ଚାଲି ଦିନକୁ ୨୦ ମାଇଲ୍ ଯିବା ଯେମିତି କିଛି ନୁହେଁ । ସେ ଗୁଣୁପୁର, ଗୁଡ଼ାରୀ, ରାମନାଗୁନା, ବିଷମ କଟକ, ରାୟଗଡ଼ା, କୈଳାସ କୋଟା ଅଞ୍ଚଳରେ ବୁଲିଲେ ।

ଆଦିବାସୀ ଗାଁର କଥା । ଦିନରେ ପୁରୁଷମାନେ କୁଲିନାଲି, କାଠହଣା, କନ୍ଦା ଓ ଫଳ ସଂଗ୍ରହ ଶିକାରରେ ଘରୁ ବାହାରେ ରହନ୍ତି । ଦିନରେ ସେମାନଙ୍କ ସହ ଦେଖା ମିଳିବ ନାହିଁ । ଏଣୁ ଦିନସାରା ବାଟଚାଲି ବିଶ୍ୱନାଥ ସଞ୍ଜବେଳକୁ ଗାଁ ଗୁଡ଼ିକରେ ପହଞ୍ଚନ୍ତି । ରାତି ନ କଟାଇଲେ ଲୋକ ମିଳିବେ ନାହିଁ । ସନ୍ଧ୍ୟାରେ ଖାଇ ପିଇ ସାରି ସେମାନେ ଆସନ୍ତି ବିଶ୍ୱନାଥଙ୍କ ପାଖକୁ । ସହଜେ ଜଙ୍ଗଲରେ ରହୁଥିବା ଲୋକ, ଅଣ ଆଦିବାସୀଙ୍କ ସହିତ ଖୁବ୍ କମ୍ ସଂପର୍କ । ବିଶ୍ୱନାଥ ଗାଁରେ ପହଞ୍ଚନ୍ତି । ସାଙ୍ଗରେ ନେଇଥାନ୍ତି ଦୁଇଜଣ ଲୋକ, ଗୋଟିଏ ଛୋଟ ମାଟିହାଣ୍ଡି । ଯେଉଁଠି ସୁବିଧା ହୁଏ ରାନ୍ଧି ଖାଆନ୍ତି ନହେଲେ ଘର ଘର ବୁଲି ସେହି ହାଣ୍ଡିରେ ପେଜ ମାଗି ଆଣନ୍ତି । ସେଇ ମାଣ୍ଡିଆ ପେଜ୍ (ଜାଉ)କୁ ସାଙ୍ଗ ହୋଇ ଖାଆନ୍ତି । ''ଆହାରେ ଭଲ ଭଲ ମନ୍ଦ ନାହିଁ, ଯେ ସ୍ଥାନେ ଯେମନ୍ତ ମିଳଇ ।'' ଚନ୍ଦ୍ରପୁର ଗଲାବେଳେ ସାଙ୍ଗରେ ଚକ୍ରପାଣି ଗାଣ୍ଟା ତାଙ୍କ ସହିତ ଯାଏ । ଦିନେ ଦିନେ ୪୦ ମାଇଲ୍ ବାଟ ପାହାଡ଼ ପର୍ବତ ଚଢ଼ି ଓହ୍ଲାଇ ଯିବାକୁ ହୁଏ । କ୍ଲାନ୍ତି ନାହିଁ, ବିରକ୍ତି ନାହିଁ । ଶୋଷ

ହେଲା ତ ବଣ ଝରଣାର ପାଣି ଅଛି । କୁଜେନ୍ଦ୍ରୀରୁ ଚନ୍ଦ୍ରପୁର ବାଟ ପ୍ରାୟ ୩୦ ମାଇଲ୍ । ସକାଳୁ ବାହାରି ଉପରବେଳା ୪ଟାରେ ପହଞ୍ଚନ୍ତି ସେ । ସେ ଅଞ୍ଚଳର ଏମିତି କୌଣସି ଗାଁ ନାହିଁ ଯୋଉଠିକୁ ସେ ନଯାଇଛନ୍ତି । ଦୁର୍ଗୀ, କୁରଙ୍ଗ ପାଇ, ପାଣ୍ଡରତୋଳା, ଚେଙ୍ଗିଲି, ସାଲିବି, ତଲସିକାବିରି, ବାମୁଣପିଣ୍ଡି, ବୋଡ଼ି ବାଲି, କାରଡାଂଗୁ, ହନୁମନ୍ତପୁର । ଗୁଡାରୀ ଅଞ୍ଚଳର ଖିଲିଙ୍ଗିରାଇ, ସାର ପାଡୁ । କୁଜେନ୍ଦ୍ରୀର ଗୁଲୁମୁଣ୍ଡା, ନାରାୟଣଗୁଡ଼ା, ଡୁମ୍ବାକଣା, କାର୍ଣ୍ଣଗୁଡ଼ା ।

ସବୁଠି ସେ କହନ୍ତି କପାଚାଷ, ସୂତାକଟା, ଲୁଗାବୁଣାର କଥା । ଗାନ୍ଧୀଙ୍କ କଥା । ଦେଶ ସ୍ୱାଧୀନ ହେବାର କଥା । ପତାକାର କଥା । ତା'ର ଇତିହାସ । ପିଲାଙ୍କୁ ଶିଖାନ୍ତି ପତାକା ଗୀତ କେମିତି.ଗାଇବାକୁ ହେବ । ଯଦିଓ ସେ କଂଗ୍ରେସ ପାଇଁ ପ୍ରଚାର କରୁଥିଲେ ସକ୍ରିୟଭାବେ ଆନ୍ଦୋଳନରେ ଯୋଗଦେବା କଥା ଚିନ୍ତା କରୁନଥିଲେ ।

ଗାନ୍ଧିଜୀଙ୍କ ନିର୍ଦ୍ଦେଶ । ରଚନାତ୍ମକ କର୍ମୀମାନେ ଆନ୍ଦୋଳନରେ ଯୋଗନଦେଇ ରଚନାତ୍ମକ କାମ କରିଆରେ ଦେଶର ସ୍ୱାଧୀନତା ଆନ୍ଦୋଳନକୁ ପୁଷ୍ଟ କରିବା ପାଇଁ ଉଦ୍ୟମ କରିବେ ।

ଏମିତି କନ୍ଧ, ସଉରାଙ୍କ ମେଳରେ ତାଙ୍କର ୨' ବର୍ଷ କଟିଗଲା । ସେ ଦେଖିଲେ ଏମାନଙ୍କ ଅଭାବ, ଦାରିଦ୍ର୍ୟ, ଶୋଷିତ ହେବାର, ସରଳ ବିଶ୍ୱାସ କରି ଠକି ଯିବାର, ମଦ ପିଇ ସର୍ବସ୍ୱାନ୍ତ ହେବାର ଗୁଣ, ଆତ୍ମ ସମର୍ପଣର ଭାବ, ସରକାର କି ରାଜାଙ୍କର ଲୋକ ଦେଖିଲେ ଭୟରେ ଗାଁ ଛାଡ଼ି ବଣରେ ଲୁଚିଯିବାର ପ୍ରବୃତ୍ତି । ସେ ସ୍ଥିର କଲେ ଏମାନଙ୍କୁ ସାମାଜିକ ନ୍ୟାୟ ଦେବା ପାଇଁ ମଧ ଆନ୍ଦୋଳନ କରିବାର ପ୍ରୟୋଜନ ଅଛି । ବଡ଼ ବଡ଼ ସହରର କଥା ନିଆରା । ସେଠି ଶୋଷଣର ପ୍ରକ୍ରିୟା ମଧ ଅଲଗା କିନ୍ତୁ ଏଠି ଶୋଷଣ ଯେତିକି ନିର୍ମମ, ନିଷ୍ଠୁର, ସେତିକି ବର୍ବର । ଏଠି ଥିଲା ବାଲା, ପଇସା ବାଲା ହାତରେ ଏମାନେ କୁଣ୍ଢେଇ । ଗୋତି ଖଟନ୍ତି । ''ମୁଇଁ ତୋ'ର ପାଦର ପାଣ୍ଢେଇ, ମାହାପ୍ରୁ'' କହି ପାଦ ଛୁଅନ୍ତି । ସବୁ ହରାଇ ନିଃସ୍ୱ ହୁଅନ୍ତି ।

ସେ ଚିନ୍ତାକଲେ ଏହି ଘଞ୍ଚ ଜଙ୍ଗଲ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନ ପାଇଁ ସଂଗଠନ ନାହିଁ । ମଞ୍ଚ ନାହିଁ । ନେତୃତ୍ୱର ଅଭାବ । ଏଡ଼େ ବଡ଼ ଜିଲ୍ଲା କୋରାପୁଟ । ମୋଟେ ଦଶ ହଜାର କର୍ମୀ କଂଗ୍ରେସର ପ୍ରଚାର କରୁଥାନ୍ତି । ରାୟଗଡ଼ା, ଗୁଣୁପୁର ଅଞ୍ଚଳରେ ଆନ୍ଦୋଳନ ପାଇଁ ଅଲଗା ଶକ୍ତି ମିଳିବ ନାହିଁ । ଏହି ଲୋକଙ୍କୁ ହିଁ କର୍ମୀ କରି ଗଢ଼ିବାକୁ ହେବ । ଏଠି ଶୋଷଣର ରୂପ ଅଲଗା । ଶୋଷଣକାରୀ ଶାସକର ସମର୍ଥକ । ଦୁଇଟି କାମ କରିବାକୁ

ହେବ । ଲୋକ ମନରେ ସଚେତନତା, ଶିକ୍ଷାର ପ୍ରସାର ଏବଂ ସେମାନଙ୍କ ମନରେ ସାହସର ସୃଷ୍ଟି ତଥା ନିଜର ଅଧିକାର ଓ ସ୍ୱାଧୀନତା ପାଇଁ ଲଢେଇ କରିବାର କଳା । ଏହା ସହଜ ନଥିଲା ଆଉ ଏହାର ମୂଳ କାରଣ ଥିଲା ଅଶିକ୍ଷା ଓ ଭୟ ।

ଏଣୁ ସେ ସ୍ଥିର କଲେ ଏହି ଅଞ୍ଚଳରେ ଯିଏ ରଚନାତ୍ମକ କାର୍ଯ୍ୟ କରିବ, ସେହି କର୍ମୀ ଦରକାର ହେଲେ ଆନ୍ଦୋଳନ କରି ଜେଲ ମଧ୍ୟ ଯିବ । ସେ ହେଲେ ଏକାଧାରରେ ରଚନାତ୍ମକ କର୍ମୀ ଓ ସ୍ୱାଧୀନତା ସଂଗ୍ରାମୀ ।

## ବିଶ୍ୱନାଥଙ୍କ ଆନ୍ଦୋଳନର ବାର୍ତ୍ତା :

ସ୍ଥାନୀୟ ଲୋକଙ୍କର ସମସ୍ୟାକୁ ନେଇ ସେ ଲୋକମାନଙ୍କୁ ଆଖି ଆଗରେ ରଖି, ଗାନ୍ଧୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ମୂଳକଥାଟିକୁ ବିଚାରକୁ ନେଇ ଆନ୍ଦୋଳନର ବାର୍ତ୍ତା ସ୍ଥାନୀୟ କଂଗ୍ରେସ କମିଟୀର ସଭ୍ୟମାନଙ୍କ ସହିତ ବିଚାର କରି ନିମ୍ନମତେ ତିଆରି କଲେ । ତାଙ୍କ ବାର୍ତ୍ତାର ମୂଳବକ୍ତବ୍ୟଟି ହେଲା ଦେଶ ସ୍ୱାଧୀନ ହେଲେ ଆଦିବାସୀମାନେ ଭଲରେ ରହିବେ । ଜୟପୁର ରାଜା ବ୍ରିଟିଶ ସରକାରର ଏଜେଣ୍ଟ୍ । ଏଣୁ ରାଜା ଘର ଲୋକେ ହଇରାଣ କରୁଛନ୍ତି । ସବୁ ଜିନିଷ ନେଇ ଯାଉଛନ୍ତି । ବ୍ରିଟିଶ ଚାଲିଗଲେ ଏ ସବୁ ବନ୍ଦ ହୋଇଯିବ । ଆଉ ଠକାମିରେ ପଡ଼ିବାକୁ ହେବ ନାହିଁ । ଏଇଠି ସେ ଟିକିଏ ଖଞ୍ଜି ଦେଲେ ଗାଁ ପରିମଳ ଆଉ ପରିବେଶର କଥା । ଅର୍ଥନୈତିକ ପ୍ରଗତିର କଥା ।

କପା ଚାଷ କରିବାକୁ ହେବ । ସୂତାକଟା ଓ ଲୁଗାବୁଣା କାମ ଭଲଭାବରେ ଚାଲିବ । ଆଦିବାସୀ ଲୋକେ ଅଧିକ ସଫା ସୁତୁରା ରହିବେ । ଘର ବାଡ଼ି ସଫା ରଖିବେ । ଗାଆଁ ଚାରିଆଡ଼ ନିର୍ମଳ ରଖିବେ । ରୋଗ ହେଲେ ଔଷଧ ଖାଇବେ । ସବୁ ଯେମିତି ପାଠ ପଢ଼ିବେ, ସ୍କୁଲକୁ ଯିବେ । ଯେଉଁ ଗାଆଁରେ ଏସବୁ କାମ ହେବ ନାହିଁ ସେ ଗାଁରେ କର୍ମୀ ରହିବାର ଦରକାର ନାହିଁ । ସେତେବେଳେ ଏହି ବଜ୍ର ଘୋଷଣା କମ୍ ସାହସର ପରିଚୟ ଦିଏ ନାହିଁ । ଯଦି ଲୋକମାନେ ଏହି କାମ କରନ୍ତି ତା'ହେଲେ ସେ ଲୋକଙ୍କୁ ଶୋଷଣ ବିରୁଦ୍ଧରେ ଛିଡ଼ା ହେବାକୁ ସାହାଯ୍ୟ କରିବେ । କାନ୍ଧକୁ କାନ୍ଧ ମିଶେଇ ପାଖରେ ଛିଡ଼ା ହେବେ । ଯେଉଁମାନେ ମଦ ଖାଇବେ ନାହିଁ, ଉପରୋକ୍ତ କଥା ମାନି ଚଳିବେ, ସେମାନେ କର୍ମୀ ହୋଇ ପାରିବେ । କର୍ମୀମାନେ ଅରଟ ମାର୍କା ଜାତୀୟ ପତାକା କିଣିପାରିବେ । ପ୍ରତି ଗାଁର ଲୋକଙ୍କୁ ସେ ବୁଝାଇଲେ : ''କର୍ମୀହେଲେ ବିପଦ ଆସିବ । ପୋଲିସ ବାନ୍ଧିନେବ । ସଜା ହେବ, ଶିକ୍ଷା ମିଳିବ ।''

ଏକକ ନିଷ୍ଠା, ଅଥକ ପରିଶ୍ରମ ଫଳରେ କୁଢେନ୍ଦ୍ରୀ ଅଞ୍ଚଳର ଲୋକେ ହୋଇଗଲେ କଂଗ୍ରେସର ସଚ୍ଚାକର୍ମୀ । ଘରେ ଘରେ କପାଚାଷ, ଅରଟର ଘର ଘର ଶବ୍ଦ ଓ ତନ୍ତରେ ଲୁଗାବୁଣାର ଅପୂର୍ବ ଦୃଶ୍ୟ ଦେଖାଗଲା । ସେତେବେଳକୁ ବିଶ୍ୱନାଥ ଆଉ ଯେମିତି ମୂଳ ଅଣ ଆଦିବାସୀ ହୋଇ ରହିନଥିଲେ ଆଦିବାସୀଙ୍କ ଦୃଷ୍ଟିରେ । ସେ ଯେମିତି ନିଜ ଲୋକ ତାଙ୍କର । ସର୍ବ ପ୍ରଥମେ ବାଇରୁ ଗମାଙ୍ଗୋ ହେଲା କଂଗ୍ରେସ କର୍ମୀ । ତାଳରେ ବାନ୍ଧିଲା ଅରଟ ମାର୍କା ଜାତୀୟ ପତାକା । ଗାନ୍ଧୀ ହୋଇଗଲେ ତା'ର ପିତୃପୁରୁଷର ଆତ୍ମା । ବାଇରୁ ଗମାଙ୍ଗୋର ଝିଅ ସାଣ୍ଡିକୁ ସୂତାକଟା ତାଲିମ ଦେବା ପାଇଁ ବିଶ୍ୱନାଥ ନେଇଗଲେ ବରୀକୁ । ଆଦରରେ ଗୋପବାବୁ ତା' ନାଆଁ ଦେଲେ 'ଶାନ୍ତି' । ଯେଉଁଦିନ ପାରମ୍ପରିକ ପୋଷାକ ପିନ୍ଧା ଛାଡ଼ି ସାଣ୍ଡି ଶାଢ଼ୀ ପିନ୍ଧିଲା, ବଦଳିଗଲା କୁଢେନ୍ଦ୍ରୀର ଭାଗ୍ୟ । ଯେଉଁଦିନ ବରୀରୁ ତାଲିମ ସାରି ସେ ଫେରିଲା କୁଢେନ୍ଦ୍ରୀକୁ, ଖଣ୍ଡିଏ ଶାଢ଼ୀ ପାଇଁ ତିନିଟଙ୍କା ଓ ଖଣ୍ଡିଏ ସତରଞ୍ଜି ପାଇଁ ଗୁଲୁମୁଣ୍ଡାର ଭଗବାନ ସେନାପତି ତାକୁ ଦେଲେ ଦୁଇଟଙ୍କା ସେ ହେଲା ଏହି ଅଞ୍ଚଳର ପ୍ରଥମ ପ୍ରଚାରିକା ଖଦଡ଼ ଲୁଗାର । ଯେଉଁ ସ୍କୁଲରେ କେବଳ ବ୍ରାହ୍ମଣ ଓ ସାହୁକାର ପିଲାମାନେ ପାଠ ପଢୁଥିଲେ ସେଠି ନୀଳକଣ୍ଠ ଗମାଙ୍ଗୋ ୫ମ ଶ୍ରେଣୀ ପଢ଼ି ପାଶ କରିବା ଏକ ଉଲ୍ଲେଖନୀୟ ଘଟଣା ହୋଇଗଲା ଆଦିବାସୀଙ୍କ ପାଇଁ । ଲୋକ ଚରିତ୍ର ବିଚିତ୍ର । ସହଜରେ ଜାଣିହୁଏ ନାହିଁ । ସହଜେ ଆଦିବାସୀ ଲୋକ ଚରିତ୍ର ବହୁ ବିଚିତ୍ର ଧାରଣାକୁ ନେଇ ଗଠିତ । ସେମାନେ ଜାଣନ୍ତି କେହି କେବଳ ଭଲ କଥା କହି ବଡ଼ ଲୋକ ହୋଇପାରେ ନାହିଁ । କେତେକ ଗୁଣ ଏଥିପାଇଁ ଲୋଡ଼ା । ସେମାନେ ଯାହାକୁ ବଡ଼ଲୋକ ବୋଲି ମନେକରନ୍ତି ତାକୁ ଅତି ପାଖରୁ ଦେଖିବାକୁ ଚେଷ୍ଟା କରନ୍ତି । ତା'ର କାମ, ରୀତି-ନୀତି ସବୁ ପରଖନ୍ତି । ତା'ର ଭିତର ବାହାର ଏକାପରି କି ଅଲଗା ତଉଲନ୍ତି । ତା'ପରେ ତାକୁ ବିଶ୍ୱାସ କରନ୍ତି, ଭକ୍ତି କରନ୍ତି, ତା' କଥା ମାନନ୍ତି । ବିଶ୍ୱନାଥଙ୍କୁ ଆଦିବାସୀଙ୍କ ସହିତ ମିଶିବାକୁ ଲାଗିଗଲା ଦୀର୍ଘ ଦୁଇ ବରଷ । ଏହାଥିଲା ତାଙ୍କ ପ୍ରସ୍ତୁତିର ବର୍ଷ ।

ସେ ନିଜ ପ୍ରସ୍ତୁତି ବିଷୟରେ କହନ୍ତି, ''ମୁଁ ଲୁଣ ଖାଇବା ଛାଡ଼ିଦେଲି । ମୋର ଧାରଣା ଆତ୍ମ ସଂଯମ ପାଇଁ ଲୁଣ ବିନା ଆହାର ସାହାଯ୍ୟ କରେ । ଥରେ ବେମାର ପଡ଼ିଯିବାରୁ ଲୁଣ ଖାଇଲି । ବହୁଦିନ ଧରି ନିମ୍ବପତ୍ର ଖାଇଲି, ନିମ୍ବ ଦାନ୍ତକାଠି ଓ କୋଚିଲା ଦାନ୍ତକାଠି ବ୍ୟବହାର କଲି । ମୁଁ ଖରାପ କାମ କରେ ନାହିଁ କି ଆଦିବାସୀମାନେ ମୋତେ କେବେ ଖରାପ ବୋଲି କହନ୍ତି ନାହିଁ । ସେତେବେଳକୁ ମୋତେ ୨୫ ବା ୨୭ ବର୍ଷ । ମୁଁ ଆଦିବାସୀ ପୁରୁଷ ଓ ମହିଳାମାନଙ୍କ ସହ ଅବାଧ ମିଳାମିଶା କରେ । ଆଦିବାସୀ ଝିଅମାନେ ତେର,

ଚଉଦ ବର୍ଷ ହେବା ପର୍ଯ୍ୟନ୍ତ କେବଳ (ଘୁଷି-କୌପିନ) ମାରୁଥିଲେ । ତାହା ତିନିରୁ ତାରି ଫୁଟ ଲମ୍ବ ଓ ଦଶ ରୁ ବାର ଇଞ୍ଚ ଚଉଡ଼ାର କନା ଖଣ୍ଡିଏ । ଅଣ୍ଟାରେ କାଛିଆ କରି ପିନ୍ଧାହୁଏ ।''

ପୁଣି ସେଇ ଅତୀତକୁ ଫେରିଯାଇ ସେ କହିଲେ ''ଯେତେବେଳେ ମୁଁ ଜାଣିଲି ଯେ ଆଦିବାସୀ ମିହଳାମାନେ ମଧ ଜେଲ୍ ଯିବା ଅବଶ୍ୟମ୍ଭାବୀ ହୋଇପଡ଼ିବ, ସେମାନଙ୍କୁ ଲୁଗା ପିନ୍ଧାଇବାକୁ ଚେଷ୍ଟା କଲି । ନିଜେ ଲୁଗା ପିନ୍ଧାଏ । ଗାଆଁର ପୁଅଝିଅକୁ ପତାକା ଗୀତ ଶିଖାଏ । କେମିତି ବୋଲିବାକୁ ହେବ ନିଜେ ଗାଇ ବୋଲାଏ । ପତାକା ଉତ୍ତୋଳନ ଓ ଅବତରଣ କରାଇବା ଶିଖାଏ । ଏସବୁ ସମୟରେ ସାଧାରଣ ଲୋକେ ମୋର ବ୍ୟକ୍ତିଗତ ଚରିତ୍ର ଓ ସଂପର୍କରେ ଶିକ୍ଷା କରନ୍ତି । ଯା'ହେଉ ଲୋକେ ମୋ କାମରେ ସହଯୋଗ କଲେ ।''

ବିଶ୍ୱନାଥଙ୍କ ସହିତ ନିୟମିତ ସଂପର୍କ ରଖି ଓ ତାଙ୍କ କାର୍ଯ୍ୟ ଦେଖି ଲୋକମାନଙ୍କ ମନରେ ଏକ ନୂଆ ବିଶ୍ୱାସ ଓ ସାହସ ସଞ୍ଚାର କଲା । ଯେଉଁ ସରକାର ଓ ରାଜାଘର ଲୋକ ଆଗରେ ସେମାନେ ପାଟି ଫିଟାଇବାକୁ ଭୟ କରୁଥିଲେ, ଧୀରେ ଧୀରେ ସେ ଭୟ ଦୂର ହେଲା । ନିଜ ଅଭାବ ଅସୁବିଧା କଥା ଅଧିକାରୀଙ୍କ ଆଗରେ କହିବାର ନୈତିକ ଓ ଆତ୍ମିକ ବଳ ଆସିଲା । ପ୍ରେରଣା ଦେଲେ ବିଶ୍ୱନାଥ ପଟ୍ଟନାୟକ ।

## ଆଦିବାସୀ ମହିଳାଙ୍କ ବୀରତ୍ୱ ଓ ସଂକଳ୍ପ :

୧୯୪୨ର ପରିବେଶ ସ୍ୱାଧୀନତା ସଂଗ୍ରାମର ଆହ୍ୱାନରେ ମୁଖରିତ ଥିଲା । କଂଗ୍ରେସର ଦଳ ଥିଲା ଜନଗଣର ଆଶା ଓ ଭରସାର ପ୍ରତୀକ । ଗାନ୍ଧିଜୀ ଥିଲେ ଦେବ ତୁଲ୍ୟ ମହାପୁରୁଷ । ତାଙ୍କ ବାଣୀଥିଲା କଂଗ୍ରେସ କର୍ମୀଙ୍କର ପ୍ରେରଣାର ସ୍ରୋତ । କଂଗ୍ରେସର ଅରଟ ମାର୍କା ପତାକା ଥିଲା ଦେଶପ୍ରେମର ଚିହ୍ନ ।

ଏଇ ପତାକାକୁ ନେଇ କୁଜେନ୍ଦ୍ରୀ ଗ୍ରାମରେ ଘଟିଥିଲା ଗୋଟିଏ ଅକଳ୍ପନୀୟ ଘଟଣା । ଗାଁ ମଝିରେ ପୋତା ହୋଇଥିଲା ୧୪ ହାତ ଉଚ୍ଚ ବାଉଁଶ ଦଣ୍ଡ । ସେହି ଦଣ୍ଡରେ ସବୁଦିନ ସକାଳେ ଅରଟ ମାର୍କା ତ୍ରିରଙ୍ଗ ପତାକା ଉଡ଼େ । ସଂଜରେ ଓହ୍ଲାଯାଏ । ଗାଁର ପିଲା ସ୍ତ୍ରୀ ଲୋକମାନେ ବାଉଁଶ ଦଣ୍ଡ ଚାରିପଟେ ବୃତ୍ତାକାରରେ ପତାକା ଗୀତ ଗାଆନ୍ତି । ଗାନ୍ଧୀଙ୍କର ଜୟଗାନ କରନ୍ତି । ଏମିତି ସବୁଦିନ ।

ଇଂରେଜ ରାଜତ୍ୱରେ ଏପରି ହେବା ଯେ ମୋଟେ ଉଚିତ ନୁହେଁ ଏବଂ ଏହା ଫଳରେ ଲୋକେ ଶାସନକୁ ମାନିବେ ନାହିଁ । ଏମିତି ଏକ ଧାରଣା କୁଙ୍ଗେନ୍ଦ୍ରୀ ଗ୍ରାମରୁ କୋରାପୁଟ କଲେକ୍ଟରର ସାହେବଙ୍କ ପାଖକୁ ବ୍ୟାପିଗଲା । ସେତେବେଳକୁ କଲେକ୍ଟର ସାହେବ ହେଉଛନ୍ତି ବେଲ୍ ସାହେବ (ୱିଲକକ୍) । ସେ ଏହି ଘଟଣାର ସରଜମିନ୍ ତଦନ୍ତ କରିବା ପାଇଁ ଇଚ୍ଛାକଲେ । କୁଙ୍ଗେନ୍ଦ୍ରୀ ଗ୍ରାମକୁ ତାଙ୍କର ଗସ୍ତ ଚୂଡ଼ାନ୍ତ ହେଲା । ୧୯୪୨ ମସିହା, ସେପ୍ଟେମ୍ବର ମାସ । କଲେକ୍ଟର ଗୁଣୁପୁରରୁ ଆସିଲେ ବାମୁଣି ଗାଁ । ସେଠାରୁ ପାଦରେ ଚାଲି ଚାଲି ପହଞ୍ଚିଲେ କୁଙ୍ଗେନ୍ଦ୍ରୀ ଗାଁ । ଦେଖିଲେ ଗାଁ ମଝିରେ ପତାକା ଉଡୁଛି । ସେ ଗାଁ ଲୋକଙ୍କୁ କହିଲେ, ''ପତାକା କିଏ ଉଡ଼ାଉଛି ? ପତାକା ଶୀଘ୍ର ଓହ୍ଲାଇ ଦିଅ ।'' ଖୋଦ କଲେକ୍ଟରଙ୍କ ଆଦେଶ ନମାନିଲେ ଜେଲ୍ ଦଣ୍ଡ । ଲୋକେ ଶୁଣିଲେ ନାହିଁ ତାଙ୍କ ଆଦେଶ । ମାନିଲେ ନାହିଁ କଥାକୁ । ଗାଁରୁ ଦଉଡ଼ି ଆସିଲେ ୨୦ ଜଣ ଆଦିବାସୀ ଝିଅ ଓ ସ୍ତ୍ରୀ ଲୋକ ପତାକା ଖୁଣ୍ଟ ଆଡ଼କୁ । ଚାରିପଟେ ଘେରିଗଲେ । ହାତକୁ ହାତ ଛନ୍ଦି ବଡ଼ ପାଟିରେ ଗାଇଲେ ପତାକା ଗୀତ ।

କଲେକ୍ଟର ଚୁପ୍‌ଚାପ ଦେଖୁଥିଲେ ଏହି ଅକଳ୍ପନୀୟ ଘଟଣାକୁ । ଲୋକଙ୍କ ସାହସକୁ, ବିଶେଷତଃ ଆଦିବାସୀ ମହିଳା ଓ ପିଲାଙ୍କ ବୀରତ୍ୱକୁ, ସଂକଳ୍ପକୁ ।

କୁଙ୍ଗେନ୍ଦ୍ରୀ ପ୍ରାଇମେରୀ ସ୍କୁଲରେ ପ୍ରାୟ ଘଣ୍ଟାଏ କାଳ ବସି ରହିଲେ କଲେକ୍ଟର । ତା'ପରେ ଫେରିଗଲେ, ପତାକା ସେମିତି ଉଡୁଥିଲା ଫର ଫର ହୋଇ ଲୋକଙ୍କ ଅଦମ୍ୟ ସଂକଳ୍ପର ପ୍ରତୀକ ହୋଇ, ସ୍ୱାଧୀନତା ସଂଗ୍ରାମର ପ୍ରସ୍ତୁତିର ଚିହ୍ନ ହୋଇ ।

❋ ❋ ❋

- ଆଠ -

# ଗୋରା ସରକାର ଭାରତ ଛାଡ଼

ଅଖିଳ ଭାରତ କଂଗ୍ରେସ କମିଟୀ ଭାରତକୁ ଇଂରେଜ ହାତରୁ ମୁକୁଳାଇବା ପାଇଁ ପଦକ୍ଷେପମାନ ନେଲା । ସଭା ସମିତି ଜରିଆରେ ଗାନ୍ଧିଜୀ ଭାରତୀୟମାନଙ୍କ ମନରେ ଦେଶପ୍ରେମର ଯେଉଁ ଉନ୍ମାଦ ଭରିଦେଲେ, ତାହା ଇଂରେଜମାନେ ଗୋଟିଏ ଆହ୍ୱାନ ବୋଲି ଗ୍ରହଣ କରିନେଲେ । ଗାନ୍ଧିଜୀ ଓ କଂଗ୍ରେସର ଦାବୀକୁ ଅଗ୍ରାହ୍ୟ କରି ତତ୍‌କାଳୀନ ବିଲାତର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଦୃଢ଼ କଣ୍ଠରେ ଘୋଷଣା କଲେ, ''ମୁଁ ଇଂରେଜ ସାମ୍ରାଜ୍ୟର ବିଲୟ ପ୍ରକ୍ରିୟାରେ ମୁଖ୍ୟଭୂମିକା ନେବା ପାଇଁ ବିଲାତ ସମ୍ରାଟଙ୍କ ପ୍ରଧାନମନ୍ତ୍ରୀ ହୋଇନାହିଁ ।''

କିନ୍ତୁ ୧୯୪୨ ମାର୍ଚ୍ଚ ମାସରେ ଯେତେବେଳେ ଜାପାନ ପୂର୍ବ ସୀମାନ୍ତରୁ ଭାରତ ଆକ୍ରମଣ କଲା ଏବଂ କଂଗ୍ରେସ ଦଳ ଯୁଦ୍ଧରେ ଯୋଗ ନଦେଇ ଇଂରେଜ ସରକାରକୁ ସବୁ ପ୍ରକାର ଅସହଯୋଗ କରିବାର ଘୋଷଣା କଲା, ଆମେରିକାର ଚାପରେ ମୁଣ୍ଡ ନୁଆଇଁ ବିଲାତର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ, ଭାରତୀୟ ନେତାମାନଙ୍କ ସହ ବିଚାର ବିମର୍ଶ କରିବା ପାଇଁ ତାଙ୍କର ଜଣେ ସହକର୍ମୀ ସାର୍ ଷ୍ଟାଫୋର୍ଡ କ୍ରିପସ୍‌ଙ୍କୁ ଭାରତ ପଠାଇଲେ ।

ଚର୍ଚ୍ଚିଲ ଖବର ପଠାଇଲେ । ଯଦି ଭାରତ ଯୁଦ୍ଧରେ ଇଲଣ୍ଡକୁ ସାହାଯ୍ୟ କରିବ ଏବଂ ଜାପାନ ପରାସ୍ତ ହେବ ତାହାହେଲେ ଭାରତକୁ ଔପନିବେଶିକ ସ୍ୱାୟତ୍ତ ଶାସନ ଦିଆଯିବ ଏବଂ ତା' ସଙ୍ଗେ ସଙ୍ଗେ ମୁସଲମାନ ମାନଙ୍କ ଅନ୍ୟରାଜ୍ୟ ଦାବି ମଧ ବିଚାରକୁ ନିଆଯିବ ।

କ୍ରିପସ୍ ପହଞ୍ଚିବାର ୪୮ ଘଣ୍ଟା ମଧ୍ୟରେ ଅଖିଳ ଭାରତ କଂଗ୍ରେସ ଦଳର କାର୍ଯ୍ୟକାରିଣୀ କମିଟୀ ତାଙ୍କ ପ୍ରସ୍ତାବକୁ ଭାରତକୁ ଖଣ୍ଡ ବିଖଣ୍ଡ କରିବାର ଏକ ଚକ୍ରାନ୍ତ କହି ରଦ୍ଦ କରିଦେଲା ।

୧୯୪୨ରେ ଅପ୍ରେଲ୍ ୨୯ରୁ ମେ ୨ ଯାଏ, ଦୀର୍ଘ ୪ ଦିନ ଆଲାହାବାଦ ଠାରେ ଅଖିଳ ଭାରତ କଂଗ୍ରେସ କମିଟୀର ଅଧିବେଶନ ବସିଲା । ସେଠି ଦାବି କରାଗଲା, ଇଂରେଜ ଭାରତକୁ ସ୍ୱାଧୀନତା ଦେଉ । ଦେଶ ଛାଡ଼ି ଚାଲିଯାଉ । ସ୍ୱାଧୀନ ହେଲା ପରେ ଭାରତ ନିଜର ବୈଦେଶିକ ନୀତି ନିଜେ ସ୍ଥିର କରିବ ଓ ଅନ୍ୟ ଦେଶ ସହ ସମ୍ପର୍କ ରଖିବା କଥା ବିଚାର କରିବ । ୧୯୪୨ ମେ ୨୪ ତାରିଖ ଦିନ ଗାନ୍ଧିଜୀ ତାଙ୍କ ପତ୍ରିକାରେ ଲେଖିଲେ, ''ଭାରତକୁ ଭଗବାନଙ୍କ ହାତରେ ଛାଡ଼ି ଦିଅ ।''

୧୯୪୨ ଜୁଲାଇ ଛ'ରେ ଓ୍ୱାର୍ଦ୍ଧାଠାରେ କଂଗ୍ରେସ ଓ୍ୱାର୍କିଂ କମିଟୀ ମିଟିଂରେ ଗାନ୍ଧିଜୀ କହିଲେ, ପ୍ରକାଶ୍ୟଭାବରେ ଓ ଅହିଂସ ଉପାୟରେ ଇଂରେଜ ସରକାର ବିରୁଦ୍ଧରେ ବିଦ୍ରୋହ କରାଯିବ । ଜୁଲାଇ ୧୪ରେ କମିଟୀ ଭାରତ ଛାଡ଼ ପ୍ରସ୍ତାବ ପାଶ କଲା । ୧୯୪୨ ଅଗଷ୍ଟ ସାତରେ ଅଖିଳ ଭାରତ କଂଗ୍ରେସ କମିଟୀର ଅଧିବେଶନ ବମ୍ବେରେ ବସି ପରବର୍ତ୍ତୀ କାର୍ଯ୍ୟକ୍ରମଗୁଡ଼ିକ ସମ୍ବନ୍ଧରେ ବିଚାର କରିବାର ନିଷ୍ପତ୍ତି ନେଇ ଭାରତର ସମସ୍ତ ପ୍ରାଦେଶିକ, ଜିଲ୍ଲା ଓ ମଣ୍ଡଳସ୍ତରୀୟ ସଭାପତିମାନଙ୍କୁ ବମ୍ବେ ଅଧିବେଶନରେ ଯୋଗଦେବା ପାଇଁ କୁହାଗଲା ।

## କୋରାପୁଟ ଜିଲ୍ଲା କଂଗ୍ରେସ ସଭାପତି ରାଧାକୃଷ୍ଣ ବିଶ୍ୱାସରାୟ ଓ ବମ୍ବେ ଅଧିବେଶନ :

୧୯୪୨ ଅଗଷ୍ଟ ବେଳକୁ ରାଧାକୃଷ୍ଣ ବିଶ୍ୱାସରାୟ ଓଡ଼ିଶା କଂଗ୍ରେସ କମିଟୀର ସଭାପତି । ସାରା ଓଡ଼ିଶାରୁ ପ୍ରାୟ ୫୦ ଜଣ ବମ୍ବେ ଅଧିବେଶନରେ ଯୋଗ ଦେଇଥିଲେ ।

ଗାନ୍ଧିଜୀଙ୍କ ନେତୃତ୍ୱରେ ଅଗଷ୍ଟ ୭ ଓ ୮ ତାରିଖ ଦିନ କଂଗ୍ରେସର କାର୍ଯ୍ୟପନ୍ଥା ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହେଲା । ଇଂରେଜମାନଙ୍କୁ ଭାରତଛାଡ଼ି ଚାଲିଯିବା ପାଇଁ ପୁଣି ଥରେ ପ୍ରସ୍ତାବ ପାଶ ହେଲା ।

୧୯୪୨ ଅଗଷ୍ଟ ୮ ତାରିଖ ଅଧରାତି ପରେ ହେବ, ବମ୍ବେର ଏକ ଗରମ ଅନୁଭୂତ ହେଉଥିବା ଅଧିବେଶନ ହଲରେ, ଅଣ୍ଟାଯାଏ ଖୋଲା ଦେହରେ ଥିବା ଗାନ୍ଧିଜୀ ସମବେତ କଂଗ୍ରେସ କର୍ମୀଙ୍କୁ ନିଜ ସ୍ୱଭାବ ସୁଲଭ ଧୀର ଓ ସଂଯତ ସ୍ୱରରେ କହିଲେ, ''ମୁଁ ଏଇକ୍ଷଣି ସ୍ୱାଧୀନତା ଚାହେଁ, ଏଇ ରାତିରେ ଅତିବେଶୀରେ ରାତି ପାହିବା ଆଗରୁ ।'' ନିଜ ଅନୁଗାମୀମାନଙ୍କୁ ଚାହିଁ ପୁଣି ସେ କହିଲେ, ''ମୁଁ ଆପଣମାନଙ୍କୁ ଗୋଟିଏ ମନ୍ତ୍ର ଦେଉଛି'' ଖୁବ୍ ଛୋଟିଆ ମନ୍ତ୍ରଟିଏ ତାହା ହେଉଛି, ''କର ଅବା ମର'' । ଆମେ ଭାରତକୁ ସ୍ୱାଧୀନ କରିବା କିମ୍ବା ସେଥିପାଇଁ ନିଜର ପ୍ରାଣ ଦେବା, ଆମେ ଦାସତ୍ୱକୁ ନେଇ ବଞ୍ଚିବା ନାହିଁ ।''

ସେଦିନର କଥାକୁ ସ୍ମରଣ କରି ରାଧାକୃଷ୍ଣ ବିଶ୍ୱାସରାୟ ଲେଖିଛନ୍ତି– ''୧୯୪୨ ଅଗଷ୍ଟ ୯ ତାରିଖ, ବମ୍ବେ ଠାରେ କଂଗ୍ରେସ ଅଧିବେଶନରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଜୋରସୋର୍‌ରେ ''ଭାରତ ଛାଡ଼'' ଆନ୍ଦୋଳନ ପ୍ରସ୍ତାବ ପାଶ ହେଲା । ଯେଉଁମାନେ ଆମେ ସମସ୍ତେ ବମ୍ବେ ଯାଇଥିଲୁ, କିଏ ବମ୍ବେରେ ଧରାହେଲେ, କିଏ ବାଟଘାଟରେ ଧରାହେଲେ ।

ମୁଁ ସେତେବେଳେ ପ୍ରାଦେଶିକ କଂଗ୍ରେସ ସଭାପତି ଏବଂ କୋରାପୁଟ ଜିଲ୍ଲା କଂଗ୍ରେସ ସଭାପତି । ଭାରତ ଛାଡ଼ ଆନ୍ଦୋଳନ କି ଆକାର ଧାରଣ କରିବ କେହି ଜାଣନ୍ତି ନାହିଁ । ମହାତ୍ମା ଗାନ୍ଧୀ ଯାହା ଯେମିତି ବୁଝାଇବେ ସେମିତି ହେବ ବୋଲି ସମସ୍ତେ ଅପେକ୍ଷା କରି ବସିଛନ୍ତି ।

୧୯୪୨ ଅଗଷ୍ଟ ୮ ତାରିଖ ରାତିରେ ବହୁରାତ୍ର ପର୍ଯ୍ୟନ୍ତ ଅ.ଭା.କଂ.କ.ର ଅଧିବେଶନ ବସିଥିଲା । ଏହି ସମ୍ବନ୍ଧରେ ସେ କହିନ୍ତି, ''ମହାତ୍ମା ଗାନ୍ଧୀ କ'ଣ ମନ୍ତ୍ର ଫୁଙ୍କିଦେବେ, ସମସ୍ତ କଂଗ୍ରେସ ବାଲାଙ୍କୁ କଂଗ୍ରେସ ମଣ୍ଡପରୁ ବାନ୍ଧିନେବା ସକାଶେ ଭାରତ ସରକାର ଦଳବଳ ସହ ଠିକ୍ ରହିଥିଲେ । ଠିକ୍ ହେଲା ଯେ, ରାତ୍ର ଭୋର ବେଳକୁ ମହାତ୍ମା ଗାନ୍ଧୀ ବଛା ବଛା ଲୋକଙ୍କୁ ଡାକି ତାଙ୍କ ମନ୍ତ୍ରଣା ଶୁଣାଇବେ । ଯେଝା ବସାକୁ ଆମେ ଚାଲିଗଲୁ । ସେ ସଂବନ୍ଧରେ ଯାହା ଠଉରଇେ ନେଇଥିଲୁ ଏ.ଆଇ.ସି.ସି.ରେ ପ୍ରସ୍ତାବ ଆଲୋଚନା ବେଳେ କେବଳ ସେତିକି । ମୁଁ ମୋର ଟିପାଟିପି କରିଥିଲି ।

ପାହାନ୍ତିଆ ବେଳକୁ ଗାନ୍ଧୀ, ଜବାହରଲାଲ, ୱାର୍କିଂ କମିଟୀ ମେମ୍ବରମାନେ ଏବଂ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତି ଧରାହେଲେଣି । ବମ୍ବେ ସହର ଲେଉଟିବାକୁ ବସିଲାଣି ।

ମୁଁ ମଧ ଭୋର ୩ଟା ୪ଟା ବେଳକୁ ଉଠି ରାତ୍ରଯାକ କ'ଣ ସବୁ ଭାବି ଟିପ୍‌ପଣୀ କରିଥିଲି । ସେ ଅନୁସାରେ ଅନେକ ଚିଠି କୋରାପୁଟର ବିଭିନ୍ନ ସ୍ଥାନକୁ ଲେଖି କର୍ମୀମାନଙ୍କୁ ଗୁପ୍ତ ସଙ୍କେତରେ ପଠାଇଦେଲି ।''

ରାଧାକୃଷ୍ଣ ବିଶ୍ୱାସରାୟ ୧୯୪୨ ଅଗଷ୍ଟ ୯ରେ ବମ୍ବେରୁ କଲିକତା ମେଲରେ କୋରାପୁଟ ଅଭିମୁଖେ ଯାତ୍ରାକଲେ । ଅଗଷ୍ଟ ୧୧ ତାରିଖ ଦିନ ବିଜୟନଗରରୁ ଜୟପୁରକୁ ବସରେ ଆସୁଥିବା ବେଳେ ସାଲୁର ଠାରେ ତାଙ୍କୁ ଗିରଫ କରାଯାଇ କୋରାପୁଟ ଜେଲକୁ ଅଣାଗଲା ।

## ବିଶ୍ୱନାଥଙ୍କ ସ୍ୱାଧୀନତା ଆନ୍ଦୋଳନ ଓ ଭାରତଛାଡ଼ ପ୍ରସ୍ତାବ :

ବମ୍ବେ ଅଧିବେଶନରେ କୁହାଗଲା ଯେ ଇଂରେଜମାନେ ଭାରତ ଛାଡ଼ନ୍ତୁ, ତା'ହେଲେ ଭାରତ ସ୍ୱାଧୀନ ରାଷ୍ଟ୍ର ହିସାବରେ ମିତ୍ରଶକ୍ତିକୁ ସାହାଯ୍ୟ କରିବ । ଯଦି ଇଂରେଜ ରାଜି ନ ହୁଅନ୍ତି ତାହାହେଲେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଲାଭ ପାଇଁ ଦେଶ ତମାମ ଲୋକେ ଅହିଂସ ଗଣ-ସଂଗ୍ରାମ ଆରମ୍ଭ କରିବେ ।

ଯେତେବେଳେ ନେତାମାନେ ସବୁ ଜେଲରେ ଥିବାରୁ ଆନ୍ଦୋଳନ ଚଳାଇବାକୁ କଂଗ୍ରେସ କମିଟୀ ନିର୍ଦ୍ଦେଶ ଦେବାକୁ ସମର୍ଥ ହେବେ ନାହିଁ, ସେତେବେଳେ ଗଣ ଆନ୍ଦୋଳନରେ ଭାଗନେଉଥିବା ପ୍ରତ୍ୟେକ ଲୋକ, ସ୍ତ୍ରୀ କି ପୁରୁଷ ହେଉ, କଂଗ୍ରେସ କମିଟୀର ପ୍ରଚଳିତ ନିର୍ଦ୍ଦେଶ ଅନୁସାରେ ନିଜେ ନିଜକୁ ପରିଚାଳିତ କରି ଆନ୍ଦୋଳନ ଚଳାଇବେ ।

## କଂଗ୍ରେସର ସ୍ଲୋଗାନ ହେବ "ଗୋରା ସରକାର ଭାରତ ଛାଡ଼" :

ସାରା ଭାରତ ଯେମିତି ଅସ୍ଥିର ହୋଇପଡ଼ିଲା । ଯେଉଁଠି ଦେଖ ଗିରଫ ଲୀଳା । କୌଣସି ନାମୀ ନେତା ରହିଲେ ନାହିଁ । ଦମନ ଲୀଳା ଚାଲିଲା । ଅଗଷ୍ଟ ମାସ ୧୫ ତାରିଖ ସୁଦ୍ଧା ଭାରତ ତଥା ଓଡ଼ିଶାର ପ୍ରାୟ ସମସ୍ତ ନେତା ଜେଲକୁ ଗଲେ । ଆସ୍ତେ ଆସ୍ତେ ଗଣ ଆନ୍ଦୋଳନ ବଣ ନିଆଁ ପରି ଚାରିଆଡ଼କୁ ବ୍ୟାପିଗଲା ।

ବିଶ୍ୱନାଥ କୁଜେନ୍ଦ୍ରୀ ଅଞ୍ଚଳର ଯେଉଁ ଗାଆଁକୁ ଗଲେ ସେଠି କହିଲେ ସ୍ୱାଧୀନତାର କଥା, ଆନ୍ଦୋଳନର କଥା । ଲୋକଙ୍କୁ ଦରକାର ପଡ଼ିଲେ ଜେଲ୍ ଯିବା ଓ ଦେଶ ପାଇଁ କଷ୍ଟ ସହିବାର କଥା । ସେତେବେଳକୁ ରାଧାକୃଷ୍ଣ ବିଶ୍ୱାସରାୟ ଓ ତାଙ୍କ ବଡ଼ଭାଇ ନରସିଂହ ସାହୁ କଂଗ୍ରେସ ପ୍ରଚାରରେ ଆଗୁଆ ଥିଲେ । ୧୯୪୨ ମସିହା ବେଳକୁ ଜୟପୁରର ନନ୍ଦ ପରିବାର କଂଗ୍ରେସ ପାଇଁ ବହୁତ ପଇସା ଖର୍ଚ୍ଚ କରୁଥିଲେ । ପରିବାରର ପାଞ୍ଚ ଭାଇ- ବ୍ରଜବନ୍ଧୁ ନନ୍ଦ, ଅନନ୍ତ ନନ୍ଦ, ନରସିଂହ ନନ୍ଦ, କୈଳାସ ନନ୍ଦ ଓ ଭାଗୀରଥି ନନ୍ଦ - ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ଜେଲ ଗଲେ । ନନ୍ଦପୁରର ଭଗବାନ ଖେମୁଣ୍ଡୁ, ଉମରକୋଟର ରବିସିଂ ମାଝୀ, ବଳି ପୂଜାରୀ, ମାତିଲିର ଲକ୍ଷ୍ମଣ ନାୟକଙ୍କର ଆଦିବାସୀମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥିଲା । ନବରଙ୍ଗପୁରର ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ, ଦାମୋଦର ସାମନ୍ତରାୟ ଆଦି ମଧ୍ୟ ବିପ୍ଳବୀ ଥିଲେ ।

ଅଗଷ୍ଟ ବିପ୍ଳବ ପୂର୍ବରୁ କଟକର ପ୍ରାଣକୃଷ୍ଣ ପଢ଼ିହାରୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ପୁଅ ମନମୋହନ ଚୌଧୁରୀ କୋରାପୁଟ ଜିଲ୍ଲାର ସବୁ ଅଞ୍ଚଳ ବୁଲି ସତ୍ୟାଗ୍ରହୀ ବାଛୁଥିଲେ ।

ବିଶ୍ୱନାଥ ଗୁଣୁପୁର ଅଞ୍ଚଳର ଗାଆଁଗଣ୍ଡା ବୁଲି କର୍ମୀ ତିଆରି କଲେ । ତାଙ୍କୁ ଏହି କାମରେ ନାରାୟଣଗୁଡ଼ାର ଗୋବର୍ଦ୍ଧନ ଗମାଙ୍ଗୋ, ଢିଂଢରଗୁଡ଼ାର ବୈରାଗୀ କନ୍ଧ,

କରଣୀଗୁଡ଼ାର ଗୋଗୁଲ ପାର୍ଥିକା, ତୁମ୍ବାକଣାର ନୀଳାମ୍ବର ପଦାକା ସାହାଯ୍ୟ କରୁଥାନ୍ତି । ଗାଆଁରୁ ଗାଆଁକୁ ଗଲାବେଳେ ଘଞ୍ଚ ଜଙ୍ଗଲ ପଡ଼େ । ବଣୁଆ ଜୀବଜନ୍ତୁର ଭୟ, ବିଶେଷତଃ ବାଘ, ହାତୀଙ୍କର, ସେମିତି ସ୍ଥଳେ ଗୋଟିଏ ଗାଁର ଦଶ ବାର ଜଣ ଲୋକ ଏମାନଙ୍କୁ ଅନ୍ୟ ଗାଁରେ ଛାଡ଼ି ଦେଇ ଆସନ୍ତି ।

ଏଠି ଗୁଣୁପୁରରେ ଥିବା ଖଦଡ଼ ଭଣ୍ଡାର କଥାର ଭୂମିକା ବିଷୟରେ ଦିପଦ ନକହିଲେ ପ୍ରସଙ୍ଗ ଅପୂର୍ଣ୍ଣ ରହିଯିବ । ଏହି ଖଦଡ଼ ଭଣ୍ଡାରରେ ଖଦୀ ଓ ଅରଟ ମାର୍କା ପତାକା ବିକ୍ରୟ ହୁଏ । ଲକ୍ଷ୍ମଣ ବୋଲି ଜଣେ ସଚ୍ଚୋଟ ଧୀର ସ୍ଥିର କର୍ମୀ ଏହି ଭଣ୍ଡାରର ଦାୟିତ୍ୱରେ ଥାଆନ୍ତି । ବିଶ୍ୱନାଥ ଏହି ଭଣ୍ଡାରରୁ ପତାକା କିଣି ଗାଆଁରେ ବାଣ୍ଟନ୍ତି, ବିକ୍ରୀ କରନ୍ତି । ପତାକା ଯେମିତି କର୍ମୀର ଚିହ୍ନ, ଗର୍ବ-ଗୌରବ । ବହୁ ଲୋକ କର୍ମୀହେବାର ଗୌରବରେ ପତାକା କିଣନ୍ତି । ପତାକା ଆନ୍ଦୋଳନ, ସ୍ୱାଧୀନତା ଆନ୍ଦୋଳନ, ଭାରତଛାଡ଼ ପ୍ରସ୍ତାବ, ଜେଲ୍ ଯିବା ପାଇଁ ମାନସିକତାର ପ୍ରସ୍ତୁତି, ଶୋଷଣ ବିରୁଦ୍ଧରେ ପ୍ରତିବାଦ, ବିଶ୍ୱନାଥଙ୍କୁ କରିଦେଲା ଏଠା ଜନଗଣର ଜଣେ ପରମ ଆଦରଣୀୟ ପୁରୁଷ । ସେ ପ୍ରତୀକ ହୋଇଗଲେ ଦୁଷ୍ଟ ମଣିଷର, ପାଲଟିଗଲେ ସମ୍ମାନନୀୟ ବିଶ୍ୱନାଥ ଆଜ୍ଞା । ବେଳ ଆସିଲା ''ଆଜ୍ଞା'' ବୋଲି କହିଲେ ଲୋକେ କେବଳ ତାଙ୍କୁ ବୁଝିଲେ ।

ରଚନାତ୍ମକ କର୍ମୀରୁ ରାଜନୈତିକ ଆନ୍ଦୋଳନର ସଂଗ୍ରାମୀ ଭାବେ ତାଙ୍କ ପରବର୍ତ୍ତୀ ଦିନଗୁଡ଼ିକ ଜେଲରେ କଟିଲା ୧୯୪୨ରୁ ୧୯୪୫ ଯାଏ ।

## ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଚିଠି :

ରାଧାକୃଷ୍ଣ ବିଶ୍ୱାସରାୟ ବମ୍ବେ ଅଧିବେଶନରୁ ୧୯୪୨ ଅଗଷ୍ଟ ୯ ତାରିଖ ଦିନ କଲିକତା ମେଲରେ ଫେରିଲା ବେଳେ ଯେଉଁ ହାତଲେଖା ଚିଠି ଆନ୍ଦୋଳନର ବାର୍ତ୍ତା ଦେଇ ପଠାଇଥିଲେ, ତାହାର ଶୀର୍ଷକ ଥିଲା, ''କର ଅବା ମର'' ।

ସେହି ଚିଠି ବିଶ୍ୱନାଥ ପାଇଲେ ଅଗଷ୍ଟ ୧୨ ତାରିଖ ଦିନ । ଚିଠିରେ ଲେଖାଥିଲା ଅତି ସରଳଭାଷାରେ କେତେଧାଡ଼ି ଆନ୍ଦୋଳନର ବାର୍ତ୍ତା, ଗାନ୍ଧୀଙ୍କ ନିର୍ଦ୍ଦେଶ ଭାବେ ଏମିତି : ''ଗାନ୍ଧୀ ମହାତ୍ମାର ଡାକ । ସ୍ୱରାଜ ପାଇଁ ଲଢ଼େଇ କର । ନିଜକୁ ନିଜେ ନେତା ବୋଲି ଭାବ । ସରକାର ବୋଲି କେହି ନାହିଁ । ଇଚ୍ଛା ଅନୁସାରେ କାମ କର । ଟିକସ୍ ମେଡ଼ି ଦିଅ । ସିସ୍ଟୁ ମେଡ଼ି ଦିଅ । ଯୁଦ୍ଧକୁ ସାହାଯ୍ୟ କର ନାହିଁ । ଗୋରା ସରକାର ''ଭାରତ ଛାଡ଼ ।''

ସତେ ଯେମିତି ଏହି ଚିଠି ଭିତରେ ଥିଲା ଯୁଗ ଯୁଗର ସଂଚିତ ପରାଧୀନତାରୁ ମୁକ୍ତି ପାଇବାର ବାଟ, ଶୋଷଣରୁ ମୁକୁଳିବାର ବାଟ, ଅତ୍ୟାଚାରକୁ ସାମନା କରିବାର ବାଟ, ଗାନ୍ଧୀ ମହାତ୍ମାର ଡାକ ନୁହେଁ ତ ଯେମିତି ୩୫ କୋଟି ଭାରତବାସୀଙ୍କ ମୁକ୍ତିର ଡାକ । କୌଣସି ବାଧା ବନ୍ଧନ ନମାନି ଆଗେଇ ଚାଲିବାର, ଦେଶ ପାଇଁ ସବୁ ସମର୍ପି ଦେବାର ଭାବ, ସ୍ୱାଧୀନତା ନ ଆସିଲା ଯାଏ ଏ ଲଢ଼େଇ ହେବ, ଅହିଂସାକୁ ଅସ୍ତ୍ର କରି ।

ହଠାତ୍ ଯେମିତି କୁଢେନ୍ଦ୍ରୀରେ ପଶିଗଲା ଅଗଷ୍ଟ ବିପ୍ଳବର ବାର୍ତ୍ତା । ବିଶ୍ୱନାଥ ୧୨ ତାରିଖରେ ଚିଠି ପାଇଲେ । ୧୩ ଅଗଷ୍ଟରେ କାର୍‌ବନ୍ ପେପର ପକାଇ ଶହ ଶହ ଚିଠି ନକଲ କରାଗଲା । ପାମ୍ପଲେଟ ଲେଖାଗଲା । କର୍ମୀ ଗାଁଗୁଡ଼ିକୁ ପଠାଇ ଦିଆଗଲା । ଏଥର ବେଳ ଆସିଯାଇଛି, ସ୍ୱାଧୀନତା ଲଢ଼େଇରେ ଡେଇଁ ପଡ଼ିବାକୁ ହେବ । ଜେଲ ହେଉ କି ମାଡ଼ ହେଉ ଆଗକୁ ବାହାରିବା ପାଦ ପଛକୁ ଫେରିବ ନାହିଁ । ସବୁ କାମ ସତ୍ୟ ଓ ଅହିଂସାରେ ହେବ । ଏହା ହିଁ ଗାନ୍ଧୀ କହିଛନ୍ତି । ସ୍ୱଳ୍ପଭାଷୀ ବିଶ୍ୱନାଥ ଥିଲେ ବିଶୁଦ୍ଧ ଗାନ୍ଧୀବାଦୀ । ସତ୍ୟ ଓ ଅହିଂସାରେ ଥିଲା ତାଙ୍କର ପ୍ରଗାଢ଼ ବିଶ୍ୱାସ । ସେ ଜାଣିଥିଲେ ହିଂସା ରାକ୍ଷସୀୟ ପ୍ରବୃତ୍ତି, ଏହା ଦ୍ୱାରା କୌଣସି ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ଭାରତୀୟ ଆଦିମ ଜାତି ମଧ୍ୟରେ ଯେଉଁ କେତେଜଣ ସଂସ୍କାରକ ଦୀର୍ଘଦିନ କାମ କରିଛନ୍ତି, ସେମାନେ ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି କୁଢେନ୍ଦ୍ରୀ ଅଞ୍ଚଳର ଆଦିବାସୀଙ୍କ ଉପରେ ତାଙ୍କର ଗଭୀର ପ୍ରଭାବକୁ, ଯଦିଓ ନମ୍ରତାର ସହିତ ବିଶ୍ୱନାଥ ଏହାକୁ ସ୍ୱୀକାର କରନ୍ତି ନାହିଁ । ସାଧାରଣତମ ମଣିଷଟିଏ, ସେବା ହିଁ ତାଙ୍କର ଧର୍ମ । ମଣିଷ ତାଙ୍କ ପାଇଁ ଈଶ୍ୱର ।

ଅଗଷ୍ଟ ମାସ ୧୯୪୨ ମସିହା । ଶ୍ରାବଣର ଘନଘୋର ବର୍ଷା । ମେଘରୁ କେତେବେଳେ ପାଣି ଛାଡ଼ ନାହିଁ । ଏଠି ବର୍ଷା ଆସେ ମେଘର ଛାତିରୁ, ପଡ଼େ ପାହାଡ଼ ଛାତିରେ ପଶିଯାଏ ମାଟି ଗର୍ଭରେ । ଘଡ଼ଘଡ଼ି ଓ ବିଜୁଳିର ଖେଳରେ ଦୁଲୁକି ଉଠେ ବଣ, ପାହାଡ଼ । କାଦୁଅ ପଚ୍‌ପଚ୍ । ବିଛା, ସାପ ଗାତରୁ ବାହାରନ୍ତି । ବଂଶଧାରା ଉଚ୍ଛୁଳି ଉଠେ । କୂଳ ଲଂଘେ । ଅକାତକାତ ପାଣି । ବଡ଼ କଷ୍ଟମୟ ଏଠି ବର୍ଷାଦିନ । ଏମିତି କାଳରେ ବିଶ୍ୱନାଥଙ୍କ ଚିଠି ନେଇ କର୍ମୀ ସବୁ ବାହାରିଲେ ଗାଁରୁ ଗାଁକୁ । ବ୍ୟାପିଗଲା ଚିଠିର ଖବର । ଶହ ଶହ ଲୋକ ଆସି ଜମାହେଲେ କୁଢେନ୍ଦ୍ରୀରେ । ହାତରେ ଅରଟମାର୍କା ପତାକା । ଓଠରେ ଭାରତ ମାତାର ଜୟଗାନ । ଏମାନେ ଯିବେ ଗୁଣୁପୁର । ସ୍ୱଇଚ୍ଛାରେ ଜେଲ ଯିବେ ।

## ଗୁଣୁପୁର ଯାତ୍ରା :

ବିଶ୍ୱନାଥ ଆଗରେ, ପଛରେ ବହୁ ପୁରୁଷ ସ୍ତ୍ରୀ, କୁଢେନ୍ଦ୍ରୀରୁ ବାହାରିଲେ "ଗୋରା ସରକାର ଭାରତଛାଡ଼" ଧ୍ୱନି ଦେଇ । ପବନର ଛାତି ଥରି ଉଠିଲା ଏହି ଧ୍ୱନିରେ । ଲୋକମନରେ ବିପୁଳ ଉନ୍ମାଦନା, ଉତ୍ସାହ । ସେମାନେ ଯିବେ କୁଢେନ୍ଦ୍ରୀରୁ ଗୁଣୁପୁର ଉତ୍ତର ଆଡ଼କୁ । ବାଟ ଛଅ ମାଇଲ କୁଢେନ୍ଦ୍ରୀରୁ ଗୁଣୁପୁର । କୁଢେନ୍ଦ୍ରୀର ପ୍ରାୟ ୨୦୦ ଜଣ ପୁରୁଷ ଓ ୫୦ ଜଣ ସ୍ତ୍ରୀ ଲୋକ ଶୋଭାଯାତ୍ରାରେ ଥିଲେ । ବାଇରୁ ଗମାଙ୍ଗୋର ଝିଅ ସାଣ୍ଟି (ଶାନ୍ତି) ସ୍ତ୍ରୀ ଲୋକଙ୍କ ଆଗରେ ଚାଲିଥାଏ, ହାତରେ ପତାକା ଧରି । ସ୍ତ୍ରୀ ଲୋକମାନଙ୍କୁ ବୁଝାଇ ଦିଆଯାଇଥାଏ ସରକାର ଜେଲ୍‌ରେ ରଖିବେ । ଡରାଇବେ, ଧମକାଇବେ । ଡରିବାକୁ ହେବ ନାହିଁ । ସାଣ୍ଟିର ନିର୍ଭୀକତା ସମସ୍ତଙ୍କ ମନରେ ଦମ୍ଭ ଆଣି ଦେଉଥାଏ ।

ଗୁଣୁପୁର ଯିବା ବାଟରେ ପଡ଼ିଲା ଲାଛପା, ଗୁଲୁଗୁଣ୍ଡା, ପଣସଗୁଡ଼ା ଓ ବିକ୍ରମପୁର ଗାଆଁ । ସେ ଗାଁଗୁଡ଼ିକରୁ ମଧ୍ୟ ଆଦିବାସୀ କର୍ମୀ ଶୋଭାଯାତ୍ରାରେ ମିଶିଲେ । ସେମାନେ ଘର-ଦୁଆର, ଜମିବାଡ଼ି, ପିଲାଝିଲା, ସ୍ତ୍ରୀ-ପରିବାରର ମୋହ ଛାଡ଼ି ଜେଲ୍ ଯିବା ପାଇଁ ପ୍ରସ୍ତୁତ ହୋଇଆସିଥାନ୍ତି । କନ୍ଧ, ସଉରା ଓ ଅନ୍ୟ ଗୋଷ୍ଠୀର ବନବାସୀ । ଆଞ୍ଚାକୁ ଦେଖି ସେମାନଙ୍କ ସାହସ ବଢ଼ିଗଲା ।

## ବିକ୍ରମପୁର ନଈ ନିକଟରେ :

ଦୁଇ କୂଳ ଖାଇ ଗର୍ଜୁଛି ବଂଶଧାରା ନଈ । ଫେଣ ଚବକି ଯାଉଛି ସ୍ରୋତରେ । ଭାସିଯାଉଛି ସ୍ରୋତରେ ଗଛବୃଛ, ସରୀସୃପ । ପବନର ସାଇଁ ସାଇଁ ଗର୍ଜନ । ମେଘ ଘୋଡ଼ାଇ ପକାଇଛି ଆକାଶ । ନଈ ଏ କୂଳରେ ବିକ୍ରମପୁର ଘାଟ । ଗୋଟିଏ ବଡ଼ ଡଙ୍ଗା । ନାଉରି ଦେଖିଲା ଘାଟ ଆଡ଼କୁ ଆସୁଛନ୍ତି ଶୋଭାଯାତ୍ରୀ ଦଳ । ଆଗରୁ ତାଗିଦ୍ କରା ହେଇଛି ତାକୁ । ପତାକା ଧରିଥିବା ଲୋକଙ୍କୁ ଡଙ୍ଗାରେ ବସାଇବ ନାହିଁ ସିଏ, ପାର କରିବା ତ ଦୂରର କଥା । ନାଉରି ମନ ଆଣ୍ଟ କଲା ।

ଶୋଭାଯାତ୍ରା ନଈ କୂଳରେ ପହଞ୍ଚିଲା । ନଈରେ ପ୍ରବଳ ବନ୍ୟା । ଅତଡ଼ା ଖସୁଛି କୂଳରୁ । ମାଟି ଧସି ପଡୁଛି । ସଂଗ୍ରାମୀମାନେ ଡଙ୍ଗାବାଲାକୁ ପାରକରି ଦେବାକୁ କହିଲେ, ସେ ମନାକଲା । ଏମିତି କେତେ ସମୟ ବିତିଗଲା । ବିଶ୍ୱନାଥ ବୁଝାଇଲେ ଡଙ୍ଗାବାଲାକୁ, ତଥାପି ସେ ରାଜି ହେଲା ନାହିଁ । ସରକାରୀ ଲୋକର ଡର ପଶି ଯାଇଥିଲା ତା' ମନରେ ।

ସଂଗ୍ରାମୀମାନେ ଯେତେବେଳେ ଭୀଷଣ ବିରକ୍ତି ପ୍ରକାଶ କଲେ, ଡଙ୍ଗାବାଲା ଡରି ଡରି ନଈ ପାରକଲା ସମସ୍ତଙ୍କୁ । ନଈ ସେପାରିରେ ଗୁଣୁପୁର ।

## ବିଶ୍ୱନାଥଙ୍କ ପ୍ରଥମ ଜେଲ ଯାତ୍ରା : ଗୁଣୁପୁର ସବ୍‌ଜେଲ –

ବିଶ୍ୱନାଥଙ୍କ ନେତୃତ୍ୱରେ ଶୋଭାଯାତ୍ରା ଗୁଣୁପୁରରେ ପହଞ୍ଚିଲା ବେଳକୁ ଶୋଭାଯାତ୍ରୀଙ୍କ ସଂଖ୍ୟା ପ୍ରାୟ ଦେଢ଼ ହଜାର ହୋଇଯାଇଥିଲା । ଗୁଣୁପୁରର ଲୋକେ ଏହି ଶୋଭାଯାତ୍ରା ଆସିବା ଖବର ଆଗରୁ ଜାଣି ସାରିଥିଲେ । କୃଷ୍ଣଚନ୍ଦ୍ର ବକ୍ସିପାତ୍ରଙ୍କ ନେତୃତ୍ୱରେ ଗୁଣୁପୁର ହାଇସ୍କୁଲ ଛାତ୍ରମାନେ ମଧ୍ୟ ମହା ଆଗ୍ରହରେ ଏଥିରେ ଯୋଗଦେଲେ ।

ସେତେବେଳକୁ ଗୁଣୁପୁରରେ ଥାନା, ତହସିଲ ଅଫିସ, ମୁନସିଫ କୋର୍ଟ ବସି ସାରିଥିଲା । ଶୋଭାଯାତ୍ରା ଗୁଣୁପୁରରେ ପହଞ୍ଚିଲା ପରେ ମଧ୍ୟ ପୋଲିସ କୌଣସି ପ୍ରତିକ୍ରିୟା ପ୍ରକାଶ କଲା ନାହିଁ । ଏଣୁ ସଂଗ୍ରାମୀ ମାନେ ଗିରଫ ହେବା ପାଇଁ ପୋଲିସ ସୁଯୋଗ ଦେଲା ନାହିଁ । କିଛି ସମୟ ପରେ ପୋଲିସ୍ ସେମାନଙ୍କୁ ଡାକିନେଇ ଥାନା ପାଖରେ ବସାଇଲେ । ତିନି-ଚାରି ଘଣ୍ଟା ପରେ ଚାଲିଯିବାକୁ କହିଲେ । ବିଶ୍ୱନାଥ ଚାଲିଯିବାକୁ ରାଜି ହେଲେ ନାହିଁ । ସେ ଜିଦ୍ ଧରିଲେ ସେମାନେ ଜେଲ ଯିବେ, ଏହା ତାଙ୍କର ସଂକଳ୍ପ । ପୋଲି ଶେଷରେ ଲାଠିଧରି ଘଉଡ଼ାଇ ଦେବାରୁ ସଂଗ୍ରାମୀମାନେ ଯା ଘରେ, ତା' ପିଣ୍ଡାରେ ରାତି କଟାଇଲେ । ସେଦିନ ରାତିରେ ଗୁଣୁପୁର ଲୋକେ ଅନ୍ୟ ଗାଁରୁ ଆସିଥିବା ଶୋଭାଯାତ୍ରୀ ମାନଙ୍କୁ ଘରକୁ ଡାକି ଖାଇବାକୁ ଦେଲେ । ତା' ଆରଦିନ ପୁଣିଥରେ ଶୋଭାଯାତ୍ରା ଗୁଣୁପୁର ସହର ପରିକ୍ରମା କଲା । ବିଶ୍ୱନାଥ ୫୦/୬୦ ଜଣ ସଂଗ୍ରାମୀଙ୍କ ସହିତ ଗୁଣୁପୁରରୁ ବାହାରି ଖିଲପଦର, ଡମ୍ବସରା ଆଦି ଗାଁକୁ ପ୍ରଚାର କରିବାକୁ ଗଲେ । ବାମୁଣୀ ହାଟରେ ସଭା କଲେ । ଭାଷଣ ଦେଲେ । ଖିଲପଦର, ଡମ୍ବସରା ଗାଁର ଲୋକେ ସରକାର ଭୟରେ ଏମାନଙ୍କୁ ଖାଇବାକୁ ଦେଲେ ନାହିଁ କି ରାତିରେ ଗାଁରେ ରଖେଇ ଦେଲେ ନାହିଁ ।

ଏମିତି ପାଞ୍ଚ ଦିନ ସଭା, ଶୋଭାଯାତ୍ରା କରି ମଧ୍ୟ ପୋଲିସ ଗିରଫ ନ କରିବାରୁ ବିଶ୍ୱନାଥ ଓ ସଂଗ୍ରାମୀମାନେ କୁଜେନ୍ଦ୍ରୀ ଫେରି ଆସିଲେ । କୁଜେନ୍ଦ୍ରୀ ଫେରିବାର କେତେ ସମୟ ପରେ ପୋଲିସ୍ ଆସି ବିଶ୍ୱନାଥଙ୍କୁ ଡକାଇ ପଠାଇଲେ । ତା'ପରେ ବାଇରୁ ଗମାଙ୍ଗୋ, ନୀଳକଣ୍ଠ ଗମାଙ୍ଗୋ ଆଦି କେତେକ ଲୋକଙ୍କୁ ନେଇ ଗୁଣୁପୁର ଗଲେ । ସମସ୍ତଙ୍କୁ ଗୁଣୁପୁର ସବଜେଲ୍‌ରେ ଅଟକ ରଖାଗଲା ।

## ସବ୍ ଏଜେଣ୍ଟଙ୍କ ବିଚାରଣା :

ବିଶ୍ୱନାଥ ଓ କୁଜେନ୍ଦ୍ରୀର ନୀଳକଣ୍ଠ ଗମାଙ୍ଗୋ, ବାଇରୁ ଗମାଙ୍ଗୋଙ୍କୁ ରାୟଗଡ଼ା ସବ୍ ଏଜେଣ୍ଟଙ୍କ ଠାରେ ସରକାର ବିରୋଧରେ ପ୍ରଚାର କରିବା, ସ୍ଲୋଗାନ୍ ଦେବା, ଲୋକଙ୍କୁ ମତାଇବା ଆଦି ଆପତ୍ତିଜନକ ଅଭିଯୋଗରେ ବିଚାର ପାଇଁ ହାଜର କରାଗଲା । ସାକ୍ଷୀମାନଙ୍କୁ ଜେରାକରି, ପୋଲିସର ମତାମତ ଲେଖି ସବ୍ ଏଜେଣ୍ଟ ବିଶ୍ୱନାଥଙ୍କୁ ଦେଶରକ୍ଷା ଆଇନର ବିଭିନ୍ନ ଧାରା ଅନୁସାରେ ୬ ମାସ ଜେଲ ଦଣ୍ଡର ଆଦେଶ ଦେଲେ ।

ସେହି ବିଚାରଣାରେ ଗୁଣୁପୁରର ପ୍ରହଲାଦ ପାଣିଗ୍ରାହୀ, ଭଗବାନ ସେନାପତି, ବେତା ସୂର୍ଯ୍ୟନାରାୟଣା, କାନ୍ତାରାଓ ପଟ୍ଟନାୟକ, ବାଇରୁ ଗମାଙ୍ଗୋ, ନୀଳକଣ୍ଠ ଗମାଙ୍ଗୋ ମଧ୍ୟ ଛଅ ମାସ ଲେଖାଏଁ ସଜା ପାଇଲେ ।

କୋରାପୁଟ ଜିଲ୍ଲାର କୁଜେନ୍ଦ୍ରୀ ଗ୍ରାମରୁ କେବଳ ୨୧ ଜଣ ସ୍ତ୍ରୀ ଲୋକ ଓ ୩୫ ଜଣ ପୁରୁଷ ଲୋକ ଗିରଫ ହୋଇ ବିଚାରଣାରେ ଦୁଇ ମାସରୁ ଛଅ ମାସ ଯାଏ ସଜା ପାଇଥିଲେ ।

ଯେଉଁମାନେ ଦୁଇ ମାସ ଜେଲଦଣ୍ଡ ପାଇଲେ ସେମାନଙ୍କୁ ଗୁଣୁପୁର ସବ୍‌ଜେଲରେ ରଖାଗଲା । ବିଶ୍ୱନାଥ ୬ ମାସ ଜେଲ ସଜା ପାଇବା ପାଇଁ ରାୟ ବାହାରିବାରୁ ତାଙ୍କୁ ଓ ତାଙ୍କର ସହକର୍ମୀମାନଙ୍କୁ ହଳ ହଳ କରି ବାନ୍ଧି ବସରେ ରାୟଗଡ଼ା ଯାଏ ନେଲେ । ରାୟଗଡ଼ା ଥାନାରେ ଗୋଟିଏ ରାତି କଟାଇ ସେମାନେ ଟ୍ରକରେ ବୁହାହୋଇ ପହଞ୍ଚିଲେ କୋରାପୁଟରେ । କୋରାପୁଟ ଥାନା ପିଣ୍ଡାରେ ଗୋଟିଏ ଅଧାଦିନ ଓ ଗୋଟିଏ ପୂରାରାତି ବିଶ୍ୱନାଥଙ୍କ ହାତରୁ ହାତକଡ଼ି ନ ଖୋଲି ବସାଇ ରଖାଗଲା । ଝାଡ଼ା ପରିସ୍ରା ପାଇଁ ମଧ୍ୟ ଅନୁମତି ଦିଆଗଲା ନାହିଁ ।

ତା' ଆରଦିନ ଅଗଷ୍ଟ ମାସର ଶେଷଦିନ ହେବ ବୋଧହୁଏ, ବିଶ୍ୱନାଥଙ୍କୁ ଦ୍ୱିତୀୟ ଶ୍ରେଣୀ ରାଜନୈତିକ ବନ୍ଦୀଭାବେ ଦାଖଲ କରାଗଲା କୋରାପୁଟ ଜେଲ୍‌ରେ । ସେ ସେଠି ରହିଲେ ଅଗଷ୍ଟ ୧୯୪୨ରୁ ଫେବୃଆରୀ ୧୯୪୩ ଯାଏ ଦୀର୍ଘ ୬ ମାସ, ଅନ୍ୟ ଏକ ଜୀବନର ରୂପ ଦେଖିବା ପାଇଁ । ସେ ଜୀବନ ଜେଲ ଜୀବନ, ବର୍ବର ଶାସକର ଅତ୍ୟାଚାରର ଜୀବନ । କୋରାପୁଟ ଜେଲ ଯେ ମାନବୀୟ ବର୍ବରତାର ପ୍ରତୀକ ଥିଲା ସେତେବେଳେ ।

❋ ❋ ❋

# କୋରାପୁଟ ଜେଲ

ଚାରିଆଡ଼େ ଉଚ୍ଚ ପାହାଡ଼, ଘଞ୍ଚ ଜଙ୍ଗଲ, ଯେଉଁଠି ସୂର୍ଯ୍ୟ ଉଏଁ କେତେବେଳକୁ ଭିଡ଼ିମୋଡ଼ି ହୋଇ । ବର୍ଷକୁ ଛଅ ମାସ ବର୍ଷା, କୁଆପଥର ପଡ଼େ । ଯେଉଁଠି ଶୀତ ଆସେ ବାଘ ପରି, ସବୁବେଳେ ମଞ୍ଜଥରା ଶୀତ, କାଲୁଆ ପବନ । ରାତିରେ ବାଘର ହେଣ୍ଟାଳ ଶୁଭେ, ବିଲୁଆର ହୁକେ ହୋ । ଏମିତି ପରିବେଶ ଭିତରେ କୋରାପୁଟ ଜିଲ୍ଲାର ସଦର ମହକୁମା କୋରାପୁଟ । ଇଂରେଜ ସରକାରଙ୍କ ଶାସନ ପେଣ୍ଠ । ଏଇ କୋରାପୁଟରେ କୋରାପୁଟ ଜେଲ୍ । ୧୯୪୧ରୁ ୧୯୪୫ ଭିତରେ କେତେ ଯେ ସ୍ୱାଧୀନତା ସଂଗ୍ରାମୀ ସହିଦ ହୋଇଗଲେ ମାଡ଼, ଅତ୍ୟାଚାର ସହି, ଟୋପେ ଔଷଧ ନପାଇ । ଏହି ଜେଲ୍‌ରେ ବିଶ୍ୱନାଥ କଟାଇଥିଲେ ବିଭିନ୍ନ ସମୟରେ ଜୀବନର ୩ ବର୍ଷ ୬ ମାସ ।

## କୋରାପୁଟ ଜେଲ :

୧୯୨୧ ରୁ ୧୯୨୪ ମସିହା ଭିତରେ କୋରାପୁଟ ଜେଲ ନିର୍ମାଣ ହେଲା । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ କୋରାପୁଟ ଜେଲ୍ ଭାଇଜାଗ-ପଟମ୍ ଜେଲ୍ ଅଧୀନରେ କାମ କରୁଥିଲା । ୧୯୩୬ ମସିହାରେ କୋରାପୁଟ ଜେଲ୍‌କୁ ଏକ ସ୍ୱତନ୍ତ୍ର ସବ୍‌ଜେଲ ବଦଳରେ ଦ୍ୱିତୀୟ ଶ୍ରେଣୀ ଜିଲ୍ଲା ଜେଲ୍‌ର ପାହ୍ୟା ଦିଆଗଲା ।

ନଅ ଏକର ପରିମିତ ଜାଗାକୁ ନେଇ କୋରାପୁଟ ଜେଲ୍ ନିର୍ମାଣ କରାଯାଇଥିଲା । ୧୯୩୬ ମସିହାବେଳକୁ ଏହି ଜେଲରେ ତିନିଧାଡ଼ି ଲମ୍ବାଘର (ସାଉଡ଼ି) ଥିଲା ଏବଂ ଏଥିରେ ୨୯୮ ଜଣ ବନ୍ଦୀ ରହିବା ପାଇଁ ବ୍ୟବସ୍ଥା କରାଯାଇଥିଲା । ପରବର୍ତ୍ତୀ କାଳରେ ୬ ଜଣ ମହିଳା ବନ୍ଦୀ ରହିବା ପାଇଁ ବ୍ୟବସ୍ଥା କରାଗଲା, ଯାହା ଫଳରେ ବନ୍ଦୀଙ୍କ ସ୍ଥାନ ସଂଖ୍ୟା ୩୦୪କୁ ବୃଦ୍ଧି ପାଇଲା । କ୍ରୂର ଓ ନିଷ୍ଠୁର ବନ୍ଦୀମାନଙ୍କ ପାଇଁ ୬୦ଟି ଏକକ- ବନ୍ଦୀ କୋଠରୀ (Cellular Jail) ନିର୍ମିତ ହୋଇଥିଲା, ଯାହା ଓଡ଼ିଶାର ସବୁଠାରୁ ବଡ଼ ଥିଲା । ୧୯୩୭ରୁ ୪୨ ମଧ୍ୟରେ କୋରାପୁଟ ଜେଲ୍ ପରିଚାଳନା କରିବା ପାଇଁ ଜଣେ ଜେଲର୍, ଦୁଇଜଣ ସହକାରୀ ଜେଲର୍, ଜଣେ କିରାଣୀ, ଜଣେ କମ୍ପାଉଣ୍ଡର, ଜଣେ ଶିକ୍ଷକ, ଚାରିଜଣ ମୁଖ୍ୟ ୱାର୍ଡ଼ର, ଜଣେ ମହିଳା ୱାର୍ଡର ଓ ଏକ ଚାଳିଶ ଜଣ ପୁରୁଷ ୱାର୍ଡ଼ର ଥିଲେ ଏବଂ

ବନ୍ଦୀମାନଙ୍କ ପାଇଁ ଏମାନେ ଥିଲେ ସାକ୍ଷାତ ଯମଦୂତ ବିଶେଷତଃ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ।

## କୋରାପୁଟ ଜେଲ୍‌ରେ ବିଶ୍ୱନାଥ ପଟ୍ଟନାୟକ :

ଅନ୍ୟମାନଙ୍କ ସହ ବିଶ୍ୱନାଥ ପଟ୍ଟନାୟକ ଯେତେବେଳେ ଦ୍ୱିତୀୟ ଶ୍ରେଣୀ ରାଜବନ୍ଦୀ ଭାବେ ଜେଲ୍ ଭିତରେ ପ୍ରବେଶ କଲେ, ସେତେବେଳେ ତାଙ୍କୁ ପ୍ରଥମ ଲମ୍ୱାଘରେ ସାଧାରଣ ବନ୍ଦୀମାନଙ୍କ ସହିତ ରଖାଗଲା । ସେଠି ସେ ଦେଖିଲେ ମାଲକାନଗିରି, ମାତିଲି, ବୈପାରୀଗୁଡ଼ା, ଜୟପୁର, କୋଟପାଡ଼, ନବରଙ୍ଗପୁରର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ । ବିଶେଷତଃ ବୈପାରୀଗୁଡ଼ାର ନୀଳକଣ୍ଠ ପାତ୍ର, ଜୟପୁରର ନନ୍ଦ ପରିବାରର ପାଞ୍ଚଭାଇ ଓ ନନ୍ଦପୁରର ଭଗବାନ ଖେମୁଣ୍ଡୁଙ୍କୁ । ସେଇ ଲମ୍ୱାଘରେ ଜେଲ୍ ଜୀବନର ପ୍ରଥମ ରାତି ସେ କଟାଇଲେ । ବିଭିନ୍ନ ରୋଗ ଯନ୍ତ୍ରଣା ଭୋଗୁଥିବା ବନ୍ଦୀଙ୍କ ଆର୍ତ୍ତ ଚିତ୍କାର ଭିତରେ, ମଶା ଡାଆଁସ ଓ ଓଡ଼ଶଙ୍କ ପ୍ରାଦୁର୍ଭାବରେ, ସଂଗ୍ରାମୀଙ୍କ ସହ ଆଲୋଚନାରେ । ରାତି ବଢୁଥିଲା ଧୀରେ ଧୀରେ । ବାହାରେ ବର୍ଷା ପାଣି ଧାର ପିଟି ହେଉଥିଲା ପଥର ପାଚେରୀରେ । ଛାତ ଉପରେ ଟପ୍ ଟପ୍ ଶବ୍ଦ । ପବନରେ ପାଣିଛୁଆଁ ଶୀତ । ଜେଲ୍ କୋଠରୀ ବାରଣ୍ଡାରେ ମିଂଜି ମିଂଜି ଜଳୁଥିଲା ଲଣ୍ଠନଟିଏ । ପିଣ୍ଡାର ଶେଷରେ ଛିଡ଼ା ହୋଇଥିଲା ୱାର୍ଡ଼ରଟିଏ ରାତି ଡିଉଟିରେ । ଭୋର ଚାରିଟାରେ ହୁଇସିଲ ବାଜିଲା, ବନ୍ଦୀସବୁ ଉଠିଲେ ନିତ୍ୟକର୍ମ ପାଇଁ । ପାଣି ସେମିତି ବର୍ଷୁଥିଲା ରହି ରହି । ଚାରିଆଡ଼େ ଘନଘୋର ଅନ୍ଧାର । ଏମିତି ତିନି-ଚାରି ଦିନ କଟାଇଲେ ବିଶ୍ୱନାଥ ପଟ୍ଟନାୟକ ଏହି କୋଠରୀରେ । ତା'ପରେ ତିନିଜଣିଆ ସେଲକୁ ତାଙ୍କୁ ସ୍ଥାନାନ୍ତରିତ କରାଗଲା, ସେପ୍ଟେମ୍ବର ମାସ ପ୍ରଥମ ସପ୍ତାହ ୧୯୪୨ ମସିହାରେ ।

## ଜେଲ ସମ୍ବନ୍ଧରେ ବିଶ୍ୱନାଥ କହନ୍ତି :

''ସରକାର କ'ଣ ନିର୍ଦ୍ଦେଶ ଦେଲେ କେଜାଣି, ଆହୁରି କିଛିଦିନ ପରେ ସେହି ତିନି ଜଣିଆ ସେଲ ମଝିରେ ଇଟା ପାଚେରୀ ଦିଆଯାଇ ଛୋଟ ଛୋଟ କରି ଦିଆଗଲା । ପ୍ରତ୍ୟେକ ସେଲରେ ଜଣେ ଜଣେ ବନ୍ଦୀ ରହିଲେ ।'' ବିଶ୍ୱନାଥଙ୍କ ସହିତ ଆଉ ଜଣେ ସ୍ୱାଧୀନତା ସଂଗ୍ରାମୀ ରାଜନୈତିକ ବନ୍ଦୀ ଭାବେ ଆସି ରହିଲେ ସେ ହେଲେ ନବରଙ୍ଗପୁରର ମହମ୍ମଦ ବାଜୀ । ମିତଭାଷୀ, ସରଳ ପ୍ରକୃତିର ମଣିଷ, ନିରାମିଷାଶୀ, ବ୍ରହ୍ମଚାରୀ । ଏହି

ଜେଲରେ ହେଲା ମଣି କାଞ୍ଚନର ସଂଯୋଗ । ଦୁଇ ସମାଜସେବୀଙ୍କ ନିବିଡ଼ ବନ୍ଧୁତ୍ୱର ଆରମ୍ଭ ହେଲା ଏଇଠୁ ସାରା ଜୀବନ ପାଇଁ ।

## କୋରାପୁଟ ଜେଲ ଓ ଲକ୍ଷ୍ମଣ ନାୟକ :

ମାଥିଲି ଥାନା କେସ୍ ସଂଖ୍ୟା ୫୮/୧୯୪୨ ଅନୁଯାୟୀ ୨୧-୮-୧୯୪୨ ଦିନ ମାତିଲି ଥାନା ଘେରାଓ ଓ ଫରେଷ୍ଟ ଗାର୍ଡ଼ ରାଗେୟାର ମୃତ୍ୟୁ ଅଭିଯୋଗରେ କୋରାପୁଟ ଟ୍ରେଜେରୀ ଡେପୁଟି ମାଜିଷ୍ଟ୍ରେଟ ସୋମନାଥ ମିଶ୍ରଙ୍କ ଅଦାଲତ ଲକ୍ଷ୍ମଣ ନାୟକ ଓ ତାଙ୍କ ୫୩ ଜଣ ସହକର୍ମୀଙ୍କୁ ଦୋଷୀ ସାବ୍ୟସ୍ତ କଲା ପରେ ତାଙ୍କ ମୋକଦ୍ଦମାକୁ ସେସନସ୍ ଜଜ୍ କୋର୍ଟକୁ ବିଚାରପାଇଁ ପଠାଇ ଦିଆଗଲା ୧୯୪୨ ସେପ୍ଟେମ୍ବର ମାସରେ ।

ଏମାନଙ୍କୁ ଜୟପୁର ଜେଲରୁ କୋରାପୁଟ ଜେଲକୁ ଅଣାଗଲା । ଦୀର୍ଘ ୨ ମାସ ବିଚାର ଚାଲିଲା ପରେ ୩୩ ଜଣ ସରକାରୀ ସାକ୍ଷୀଙ୍କ କଥା ଓ ପ୍ରମାଣକୁ ଭିତ୍ତି କରି ତତ୍କାଳୀନ ଅତିରିକ୍ତ ସେସ୍‌ନସ ଜଜ୍ ଭି. ରାମନାଥନ୍, କୋରାପୁଟ, ୧୩-୧୧-୧୯୪୨ ଦିନ ନିମ୍ନମତେ ରାୟ ଦେଲେ–

In the Court of the Additional Sessions Judge, Koraput.
Sessions Case No. 18 of 1942
The 13th day of November 1942
King Emperor (Mathilli P.S. Case No. 58 of 1942)- Complainant
Lokhan Naiko and 53 others....... Accused.

Case committed by - Sri Somanath Mishra,
Treasury Deputy Magistrate, Koraput.

Present : (Judge) V. Ramanathan, Esquire, I.C.S.
Additional Sessions Judge, Koraput.

Finding of the Judge :

Accused No. 1 is found guilty U/S. 302 I.P.C., 147 I.P.C. U/ S.5 D.I. Rule 35 D.I. Rules.

Accused No. 2-10, 12-17, 19, 22-54 are found guilty U/S. 302 I.P.C. read with section 149 I.P.C. 147 I.P.C. and under rule 35 D.I. Rules. Accused Nos. 11, 18, 20 and 21 not found guitty.

Sentence or order

Accused No. 1 Shri Lokhan Naiko is covicted under Section 302 I.P.C. and sentenced to death subject to confirmation by the Hon'ble High Court. He is also convicted under section 147 I.P.C. of committing a prejudicial act under rule 38(5) D.I. Rule and of approaching the Police Station, Mathili with intent to damage it under Rule 35 Defence of India Rules and is covicted of these offence and no separate sentence is passed.

Accused Nos 2-10, 12-27, 22-54 are convicted under section 302 I.P.C. read with 149 I.P.C and each sentenced to transportation for life. They are covicted U/S 147 I.P.C. and each sentenced to R.I. for 2 (two) years. They are also covicted U/S 35 of the Defence of India Rules and sentenced to R.I. for 7 (Seven) years each. All the above sentences will run concurrently.

Assused Nos. 11, 18, 20, 21 are found not guilty of the charges tried against them and acquitted to the same and they are directed to be set at liberty unless they are required to answer any other charges.

(Rao Sabeb A. Appalaswamy Naidu, Public Prosecutor, Koraput District, Jeypore conducted the prosecution and Shri R. Jagannadha Rao, Advocate, Jeypore defended the accused persons having been engaged by the Crown)

୧୩-୧୧-୧୯୪୨ ଦିନ ବିଚାରପତି ଲକ୍ଷ୍ମଣ ନାୟକଙ୍କୁ ମୃତ୍ୟୁଦଣ୍ଡ ଓ ୪୯ ଜଣ ସହକର୍ମୀଙ୍କୁ ଯାବତ୍‌ଜୀବନ କାରାଦଣ୍ଡ ଓ ସଜାର ପ୍ରଥମ ନଅ ବର୍ଷ ସଶ୍ରମ କାରାଦଣ୍ଡର ଆଦେଶ ଦେଇ ଚାରିଜଣଙ୍କୁ ପ୍ରମାଣ ଅଭାବରେ ନିର୍ଦ୍ଦୋଷରେ ଖଲାସ କରିଦେଲେ ।

## ଲକ୍ଷ୍ମଣ ନାୟକଙ୍କ ସମ୍ବନ୍ଧରେ ବିଶ୍ୱନାଥଙ୍କ ବକ୍ତବ୍ୟ :

"ଲକ୍ଷ୍ମଣ ନାୟକ ସେହି ସମୟରେ ଜେଲରେ ଥାଆନ୍ତି । ତାଙ୍କର ବିଚାର ଚାଲିଥାଏ । ଆମେ ତାଙ୍କୁ ମଝିରେ ମଝିରେ ଭେଟୁ । ତାଙ୍କୁ ଜଗିବା ଦାୟିତ୍ୱ ଥାଏ ରାମଚନ୍ଦ୍ର ହାବିଲଦାରର । ଲକ୍ଷ୍ମଣ ଜେଲ୍‌ରେ ଭାଗବତ, ରାମାୟଣ ଓ ଅନ୍ୟାନ୍ୟ ଧର୍ମପୁସ୍ତକ ପଢୁଥାଆନ୍ତି । ମୋର ସେହି ଜେଲ୍ ରହଣି ଭିତରେ ତାଙ୍କୁ ଫାଶୀ ଆଦେଶ ମିଳିଲା । ସେ ଅର୍ଡ଼ର ଜାଣିଲା ପରଦିନ (୧୪-୧୧-୧୯୪୨ ଦିନ) ନବରଙ୍ଗପୁରର ମହମ୍ମଦ ବାଙ୍ଗୀ ଓ

ମୁଁ, ରାମଚନ୍ଦ୍ର ହାବିଲଦାରକୁ କୁହାବୋଲା କରି ଲକ୍ଷ୍ମଣଙ୍କ ସେଲକୁ ଦେଖା କରିବାକୁ ଗଲୁ । ସେ କଥାବାର୍ତ୍ତା ମଝିରେ କହିଲେ "ସ୍ୱରାଜ ଦେଖିପାରିଲି ନାହିଁ, ଆଜ୍ଞା ।" ସେ ଟିକିଏ ଦବି ଯାଇଥିଲେ କିନ୍ତୁ ଭଗବତ ବିଶ୍ୱାସ ଦୃଢ଼ ଥିବାରୁ ବିଶେଷ ପ୍ରତିକ୍ରିୟା ପ୍ରକାଶ କରୁନଥିଲେ । ନିଜ ଘରର ଅବସ୍ଥା କ'ଣ ହୋଇଯିବ, ସ୍ତ୍ରୀ ପିଲା ଅନାଥ ହୋଇଯିବେ, ଏସବୁ କଥା ସେ କେବେ ଆମ ଆଗରେ ପ୍ରକାଶ କରିନାହାନ୍ତି, ମୋର ଯେତେଦୂର ଅନୁମାନ, ସେତେବେଳେ ମଧ୍ୟ ସେ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ରହିଥିଲେ ।"

## ମାତିଲି ସଂଗ୍ରାମୀଙ୍କୁ ଦଣ୍ଡାବେଡ଼ି :

ଲକ୍ଷ୍ମଣ ନାୟକ ଓ ତାଙ୍କ ଅନ୍ୟ ୪୯ ଜଣ ସହକର୍ମୀ ସଂଗ୍ରାମୀଙ୍କୁ (ଯାବଦ୍‌ଜୀବନ କାରାଦଣ୍ଡ) ସଜା ଶୁଣାଇଲ । ପରେ ଲକ୍ଷ୍ମଣ ନାୟକଙ୍କୁ ସିଧା ଅଦାଲତରୁ ଆଣି ଜେଲରେ ନରହନ୍ତାମାନଙ୍କ ପାଇଁ ଉଦ୍ଦିଷ୍ଟ ସେଲ୍ ନମ୍ବର ୧ରେ ପୂରାଇ ଦିଆଗଲା । ତାଙ୍କୁ ଓ ଅନ୍ୟ ୪ ଜଣଙ୍କୁ ଏକ ବର୍ବର ଦଣ୍ଡ ଦିଆଗଲା ଯାହାକୁ "ଦଣ୍ଡାବେଡ଼ି" କୁହାଯାଉଥିଲା । ବିଶ୍ୱନାଥ ସେଦିନର ସେଇ କରୁଣ ଓ ନିଷ୍ଠୁର ସ୍ମୃତିକୁ ମନେପକାଇ କହନ୍ତି –

"ମାତିଲି ଥାନରେ ଯେଉଁମାନେ ବିକ୍ଷୋଭ ପ୍ରଦର୍ଶନ କରୁଥିବା ସମୟରେ ସରକାରୀ କର୍ମଚାରୀକୁ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାୟକଙ୍କ ସହ ଗିରଫ ହୋଇଥିଲେ ସେମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଆଜୀବନ କାରାଦଣ୍ଡ ଆଦେଶ ପାଇଲେ । ବିଚାର ଶେଷ ହେବା ପରେ ପରେ ସେମାନଙ୍କୁ ଏକ ଅଦ୍ଭୁତ ଦଣ୍ଡ ଦିଆଗଲା । ସେମାନଙ୍କ ଦୁଇଗୋଡ଼ରେ ଲୁହାବଳା ପିନ୍ଧାଇ ଦିଆଗଲା ଓ ସେହି ବଳା ଦୁଇଟିକୁ ଯୋଡ଼ି ଗୋଟିଏ ଦେଢ଼ଫୁଟ ଲମ୍ବର ଲୁହାରଡ୍ ଲଗାଇ ଦିଆଗଲା । ସେହି ଦୁଇଗୋଡ଼ର ବଳାରୁ ପୁଣି ୨ଟି ଲୁହାରଡ଼ ପ୍ରାୟ ୨ ଫୁଟ ଲମ୍ବର ବାହାରିଥିବ । ସେହି ରଡ୍ ଦୁଇଟିର ଅପର ପାର୍ଶ୍ୱ ମୁଦିପରି ହୋଇଥିବ । ବନ୍ଦୀ ତାକୁ ହୁଏତ ହାତରେ ଧରିଚାଲିବ, ନଚେତ୍ ତା' ଭିତରେ ଗାମୁଛାକୁ ଦଉଡ଼ି ଭଳି ଗଳାଇ ଅଣ୍ଟାରେ ବାନ୍ଧିବ । ଯା' ଫଳରେ ଚାଲିବା ସମ୍ଭବ ହେବ ନାହିଁ । ଏହାକୁ ଦଣ୍ଡାବେଡ଼ି କୁହାଯାଉଥିଲା । ମୁଁ ଜାଣିନାହିଁ, ମହାମାନ୍ୟ ବ୍ରିଟିଶ ସରକାର ତାଙ୍କର ଅନୁଗତ ରାଜ କର୍ମଚାରୀମାନଙ୍କୁ ଏପରି ଦଣ୍ଡଦେବାକୁ ନିର୍ଦ୍ଦେଶ ଦେଇଥିଲେ କି ନାହିଁ ଓ ଭାରତର ଅନ୍ୟତ୍ର ଏପରି ଦଣ୍ଡର ବ୍ୟବସ୍ଥା ଥିଲା କି ନାହିଁ । କିନ୍ତୁ ଏହା ଏକ ଅତ୍ୟାଚାର ବୋଲି ମୁଁ ଅନୁଭବ କଲି । ସେହି ଦଣ୍ଡାବେଡ଼ି ପିନ୍ଧି କଏଦୀମାନଙ୍କୁ ମୁରୁଗା ପତ୍ର ଛେଚି ଝୋଟ ବାହାର କରିବାକୁ

ପଡ଼େ । ସେମାନଙ୍କ ଦେହରେ ମୁରୁଗା ପତ୍ରର ରସ ଛିଡ଼ିକି ଆସି ପଡ଼େ ଓ ଯେଉଁ ଯାଗାରେ ସେ ରସ ପଡ଼େ ସେହି ଜାଗାରେ କୁଣ୍ଡାଇ ହୋଇ ରିବି ରିବି ଫଳିଯାଏ । କୋରାପୁଟିଆ କଏଦୀ, ସେ ମନେ ମନେ ଧରି ନେଇଥାଏ ଯେ ଦେଶର ସ୍ୱାଧୀନତା ପାଇଁ ଏସବୁ କଷ୍ଟ ସହିବାକୁ ପଡ଼ିବ ।''

କୋରାପୁଟ ଜେଲରେ ୩୦୪ ଜଣ ବନ୍ଦୀ ରହିବାର ବ୍ୟବସ୍ଥା ଥିଲେ ମଧ ପ୍ରାୟ ୧୪୦୦ ବନ୍ଦୀ ରହୁଥିଲେ । ଅଧିକାଂଶ ସଂଗ୍ରାମୀ । ଗୁଣୁପୁର ଠାରୁ ମାଲକାନଗିରି, କୁନ୍ଦାଇ ଠାରୁ ବୈପାରୀଗୁଡ଼ା, ସାରା କୋରାପୁଟ ଜିଲ୍ଲାର ଆଦିବାସୀ, ଅଣ ଆଦିବାସୀ ସଂଗ୍ରାମୀ । ଏତେ ସଂଖ୍ୟକ ବନ୍ଦୀଙ୍କୁ ପଶୁ ପରି ଲମ୍ୱା ସେଡ୍ ଗୁଡ଼ିକରେ ଖୁନ୍ଦିଦେଇ ରଖା ଯାଉଥିଲା । ଅସ୍ୱାସ୍ଥ୍ୟକର ପରିବେଶ, ଶୋଇବାର ସୁବିଧା ନାହିଁ, ଖାଇବା ଭାରି ଦୁଃଖଦ । ଟିଣ ଛାଞ୍ଚରେ ଆଠ ଆଉନ୍ସ ମୁଦା ଭାତ, ଡାଲି ପାଣି ଓ ମୂଳା ତରକାରୀରୁ ଚାମୁଚେ ନଚେତ୍ ମାଣ୍ଡିଆ ରୋଟି ଓ ଡାଲି । ରୋଗ ହେଲେ ମଲା ପରେ ଔଷଧ ମିଳେ । ଜେଲରେ ଏମିତି ଅବସ୍ଥା । ରୋଗ, କାଛୁକୁଣ୍ଡିଆ, ରକ୍ତ ଆମାୟଶ ଭୋଗି ପ୍ରାୟ ୧୦୦ ଜଣ ସଂଗ୍ରାମୀ ଜେଲ ଭିତରେ ମରିଗଲେ ।

ବିଶ୍ୱନାଥ ଜେଲ ଭିତରେ ରୋଗୀମାନଙ୍କ ଖାଇବା ପଦାର୍ଥରେ ଉନ୍ନତି, ଅନ୍ୟାନ୍ୟ ସୁବିଧା, ଔଷଧର ବ୍ୟବସ୍ଥା ଦାବିରେ ସମୟ କଟାଉଥାନ୍ତି । ଏଣୁ ଜେଲ ଭିତରେ ତାଙ୍କର ପାଠପଢ଼ା, ଲେଖାର କୌଣସି ବିକାଶ ଘଟିନଥିଲା । ସେ ଜେଲ ମଧରେ ଅବହେଳା ଓ ଅତ୍ୟାଚାରର ଶିକାର ହୋଇ ମୃତ୍ୟୁବରଣ କରିଥିବା ସଂଗ୍ରାମୀମାନଙ୍କ ତାଲିକା ସଂଗ୍ରହ କଲେ ।

କୋରାପୁଟ ଜେଲର ପ୍ରଥମ ମୃତ୍ୟୁବରଣ କରିଥିବା ସଂଗ୍ରାମୀ ହେଲେ ଜୟପୁରର ସଦାଶିବ ବେହେରା । ବ୍ୟକ୍ତିଗତ-ସତ୍ୟାଗ୍ରହ କରି ସେ ୪ ମାସ ଜେଲ ଦଣ୍ଡ ଓ ଟ ୫୦/- ଜୋରିମାନା ଦଣ୍ଡରେ ଅଭିଯୁକ୍ତ ହୋଇ କୋରାପୁଟ ଜେଲକୁ ଆସିଥିଲେ ୩୧-୧-୧୯୪୧ ଦିନ । ପୋଲିସର ମାଡ଼, ଅବହେଳା ଓ ଟୋପାଏ ଔଷଧ ନପାଇ କୋରାପୁଟ ଜେଲ ହାସପାତାଲରେ, ଘର ଲୋକଙ୍କ ଠାରୁ ଦୂରରେ କରୁଣ ମୃତ୍ୟୁବରଣ କଲେ ୧୫-୩-୧୯୪୧ ଦିନ ।

[Certified that the convict No. 1019 Sadasiva Behera, S/o Magata Behera of Village & P.S. Jaypore in the District of Koraput was admitted into this jail on 31.1.41 to undergo the sentence of

R.I. for 4 months, fine Rs. 50/- I/D to R.I. for 2 months U/S. 385) read with 34(6) J&K defence of India rules in CC 57/41, awarded by the Sub-Divisional Magistrate, Nabarangapur on 31.1.41. Fine amount not paid and the convict died in the Head Quarters Hospital, Koraput on 15.3.41.

Identification Marks :

1. One scar mark on the side of left cheek 3/4" above the angle of left lower jaw.
2. One scar mark below the lower jaw at its middle third.
3. One scar mark on the right belly at its upper part.

Sd/- 3.6.72

Koraput District Jail
2.6.72, Seal

Superintendent,
District Jail, Koraput]

ଏମିତି ଜଣେ ନୁହଁ ପଚାଶ ଜଣ ମୃତ୍ୟୁବରଣ କଲେ ଜେଲଭିତରେ । ୧୬-୧୧-୧୯୪୨ ଦିନ ଅଧରାତିରେ ଯେତେବେଳେ ସମସ୍ତ ଜେଲ ନିସ୍ତବ୍ଧ ଥିଲା, ଜଣେ ସବ୍ ଜେଲର ଓ ଦୁଇଜଣ ୱାର୍ଡ଼ର ଲକ୍ଷ୍ମଣ ନାୟକଙ୍କୁ ଜେଲ୍‌ର ସେଲ୍ ନମ୍ବର ୧ ରୁ ବାହାର କରି ବ୍ରହ୍ମପୁର ଅଭିମୁଖେ ଚାଲିଲେ ।

ବିଶ୍ୱନାଥଙ୍କ ଛଅ ମାସ ସଜା ପୁରାହେଲା ଫେବୃଆରୀ ୧୫ ତାରିଖ ୧୯୪୩ ଦିନ ।

* * *

[ପରିଶିଷ୍ଟରେ ମାତିଲି ଗୁଳିକାଣ୍ଡରେ ଅଭିଯୁକ୍ତ ଓ କୋରାପୁଟ ଜେଲରେ ମୃତ୍ୟୁବରଣ କରିଥିବା ସହିଦଙ୍କ ନାମ ତାଲିକା ପ୍ରଦତ୍ତ ହୋଇଛି ବିଶ୍ୱନାଥ ପଟ୍ଟନାୟକଙ୍କ ସଂଗ୍ରହ ମତେ ।]

# ଜେଲ ଭିତରେ ଦୁଇବର୍ଷ

ଫେବୃଆରୀ ୧୯୪୩ରେ ବିଶ୍ୱନାଥ ଫେରିଲେ କୋରାପୁଟ ଜେଲରୁ । ଜେଲର ଅନୁଭୂତି, ସଂଗ୍ରାମୀଙ୍କ ଜେଲ ଜୀବନ, ଦଣ୍ଡ ଅତ୍ୟାଚାର ନିଜ ଆଖିରେ ଦେଖି । ଗାନ୍ଧୀବାଦରେ ଅନୁପ୍ରାଣିତ, ସତ୍ୟ ଓ ଅହିଂସାର ପଥରେ ପଥିକ, ଲୋକସେବାର ଏକମାତ୍ର ଲକ୍ଷ୍ୟ, ସଂସ୍କାର ଯାହାର ଧେୟ, ଦଳିତ ପ୍ରାଣର ଦୁଃଖ, ନିଃସ୍ୱ ପ୍ରାଣର ଅସହାୟତାକୁ ରଚନାତ୍ମକ କର୍ମ ମାଧମରେ ଦୂର କରି ଏକ ସୁସ୍ଥ ସୁନ୍ଦର ଶୋଷଣହୀନ, ମୁକ୍ତ ସମାଜର ସ୍ୱପ୍ନରେ ବୁଡ଼ି କର୍ମ କରିଯିବାର ଶପଥ ଯେମିତି ଏକାକାର ହୋଇଯାଇଥିଲା ତାଙ୍କ ଭିତରେ ।

ସେତେବେଳକୁ ଆଦିବାସୀଙ୍କ ଜୀବନରେ ଅଣ ଆଦିବାସୀଙ୍କ ଶୋଷଣ ଥିଲା ଏକମାତ୍ର ସାର୍ବଜନୀନ ସତ୍ୟ । କୋରାପୁଟ ଜିଲ୍ଲାର ଯେଉଁଠିକି ଯାଅ ସେଇ ସାହୁକାର, ମହାଜନ, ଶୁଣ୍ଡି, ରାଜା ଓ ସରକାର ଲୋକଙ୍କ ଶୋଷଣ । ଆଦିବାସୀ ଚିର ଅଭାବୀ । ବଣ କାଟି ଜମି ଉଠିଆ କରିବା ପାଇଁ, ପିଲା ଜନମ ହେଲେ ଖୁସି ମନାଇବା ପାଇଁ ପୁଅଝିଅ ବିଭାହେଲେ ଭୋଜିଭାତ କରିବା ପାଇଁ, କିଏ ମଲେ ଗୋତର ଖଟିବା ପାଇଁ, ପୁଣ୍ୟ ପର୍ବ, ଯାନିଯାତ୍ରାରେ ଆନନ୍ଦ ବିଭୋର ହେବା ପାଇଁ ସେ ଛିଡ଼ା ହେଉଥିଲା ମହାଜନ ପାଖରେ ପଇସା ପାଇଁ । ସାହୁକାର ଧାର ଦେଇ ସୁଧ ବାବଦରେ ଏମାନଙ୍କୁ ନିଜ ଘରେ ଗୋତି ଖଟାଉଥିଲା । ଲାଗୁଣି ଗୋତି ଓ ଛିଡ଼ିଣି ଗୋତି । ପୁରୁଷ ପୁରୁଷ ଧରି ଗୋତି ଖଟିଲେ ବି ଋଣ ସୁଝାଣ ହେଉନଥିଲା, ମୂଳ ସେମିତି ରହୁଥିଲା, ଏହି ଅତ୍ୟାଚାରରୁ ମୁକ୍ତି ନଥିଲା ଆଦିବାସୀ ମଣିଷର । ତା'ର ଅଭାବ, ଦାରିଦ୍ର୍ୟ, ସାମାଜିକ ବିଧିବିଧାନ, ପାରମ୍ପରିକ ବିଶ୍ୱାସ, ସମର୍ପଣ ଭାବ, ପ୍ରଭୁଭକ୍ତି, ଅଶିକ୍ଷା, କୁ-ସଂସ୍କାର, ଅନ୍ଧବିଶ୍ୱାସକୁ ନେଇ ସେ ବଞ୍ଚୁଥିଲା ମରି ମରି । ତାଙ୍କ ଭିତରେ ଯେଉଁମାନେ ସ୍ୱଚ୍ଛଳ ଥିଲେ, ଜମିବାଲା ଥିଲେ, ଧନୀ ଓ ପ୍ରତିପତ୍ତିଶାଳୀ ଥିଲେ, ସେମାନେ ନିଜ ଲୋକଙ୍କ ଦୁଃଖ ଦୂର କରିବା ବଦଳରେ ଶୋଷଣର ଯନ୍ତ୍ର ହେବା ଦେଖାଯାଉଥିଲା । ଏଣୁ ସମାଜରେ କେବଳ ଦୁଇଟି ଗୋଷ୍ଠୀ ଥିଲେ । ବୃହତ୍ତର ଗୋଷ୍ଠୀ ଶୋଷଣର ଶିକାର ହେଉଥିଲେ । ଅନ୍ୟଗୋଷ୍ଠୀ କେବଳ ଶୋଷଣ କରି ନିଜ ସ୍ୱାର୍ଥ ସାଧନ କରୁଥିଲେ । ଏହି ସମସ୍ତ ସମସ୍ୟାକୁ ଅନୁଭବ କରି ବିଶ୍ୱନାଥ ପଟ୍ଟନାୟକ ଏକ ସଂଗଠିତ ଉଦ୍ୟମ କରିବା ପାଇଁ ନିଷ୍ପତ୍ତି ନେଲେ । ଯେହେତୁ ସେତେବେଳକୁ ଗୋପବାବୁ, ରମାଦେବୀ, ନବବାବୁ, ମାଳତୀଦେବୀ ସବୁ ନେତୃସ୍ଥାନୀୟ ବ୍ୟକ୍ତି ଜେଲ ଭିତରେ, କାହା ସହିତ ପରାମର୍ଶ କରିବା ସମ୍ଭବ ନଥିଲା । ସେ ଏକା ଏକା ଅଣ୍ଟା ଭିଡ଼ି ବାହାରିଲେ । ସାହୁକାରମାନଙ୍କ ଶୋଷଣ

ବିରୁଦ୍ଧରେ ବିଶ୍ୱନାଥ ବିଧିବଦ୍ଧ ଆନ୍ଦୋଳନ ଆରମ୍ଭ କଲେ । ଲୋକଙ୍କୁ ଏକାଠି କଲେ । ତାଙ୍କୁ କାମରେ ସହଯୋଗ କଲେ ପଦାକା ନୀଳାମ୍ବର ଦୋରା, କାନ୍ତାକା ସୋମ୍ରୁ, ପାଣ୍ଡିକା ଢୋଗ୍ରୁ, ଲାଛନା ଆଦି ଯୁବକ । ଏମାନେ ଶୋଷଣ ବିରୁଦ୍ଧରେ ସ୍ୱର ଉଠାଉଥିବାରୁ, ଏମାନଙ୍କୁ ନୈତିକ ସମର୍ଥନ ଦେବା ପାଇଁ ବିଶ୍ୱନାଥ ସ୍ଥିର କଲେ ।

## ଗୁଲୁଣ୍ଡି ଗ୍ରାମର ସାହୁକାର ରାମଚନ୍ଦ୍ର ସାହୁ :

ଆଦିବାସୀଙ୍କୁ ଅଭାବ ସମୟରେ ପଇସା ଧାର ଦେଇ ଚଢ଼ା ସୁଧ ଆଦାୟ କରିବା, ଆଦିବାସୀମାନଙ୍କ ଜମିକୁ ମିଛ କବଲା କରାଇ ଜମି ଜବରଦଖଲ କରିବା ଓ ମିଠା କଥା କହି ତୋଟି କାଟିବାରେ ଗୁଣୁପୁର ନିକଟସ୍ଥ ଗୁଲୁଣ୍ଡି ଗ୍ରାମର ରାମଚନ୍ଦ୍ର ସାହୁ ଯେ ଜଣେ ଆତଙ୍କ ଦାୟୀ ଥିଲା, ଏହା କାହାକୁ ଅଛପା ନଥିଲା । ଜମିବାଡ଼ି କରିବା, ସୁନା କିଣିବା ଓ ନିଜର ଯୌନଲାଳସା ମେଣ୍ଟାଇବା ପାଇଁ ନାନା ପ୍ରକାର ଅନୈତିକ କାର୍ଯ୍ୟ କରିବା ପାଇଁ ସେ ପଛଉନଥିଲା । ତା' ପାଇଁ କେତେ ଯେ ଆଦିବାସୀ ଘର ଉଜୁଡ଼ି ଯାଇଛି, କେତେ ଝିଅ ବୋହୂ ତା' କାମନାର ଶିକାର ହୋଇଛନ୍ତି, କେତେ ଯେ ମିଛ ମୋକଦ୍ଦମାରେ ପଡ଼ି ନିଜର ସର୍ବସ୍ୱ ହରାଇ ଦାଣ୍ଡର ଭିକାରୀ ହୋଇଯାଇଛନ୍ତି, ଏସବୁ ଖବର ସଂଗ୍ରହ କରି ବିଶ୍ୱନାଥ କେବଳ ରାମଚନ୍ଦ୍ର ସାହୁ ବିରୁଦ୍ଧରେ ନୁହେଁ ସମୁଦାୟ ଶୋଷକ ଗୋଷ୍ଠୀ ବିରୁଦ୍ଧରେ ଜନମତ ସୃଷ୍ଟିକରିବା ପାଇଁ ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ସଂଗଠିତ କରାଇବା ପାଇଁ ପଦକ୍ଷେପ ନେଲେ ।

ରାମଚନ୍ଦ୍ର ସାହୁ ଭାରି ଚାଲାକ୍, ଚତୁର, ପାଣିରେ ସର ପକାଇ କଥା କହିବାରେ ପାରଙ୍ଗମ, ଭେଦ ଓ କୂଟନୀତି ପ୍ରୟୋଗରେ ବିଚକ୍ଷଣ, ଦରକାର ପଡ଼ିଲେ ଗୋଡ଼ ଧରିବା, ବଳ ପାଇଲେ ଗୋଇଠା ମାରିବା ଲୋକ । ଗୁଲୁଣ୍ଡି ଫାଣ୍ଡିରେ ଜମାନମାନଙ୍କୁ ଟଙ୍କାଏ, ଦି'ଟଙ୍କା ଦେଇ, ମଦ ପାଣି ଦେଇ, ତାଙ୍କ ପରୋକ୍ଷ ସମର୍ଥନରେ ସେ ଆଦିବାସୀମାନଙ୍କୁ ଶୋଷଣ କରୁଥାଏ ।

ଏହାର ପ୍ରତିକାର ପାଇଁ ମାର୍ଚ୍ଚ ମାସ ୧୯୪୩ ମସିହାରେ ବିଶ୍ୱନାଥ ଭାରତଛାଡ଼ ଆନ୍ଦୋଳନ ବେଳେ ଯେମିତି ପାମ୍ପଲେଟ ଲେଖି ଗାଁ ଲୋକମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ଆହ୍ୱାନ କରିଥିଲେ, ସେମିତି ଆଉ ଗୋଟିଏ ଗଣ ଆନ୍ଦୋଳନ କରିବା ପାଇଁ ପାମ୍ପଲେଟ ପ୍ରସ୍ତୁତ କଲେ । ଆଦିବାସୀ ଜୀବନର ଦୁଃଖ, ଦୁର୍ଦ୍ଦଶାକୁ ଏହି ଗଣ ଆନ୍ଦୋଳନ ଯେ ଦୂର କରିବାରେ ସାହାଯ୍ୟ କରିବ ଏହି ବିଶ୍ୱାସ ତାଙ୍କର ଥିଲା ।

## ବିଶ୍ୱନାଥଙ୍କ ପ୍ରଚାରପତ୍ର :

ବିଶ୍ୱନାଥ ଶୋଷଣ ବିରୁଦ୍ଧରେ ଯେଉଁ ପ୍ରଚାରପତ୍ର ପ୍ରସ୍ତୁତ କଲେ ସେଥିରେ ଲେଖିଲେ, "ଅତ୍ୟାଚାରୀମାନଙ୍କର ସମ୍ପତ୍ତି ଲୋକମାନେ ବାଜ୍ୟାପ୍ତ କରି ଦିଅନ୍ତୁ । ସେ ସମ୍ପତ୍ତି ସମୁଦାୟ ସମାଜର, ସାହୁକାରମାନେ ସମାଜର ଅଧିକାଂଶ ଲୋକଙ୍କୁ ଠକି ନିଜର ସମ୍ପତ୍ତି ଠୁଳ କରିଥିବାରୁ ସେ ସମ୍ପତ୍ତି ସମାଜକୁ ଫେରିଆସିବା ଉଚିତ । ଯଦି ସରକାର ଆମକୁ ସମର୍ଥନ କରିବେ ନାହିଁ, ତେବେ ଆମେ ସରକାରଙ୍କୁ ବିରୋଧ କରିବୁ ।"

ଏହି ପ୍ରଚାରପତ୍ର ରାମଚନ୍ଦ୍ର ସାହୁ କିମ୍ବା କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବିରୁଦ୍ଧରେ ବଣ୍ଟା ଯାଇନଥିଲା । ଏହାଥିଲା ଅତ୍ୟାଚାରିତ, ନିଷ୍ପେଷିତ ମଣିଷର ପ୍ରତିବାଦର ସ୍ୱର, ଶୋଷଣ ବିରୁଦ୍ଧରେ, ସେ ଶୋଷଣକାରୀ ରାମଚନ୍ଦ୍ର ସାହୁ ହେଉ କି ଆଉ କେହି ହେଉ ବା ସରକାର ହେଉ । ଏକ ପକ୍ଷରେ କିଛିନଥିବା ମଣିଷର, ସବୁଥିବା ମଣିଷ ବିରୁଦ୍ଧରେ ଏ ପାମ୍ପଲେଟ । ଏକପଟରେ ବିଶ୍ୱନାଥ ଓ ସାଧାରଣ ଆଦିବାସୀ ମଣିଷ, ଅନ୍ୟପଟରେ ଧନ, କ୍ଷମତା, ପ୍ରଭୁସତ୍ତା ଥିବା ସ୍ୱାର୍ଥପର ମଣିଷର ଦଳ ମୁହାଁ ମୁହିଁ ହେଲେ ।

ଗାଁ'କୁ ଗାଁ ପାମ୍ପଲେଟ ବଣ୍ଟାହେଲା । ନୀଳାମ୍ୱର ଦୋରା, କାଡ୍ରାକା ସୋମ୍ବ୍ରୁ, ପାଭିକା ଜୋଗୁଲୁ, ଲାଛନା ପ୍ରତିବାଦ କଲେ ସାହୁକାରମାନଙ୍କ ନିକଟରେ "ଋଣ ପାଇଁ କମ୍ ସୁଧ ନିଅ, କାମ ପାଇଁ ଅଧିକ ମଜୁରି ଦିଅ ।"

ରାମଚନ୍ଦ୍ର ସାହୁ, ପୋଲିସ ସହ ସଲା ସୁତୁରା କରି ସୁଯୋଗ ଅପେକ୍ଷାରେ ରହିଲା ଏହି ପ୍ରତିବାଦକାରୀମାନଙ୍କୁ ଦଣ୍ଡ ଦିଆଇବାକୁ । ସେ ଉପରକୁ ଧରାପଡ଼ିବା ଲୋକ ନୁହେଁ । ମନେ ମନେ ବିଶ୍ୱନାଥଙ୍କ ଉପରେ ଭାରି ରାଗ, ହେଲେ ବେଶୀ ରିଷା ଆଦିବାସୀଙ୍କ ଉପରେ । ଏମାନେ ତା' ସୁଖ ଶାନ୍ତିରେ ନିଆଁ ଲଗାଇବା ଲୋକ । ଯାହାର ଖାଇବେ ତା' ଥାଳିରେ ହଗିବେ, ଏମିତି ତା'ର ଧାରଣା ଆସିଲା । ସୁନାମଣ୍ଡି ହେଇ, ଗୁଣ୍ଡୁଣିହାତୀ ପରି ବିଳାସରେ ଝୁଲୁଥିବା ସାହୁଆଣୀକୁ ଏ ସବୁ କହିବାକୁ ସେ ଉଚିତ ମଣିଲା ନାହିଁ । ପୋଲିସ ତା'ର ଏକମାତ୍ର ସାହା, ଭରସା, ସେ ଧାଇଁଲା ଫାଣ୍ଡିକୁ । ପୋଲିସ ତାକୁ ବୋଧ ଦେଲେ, ନିଶ୍ଚିନ୍ତ ରହିବାକୁ କହିଲେ । ଏଇ ଭିତରେ ଘଟିଗଲା ଘଟଣାଟିଏ ।

ମାର୍ଚ୍ଚ ମାସ ଦ୍ୱିତୀୟ ସପ୍ତାହ ୧୯୪୩ ମସିହାର ଗୋଟିଏ ଦିନ । ବିଶ୍ୱନାଥ କୁଜେନ୍ଦ୍ରୀ ଗ୍ରାମର ନିଜ କୁଡ଼ିଆ ଘରେ ବସିଥାନ୍ତି । ସେ କୋରାପୁଟ ଜେଲରୁ ଫେରିଲା ପରେ ଗାଁ

ଲୋକେ ଏହି ଘରଟି ତାଙ୍କ ପାଇଁ ତିଆରି କରି ଦେଇଥିଲେ । ପେଚକା ଶବର କୁଡ଼ିଆ ଘରଟିଏ ନିଜ ଇଚ୍ଛାରେ ଦେଇଥାଏ । ସେଥିରେ ବିଶ୍ୱନାଥ ଆଶ୍ରମ କରିଥାନ୍ତି । ଲୋକ ଆସିଲେ, ବିଚାର ବିମର୍ଶ ହେଲା ।

ବିଶ୍ୱନାଥଙ୍କ ପରାମର୍ଶ ଅନୁସାରେ ସମ୍ପୂର୍ଣ୍ଣ ଅହିଂସା ଉପାୟରେ ରାମଚନ୍ଦ୍ର ସାହୁର ଧନ ଜବତ କରାଗଲା । ଏଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ପଦାକା ନୀଳାମ୍ବର ଦୋରା । ଲୋକଙ୍କ ଉପସ୍ଥିତିରେ ରାମଚନ୍ଦ୍ର ସାହୁ ଘରୁ ଏମାନେ କେତେବସ୍ତା ଧାନ ଲୁଟ କରି ନେଇଆସିଲେ । ସାହୁଙ୍କ ଆଦିବାସୀ ଗୋତିମାନେ କୌଣସି ବାଧା ଦେଲେ ନାହିଁ । ରାମଚନ୍ଦ୍ର ସାହୁ ମଧ୍ୟ ଲୋକ ଭୟରେ ପାଟି ଖୋଲିଲା ନାହିଁ । ଏପରି ଏକ ଅଭାବିତ ଘଟଣାରେ ସେ ହତବାକ୍ ହୋଇଗଲା । ଏପରି ହେବା ତା' ଧାରଣାରେ ନଥିଲା ।

## ବିଶ୍ୱନାଥଙ୍କୁ ପୁଣିଥରେ ଜେଲଦଣ୍ଡ :

କେତେଘଣ୍ଟା ପରେ ରାମଚନ୍ଦ୍ର ସାହୁ ଗୁରାଣ୍ଡି ଫାଣ୍ଡିରେ, ପୋଲିସର ପରାମର୍ଶରେ ନୀଳାମ୍ବର ଦୋରା ଆଦିଙ୍କ ନାମରେ ଡକାୟତି ଅଭିଯୋଗ କଲା ।

ଯଦିଓ ରାମଚନ୍ଦ୍ର ସାହୁ ଭଲଭାବରେ ଜାଣିଥିଲା ଏହି ଧାନ ଲୁଟ କାମର ପରୋକ୍ଷରେ ବିଶ୍ୱନାଥଙ୍କ ହାତ ରହିଛି ଏବଂ ସେ ଯେତେକ ଅଶାନ୍ତିର ମୂଳ, ଏଣୁ ତାଙ୍କୁ ଦଣ୍ଡ ମିଳିବା ଉଚିତ କିନ୍ତୁ ପୋଲିସ୍ ବିଶ୍ୱନାଥଙ୍କୁ ଡକାୟତ କେସ୍‌ରେ ଜଡ଼ିତ କରିବାକୁ ଚାହୁଁନଥିଲା । ଯଦିଓ ପ୍ରତ୍ୟକ୍ଷ ଭାବରେ ତାଙ୍କୁ ଜଡ଼ିତ କରାଯାଏ ତାହା ରାଜନୈତିକ ରଙ୍ଗ ନେଇପାରେ । ଏଣୁ ପୋଲିସ୍ ଭାବିଚିନ୍ତି କାମ କରିବା ଉଚିତ ମନେକଲା ।

ପୋଲିସ୍ ସାହୁକାରର ହାତରେ । ବେଳ ଅବେଳରେ ପଇସେ ଦି ପଇସା ହାତ ପଇଠ ହୁଏ । ମାଲପାଣି ମିଳିଯାଏ, ଏମାନଙ୍କୁ ଅସନ୍ତୁଷ୍ଟ କଲେ ନିଜର ହିଁ କ୍ଷତି, ଏଣୁ ରାମଚନ୍ଦ୍ର ସାହୁର ଡକାୟତି ଅଭିଯୋଗ କ୍ରମେ, ପୋଲିସ୍ କେତେଜଣ ଡମ୍ବଙ୍କୁ ନେଇ ନୀଳାମ୍ବର ଦୋରା ଓ ଯେଉଁମାନେ ଧାନ ନେଇ ଆସିଥିଲେ ସେମାନଙ୍କୁ ବାନ୍ଧି ଆଣିଲା । ଜଣେ ଅଭିଯୁକ୍ତକୁ ତିନିଜଣ ସାକ୍ଷୀ ଯୋଗାଡ଼ କଲା କାରଣ ଅପରାଧ ପ୍ରମାଣିତ କରିବା ପାଇଁ ଅତିକମ୍‌ରେ ଦୁଇଜଣ ସାକ୍ଷୀ ଲୋଡ଼ା । ପୋଲିସ୍ ଚାହିଁଲେ ସାକ୍ଷୀ ମିଳିବା କି ବିଚିତ୍ର !

ସନ୍ଧ୍ୟାହେଲା । ଗାଁରେ ଗାଁରେ ମାଟିତେଲ, ଦୀପ, ପୋଲାଙ୍ଗ ଦୀପ ଜଳିଲା । କୁଜେନ୍ଦ୍ରୀ ଗାଁ ମଝି ବାଉଁଶ ଖୁଣ୍ଟରୁ ପତାକା ଗୀତ ଗାଇ ସାରିବା ପରେ ଅରଟ ମାର୍କା ପତାକା ତଳକୁ

ଓହ୍ଲାଇ ବିଶ୍ୱନାଥ ଫେରିଲେ ନିଜ କୁଡ଼ିଆକୁ । ସନ୍ଧ୍ୟାରେ ନିତ୍ୟକର୍ମ ସାରି ପିଲାଙ୍କୁ ପ୍ରାର୍ଥନା ବୋଲାଇଲେ, ନିଜେ ବୋଲିଲେ । ପ୍ରାର୍ଥନା ସରିଲା ବେଳକୁ ଫାଣ୍ଡିରୁ ପୋଲିସ୍ ଆସିଲେ ତାଙ୍କ ଘର ତଲାସ କରିବାକୁ । ଘରୁ ଅଗଷ୍ଟ ୧୫ ତାରିଖ ୧୯୪୨ର ଭାରତଛାଡ଼ ଲେଖା ଓ ମାର୍ଚ୍ଚ ୧୯୪୩ର ସାହୁକାରମାନଙ୍କ ସମ୍ପତ୍ତି ବାଜ୍ୟାପ୍ତ କରିବା ପାମ୍ପଲେଟ୍ ଜବତ କଲେ ଏବଂ ଏହି କାରଣ ଯୋଗୁଁ ତାଙ୍କୁ ନେଇଗଲେ ଗୁଣୁପୁର ସବ୍‌ଜେଲ୍ ।

କେତେଦିନ ଗୁଣୁପୁର ସବ୍‌ଜେଲରେ ରିମାଣ୍ଡରେ ରହିଲା ପରେ ରାୟଗଡ଼ାରୁ ସବ୍ ଏଜେଣ୍ଟ ଯାଇ ଗୁଣୁପୁର ଠାରେ ଧାନ ଡକାୟତ କେସ୍ ଓ ଦୁଇ ପାମ୍ପଲେଟ୍ ଲେଖା କେସ ବିଚାରଣା କରିଥିଲେ ।

ସବ୍ ଏଜେଣ୍ଟ ବିଶ୍ୱନାଥଙ୍କୁ ତାଙ୍କର ସରକାର ବିରୋଧୀ ଓ ଦେଶବିରୋଧୀ କାମ କରିବା ଅଭିଯୋଗରେ ଅଭିଯୁକ୍ତ କରି ତୃତୀୟ ଶ୍ରେଣୀ ରାଜନୈତିକ ବନ୍ଦୀଭାବେ ଏକ ବର୍ଷ ସଶ୍ରମ କାରାଦଣ୍ଡ ଆଦେଶକଲେ । ଗୁଣୁପୁର ଜେଲରୁ ତାଙ୍କୁ ପୁଣିଥରେ କୋରାପୁଟ ଜେଲ ଅଣାଗଲା । ଦ୍ୱିତୀୟବାର ଜେଲ୍ ଯିବା ଓ ଜେଲ ରହଣି ସମ୍ବନ୍ଧରେ ବିଶ୍ୱନାଥ କହନ୍ତି- ''କୋରାପୁଟ ଜେଲକୁ ନିଆଗଲା । ନାମକୁ ମାତ୍ର ସଶ୍ରମ କାରାଦଣ୍ଡ । ମାଣ୍ଡିଆ ରୁଟି ଓ ଡାଲି ଖାଇବାକୁ ଦିଆଗଲା । ସେଲ୍‌ରେ ରଖାଗଲା । ସାଧାରଣ କଏଦୀ ମାନଙ୍କ ସହ ଆମକୁ ମିଶିବାକୁ ଦିଆଯାଏ ନାହିଁ । କାରଣ ସରକାରଙ୍କ ବିଚାର ଥାଏ ଯେ ଆମେ ସେମାନଙ୍କୁ କୁବୁଦ୍ଧି ଦେବୁ, ସ୍ୱାଧୀନତା ସମ୍ପର୍କରେ କହିବୁ । ତେଣୁ ଆମକୁ ଏକୁଟିଆ ରଖାଯାଏ ଓ କାମ ଦିଆଯାଏ ନାହିଁ ।''

ବିଶ୍ୱନାଥ ଜେଲରେ ଥିବା ସମୟରେ ନୀଳାମ୍ବର ଦୋରା ଓ ଅନ୍ୟମାନେ ଧାନ ଚୋରି କେସ୍‌ରେ ଦେଢ଼ ବର୍ଷ ଲେଖାଏ ସଜା ପାଇଁ କୋରାପୁଟ ଜେଲରେ ପହଞ୍ଚିଲେ । ବିଶ୍ୱନାଥ ଗାଧୋଇ ଗଲାବେଳେ ସେମାନଙ୍କ ସହ ଦେଖାହୁଏ । ତାଙ୍କ ସହିତ କଥା ହୁଅନ୍ତି । ବ୍ୟସ୍ତ ନହେବାକୁ ବୁଝାନ୍ତି । ଏମିତି ଦିନ ଗଡ଼ିଯାଉଥାଏ । ଆଜି ଜେଲରେ କିଏ ଝାଡ଼ାବାନ୍ତିରେ ମଲାଣି ତ, କାଲି କିଏ ରକ୍ତ ଆମାଶୟରେ, କିଏ ମ୍ୟାଲେରିଆରେ, ଶୁଣନ୍ତି ଟିପି ରଖନ୍ତି । ବାହାର ଜୀବନ ଠାରୁ ଜେଲ ଜୀବନ କେତେ ଭିନ୍ନ । ଘଣ୍ଟାକଣ୍ଟାରେ ଏଠି ଜୀବନ ଚାଲେ । ସକାଳ ୪ରୁ ସନ୍ଧ୍ୟା ୬ଟା ଯାଏ, ବିଭିନ୍ନ ପ୍ରକାର କାମ । ସଞ୍ଜ ହେଲେ ଭାଗବତ ପଢ଼ାହୁଏ । ଭଜନ ବି ଗାନ ହୁଏ ତ କେହି ରୋଗ ଯନ୍ତ୍ରଣାରେ ଚିତ୍କାର କରନ୍ତି । ଯେଉଁ କଂଗ୍ରେସ କର୍ମୀ ଆନ୍ଦୋଳନ କରି ଜେଲକୁ ଆସିଲେ, ମୃତ୍ୟୁବରଣ କଲେ ଏମାନଙ୍କ ନାମ ହୁଏତ ଭାରତ

ଇତିହାସକୁ ଆସିବ ନାହିଁ କାରଣ ଏମାନେ ଆଗଧାଡ଼ିର ଲୋକ ନଥିଲେ । ଗଳା ଫଟାଇ ଭାଷଣ ଦେବାର କଳା ଏମାନଙ୍କୁ ଜଣାନଥିଲା । କେତେଜଣଙ୍କୁ ଛାଡ଼ିଦେଲେ ସେମାନେ କେହି ଗାନ୍ଧୀ ମହାତ୍ମାଙ୍କୁ ଦେଖିନଥିଲେ; କେହି କେହି ଦେଖିଥିଲେ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ସଦାଶିବ ତ୍ରିପାଠୀଙ୍କୁ; କେହି କେହି ବିଶ୍ୱନାଥ ପଟ୍ଟନାୟକ, ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ, ନୀଳକଣ୍ଠ ପାତ୍ର, ଲକ୍ଷ୍ମଣ ନାୟକଙ୍କୁ ଦେଖିଥିଲେ । ଇଂରେଜ ସରକାରଙ୍କ ଘୋଷିତ ପଛୁଆ ଅଞ୍ଚଳ କୋରାପୁଟରେ ଆଦିବାସୀ ଏମାନେ, ଯିଏ ଖୁବ୍ କମ୍ ବୁଝିଥିଲା ସ୍ୱାଧୀନତାର ତତ୍ତ୍ୱକୁ, ଗଣତନ୍ତ୍ରକୁ କିନ୍ତୁ ସେମାନେ ଠିକ୍ ବୁଝିଥିଲେ ଗାନ୍ଧୀ-ଗୁମସ୍ତାମାନେ ଯାହା କରୁଛନ୍ତି ଭଲ ପାଇଁ, ମଙ୍ଗଳ ପାଇଁ । ସେଥିପାଇଁ ଏମାନେ ଜେଲ ଯିବାକୁ ଡରିଲେ ନାହିଁ, ମାଡ଼ଗାଳିକୁ ଖାତିର କଲେ ନାହିଁ । ମରଣକୁ ଫୁଲହାର ମନେକରି ବେକରେ ପିନ୍ଧିଲେ । କେବଳ ଏଇଥି ପାଇଁ ଯେ ସାହୁକାର, ଶୁଣ୍ଡି, କାଳିଞ୍ଜି, ପୋଲିସ୍, ଫରେଷ୍ଟ ଗାର୍ଡ଼ର, ଅମିନ ସିପାହି, ଡମ୍ବ ମାନଙ୍କର ନିଷ୍ଠୁର କବଳରୁ ଏମାନେ ମୁକ୍ତି ପାଇବେ, ଏଇ ଗୋଟିଏ ଚିନ୍ତା, ଏହି ଗୋଟିଏ ଚେତନାରେ ଏମାନେ ଡେଇଁ ପଡ଼ିଲେ ସ୍ୱାଧୀନତା ସଂଗ୍ରାମକୁ । ବ୍ୟକ୍ତିଗତ ସତ୍ୟାଗ୍ରହ କଲେ । ମାତିଲି ଥାନା ଘେରାଓ, ପାପଡ଼ାହାଣ୍ଡି ଟୁରି ନଇ ଗୁଳିକାଣ୍ଡ ଭିତରେ ପ୍ରିୟ ପ୍ରାଣକୁ ବିସର୍ଜି ଦେଲେ, ଜେଲରେ ସଢ଼ି ସଢ଼ି ମଲେ, ସହିଦ ହୋଇଗଲେ ।

ନିଜ ସେଲ୍‌ରେ ବସି ବିଶ୍ୱନାଥ ଏମାନଙ୍କ କଥା ଚିନ୍ତା କରୁଥିଲେ ଗଭୀର ଭାବେ । ଏମାନଙ୍କ ଦୁଃଖ ଦୂର ହେବାର ଉପାୟ ଚିନ୍ତା କରୁଥିଲେ । ବିଚାର ବିମର୍ଶ କରୁଥିଲେ ତାଙ୍କ କୋଠରୀରେ ଥିବା ନବରଙ୍ଗପୁରର ମହମ୍ମଦ ବାଜୀଙ୍କ ସହିତ । ତାଙ୍କ ସହିତ ଧନୁ ପୂଜାରୀ, ଦଶମନ୍ତପୁର ଯିବା ରାସ୍ତାରେ ପଡୁଥିବା କଇଁଝାରୀ ଗ୍ରାମର ଲିମା ସାଉନ୍ତା ମଧ୍ୟ ଥିଲେ ।

ଦ୍ୱିତୀୟଥର ଜେଲ ଜୀବନ କିପରି ଥିଲା ତାହା ସେ କହନ୍ତି ନିମ୍ନ ପ୍ରକାରେ : ''ଏକ ବର୍ଷର ଜେଲ ଜୀବନ ସରି ଆସିଲା, କିନ୍ତୁ ଦିନେ ହଠାତ୍ ଆମକୁ ଶୁଣାଇ ଦିଆଗଲା ଯେ ଅନିର୍ଦ୍ଦିଷ୍ଟ କାଳ ପାଇଁ ଆମେ ଅଟକବନ୍ଦୀ ରହିବୁ । ସରକାର ଯେବେ ଚାହିଁବେ ତେବେ ମୁକୁଳାଇବେ । ମୋ ସାଙ୍ଗରେ ଆଉ ଚାରି ଜଣ ମଧ୍ୟ ରହିଲେ, ସେଥିମଧ୍ୟରୁ କୋରାପୁଟ ଜିଲ୍ଲାର ତିନି ଜଣ ହେଲେ ନବରଙ୍ଗପୁରର ମହମ୍ମଦବାଜୀ ଓ ଧନୁ ପୂଜାରୀ, କଇଁଝାରୀ ଗ୍ରାମର ଲିମା ସାଉନ୍ତା । କିଛିଦିନ ପରେ ଆମ କୋଠରୀରେ ପଞ୍ଚମ ବନ୍ଦୀ ବନ୍ଧୁ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଆସି ପହଞ୍ଚିଲେ । (୨୦-୪-୧୯୪୩ ଦିନ) । ଆମର ରୋଷେଇ କରିବା ଓ ଅନ୍ୟାନ୍ୟ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ସାଧାରଣ କଏଦୀ କେତେଜଣ ଆସୁଥିଲେ ।''

## ରାଜନୈତିକ ବନ୍ଦୀଙ୍କୁ ସୁବିଧା ସୁଯୋଗ :

ବିଶ୍ୱନାଥ ପଟ୍ଟନାୟକ, ମହମ୍ମଦ ବାଜୀ, ଧନୁ ପୂଜାରୀ, ଲିମା ସାଉନ୍ତା, ସୁରେନ୍ଦ୍ର ନାଥ ଦ୍ୱିବେଦୀ ସମସ୍ତେ ରାଜନୈତିକ ବନ୍ଦୀ ଭାବେ କୋରାପୁଟ ଜେଲରେ ଥିଲେ । ଏମାନଙ୍କୁ ସଫା ସୁତୁରା ଖର୍ଚ୍ଚ (toilet) ଖାଇବା ପିନ୍ଧିବା ବାବଦରେ ତିନି ମାସକୁ ଟ.୨୬ଙ୍କା ଲେଖାଏଁ ସାଧାରଣ ଖର୍ଚ୍ଚ ମିଳେ । ୧୯୪୩/୪୪ ମସିହାରେ ସେହି ଟ.୨୬ଙ୍କାରେ ବହୁ ଜିନିଷ କିଣା ଯାଇପାରୁଥିଲା । ବିଶ୍ୱନାଥ ଓ ବାଜୀ ବାବୁ ଏହି ଟଙ୍କା ସାଧାରଣ କଏଦୀଙ୍କ ପାଇଁ ଖର୍ଚ୍ଚ କରନ୍ତି । ବାଜୀବାବୁ ଓଡ଼ିଆ ଘରର ପିଠାପଣା କରିବାରେ ଭାରି ଧୁରନ୍ଧର । ବେଳେ ବେଳେ ସେ ପିଠା କରି ଅନ୍ୟ ସମସ୍ତ ରାଜନୈତିକ ବନ୍ଦୀମାନଙ୍କୁ ପଠାନ୍ତି । ସାଧାରଣ କଏଦୀମାନଙ୍କ ପାଇଁ ଧୂଆଁପତ୍ର କିଣାଯାଏ ।

ବିଶ୍ୱନାଥ ଜେଲରେ ନିୟମିତ ଆସନ ପ୍ରାଣାୟାମ କରୁଥିଲେ । ସେତେବେଳକୁ କୋରାପୁଟ ଜେଲରେ ରାଜନୈତିକ ବନ୍ଦୀଭାବେ ବାହାର ଜିଲ୍ଲାରୁ ରବିଘୋଷ, ଗୌରାଙ୍ଗ ଦାସ, କଟକରୁ ଭୈରବ ଚନ୍ଦ୍ର ମହାନ୍ତିଙ୍କ ସମ୍ପର୍କୀୟ ଭାଇ ବୈଷ୍ଣବ ମହାନ୍ତି ଥାନ୍ତି । ବୈଷ୍ଣବ ମହାନ୍ତି ନିଜେ ଆସନ କରୁଥିଲେ ଓ ଅନ୍ୟମାନଙ୍କୁ ଶିଖାଉଥିଲେ । ବିଶ୍ୱନାଥ ଜେଲ ଭିତରେ ଭୋରରୁ ଉଠି ଆସନ କରନ୍ତି । ଶୀର୍ଷାସନ ପ୍ରାୟ ୫ ମିନିଟ ଯାଏ କରନ୍ତି । ୧୯୪୩ରେ ଜେଲରେ ଥିବା ବେଳେ ସେ ନିଗମାନନ୍ଦଙ୍କର ଯୋଗୀଗୁରୁ ବହି ମଗାଇ ପଢ଼ିଥିଲେ ।

୧୯୪୫ ମସିହା ବେଳକୁ ଆନ୍ଦୋଳନ ଶିଥିଳ ପଡ଼ିଆସିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିବା ଉପରେ । ସାରାଦେଶରୁ ନେତାମାନଙ୍କୁ ଖଲାସ କରି ଦିଆଗଲା । ଅପ୍ରେଲ୍ ୧୯୪୫ ବେଳକୁ କୋରାପୁଟ ଜେଲରେ ଅଧିକାଂଶ ବନ୍ଦୀ ଖଲାସ ହୋଇଗଲେ ତା'ପର ପର୍ଯ୍ୟାୟରେ ରବିଘୋଷ, ଗୌରାଙ୍ଗ ଦାସ ଓ ବିଶ୍ୱନାଥ ପଟ୍ଟନାୟକ ଖଲାସ୍ ହେଲେ । ସୁରେନ୍ଦ୍ର ବାବୁ ଓ ମହମ୍ମଦ ବାଜୀ ସେତେବେଳ ଯାଏ ଜେଲ୍‌ରେ ଥିଲେ ।

୧୯୪୨ ଅଗଷ୍ଟ ୧୫ ତାରିଖରେ ଗିରଫ ହୋଇ ୧୯୪୫ ମସିହା ଅଗଷ୍ଟ ୧୬ ତାରିଖରେ ବିଶ୍ୱନାଥ କୋରାପୁଟ ଜେଲରୁ ଖଲାସ ହେଲେ, ଜୀବନରେ ଆହୁରି ବହୁତ କିଛି କରିବାର ଲକ୍ଷ୍ୟ ନେଇ । ପୁଣି ଆରମ୍ଭ ହେବାକୁ ଯାଉଥିଲା ସାଧନାର ଅନ୍ୟ ଏକ ପ୍ରସ୍ତୁତି ।

* * *

- ଏଗାର -

# କର୍ମ ମୋହର ନିଜଗୁରୁ

ଅଗଷ୍ଟ ମାସ ୧୬ ତାରିଖ ୧୯୪୫ ମସିହା ଦିନ ବିଶ୍ୱନାଥ ବାବୁ କୋରାପୁଟ ଜେଲରୁ ଖଲାସ ହେଲେ । ସେ ଜେଲରେ କଟାଇଲେ ଦୀର୍ଘ ତିନି ବରଷ ।

ଜେଲରୁ ବାହାରିଲା ପରେ ସେ ହୋଇଗଲେ ଆଉ ଏକ ମଣିଷ । ଗୀତାର ସେଇ ନିଷ୍କାମ କର୍ମଯୋଗୀ । କାମ କରିଚାଲ, ଫଳର ଆଶା ରଖନାହିଁ । ସେ ଆଉ ଫେରି ଚାହିଁଲେ ନାହିଁ, ନିଜ ଘର, ପରିବାର, କୁଟୁମ୍ବକୁ । ଆଗରୁ ତ ସେମିତି କିଛି ବନ୍ଧନ ନଥିଲା, ଏଣୁ ମୋହବି ରହିଲା ନାହିଁ । ତାଙ୍କ ପାଇଁ ଘର, ପରିବାର, କାମର ପରିସରର ଅର୍ଥ ଅଲଗା ହୋଇଗଲା । ସେ ନିଜ କଥା ଭାଳି, ନିଜ ଭିତରେ ଛନ୍ଦି ହୋଇ, ନିଜର ଲୋକବାକ, ଘରବାଡ଼ି କଥା କେବେହେଲେ ଚିନ୍ତା କରୁନଥିଲେ । ୧୯୩୭ ମସିହାରେ ସେ ଘର ଛାଡ଼ିଲେ ଯେ ଆଉ ସେଠାକୁ ଯିବାର ନୋହିଲା ।

ସେ ବୁଝିଥିଲେ ଘର ବୋଇଲେ-ରହିବା ପାଇଁ ମୁଣ୍ଡ ଗୁଞ୍ଜିବା ପାଇଁ ଖଣ୍ଡେ ଜାଗା । ପରିବାର ବୋଇଲେ ସେଇସବୁ ଲୋକେ ଯେଉଁମାନେ ସାମାଜିକ ନ୍ୟାୟ ପାଇ ପାରୁନାହାନ୍ତି, ନିଷ୍ପେଷିତ, ଦଳିତ ଅତ୍ୟାଚାରିତ ହୋଇ ଜୀବନର ନ୍ୟୁନତମ ସୁଖ ସୁବିଧାରୁ ବଞ୍ଚିତ ହୋଇ ରହିଛନ୍ତି । ତାଙ୍କ କାର୍ଯ୍ୟ ପରିସର ହୋଇଗଲା ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ ବିସ୍ତୃତ ଆଦିବାସୀ ଅଞ୍ଚଳ । ପୁଣି ସେ ଫେରିଲେ କୁଜେନ୍ଦ୍ରୀକୁ । କୁଜେନ୍ଦ୍ରୀ ହେଲା ତାଙ୍କ କର୍ମର ମୁଖ୍ୟ ପେଣ୍ଠ ଜାଗା, କେନ୍ଦ୍ର ।

ବିଶ୍ୱନାଥ କୁଜେନ୍ଦ୍ରୀର ପେଟକା ଶବରର ଯେଉଁ ଘରେ ଜେଲ ଯିବା ଆଗରୁ ରହୁଥିଲେ, ସେଠି ରହିଲେ । ଜେଲରୁ ବାହାରି ସେ ନିଜ ଜେଲ ସହକର୍ମୀଙ୍କୁ ଭେଟି ପରିବର୍ତ୍ତିତ ଅବସ୍ଥାରେ କ'ଣ କରିବାକୁ ହେବ, ସେ ସବୁ ଜାଣିବା ପାଇଁ, ଘନ ଘୋର ବର୍ଷାଋତୁରେ ଶୀତକୁ ଦେହକୁ ନନେଇ ପ୍ରାୟ ୧୫ ଦିନ କାଳ ରାୟଗଡ଼ା, କୋରାପୁଟ, ଜୟପୁର, ନବରଙ୍ଗପୁର ଅଞ୍ଚଳ ବୁଲିଲେ, କୋଟପାଡ଼, ପାପଡ଼ାହାଣ୍ଡି ବି । ଏ ଅଞ୍ଚଳର କର୍ମୀମାନେ ସେ ପର୍ଯ୍ୟନ୍ତ ଜାଣିନଥାନ୍ତି, ଉପରସ୍ତରରେ ଦେଶ ସ୍ୱାଧୀନ ହେବା ପାଇଁ ବାଟମାନ ତିଆରି ହେଉଛି, କେତେ ଆଲୋଚନା, କେତେ କଥା । ସମ୍ବିଧାନ କମିଟୀ ତିଆରି ହେବ । ଦେଶକୁ କେମିତି ଶାସନ ଦେଲେ ଭଲ ହେବ, ସେ ବିଷୟରେ ବ୍ୟବସ୍ଥାମାନ ଖଞ୍ଜା ହେବ । ଅନ୍ଧାରି ମୂଳକ

କୋରାପୁଟ । ଏତେକଥା ଜାଣିବା ସମ୍ଭବ ନଥିଲା ସେତେବେଳେ । ସେମାନେ କେବଳ ଏଇ ବିଶ୍ୱାସରେ ଦୃଢ଼ଥିଲେ ପାଚୁ ଗଡମ୍ ଉଠିଯିବ । ରାଜାରାଜୁଡ଼ା ଶାସନ ରହିବ ନାହିଁ, ଗୋରା ସରକାର ଭାରତ ଛାଡ଼ି ଚାଲିଯିବ । ବଣ ଓ ଜମିର ଅଧିକାର ସେମାନଙ୍କ ହାତରେ ରହିବ । ଏହା କହିଥିଲେ ଏ ଜିଲ୍ଲାର କଂଗ୍ରେସ ନେତାମାନେ । ଦୀର୍ଘ ୧୫ ଦିନ ଜେଲର ସହକର୍ମୀମାନଙ୍କ ସହିତ ମିଶି ଏକ ନୂତନ ଅନୁଭୂତି, କର୍ମପ୍ରେରଣା ନେଇ ବିଶ୍ୱନାଥ ପଟ୍ଟନାୟକ ଫେରିଲେ ପୁଣି କୁଜେନ୍ଦ୍ରୀ । ଏକ ନୂତନ ଆଶ୍ରମ ନିର୍ମାଣ ପାଇଁ ମନ ବଳାଇଲେ ।

## କୁଜେନ୍ଦ୍ରୀ ଆଶ୍ରମ :

ପୋଚକା ଶବର କରିଦେଇଥିଲା କୁଡ଼ିଆ ଖଣ୍ଡେ ଆଞ୍ଚା ରହିବା ପାଇଁ । ସେଇ କୁଡ଼ିଆ ବିଶ୍ୱନାଥ ବାବୁଙ୍କର ସବୁ - ରୋଷେଇଘର, କାର୍ଯ୍ୟାଳୟ, ଆଶ୍ରମ, ପ୍ରାର୍ଥନାକେନ୍ଦ୍ର, ପିଲାଙ୍କ ବିଦ୍ୟାଳୟ । ଜେଲରୁ ଫେରିଲା ପରେ କୁଜେନ୍ଦ୍ରୀ ଗାଁର ଲୋକେ ମିଶି ଗୋଟିଏ ନୂଆଘର ତିଅରି କରିଦେଲେ । ଆଗରୁ ଯେଉଁ ଆଶ୍ରମ ଘର ତିଆରି ହୋଇଥିଲା ସେ ଜେଲ ଭିତରେ ଥିଲାବେଳେ ନଷ୍ଟ ହୋଇଯାଇଥିଲା । ନୂଆ ଆଶ୍ରମ, ନୂଆକରି ସବୁ କରିବାକୁ ହେବ, ବାଡ଼, ବଗିଚା, କୂଅ ସବୁ । ଅବଶ୍ୟ ଲୋକ ସାହାଯ୍ୟ ମିଳିଲା ।

## କୁଜେନ୍ଦ୍ରୀ ଖଦୀ ସ୍ୱାବଲମ୍ବନ କେନ୍ଦ୍ରର ୧୯୪୫-୪୬ର ରିପୋର୍ଟ :

୧୯୪୧ ଆରମ୍ଭରେ ଗାନ୍ଧୀ ସେବାସଂଘର କାମ ଏଠାରେ ପ୍ରଥମେ ଆରମ୍ଭ ହେଲା । ବର୍ଷେ କାମ ହେବା ପରେ ଏହି କେନ୍ଦ୍ରର କର୍ମକର୍ତ୍ତା ୪୨ ଆନ୍ଦୋଳନରେ ଜେଲ୍‌ଯାଇ ୧୯୪୫ ଅଗଷ୍ଟ ତା ୨୮ରିଖରେ ଖଲାସ୍ ହୋଇ ଆସିବା ପର ମାସ ସେପ୍ଟେମ୍ବର ପହିଲାରୁ ପୁଣି ପୂର୍ବ କାମ ଚାଲିଲା । '୪୨' ଆନ୍ଦୋଳନରେ ଏହି ଗାଁର ୧୧ ଜଣ ପୁରୁଷ ଓ ୯ ଜଣ ସ୍ତ୍ରୀ ଜେଲ୍‌ବରଣ କରିଥିଲେ । ମାତ୍ର ୪୮ ଜଣ ଲୋକ ଏହି ଗାଁରୁ ଆନ୍ଦୋଳନରେ ବାହାରିଥିଲେ । ଏଥିରୁ ୨୦ ଜଣ ମହିଳା ଥିଲେ । ସମସ୍ତଙ୍କୁ ଗିରଫ କରି ୪୭ ଦିନ ରଖିବା ପରେ ସେମାନେ ଛାଡ଼ ପାଇଥିଲେ । '୪୨' ଆନ୍ଦୋଳନରେ ଏ ଅଞ୍ଚଳରେ ସଜା ପାଇଥିବା ମୋଟ ଲୋକସଂଖ୍ୟା ୩୪ ମାତ୍ର । ସେପ୍ଟେମ୍ବର ପହିଲାରୁ ପୂର୍ବବଦ୍ ଆଖପାଖ ଗାଁକୁ ନେଇ କାମ ଆରମ୍ଭ ହେଲା । ନିଜ ଗାଁକୁ ଆଦର୍ଶ ରଖି ଉତ୍ତରକୁ ୧୮ ମାଇଲ୍, ପଶ୍ଚିମକୁ ୧୫ ମାଇଲ୍, ଦକ୍ଷିଣକୁ ତିନି ମାଇଲ୍, ପୂର୍ବକୁ ଏକ ମାଇଲ୍ ସର୍କଲ୍‌ରେ ୫୦ ଖଣ୍ଡ

ଗ୍ରାମକୁ ନେଇ କାମ ଆରମ୍ଭ ହେଲା । ଏଥି ମଧ୍ୟରୁ ୨୦ ଖଣ୍ଡ ଗାଁରେ ଅରଟ ଚାଲୁଛି । ବଳକା ଗାଁମାନଙ୍କୁ ସେହି ଦିଗରେ ଚେଷ୍ଟା କରାଯାଉଛି । ଏହି ଗାଁ ମାନଙ୍କରେ ଆସ୍ତେ ଆସ୍ତେ ଅରଟ ସଂଖ୍ୟା ବଢୁଛି । 'ଅରଟ ଚାଲିଲେ ସ୍ୱାଧୀନତା ପାଇବା' ଏହି ଧାରଣାକୁ ଲକ୍ଷ୍ୟ ରଖି ପ୍ରଥମେ ନିର୍ଭୀକ କରାଇବାକୁ ଜୋର୍ ଦିଆଯାଉଛି । ତା'ର ଫଳରେ ଲୋକେ ବେଠି ଓ ଭେଟି ବନ୍ଦ କରିଛନ୍ତି । ଜୟପୁର ଷ୍ଟେଟ୍ ତଥା ପୋଲିସ୍‌ଙ୍କ ଅତ୍ୟାଚାରର ବିରୋଧ କରିବା ଭଳି ଶକ୍ତି ପାଇଛନ୍ତି ଏବଂ ନିଶା ଖାଇବା ମଧ୍ୟ ଅନେକ ଦୂର କମିଯାଇଛି ।

ଏହି ଅଞ୍ଚଳର ଆଦିବାସୀଙ୍କୁ ନିଶା କେବଳ ସର୍ବସ୍ୱାନ୍ତ କରିଛି । ଏହା ଛଡ଼ାଇବାକୁ ଯାଇ ଅନେକ ବାଧା ବିଘ୍ନ ସହ୍ୟ କରିବାକୁ ପଡ଼ିଛି । କେହି ଯଦି ଗ୍ରାମର ଲୋକ ମରିଯାଏ, ମରିବା କଥା ସେହି ପରିବାରକୁ ଯେମିତି ନବାଧେ, ମଦ ଆସିଲେ ମଢ଼ ବାହାରିବ ଏହି ସମସ୍ୟା ତାଙ୍କୁ ବଡ଼ ବାଧେ । ଏହା ବୁଝାଇବାକୁ ଅନେକ ଥର ଶ୍ମଶାନକୁ ଯାଇ ବୁଝାଏ । ଏହି କୁଜେନ୍ଦ୍ରୀ ଗ୍ରାମକୁ ଧୋତ୍ରେଜୀ ଆସି ଦେଖିଯିବା ପରେ ନିଜ ଗାଁକୁ ଆଦର୍ଶ କରି ଆଖପାଖ ଗାଁକୁ ସେହି ଢଙ୍ଗରେ ଗଢ଼ିବା ପାଇଁ ଜୋର୍ ଦେଇ ଦୂରବର୍ତ୍ତୀ ଗାଁମାନଙ୍କୁ ଲକ୍ଷ୍ୟରଖି କାମ ଆରମ୍ଭ ହୋଇଛି । ଛୁଆଁ ଅଛୁଆଁ ନେଇ ଆଖ ପାଖ ଗାଁ ମାନଙ୍କରୁ ଅନେକ ବାଧାବିଘ୍ନ ସହ୍ୟ କରିବାକୁ ହେଉଛି । ତଥାପି କାମ ଆଗେଇଛି । ଆହୁରି ମଧ୍ୟ କେତେକ ଆନ୍ଧ୍ର-ତେଲୁଗୁ କଂଗ୍ରେସ, ଓଡ଼ିଆ କଂଗ୍ରେସ ବୋଲି ବାଧା ଦେବାରେ ଲାଗିଛନ୍ତି । ଏହା ବଡ଼ ସମସ୍ୟା ହୋଇପଡ଼ିଛି । ଏହି ଭାବ କାମରେ ଜୋର୍ ଧକ୍କା ଦେଉଛି ।

ଏହି ଅଞ୍ଚଳରେ କେତେଖଣ୍ଡ ଗାଁକୁ ଛାଡ଼ିଦେଲେ ୨୫୦ ବର୍ଗ ମାଇଲ୍ ଧରି କପାଚାଷ ହେଉଛି । ଚାଷୀ ଗରିବ ହେତୁ କୁମୁଟି ସାହୁକାରଙ୍କ ଠାରୁ ଫସଲ ଆଗରୁ ଚୁକ୍ତି କରି ପଇସା ନେଇଥାନ୍ତି । ତା'ରି ଫଳରେ ଚାଷୀ ଠାରୁ ବେପାରୀ ଶସ୍ତାରେ କପା ନେଇ ସେଥିରୁ ଖରିଦର ତିନିଗୁଣ ପଇସା ଲାଭ କରନ୍ତି । ଏହି ବର୍ଷ ଚାଷୀ ଠାରୁ ଦେଢ଼ସେରକୁ ୧୦ ପଇସାରେ କିଣିଛନ୍ତି । ଏହି ଦରରେ ଏହି ଅଞ୍ଚଳରୁ ଏବର୍ଷ ୩ ହଜାର ଟଙ୍କାର କପା ବିକ୍ରି ହୋଇଛି । ଚାଷୀ ତା'ର ନିଜ ଦରକାର ମୁତାବକ ସୂତାକାଟିବା ପାଇଁ କପା ରଖି ବିକ୍ରି କରୁଛି । ଏ ଅଞ୍ଚଳର ଆଦିବାସୀ, ସୌରା ବେଶି ପରିମାଣରେ କପା କରନ୍ତି । ଅନ୍ୟ ଜାତି ସବୁ କାମ କରନ୍ତି । ସୌରାମାନେ ଖୁବ୍ କମ୍ ଲୁଗା ବ୍ୟବହାର କରନ୍ତି । ତେଣୁ ୫ ଜଣ ପରିବାର ଦୁଇସେର ପାଏ ସୂତାରେ ଚଳିଯାଆନ୍ତି । ଏଥିରେ ସେମାନେ ୧୫ ବର୍ଗ ଗଜ ଲୁଗା ପାଆନ୍ତି । ଏଇଥିରେ ସେମାନେ ବର୍ଷକ କଟାନ୍ତି । କେହି କେହି ଶୀତ ଲୁଗା ପାଇଁ ଅଧିକା ସୂତା କାଟନ୍ତି । ଶୀତ ଚଦର ଥରେ କଲେ ୫/୬ ବର୍ଷ ଚଳିଯାଏ । ଚାଷ ନକରିଥିବା

ଲୋକ କପା ଆମଦାନୀ ବେଳେ ମଜୁରି ଖଟି କପା ମଜୁରି ଆଣି ସୂତା କାଟିଥାଏ । ସୂତା କାଟୁଥିଲେ ମଧ ଅନେକ କାମ ଭିତରୁ ଶୀତ ଚଦର ପାଇଁ ସୂତା କାଟିବାକୁ ସମୟ ପାଆନ୍ତି ନାହିଁ । ତେଣୁ ନିଆଁ ଦ୍ୱାରା ଶୀତରୁ ରକ୍ଷା ପାଆନ୍ତି । ଏ ଅଞ୍ଚଳରେ ପ୍ରାୟ ତିନି ହଜାର ଅରଟ ଚାଲୁଛି । ଏଥିରେ ପାଞ୍ଚ ହଜାର ଯାଏ ଲୋକ ସୂତା କାଟନ୍ତି । ଏଥିରୁ ତିନି ହଜାର ସ୍ୱାବଲମ୍ବନ କଟାଳି ଅଛନ୍ତି । ଏହି କଟାଳି ମାନେ ଖଦୀକୁ ବ୍ରତ କରି ନେଇଛନ୍ତି । ଏ ଅଞ୍ଚଳରେ ଲୁଗା ବୁଣା ହେଉଛି ଏକ ବଡ଼ ସମସ୍ୟା । କଟାଳି ତନ୍ତିକୁ ସୂତା ଦେଲେ ସେ ଲୁଗା ନଦେଇ ସୂତା ଖାଇଯାଉଛି । ତା'ରି ଫଳରେ ସୂତା କଟା ପ୍ରତି ଉତ୍ସାହ କମୁଛି । ଏହାର ଉପଯୁକ୍ତ ପ୍ରତିକାର ହେଉଛି ନୂଆ ବୁଣାଳି ସୃଷ୍ଟି କରିବା । ତେଣୁ ସୌରା ପୁଅ ଓ ଝିଅମାନଙ୍କୁ ନୂଆ ତନ୍ତି କରିବାରେ ଚେଷ୍ଟା କରାଯାଉଛି । ଏ ଅଞ୍ଚଳରେ ପ୍ରାୟ ୪୦ ହଜାର ବର୍ଗ ଖଦୀ ବୁଣା ହେଉଛି ।

## କୁକେନ୍ଦ୍ରୀ ଖଦୀ ସ୍ୱାବଲମ୍ବନ କେନ୍ଦ୍ରର ୧୯୪୬-୪୭ର ବାର୍ଷିକ ରିପୋର୍ଟ :

କୁକେନ୍ଦ୍ରୀ, ଟିକରପଡ଼ା, ଗୁରୁବୁପାଙ୍ଗୁ, ନାରଣଗୁଡ଼ା, ତୁମ୍ବାକଣା ଆଦି ଗ୍ରାମମାନଙ୍କୁ କେନ୍ଦ୍ରକରି ୧୨୬୧ ପରିବାରଙ୍କ ମଧରେ କାମହେଉଛି । ଏହାର ଲୋକସଂଖ୍ୟା ହେଉଛନ୍ତି ୫୨୩୫ । ଅରଟ ସଂଖ୍ୟା ୧୦୨୪, କଟାଳି ସଂଖ୍ୟା ହେଉଛନ୍ତି ୧୫୫୨, ପୁରା ଖଦୀ - ଧାରୀ ହେଉଛନ୍ତି ୨୧୨୪, ସ୍ୱାବଲମ୍ବୀ ପରିବାର ହେଉଛନ୍ତି ୨୮୬ । ଏମାନେ ସମସ୍ତେ ସ୍ଥାନୀୟ କପାରେ ସୂତା କାଟନ୍ତି । ଅଧିକାଂଶ ନିଜେ କପା ଚାଷ କରନ୍ତି । ବଳକା କପା ଆମଦାନି ବେଳେ ମଜୁରି ଖଟି ସୂତା କାଟିଥାଆନ୍ତି । ଉପରୋକ୍ତ ପରିବାରରେ କଟାଳିମାନେ ୪୬-୪୭ରେ ୧୨୦୦୦ ବର୍ଗ ଗଜ ଖଦୀ ନିଜ ସୂତାରେ ତୟାର କରିଛନ୍ତି । ଏଥି ମଧରୁ ୩୮ ଜଣ ବର୍ତ୍ତମାନ ଲୁଗା ବୁଣୁଛନ୍ତି । ସାତ ଜଣ ଏଣେ ତେଣେ ଚାଲିଯାଇ କାମରେ ଲାଗିଯାଇଛନ୍ତି । ବଳକା ତିନି ଜଣ ସୁବିଧା ପାଇଲେ ବୁଣାକାମ ବର୍ଷା ଋତୁ ପାଇଁ ଆରମ୍ଭ କରିବା ଆଶା ରହିଛି । ମଝି ମଝିରେ ତାଲିମ୍ ପାଇ କୁକେନ୍ଦ୍ରୀରୁ କର୍ମୀ ବାହାରୁଛନ୍ତି । କଂଗ୍ରେସ ସରକାର ପରେ କର୍ମୀ ମହଲରେ ସୁସ୍ଥିଆ ଭାବ ଆସି ଯାଉଥିବା ଅନୁଭବ ହେଉଛି । କେତେକ ସ୍ୱାର୍ଥପର ତେଲୁଗୁମାନେ ତେଲୁଗୁ ଓଡ଼ିଆ ଭେଦ ସୃଷ୍ଟି କରି ଆମ କାମରେ ବାଧା ଦେବାରେ ଲାଗିଛନ୍ତି ତା' ସତ୍ତ୍ୱେ କାମ ଆଶାଜନକ ଭାବେ ହେଉଥିବା ଅନୁଭବ ହେଉଛି ।

୧୯୪୬-୪୭ ପାଇଁ କୁଙ୍ଗେନ୍ଦ୍ରୀ ଖଦୀ ସ୍ୱାବଲମ୍ବନ କେନ୍ଦ୍ରରେ ୮ ଜଣ କର୍ମୀଙ୍କୁନେଇ ନିମ୍ନଲିଖିତ ଗ୍ରାମମାନଙ୍କରେ କାମ ଆରମ୍ଭ ହେଉଛି । କାମ ହେଉଥିବା ଗ୍ରାମ ମଧ୍ୟରୁ ଗୁରୁବୁପାଙ୍ଗୁ ଗ୍ରାମକୁ କେନ୍ଦ୍ରକରି ଶ୍ରୀମତୀ ଚିତ୍ରଭାନୁ ଦେବୀ, ନାରଣଗୁଡ଼ା ଗ୍ରାମକୁ କେନ୍ଦ୍ରକରି ଶ୍ରୀ ଗୋବର୍ଦ୍ଧନ ଗମାଙ୍ଗୋ, ଟିକରପଡ଼ା ଗ୍ରାମକୁ କେନ୍ଦ୍ରକରି ଶ୍ରୀ ସୀତାରାମ ଗମାଙ୍ଗୋ ଓ ତାଙ୍କ ସ୍ତ୍ରୀ ଲକ୍ଷ୍ମୀଦେବୀ, ତୁମ୍ବାକଣା ଗ୍ରାମକୁ ନେଇ ଶ୍ରୀ ରାମଚନ୍ଦ୍ର ଗମାଙ୍ଗୋ ଏବଂ ତାଙ୍କ ସ୍ତ୍ରୀ ସରଳା ଦେବୀ ବିନା ସାହାଯ୍ୟରେ କାମ କରନ୍ତି । ନଳିନୀ ଦେବୀ କୁଙ୍ଗେନ୍ଦ୍ରୀ କେନ୍ଦ୍ରର, ଶ୍ରୀ ନୀଳକଣ୍ଠ ଗମାଙ୍ଗୋ ଏବଂ ଷଢ଼େଇ କର୍ମୀ ଶ୍ରୀ ବିଶା ଗମାଙ୍ଗ କେନ୍ଦ୍ରସ୍ଥ ଗ୍ରାମମାନଙ୍କର ଅରଟ ମରାମତି, ହାତତନ୍ତ ମରାମତି କାମ କରନ୍ତି । ମିଲ୍ ସୂତା ପାଇଁ ଖଦୀ ସୂତାକୁ ବୁଣିବାରେ ମନ ବଳାଉନଥିବାରୁ ଏବଂ କେତେକ ଲୁଗା ବୁଣା ପ୍ରତି ଆକୃଷ୍ଟ ଥିବାରୁ ତନ୍ତି ସୃଷ୍ଟି କରିବା ପାଇଁ ଏବଂ ବୁଣା ତନ୍ତ ତୟାରିରେ ସାହାଯ୍ୟ କରିବା ପାଇଁ ଏପ୍ରେଲ୍ ଠାରୁ ଜୁନ୍ ଯାଏ ଦୁଇ ଜଣ କର୍ମୀଙ୍କୁ ଅସ୍ଥାୟୀ ଭାବେ ନିଯୁକ୍ତ କରାଯାଇଛି । ଗତବର୍ଷ ଯେଉଁ ଯୋଜନା ନେଇ କାମ ଆରମ୍ଭ କରାଯାଇଥିଲା ସେଥିରେ ଆଶା ଜନକ ଭାବେ କାମ କିଛି ହୋଇଛି ବୋଲି ବୋଧ ହେଉଛି । ବର୍ଷରେ ୫ ମାସ କର୍ମୀଙ୍କୁ ତାଲିମ୍ କରିବାରେ ଚାଲିଗଲା । ବଳକା ମାସର କାର୍ଯ୍ୟକୁ ଦେଖିଲେ ଆଶାଜନକ ମନେହେଉଛି । ଏ ଅଞ୍ଚଳରେ ବର୍ତ୍ତମାନ ଲୁଗାବୁଣା ପ୍ରଶ୍ନ ଜଟିଳ ହୋଇପଡ଼ିଥିବାରୁ ସେହି ଦିଗରେ ନୂଆ ତନ୍ତୀ ସୃଷ୍ଟି କରିବାରେ ସମସ୍ତେ ଲାଗିଛୁ । ସେଥିରେ ଆଗେଇଛୁ ମଧ । ବଢ଼େଇକର୍ମୀ ଅନେକ ଅରଟ ସୁଧାରୁଛନ୍ତି । ପ୍ରତ୍ୟେକ କେନ୍ଦ୍ରକୁ ହାତ ତନ୍ତ ତିଆରି କରି ଦୁଇଟା ଲେଖାଏଁ ଯୋଗାଯାଇଛି । କୁଙ୍ଗେନ୍ଦ୍ରୀ ପାଇଁ ଅଧିକା ସମୟ ଦେଇ ବୁଣାତନ୍ତ ତିଆରି କାମ କରୁଛନ୍ତି । ଗତବର୍ଷର ଯୋଜନାରେ ଥିଲା ଏଠାକାର ପୂର୍ବଧରଣ ଅରଟ ବଦଳାଇବା । ବଦଳା ହୋଇ ଆସିଲା ପରେ ଦେଖାଗଲା ପୁଣି ପୂର୍ବବତ୍ କୁଟଣି ଅରଟକୁ କରିନେଉଛନ୍ତି । ସେଥିପାଇଁ ପୂର୍ବବତ୍ ଅରଟକୁ ରଖି କିଛି ଅଳ୍ପ ପରିବର୍ତ୍ତନ ହେବା ଦ୍ୱାରା ପୂର୍ବ ଅପେକ୍ଷା ସୂତାକଟା ଗତି ଅଳ୍ପ କିଛି ବଢ଼ିପାରିଛି । ଅରଟ ଭୀଣା ଇତ୍ୟାଦି ବଦଳ ବେଳେ ମନେ ହେଲା ପୂର୍ବରୀତିକୁ ବଦଳେଇ ଆମେ ଯେଉଁ ନିୟମରେ ପକାଇବାକୁ ଯାଉଛେ ଯଦି ଏହିସବୁ ଉପରକରଣ ଏଠାରେ ଖର୍‌ଦି ପାଇଁ ନମିଳେ ଏବଂ କେନ୍ଦ୍ର ଜରିଆରେ ଯାହା ମିଳୁଛି କେନ୍ଦ୍ର ଯଦି ଉଠଯାଏ ତାହାହେଲେ ପୂର୍ବରୀତି ଛାଡ଼ିଥିବାରୁ ଓ ଆଧୁନିକ ସରଞ୍ଜାମ ନପାଇବାରୁ ସୂତାକଟା କମିଯିବ । ଅନେକ ଅରଟଧାରୀଙ୍କ ଆତୁ ମଧ ଦେଖାଗଲା ଜିନିଷ ପତ୍ର ମହଙ୍ଗା ହୋଇ ଟଙ୍କା ଶସ୍ତା ହେବାରେ ଲାଗିଛି । ଜିନିଷପତ୍ର ଦର ଅପେକ୍ଷା ମିଲ୍ ଲୁଗା ଶସ୍ତାରେ ମିଳୁଛି । ଏହି ମନୋଭାବ

ଯେତେବେଳେ ଦେଖାଦେଉଛି ଅରଟ ବଦଳେଇବାର ଦରକାର ପଡୁଛି । ନୂଆ ଅରଟଧାରୀଙ୍କ ମନରେ ଏକଥା ଉଠୁଛି । ତେଣୁ ନୂଆରେ ଯେଉଁମାନେ ସୂତାକଟା ଧରୁଛନ୍ତି ନୂତନ ଧରଣର ଅରଟ ଧରୁଛନ୍ତି । ପୂର୍ବ ମନୋଭାବର ଲୋକଙ୍କର ଅରଟ ଓ ଭୀଣାରେ ପରିବର୍ତ୍ତନ କରାଇ ସେହି ଭାବେ ତାଙ୍କୁ ଉତ୍ସାହ ଦିଆଯାଉଛି ।

## ପୁନଶ୍ଚ ବରୀ ଆଶ୍ରମ :

ଏକେତ କୁଢେନ୍ଦ୍ରୀର ନୂଆ ଆଶ୍ରମ । ୩ ବର୍ଷ ହେଲା ବାପା (ଗୋପବନ୍ଧୁ ଚୌଧୁରୀ)ଙ୍କ ସହ ଦେଖା ହୋଇନାହିଁ । କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କରିବାକୁ ବିଶ୍ୱନାଥ ବାବୁ ୧୯୪୫ ଅକ୍ଟୋବର ମାସ ପ୍ରଥମ ସପ୍ତାହରେ ବରୀ ଆଶ୍ରମରେ ପହଞ୍ଚିଲେ ।

୧୯୪୫ ଜୁନ୍ ମାସ ଶେଷ ଆଡ଼କୁ ଗୋପବାବୁ କଟକ ଜେଲରୁ ଖଲାସ ହୋଇ ବରୀକୁ ଆସିଲେ । ତାଙ୍କ ପରିବାରର ସମସ୍ତେ ପୁଣି ଏକାଠି ହେଲେ । ୩ ବର୍ଷର ଜେଲ ରହଣି ଭିତରେ ଆଗର ବରୀ ଆଶ୍ରମ, ଯାହାର ନାମ 'ସେବାଘର' ଥିଲା ମାଟିରେ ମିଶିଯାଇଥିଲା । ୧୯୪୨ ଅଗଷ୍ଟ ଆନ୍ଦୋଳନ କାଳରେ କଟକ ଏସ୍.ଡ଼ି.ଓ. ଖାଁ ସାହେବ୍ ମୁସାହେବ୍ ଦଳବଳେ ଆସି 'ବସାଘର'କୁ ଭାଙ୍ଗି ନଷ୍ଟ କରିଦେଇଥିଲେ । ଖାଲି ଡିହ ପଡ଼ିଥାଏ ।

ଗୋପବାବୁ ଜେଲରୁ ଫେରିଲା ପରେ ଆଉ ସେଠି ରହିବା ସମ୍ଭବ ନଥିଲା । ଏଣୁ ସେ ନିଜ ପରିବାର ସହ ବରୀର ଅରଙ୍ଗାବାଦ ଗାଁ କଂଗ୍ରେସ କର୍ମୀ ଗୋବର୍ଦ୍ଧନ ପ୍ରଧାନଙ୍କ ଘର ଆଗରେ ଥିବା ଦେଢ ବଖରା ଘରେ, ନୂଆଘର ତିଆରି ହେଲାଯାଏ ରହିଲେ ଏବଂ ନିଜ ଶ୍ରମରେ ମାଟିଡାଡ଼ି, ଚକଟି ଘର ତିଆରି କଲେ । ପୁଣି ବରୀରେ ଆଶ୍ରମ ଆରମ୍ଭ ହେଲା, ଏମିତି ସମୟରେ ଗୋପବାବୁ କୁଢେନ୍ଦ୍ରୀର ବିଶ୍ୱନାଥ ବାବୁଙ୍କୁ ଚିଠି ଲେଖିଲେ ଯେ ଏଣିକି ସେ ଆଉ ବେଶି ଚିଠି ଲେଖି ପାରିବେ ନାହିଁ । ଦରକାର ନାହିଁକି ପଇସା ବି ନାହିଁ ।

ଚିଠି ପାଇ ବିଶ୍ୱନାଥ ବାବୁ ବରୀ ଯିବା ପାଇଁ ବାହାରିଲେ ।

## ଗୋପବାବୁଙ୍କ ବିଶ୍ୱନାଥଙ୍କୁ ଉପଦେଶ :

ବିଶ୍ୱନାଥ ବାବୁ ବରୀରେ ପହଞ୍ଚିଲା ପରେ ତାଙ୍କର ପରବର୍ତ୍ତୀ କାମ କ'ଣ ହେବ ଓ ସେ କୁଢେନ୍ଦ୍ରୀ ଆଦିବାସୀଙ୍କ ପାଇଁ କ'ଣ ସବୁ କରିପାରିବେ ଏ ସମ୍ବନ୍ଧରେ ଗୋପବାବୁଙ୍କ

ପରାମର୍ଶ ଲୋଡ଼ିଲେ । ଗୋବବାବୁ ତାଙ୍କ କଥା ଶୁଣି କହିଲେ ଯେହେତୁ ଭାରତଛାଡ଼ ଆନ୍ଦୋଳନ ଫଳରେ ସବୁ ବଦଳି ଯାଇଛି ଏଣୁ ରଚନାତ୍ମକ କର୍ମୀମାନେ ପୁଣି ପୂର୍ବପରି କାମ କରିବାକୁ ହେଲେ ସଂଘୀୟ ସାହାଯ୍ୟ ଉପରେ ନିର୍ଭର କରି ହେବ ନାହିଁ । ୧୯୪୨ ରୁ ୧୯୪୫ ଭିତରେ ଯେତେ ପ୍ରକାର ରଚନାତ୍ମକ ସଂଘ ଗଠନ କରାଯାଇଥିଲା ସେ ସବୁ ନଷ୍ଟ ହୋଇଯାଇଛି । ତେଣୁ ଲୋକଙ୍କ ଠାରୁ ସାହାଯ୍ୟ ନେଇ ପୁଣି କର୍ମୀମାନେ ନିଜ ଗୋଡ଼ରେ ଠିଆ ହେବାକୁ ହେବ । ସେ ପୁଣି ଜୋର ଦେଇ କହିଲେ ଯେ ରଚନାତ୍ମକ କର୍ମୀମାନେ ସ୍ଥାନୀୟ ଲୋକଙ୍କ ଚାନ୍ଦା ଉପରେ ନିର୍ଭର କରିବେ । ସ୍ଥାନୀୟ ସମସ୍ୟାକୁ ବୁଝି, ନିଜ ସମ୍ବଳକୁ ଚାହିଁ କାମ କରିବେ ।

ଏହା ହିଁ ଥିଲା ବିଶ୍ୱନାଥବାବୁଙ୍କୁ ଗୋପବାବୁଙ୍କ ପରାମର୍ଶ । ବିଶ୍ୱନାଥ ପଟ୍ଟନାୟକ ମନେ ମନେ ସ୍ଥିର କଲେ ସେ ବାପା (ଗୋପବନ୍ଧୁ ଚୌଧୁରୀ)ଙ୍କ କଥା ମାନି ସେହି ପ୍ରକାରେ କାର୍ଯ୍ୟ କରିବେ । ୧୯୪୫ ଅକ୍ଟୋବର ମାସରେ ଗୋପବାବୁଙ୍କ ପରାମର୍ଶ କ୍ରମେ ଗୋଟିଏ ଗ୍ରାମସେବକ ସମାଜ ଗଠନ ପାଇଁ ପ୍ରସ୍ତାବ ହେଲା । ଏହାର ନିୟମାବଳୀ ତିଆରି କରିବାକୁ ଆଚାର୍ଯ୍ୟ ମହାଶୟ, ଗୋକୁଳାନନ୍ଦ ମହାନ୍ତି ଓ ମନ ମୋହନ ଚୌଧୁରୀ ଦାୟିତ୍ୱ ନେଲେ । ୧୯୪୫ରେ ଜେଲରେ ଥିଲାବେଳେ କର୍ମୀ ଗଢ଼ିବା, କର୍ମୀଙ୍କୁ ବାଟ ବତାଇବା ପାଇଁ ଗୋପବାବୁ ବହିଟିଏ ଲେଖିଥିଲେ । ସେଥିରେ ୩ଟି ବିଭାଗରେ ନିଜର ଅନୁଭୂତି ନେଇ ସେ ବର୍ଣ୍ଣନା କରିଥିଲେ କର୍ମୀମାନେ କିମିତି କାମ ସବୁ କରିବେ । ଏ ବହିରେ ଥିବା ନିର୍ଦ୍ଦେଶ ବିଶ୍ୱନାଥଙ୍କୁ ବହୁତ ପ୍ରେରଣା ଦେଇଥିଲା ।

କୁଜେନ୍ଦ୍ରୀ ଅଞ୍ଚଳରେ କ'ଣ କରାଯାଇ ପାରିବ ସେ ବିଷୟରେ ବିଶଦ ଆଲୋଚନା ହେଲା । ଆଗରୁ ତ ଗୁଣୁପୁର ଅଞ୍ଚଳରେ କପା ଚାଷ, ସୂତାକଟା ଓ ଲୁଗାବୁଣା ହେଉଥିଲା, ସେସବୁ ଆଖପାଖ ଅଞ୍ଚଳରେ ବିକାଶ କରାଇ ଆଦିବାସୀମାନଙ୍କୁ ବହୁ ସଂଖ୍ୟାରେ ଏହି କାମରେ ଲଗାଇ ସେମାନଙ୍କୁ ଶୋଷଣରୁ ମୁକ୍ତ କରିବା ପାଇଁ ସ୍ଥିର କରାଗଲା । ସେତେବେଳକୁ (୧୯୪୫) ଓଡ଼ିଶା ପ୍ରଦେଶ ଗାନ୍ଧୀସେବା ସଂଘର ପରିଚାଳକ ଥିଲେ ଈଶ୍ୱରଲାଲ ବ୍ୟାସ । ସେ କୁଜେନ୍ଦ୍ରୀ ଅଞ୍ଚଳରେ ବ୍ୟାପକ କପାଚାଷ, ସୂତାକଟା ଓ ଲୁଗାବୁଣା ପାଇଁ ମତ ଦେଲେ ଓ କୁଜେନ୍ଦ୍ରୀ ଆଶ୍ରମଘର ତିଆରି ପାଇଁ ସେବାସଂଘ ତରଫରୁ ବାର ଟଙ୍କା ସାହାଯ୍ୟ ଦେଲେ ।

## କପାମଞ୍ଜିକୁ ନେଇ ପ୍ରୟୋଗ :

ବିଶ୍ୱନାଥ ବରୀରୁ ଫେରିଲେ ୧୯୪୫ ଅକ୍ଟୋବର ଶେଷ ଆଡ଼କୁ । ପାରମ୍ପରିକ କପା ମଞ୍ଜିରେ ଯେଉଁ କପା ଉତ୍ପାଦନ ହେଉଥିଲା, ତାହା ସେତେ ସନ୍ତୋଷଜନକ ନଥିଲା । ଏଣୁ ସେ ଦେଶ ବିଦେଶର ବିଭିନ୍ନ ପ୍ରକାରର କପା ମଞ୍ଜି ନେଇ ପ୍ରୟୋଗକ୍ଷେତ୍ର କରି ଚାଷ ଆରମ୍ଭ କଲେ । ରଙ୍ଗକପା ଓ କାମ୍ବୋଡ଼ିଆ କପା ଇତ୍ୟାଦି ଚାଷ କରାଗଲା । ଲୋକଙ୍କୁ ସୂତାକାଟିବା ପାଇଁ ନୂଆ ଅରଟ ଦିଆଗଲା । ଲୋକେ ତାଙ୍କୁ ଏକାମରେ ସହଯୋଗ କଲେ । କୁଜେନ୍ଦ୍ରୀ ଓ ଆଖପାଖ ଅଞ୍ଚଳରେ ଏମିତି କୌଣସି ଗାଁ ରହିଲା ନାହିଁ ଯେଉଁଠିକି ଲୋକେ କପାଚାଷ ନକରି ରହିଲେ । ସମସ୍ତଙ୍କ ବାଡ଼ିରେ କପାଚାଷ, ସମସ୍ତଙ୍କ ଘରେ ଅରଟ । ସବୁ ଘରେ ଖାଲି ସମୟରେ ସ୍ତ୍ରୀ ଲୋକମାନେ ଶିଖି ସୂତାକାଟିବେ । ବିଶ୍ୱନାଥ ସେମାନଙ୍କୁ ତାଲିମ ଦେଲେ କପାଚାଷ ଓ ସୂତାକାଟିବା ବିଷୟରେ ।

କେତେମାସ ପରେ ଓଡ଼ିଶା ଗାନ୍ଧୀ ସେବାସଂଘ, ପୁଣି ଥରେ ଆର୍ଥିକ ସହଯୋଗ ଦେବା ଆରମ୍ଭ କଲେ । ଗାନ୍ଧୀ ସେବାସଂଘ ସହାୟତାରେ ପାରଳାଖେମୁଣ୍ଡି ପାଖ ପାତପାଟଣାରୁ କୁଜେନ୍ଦ୍ରୀ ଆଶ୍ରମକୁ ୬ଟି ଠକ-ଠକି ତନ୍ତ ଅଣାଗଲା ଲୋକଙ୍କୁ ଏହି ତନ୍ତରେ ଲୁଗାବୁଣିବା ପାଇଁ ତାଲିମ ଦେବାକୁ । ଆଗରୁ ଯେଉଁମାନେ ୨୭ ଇଞ୍ଚିଆ ତନ୍ତରେ କାମ ଶିଖିଥିଲେ, ପ୍ରଥମ ଦଫାରେ ସେହି ବୟସ୍କମାନଙ୍କୁ ବିଶ୍ୱନାଥ ତାଲିମ ଦେଲେ ।

## କୁଜେନ୍ଦ୍ରୀ ଆଶ୍ରମର ଗୁରୁ ଓ ଶିଷ୍ୟ :

ଯେଉଁମାନେ ତନ୍ତ ଚଳାଇବା ଶିଖିବାକୁ ଆସୁଥିଲେ, ବିଶ୍ୱନାଥ ନିଜେ ସେମାନଙ୍କୁ ବହୁ ଆଗ୍ରହରେ ଶିଖାଉଥିଲେ । କୁଜେନ୍ଦ୍ରୀ ଆଖ ପାଖ ଗାଁରୁ ଆସନ୍ତି ୧୨ ରୁ ୨୦ ବର୍ଷର କିଶୋରମାନେ । ଗାନ୍ଧୀକାମ କରିବା ପାଇଁ ତାଙ୍କ ଆଗ୍ରହର ସୀମା ନଥାଏ । ବିଶ୍ୱନାଥ ଜାଣିଥିଲେ ଏମାନେ ଦେଶର ଭବିଷ୍ୟତ । ଦେଶ ଗଢ଼ାହେବ ଯା'ଙ୍କ ହାତରେ । ପିଲାମାନେ ସୂତାକଟା, ଲୁଗାବୁଣା ଶିଖନ୍ତୁ । ସେଥିଲେ ଜଣେ ଆଦର୍ଶ ଗୁରୁ । ପ୍ରେରଣା ଆଉ ଉପଦେଶ ଯେଉଁ କାମ କରିପାରେ, ଆଦେଶ ସେଇକାମ କରିପାରେ ନାହିଁ । ନୂଆ ଚରଖାରେ କେମିତି ସୂତାକଟା ହେଉଛି ଦେଖନ୍ତି । ନିଜେ କାଟିବାକୁ ଆଗ୍ରହ ଦେଖାନ୍ତି । କିଛିଦିନ ଗଡ଼ିଯାଏ ନୂଆତନ୍ତ ଚଳାଇବାକୁ ମନ କରନ୍ତି । ତନ୍ତଶାଳକୁ ପିଲାଏ ଗଲେ, ଖୁସିରେ ସେ ପିଲାଙ୍କୁ କହନ୍ତି, ''କିରେ, ମାକୁ ଚଳାଇବାକୁ ଇଚ୍ଛା ହେଉଛି କି ? ଯାଆ ଯାଆ, ପିଲାଟିର ଯଦି

ମନ ହେଉଛି, ମାକୁ ମାର ।'' ପିଲାଟି ଯାଇ କଣ୍ଠା ଚଳାଏ । ବିଶ୍ୱନାଥ ଗୁରୁ, ମନକଥାକୁ ଜାଣିବାରେ ବିଳମ୍ବ ହୁଏ ନାହିଁ । ଖେଳରେ ପାଠ ଶିଖା, କାମ ଶିଖା ହୁଏ । ସେ ଧରି ନେଇଥାଆନ୍ତି ପିଲାମାନେ ପଛେ ସୂତା ଛିଣ୍ଡାନ୍ତୁ, ତନ୍ତ ଖରାପ ହୋଇଯାଉ, ପିଲାମାନେ ଖେଳୁ ଖେଳୁ ଶିଖନ୍ତୁ ।

ଇଏତ ଆଉ ଆଜିକାଲିର ଆଶ୍ରମ ନୁହେଁ ଯେ ସରକାରୀ ଅନୁଦାନରେ ଚାଲିବ । ପିଲାଏ ସକାଳୁ ଘରୁ ପେଜପାଣି ଖାଇ ଆସନ୍ତି, ସଞ୍ଜବେଳକୁ ଘରକୁ ଯାଆନ୍ତି । ଜମିବାଡ଼ିଥିବା ଆଦିବାସୀ ଓ କେତେକ ଆଗ୍ରହୀ ଅଣ-ଆଦିବାସୀ ଚାନ୍ଦା ଦିଅନ୍ତି ଆଶ୍ରମକୁ । ଟଙ୍କା ପଇସା ଆକାରରେ ଚାନ୍ଦାମିଳେ ନାହିଁ । କିଏ ଦିଏ ଧାନ ତ କିଏ ଚାଉଳ, କିଏ ଜନା, ସୁଆଁ, ମକା । ତାକୁ ଶିଝାଇ, ରାନ୍ଧି ବିଶ୍ୱନାଥ ଓ ଛାତ୍ରମାନେ ଖରାବେଳେ ଖାଆନ୍ତି ।

## କୁଜେନ୍ଦ୍ରୀ ଲୋକଙ୍କ ସିଦ୍ଧାନ୍ତ :

ବିଶ୍ୱନାଥଙ୍କ କର୍ମ ଅହରହ । ସତେ ଯେମିତି ମହୁମାଛି । ବଡ଼ିଭୋରରୁ ସଞ୍ଜଯାଏ ନିରବଚ୍ଛିନ୍ନ କାମ । ହାଲିଆ ଲାଗୁଚି ବୋଲି ବେଳ ଅବେଳରେ ଟିକିଏ ଶୋଇ ପଡ଼ିବା ହୁଏ ନାହିଁ କେବେ । ଦିନେ କଥା ପଡୁ ପଡୁ କଣ୍ଟ୍ରୋଲରେ ମିଳୁଥିବା ମିଲ ଲୁଗା କଥା ପଡ଼ିଲା । ଏ ଲୁଗା ବଡ଼ ବଡ଼ ଗାଁ ଓ ସହରରେ ମିଳୁଥିଲା । ଗାଁ'ର ବଡ଼ ବୁଢ଼ାମାନେ ସ୍ୱତଃ ସ୍ଫୁର୍ତ୍ତଭାବେ ନିଷ୍ପତ୍ତି ନେଲେ, କଣ୍ଟ୍ରୋଲ ଲୁଗା ମିଲ ଲୁଗା ହୋଇଥିବାରୁ ସେମାନେ ମିଲ୍ ଲୁଗା ପିନ୍ଧିବେ ନାହିଁ । ନିଜେ ଲୁଗା ବୁଣିବେ, ପିନ୍ଧିବେ । ଯେଉଁମାନେ ଲୁଗାବୁଣା ଶିଖିଲେ ନିଜ ଗାଆଁରେ ଲୁଗା ବୁଣିଲେ ।

ଏମିତି ବିଶ୍ୱନାଥ ନିଜ ଚେଷ୍ଟା ଓ ଗାନ୍ଧୀ ସେବାସଂଘ ତଥା ସ୍ଥାନୀୟ ଲୋକଙ୍କ ସାହାଯ୍ୟ ସହଯୋଗରେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସେବାକାମ ଜାରି ରଖିଲେ । ୧୯୪୮ ବେଳକୁ କୁଜେନ୍ଦ୍ରୀ ଆଖ ପାଖର ୩୦/୩୫ଟି ଗାଁର ଲୋକେ ୩୦୦୦ ଅରଟରେ ସୂତାକାଟି ସ୍ୱାବଲମ୍ବୀ ହେବା ବିଶ୍ୱନାଥଙ୍କ କ୍ଲାନ୍ତିହୀନ କର୍ମ ପ୍ରେରଣାର ଫଳ ନୁହେଁତ ଆଉ କ'ଣ ?

❋ ❋ ❋

- ବାର -

# ଭାରତ ସ୍ୱାଧୀନ ହେଲା

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜାପାନ ଆତ୍ମ ସମର୍ପଣ କଲା ୧୯୪୫ ମସିହା ଅଗଷ୍ଟ ୧୫ ତାରିଖରେ ମିତ୍ରପକ୍ଷ ଜିଣିଲେ । ବିଲାତର ପ୍ରଧାନମନ୍ତ୍ରୀ ହେଲେ ମିଷ୍ଟର କ୍ଲେମେଣ୍ଟ ଅଟଲି । ଭାରତକୁ ସ୍ୱାଧୀନତା ଦବା ଆଗରୁ ବିଲାତର ନୂଆ ଶାସକ ଦଳ ୧୯୪୫ ଅଗଷ୍ଟ ୨୧ରେ ଘୋଷଣା କଲେ ଭାରତର କେନ୍ଦ୍ର ଆସେମ୍ବଲି ଓ ପ୍ରଦେଶ ଗୁଡ଼ିକର ବ୍ୟବସ୍ଥାପକ ସଭାଗୁଡ଼ିକ ପାଇଁ ନିର୍ବାଚନ ହେବ ଶୀତଋତୁରେ ।

କେନ୍ଦ୍ର ଆସେମ୍ବଲିକୁ ନିର୍ବାଚିତ ହେଲେ କଂଗ୍ରେସ ପ୍ରାର୍ଥୀ ଶ୍ରୀ ଭାଗିରଥୀ ମହାପାତ୍ର ଓ ଶ୍ରୀ ଜଗନ୍ନାଥ ଦାସ - ଓଡ଼ିଶା ବ୍ୟବସ୍ଥାପକ ସଭା ପାଇଁ ମାର୍ଚ୍ଚ ମାସ ୧୯୪୬ରେ ନିର୍ବାଚନ ହେଲା । ଚାରିଆଡ଼େ ନିର୍ବାଚନର ଧୂମ୍‌ଧାମ ପ୍ରଚାର । ଏତେଦିନେ କ୍ଷମତା ରାଜନୀତିକୁ ଆସିବାର ସୁଯୋଗ ମିଳିଛି, ସ୍ୱାଧୀନତା ପାଇଁ ଲଢ଼େଇ କରିଥିବା କଂଗ୍ରେସ କର୍ମୀଙ୍କର ଲୋକଙ୍କ ମନରେ କେତେ ନା କେତେ ଆଶା, ଉନ୍ମାଦନା । ଓଡ଼ିଶାରୁ ଗୋପବନ୍ଧୁ ଚୌଧୁରୀ କ୍ଷମତା ରାଜନୀତିରେ ପଶିବାକୁ ଭଲ ମନେକଲେ ନାହିଁ । ସେ ଏହି ରାଜନୀତିରୁ ଦୂରେଇ ରହି ରଚନାତ୍ମକ କର୍ମୀଭାବରେ ଗାନ୍ଧୀଙ୍କ ଆଦର୍ଶକୁ ରୂପାୟିତ କରିବା ପାଇଁ ସ୍ଥିର କଲେ ।

ସେତେବେଳକୁ କଂଗ୍ରେସ ପ୍ରତି ଲୋକଙ୍କ ଅଖଣ୍ଡ ବିଶ୍ୱାସ । ଓଡ଼ିଶାର ୬୦ଟି ଆସନରୁ କଂଗ୍ରେସ ଦଳ ୩୭ଟି ଆସନରେ ଜିଣିଲେ । ହରେକୃଷ୍ଣ ମହତାବ କଂଗ୍ରେସ ଦଳର ନେତା ଭାବେ ନିର୍ବାଚିତ ହୋଇ ୧୯୪୬ ମସିହା ଏପ୍ରିଲ୍ ମାସ ୨୩ ତାରିଖ ଦିନ ପ୍ରଧାନମନ୍ତ୍ରୀ ଭାବେ ଶପଥ ନେଲେ । ଯା'ଙ୍କ ମନ୍ତ୍ରୀମଣ୍ଡଳରେ ଚାରିଜଣ ମନ୍ତ୍ରୀ ରହିଲେ, ସେମାନେ ହେଲେ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର । କୋରାପୁଟ ଜିଲ୍ଲାରୁ ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ ଓ ରାଧାମୋହନ ସାହୁ ଜିଣିଲେ ।

ଏ ଭିତରେ ସାରାଦେଶରେ ବହୁ କଥା ଘଟିଲା । କଂଗ୍ରେସ ସରକାର ଗଢ଼ିଲା ସତ, ମୁସଲିମ୍ ଲିଗ୍‌ର ଦାବି, ହିଂସା ଓ ରକ୍ତପାତ ସାରା ଭାରତର ପରିବେଶକୁ ଅଶାନ୍ତ କରିଦେଲା । ମୁସଲିମ ଲିଗ୍ ଅଲଗା ରାଷ୍ଟ୍ର ଦାବିକଲା । ''ଲଢ଼କେ ଲେଙ୍ଗେ ପାକିସ୍ଥାନ''

ଧ୍ୱନିରେ ଭାରତର ଗଳିକନ୍ଦିରେ ହାଣକାଟ ଆରମ୍ଭ ହୋଇଗଲା, ଅଗଷ୍ଟ ୧୬ ତାରିଖ ୧୯୪୬ ମସିହା ଦିନ । କଲିକତା, ବମ୍ବେ, ଅହମଦାବାଦ, ନୋଆଖୋଲି, ବିହାର, ୟୁ.ପି., ଉତ୍ତର ପଶ୍ଚିମ ସୀମାନ୍ତ, ପଞ୍ଜାବ, ଲାହୋର, ମୁଲତାନ୍, ଅମୃତସର, ଦିଲ୍ଲୀ, ସବୁଠାରେ ସାମ୍ପ୍ରଦାୟିକ ଦଙ୍ଗା । ବହୁଲୋକ ହତାହତ ହେଲେ । ଭାରତର ବଡ଼ଲାଟ ମାଉଣ୍ଟବାଟେନ ଏଥିପାଇଁ ଭାରତର ନେତାମାନଙ୍କୁ ଦାୟୀକରି ଚୁପ ରହିଥାନ୍ତି ।

ଅବସ୍ଥା ଅସମ୍ଭାଳ ହେବାରୁ କଂଗ୍ରେସ ବାଧ ହେଲା ଭାରତ ଭାଗ ଭାଗ ହେବା ପ୍ରସ୍ତାବରେ । ଜୁନ୍ ୧୪ ତାରିଖ ୧୯୪୭ରେ କଂଗ୍ରେସ କାର୍ଯ୍ୟକାରୀ କମିଟୀ ଭାରତ ବିଭାଜନ ପ୍ରସ୍ତାବକୁ ଗ୍ରହଣ କରିନେଲା ଏବଂ ଅଗଷ୍ଟ ୧୫ ତାରିଖ ୧୯୪୭ ମସିହା ଦିନ ଭାରତକୁ କ୍ଷମତା ହସ୍ତାନ୍ତର କରାଯିବାର ଘୋଷଣା ବିଲାତରେ ହେଲା ଏବଂ କ୍ଷମତା ହସ୍ତାନ୍ତର ପାଇଁ ପଦକ୍ଷେପମାନ ଗ୍ରହଣ କରାଗଲା । ଇଂରେଜ ସରକାର ନିଜ ଷଡ଼ଯନ୍ତ୍ରରେ ସଫଳ ହେଲା । ଭାରତ ହିନ୍ଦୁବହୁଳ ଭାରତ ଓ ମୁସଲିମ ବହୁଳ ପାକିସ୍ଥାନ ନାମରେ ଦୁଇଭାଗରେ ବିଭକ୍ତ ହେଲା ।

## ଭାରତ ସ୍ୱାଧୀନ ହେଲା :

ସାଂପ୍ରଦାୟିକତାବାଦର ଘୋଷଣା ମଧ୍ୟରେ, ନିଷ୍ଠୁରତା, ହିଂସା ଓ ରକ୍ତପାତ ଭିତରେ ୧୪ ଅଗଷ୍ଟ ୧୯୪୭ ମସିହା ରାତି ୧୨ଟାରେ ଭାରତକୁ ସ୍ୱାଧୀନତା ମିଳିଲା । ସାରା ଦେଶରେ ଆନନ୍ଦ ଉଲ୍ଲାସ ଖେଳିଗଲା । ଆଲୁଅର ରୋଶଣି ଓ ବାଣଫୁଟାର କାନଫଟା ଶବ୍ଦରେ ବିଖଣ୍ଡିତ ଭାରତର ସ୍ୱାଧୀନତା ଆମେ ପାଇଲୁ । ଚାରିଆଡ଼େ ଆନନ୍ଦ ଉତ୍ସବ ଲାଗିଗଲା । ୧୫-୮-୧୯୪୭ ଦିନ ଭାରତ ସ୍ୱାଧୀନ ହେଲା ।

ବିଶ୍ୱନାଥ ନିଜ ଆଶ୍ରମରେ କୁଢେନ୍ଦ୍ରୀ ଲୋକଙ୍କ ଗହଣରେ ଏ ଉତ୍ସବ ପାଳନ କଲେ । ଏଲଗ୍ନ ଆନନ୍ଦରେ ଆତ୍ମହରା ହେବାର କିମ୍ବା ଖୁସିରେ ହଜିଯିବାର ଲଗ୍ନ ନଥିଲା ତାଙ୍କ ପାଇଁ, ଏ ଲଗ୍ନ ଥିଲା ଦେଶବାସୀଙ୍କ ଉନ୍ନତି ପାଇଁ, ଦଳିତ ନିଷ୍ପେଷିତର ଶୋଷଣ-ମୁକ୍ତି ପାଇଁ ଅଥକ ପରିଶ୍ରମ କରିବାର ଲଗ୍ନ, ଏକ ବାସ୍ତବତା ଅଭିମୁଖୀ କାର୍ଯ୍ୟ ଯୋଜନାର ଲଗ୍ନ । କୁଢେନ୍ଦ୍ରୀରେ ସଭା ହେଲା । ସର୍ବଧର୍ମ ପ୍ରାର୍ଥନା ବୋଲାହେଲା । ସୂତାକଟା ହେଲା ସବୁଦିନ ପରି । ଖାଲି ଫରକ୍ ଏତିକି ଆଉ ପତାକା ନ ଉଠାଇବା ପାଇଁ ବାରଣ କରିବା ମାଧ୍ୟମଟି ରହିଲା ନାହିଁ ।

## କଂଗ୍ରେସ ଦଳରେ ଦୁଇ ଶ୍ରେଣୀର ଲୋକ ଦେଖାଗଲେ :

ଦେଶ ସ୍ୱାଧୀନ ହେବା ଆଗରୁ କଂଗ୍ରେସ ଦଳର ଏକମାତ୍ର ଧ୍ୟେୟ ଥିଲା ଦେଶର ସ୍ୱାଧୀନତା ପାଇଁ ଲଢ଼େଇ କରିବା । ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ବ୍ୟକ୍ତିଗତ ସତ୍ୟାଗ୍ରହ କରି ଲକ୍ଷ ଲକ୍ଷ ସଂଗ୍ରାମୀ ଦେଶୀୟ ଶାସନ ଓ ବୈଦେଶିକ ଶାସନର ଅତ୍ୟାଚାର ସହିଲେ । ଜେଲଗଲେ, ଲାଠିମାଡ଼ ଖାଇଲେ, କେତେ ମଲେ, କେତେ ସହିଦ ହେଲେ । ଯେଉଁମାନେ ରଚନାତ୍ମକ କର୍ମୀ ଭାବେ ସମାଜ ସେବାରେ ଲାଗିଲେ, ଦଳିତ ମଣିଷର ଉତ୍‌ଥାନ ପାଇଁ ସାରା ଜୀବନ ସମର୍ପି ଦେଲେ, ଜେଲ ଗଲେ, ଦଣ୍ଡ ଭୋଗିଲେ, ସେମାନଙ୍କ ଲକ୍ଷ୍ୟ ଓ ଆଦର୍ଶ ମଣିଷ କୈନ୍ଦ୍ରିକ ଥିଲା ତ ଆଉ କେତେକ ନିର୍ବାଚନରେ ଭାଗନେଇ କ୍ଷମତାର ବାଗଡ଼ୋରଟାକୁ ହାତରେ ଧରି ଲୋକଙ୍କର ସେବା କରିବେ ବୋଲି ସ୍ଥିରକଲେ ।

କଂଗ୍ରେସ ଏକ ବିଚିତ୍ର ଲୋକ ଚରିତ୍ର ସୃଷ୍ଟିକଲା । ସ୍ୱାଧୀନତା ପରେ ଦଳେ ନିଷ୍ପାପର ଭାବେ ଲୋକଙ୍କ ସମସ୍ୟା ସମାଧାନ କରିବା, ସ୍ୱାବଲମ୍ବୀ ହେବା, ସବୁକ୍ଷେତ୍ରରେ ସରକାରୀ ସାହାଯ୍ୟ ଉପରେ ନିର୍ଭର ନକରି ସେବା କରିଯିବାର ମନୋଭାବ ନେଇ କ୍ଷମତା ଅଳିନ୍ଦରୁ ଦୂରରେ ରହିବା ଶ୍ରେୟ ମଣିଲେ । ଆଉ ଦଳେ ସଂଗ୍ରାମୀ, ସଂଗ୍ରାମ କାଳର ତ୍ୟାଗ, ଦଣ୍ଡ, କଷ୍ଟ, ଯାତନାର ବଦଳରେ ସ୍ୱାଧୀନତା ପର ଜୀବନରେ ରାଜନୀତିର ନାମ ନେଇ କ୍ଷମତା ଗାଦିରେ ବସି ସବୁ ପ୍ରକାର ସୁଖ ଭୋଗ କରି, ଧନ ଜନ ଗୋପଲକ୍ଷ୍ମୀଙ୍କ ମହିମାରେ ମଣ୍ଡି ହୋଇ ଅନ୍ୟ ଏକ ପ୍ରକାର ଲୋକ ସେବା ସହ ନିଜ ସେବା କରିବାର କଳାଟିକୁ ଆୟତ୍ତ କରିବା ଶିଖିଲେ । ଏମାନେ ହେଲେ ଏ ଦେଶର କରିତ୍ କର୍ମା, ଜନ ଗଣ ମନ ଅଧିନାୟକ, ଭାରତର ଭାଗ୍ୟ ବିଧାତା; ଆଉ ରଚନାତ୍ମକ କର୍ମୀ ହେଲେ ଧୀରେ ଧୀରେ ଆତ୍ମ-ପ୍ରତ୍ୟୟ ହରାଉଥିବା, ଗାନ୍ଧୀବାଦରେ ବିଶ୍ୱାସୀ, ଅବହେଳିତ ଗୋଷ୍ଠୀ । ଏମାନଙ୍କ ସେବା ଓ ତ୍ୟାଗର ଫଳଶ୍ରୁତି ଯେ କେତେ ଆଶା ଓ ଆଶ୍ୱାସନା ଆଣିଦେଇଥିଲା ନିଷ୍ପେଷିତଙ୍କ ମନରେ, ଜୀବନରେ ! ତାହାର ଗୋଟିଏ ଉଜ୍ଜଳ ପ୍ରତୀକ ହେଲେ ବିଶ୍ୱନାଥ ପଟ୍ଟନାୟକ ।

ସ୍ୱାଧୀନତା ପ୍ରାପ୍ତି ଯାଙ୍କ ପାଇଁ ହୋଇଥିଲା ଏକ ସାଧନା ଓ ପରୀକ୍ଷାର ଘଡ଼ି । ପ୍ରଦେଶ ସ୍ତରରେ ଗୋପବାବୁ, ରମାଦେବୀ, ଆଚାର୍ଯେ ଯେଉଁ ସମାଜର ସେବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ମାନ ଚଳାଉଥିଲେ ବିଶ୍ୱନାଥ କୁଜେନ୍ଦ୍ରୀ ଅଞ୍ଚଳର ଆଦିବାସୀମାନଙ୍କ ମଧ୍ୟରେ ସ୍ୱାଧୀନତାର ମୂଲ୍ୟ ବୁଝାଇବା ସହିତ ସେମାନଙ୍କ ସାମାଜିକ ଉତ୍‌ଥାନ ପାଇଁ ମନୋନିବେଶ କଲେ । ଗୋପବନ୍ଧୁ ଥିଲେ ତାଙ୍କ ପ୍ରେରଣା, ଦିଗଦର୍ଶକ, ଉପଦେଷ୍ଟା ଓ ପିତୃପ୍ରତିମ ମଣିଷ ।

ଇଂରେଜ ଶାସନ ହଟିଗଲା । ଆମ ଦେଶ ଆମର ହେଲା । ଜାତୀୟ ସରକାର କଂଗ୍ରେସର ନୀତି ଅନୁସାରେ ତନ୍ତ ଓ ଅରଟର ପ୍ରଚାର ପାଇଁ ରିହାତି ଦେଲେ । ଏହା ଫଳରେ ଗୁଣୁପୁରର ଲୋକେ ରିହାତି ଦରରେ ତନ୍ତ ଓ ଅରଟ କିଣି ସୂତାକାଟିଲେ ଓ ଲୁଗା ବୁଣିଲେ । ୧୯୪୮ ମସିହା ବେଳକୁ, ସ୍ୱାଧୀନତା ପାଇବାର ବର୍ଷେ ଭିତରେ କୁଜେନ୍ଦ୍ରୀ ପାଖର ଉକୁମ୍ବାଗୁଡ଼ା, ମଝିଗୁଡ଼ା, ଢ଼େପଗୁଡ଼ା ଠାରୁ ଆମ୍ଭ କରି ରୁଗୁଡ଼୍‌ବାଇ, ତୁମ୍ବାକଣା, ଗଙ୍ଗୁପାଡୁ ପ୍ରଭୃତି ପ୍ରାୟ ୪୦ ଖଣ୍ଡ ଗାଁର ଲୋକେ ୩୦୦୦ ଚରଖା ଚଳାଇଲେ । ଉଭୟ ଆଦିବାସୀ ଓ ଅଣ ଆଦିବାସୀ ସୂତାକାଟିଲେ ।

ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ଭିତରେ ବିଶ୍ୱନାଥ ତାଙ୍କ କାର୍ଯ୍ୟକୁ କାହିଁକି ସୀମିତ ରଖିଲେ ବୋଲି ପଚାରିଲେ ସେ ଏମିତି ଏକ ଯୁକ୍ତିଯୁକ୍ତ ଉତ୍ତର ଦେଇଥାନ୍ତି- ''କମ୍ ସଂଖ୍ୟକ ଲୋକଙ୍କ ମନରେ ସ୍ଥାୟୀ ପ୍ରଭାବ ପକାଇ ତାଙ୍କର ବିକାଶ କରିବା ଭଲ । ବହୁଲୋକଙ୍କ ମଧ୍ୟରେ କାର୍ଯ୍ୟକରି ସମସ୍ତଙ୍କୁ ପ୍ରଭାବିତ କରିବା କଷ୍ଟ ସାଧ୍ୟ । ଆବଶ୍ୟକୀୟ ମାନସିକ ପରିବର୍ତ୍ତନ କରି ନପାରିଲେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ହେବ ନାହିଁ । ତେଣୁ ସୀମିତ ଲୋକ ହୁଅନ୍ତୁ ପଛକେ, ସେମାନଙ୍କ ପଛରେ ଦୀର୍ଘଦିନ ଲାଗିଲେ, କେତେକ ସମସ୍ୟା ନିଶ୍ଚିତ ଭାବେ ସମାଧାନ ହେବ ।''

ତାଙ୍କ କାର୍ଯ୍ୟ ପ୍ରଣାଳୀର ସଫଳ ପ୍ରୟୋଗ ଫଳରେ ପ୍ରାୟ ଦୁଇ ହଜାର ପରିବାର ଏହି ସୂତାକଟା ଓ ଲୁଗାବୁଣା କାର୍ଯ୍ୟକୁ ଗ୍ରହଣ କରିନେଇଥିଲେ ।

## ମହାତ୍ମାଜୀଙ୍କ ମହାପ୍ରୟାଣ :

ହଠାତ୍ ଖବର ପ୍ରଚାରିତ ହେଲା ଗାନ୍ଧିଜୀ ଆଉ ଇହ ଜଗତରେ ନାହାନ୍ତି । ଜଣେ ହିନ୍ଦୁଯୁବକ ନାଥୁରାମ ଗଡ୍‌ସେ ତାଙ୍କୁ ଜାନୁଆରୀ ୩୦ ତାରିଖ ୧୯୪୮ ମସିହା ଉପରଓଳି ୫ଟା ୧୭ ମିନିଟ୍‌ରେ ଦିଲ୍ଲୀରେ ବିରଳା ଭବନରେ ଗୁଳିକରି ହତ୍ୟା କରିଛି । ସାରା ପୃଥିବୀ ସ୍ତବ୍ଧ ହୋଇଗଲା ଏହା ଶୁଣି । ଶୋକରେ ବୁଡ଼ିଗଲା ଭାରତ । ଯେଉଁ ଗାନ୍ଧୀ ମଣିଷ ପ୍ରତି ରଖିଥିଲେ ଅଖଣ୍ଡ ବିଶ୍ୱାସ, ଜାତି ଧର୍ମ, ସଂପ୍ରଦାୟ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ, ଭାରତ ସ୍ୱାଧୀନ ହେବାର ୧୬୯ ଦିନ ପରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମହାତ୍ମାଙ୍କ ମହା ପ୍ରୟାଣ ପରେ ରଚନାତ୍ମକ କଂଗ୍ରେସକର୍ମୀ ନିଜର ଦିଗଦର୍ଶକ, ପଥପ୍ରଦର୍ଶକ, ଆଦର୍ଶକୁ ହରାଇ ମ୍ରିୟମାଣ ହୋଇପଡ଼ିଲେ । କେତେଦିନ ଯାଏ ଏକ ପ୍ରକାର

ଘାଣ୍ଟୁଦ୍ୱ ସାରା ଦେଶକୁ ଗ୍ରାସ କରିଗଲା । ଯେଉଁ ଆଲୋକ ଦୀର୍ଘ ୮୦ ବର୍ଷଧରି ଏ ଦେଶର ଆତ୍ମାକୁ ଆଲୋକିତ କରି ରଖିଥିଲା, ତାହା ହଠାତ୍ ଲିଭିଗଲା ।

ଗାନ୍ଧୀବାଦୀମାନେ ଭାବିଲେ ଏଥର କ'ଣ କରାଯିବ, କେମିତି ଗୋଟାଏ ଶୂନ୍ୟଭାବ ମନ ଭିତରେ ଖେଳିଗଲା ସେମାନଙ୍କର । ବିଶ୍ୱନାଥ ମଧ ଏହି ପ୍ରଭାବରୁ ମୁକ୍ତ ନଥିଲେ । ସମୟ ସମସ୍ତ କ୍ଷତକୁ ଶୁଖାଇ ଦିଏ । ଗାନ୍ଧୀ ଇତିହାସ ପୁରୁଷ ହୋଇଗଲେ । ହୋଇଗଲେ ଅମର । ଦଳେ ବିଶୁଦ୍ଧ ଗାନ୍ଧୀବାଦୀ ପୁଣି ରଚନାତ୍ମ କର୍ମ କରି ଗାନ୍ଧିଜୀଙ୍କ ଅପୂର୍ଣ୍ଣ କର୍ମକୁ ପୂରା କରିବାର ଶପଥ ନେଲେ । ଦଳେ କ୍ଷମତାକୁ ସବୁକିଛି ମନେକରୁଥିବା କଂଗ୍ରେସ କର୍ମୀ ଗାନ୍ଧୀ ଓ ଖଦଡ଼କୁ ପେଟେଣ୍ଟ କରି ନିଜର ସ୍ୱାର୍ଥ ପୂରଣ ପାଇଁ ବାଟମାନ ତିଆରି କରିବାର ଉପାୟ ଖଞ୍ଜିଲେ । ବିଶୁଦ୍ଧ ଗାନ୍ଧୀବାଦୀଙ୍କ ସଂଖ୍ୟା ଆଙ୍ଗୁଠି ଟିପରେ ଗଣିଲା ଭଳି ହେଲା ବେଳକୁ, ଅନ୍ୟ ପ୍ରକାର କଂଗ୍ରେସ କର୍ମୀ ହେଲେ ଅସୁମାରି । ଗାନ୍ଧୀ ଏମାନଙ୍କ ପାଇଁ ହେଲେ ଏକ ବିକ୍ରୀ ଯୋଗ୍ୟ ଟ୍ରେଡ଼ମାର୍କ, ବଡ଼ ଲୋକ ହେବାର ସିଡ଼ିର ପ୍ରଥମ ପାଦ ।

## ସର୍ବୋଦୟ ସମାଜର ଗଠନ :

ଗାନ୍ଧିଜୀଙ୍କ ତିରୋଧାନ ପରେ ଗାନ୍ଧୀ ସେବାସଂଘର ଡାକରାରେ ଭାରତର ସମସ୍ତ ଅଂଚଳରେ ଥିବା ରଚନାତ୍ମକ କର୍ମୀମାନଙ୍କର ଏବଂ ଶାସନ ଦାୟିତ୍ୱରେ ଥିବା ନେତୃବୃନ୍ଦଙ୍କର ଏକ ସମ୍ମିଳନୀ ବିନୋବାଜୀଙ୍କର ଉପସ୍ଥିତିରେ ସେବାଗ୍ରାମରେ ହୋଇଥିଲା । ଏହି ସମ୍ମିଳନୀ ୧୯୪୮ ମସିହା ମାର୍ଚ୍ଚ ୧୩ ତାରିଖରୁ ଆରମ୍ଭ ହୋଇ ୧୫ ତାରିଖ ଯାଏ ଚାଲିଲା । ଭାରତର ବିଶିଷ୍ଟ ଗାନ୍ଧୀବାଦୀ ନେତା ପଣ୍ଡିତ ନେହେରୁ, ଡଃ. ରାଜେନ୍ଦ୍ର ପ୍ରସାଦ, ଶ୍ରୀ ଜୟ ପ୍ରକାଶ ନାରାୟଣ, ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀ ଯୋଗଦେଲେ ।

ଓଡ଼ିଶାରୁ ଗୋପବାବୁ, ମା' ରମାଦେବୀ, ଈଶ୍ୱରଲାଲ୍ ବ୍ୟାସ, ହରେକୃଷ୍ଣ ମହତାବ, ବିଶ୍ୱନାଥ ପଟ୍ଟନାୟକ, ଅଲେଖ ପାତ୍ର ପ୍ରମୁଖ ଯୋଗ ଦେଇଥିଲେ ।

ଏହି ସମ୍ମିଳନୀରେ ରଚନାତ୍ମକ କର୍ମୀମାନେ ଗାନ୍ଧୀଙ୍କ କାମକୁ କିପରି ଆଗେଇ ନେବେ, ତାଙ୍କ ଜୀବନର ସ୍ୱପ୍ନକୁ କିପରି ସାକାର କରିବେ ସେ ବିଷୟରେ ଆଲୋଚନା ହୋଇ ଏକ ''ସର୍ବୋଦୟ ସମାଜ'' ଗଢ଼ିବାର ନିଷ୍ପତ୍ତି ନିଆଗଲା । ଏହି ସମାଜ ନିମ୍ନରେ ପ୍ରଦତ୍ତ ଏକୋଇଶଟି କାର୍ଯ୍ୟକୁ କାର୍ଯ୍ୟକାରୀ କରିବା ପାଇଁ ଲକ୍ଷ୍ୟ ରଖିଲେ ।

୧. ସାମ୍ପ୍ରଦାୟିକ ଏକତା ରକ୍ଷା, ୨. ଅସ୍ପୃଶ୍ୟତା ନିବାରଣ, ୩. ଜାତିଭେଦ ଦୂରୀକରଣ, ୪. ନିଶା ନିବାରଣ, ୫. ଖଦୀ ଓ ଅନ୍ୟାନ୍ୟ ଗ୍ରାମୋଦ୍‌ଯୋଗ, ୬. ମୌଳିକ ଶିକ୍ଷା, ୭. ଗ୍ରାମ ସଫେଇ, ୮. ସ୍ତ୍ରୀ ଜାତିକୁ ପୁରୁଷମାନଙ୍କ ସହିତ ସମାନ ଅଧିକାର ଦେବା, ସ୍ତ୍ରୀ ଲୋକମାନଙ୍କୁ ସମାଜରେ ପୁରୁଷମାନଙ୍କ ଭଳି ସମାନ ପ୍ରତିଷ୍ଠା ଦେବା, ୯. ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା, ୧୦. ଦେଶର ଭାଷାମାନଙ୍କ ବିକାଶ, ୧୧. ସଂକୀର୍ଣ୍ଣ ପ୍ରାଦେଶିକତା ଦୂରୀକରଣ, ୧୨. ରାଷ୍ଟ୍ରଭାଷା ରୂପେ ହିନ୍ଦୁସ୍ତାନୀ ପ୍ରଚାର, ୧୩. ଆର୍ଥିକ ସମାନତା, ୧୪. କୃଷିର ଉନ୍ନତି, ୧୫. ମୂଲିଆ ସଂଗଠନ, ୧୬. ଆଦିବାସୀ ସେବା, ୧୭. ଛାତ୍ର ସଂଗଠନ, ୧୮. କୁଷ୍ଠରୋଗୀ ସେବା, ୧୯. ଗୋ ସେବା, ୨୦. ସଂକଟ ନିବାରଣ ଓ ଦୁଃଖୀଙ୍କ ସେବା, ୨୧. ପ୍ରାକୃତିକ ଚିକିତ୍ସା ବିସ୍ତାର ।

ସର୍ବୋଦୟ ସମାଜର ପ୍ରଥମ ସଭାପତି ହେଲେ ଶ୍ରୀ କିଶୋରୀ ଲାଲ୍ ମଶ୍ରୁୱାଲା । ପ୍ରତିବର୍ଷ ସର୍ବୋଦୟ ସମାଜର ଏକ ନିଖିଳ ଭାରତ ସମ୍ମିଳନୀ ଡକାଇ ବିଭିନ୍ନ ସମସ୍ୟାର ସମାଧାନ ପାଇଁ ନିଷ୍ପତ୍ତି ନିଆଗଲା ।

## ଉତ୍କଳ ଖଦୀ ମଣ୍ଡଳ ଓ ବିଶ୍ୱନାଥ ପଟ୍ଟନାୟକ :

୧୯୪୬ ମସିହାରେ ଉତ୍କଳ ଖଦୀ ମଣ୍ଡଳ ଗଠିତ ହେଲା । ଏହାର ପ୍ରଥମ ସଭାପତି ହେଲେ ଗୋପବନ୍ଧୁ ଚୌଧୁରୀ । ସଂପାଦକ ମନମୋହନ ଚୌଧୁରୀ, ସଦସ୍ୟ ନନ୍ଦ କିଶୋର ଦାସ, ଆଚାର୍ଯ୍ୟ ହରିହର ଦାସ, ରମାଦେବୀ, ଈଶ୍ୱରଲାଲ ବ୍ୟାସ, କୃପାସିନ୍ଧୁ ହୋତା, ନୀଳାମ୍ବର ଦାସ, ସୁନାମଣି ଦେବୀ, ରାଜକୃଷ୍ଣ ବୋଷ, ବିଶ୍ୱନାଥ ପଟ୍ଟନାୟକ । ଉତ୍କଳ ଖଦୀ ମଣ୍ଡଳ ଦ୍ୱାରା ଗ୍ରାମସେବା କେନ୍ଦ୍ରମାନ ଖୋଲାଯାଇ ଖଦୀ ଓ ଗ୍ରାମସେବା କାମ ଚାଲିଲା ।

ବିଶ୍ୱନାଥ ଏହି ଖଦୀ ମଣ୍ଡଳ ସହିତ ଜଡ଼ିତ ହେଲେ । ତାଙ୍କ କାମ ଓ ନିଷ୍ଠା ଦେଖି ୩୦-୮-୧୯୪୭ ଗ୍ରାମସେବକ ପତ୍ରିକାରେ କୁଜେନ୍ଦ୍ରୀ ଆଶ୍ରମ ସମ୍ପର୍କରେ ଗୋପବନ୍ଧୁ ଲେଖିଲେ, ''କେନ୍ଦ୍ରଟି ୭, ୮ ବର୍ଷ କାମ କରି ଗାଁ ଗହଳିରେ, ଖାସ କରି ସୌରାଙ୍କ ଭିତରେ ଆଶ୍ଚର୍ଯ୍ୟ ଚହଳ ପକାଇଛି । ଗାଁକୁ ଗାଁ ଯେ କପାଚାଷ ଛାଡ଼ି ଦେଇଥିଲେ ସେ ପୁଣି କପା କରୁଛନ୍ତି । ସୂତା କାଟୁଛନ୍ତି । ସ୍ତ୍ର ପୁରୁଷ ଲୁଗା ବୁଣା ଶିଖୁଛନ୍ତି, ବୁଣୁଛନ୍ତି, ପିନ୍ଧୁଛନ୍ତି । ନିଶାକୁ, କୁ-ସଂସ୍କାରକୁ ଛାଡୁଛନ୍ତି, ଦମନ ଶୋଷଣ ବିରୁଦ୍ଧରେ ଲଢ଼ି ଶିଖୁଛନ୍ତି ଓ ସ୍ୱରାଜ ପାଇଁ ଲଢ଼ିଛନ୍ତି ବୋଲି ମନରେ ଗର୍ବ କରୁଛନ୍ତି । ସୌରା ଜାତିର ଅନେକ କର୍ମୀ

ବାହାରି ସଂଗଠନ କାମରେ ସାହାଯ୍ୟ କରୁଛନ୍ତି । ଉଭୟ ପୁରୁଷ ଓ ନାରୀକର୍ମୀ ବାହାରୁଛନ୍ତି, ସେଥିରେ ଆନନ୍ଦ ବି ପାଉଛନ୍ତି ।

ସେଠା ସଓରାଙ୍କ ଭିତରେ ବି ଚହଳ ପଡ଼ିଛି, ସଂଲଗ୍ନ ମାନ୍ଦ୍ରାଜ ପ୍ରଦେଶର ସଓରାଙ୍କ ମଧ୍ୟରେ ବି ଆଶର ବାଣୀ ପହଞ୍ଚି ଯାଇଛି । ଓଡ଼ିଆ ଆଦୌ ବୁଝୁନଥିବା ସଓରାମାନେ ସେଠୁ ଆସି ଗାନ୍ଧୀ କଥା ଶୁଣିବାକୁ ଜମୁଛନ୍ତି । ସଓରାଙ୍କୁ ଛାଡ଼ି କନ୍ଧଙ୍କ ଭିତରେ ଏ ଜାଗରଣ ସଂକ୍ରାମକ ହେଉଛି ।

ଗାନ୍ଧିଜୀ ଅଖିଳ ଭାରତ ଚରଖା ସଂଘର ସଭାପତି ଥିଲେ । ଚରଖା ସଂଘ ବିକେନ୍ଦ୍ରୀକରଣ ହେବା ପରେ ପୂଜ୍ୟ ଗୋପବାବୁଙ୍କୁ ଓଡ଼ିଶାର ଦାୟିତ୍ୱ ଦିଆଗଲା । ସେ ଉତ୍କଳ ଖଦୀ ମଣ୍ଡଳ ଦ୍ୱାରା ଏହାର ଦାୟିତ୍ୱ ନେଇ ପରିଚାଳନା କଲେ । ପ୍ରଥମେ ଓଡ଼ିଶାର ସମସ୍ତ ଖଦୀକାମ ଉତ୍କଳ ଖଦୀ ମଣ୍ଡଳ ଦ୍ୱାରା ପରିଚାଳିତ ହେଉଥିଲା । ଖଦୀ କମିଶନ ଆରମ୍ଭ ହେବାରୁ ସେତେବେଳେ ଖଦୀ କାମକୁ ଆହୁରି ବିକେନ୍ଦ୍ରିତ କରି ବିଭିନ୍ନ ଅନୁଷ୍ଠାନ କମିଶନର ସାହାଯ୍ୟ ନେଇ ଖଦୀ କାମ କଲେ ।

## ଉତ୍କଳ ନବଜୀବନ ମଣ୍ଡଳ ଓ ବିଶ୍ୱନାଥ ପଟ୍ଟନାୟକ :

ଉତ୍କଳ ନବଜୀବନ ମଣ୍ଡଳ ୧୯୪୭ରେ ଗଠିତ ହେଲା । ଯେଉଁମାନେ ଏହାର ଗଠନ କର୍ତ୍ତା ଥିଲେ ସେମାନେ ହେଲେ ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ମା' ରମାଦେବୀ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଦେବୀ, ଶ୍ରୀ ଈଶ୍ୱରଲାଲ ବ୍ୟାସ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ଉପେନ୍ଦ୍ର ମହାପାତ୍ର ଓ ଶ୍ରୀ ଭଗବତୀ ଚରଣ ମହାନ୍ତି ।

ନବଜୀବନ ମଣ୍ଡଳର ପରିଚାଳନା କମିଟୀ ଏକବର୍ଷ ପରେ ପରିବର୍ତ୍ତନ ହେଲା । ପୂଜ୍ୟ ଗୋପବାବୁ ମଣ୍ଡଳର ସମସ୍ତ ଦାୟିତ୍ୱ ମାଳତୀ ଚୌଧୁରୀଙ୍କୁ ନେବାକୁ କହିଲେ । ମାଳତୀ ଚୌଧୁରୀ ମଣ୍ଡଳର ପୁରା ଦାୟିତ୍ୱ ନେଇ ପ୍ରଥମେ ଆଦିବାସୀଙ୍କ ଉପରେ ହେଉଥିବା ଅନ୍ୟାୟ, ଅତ୍ୟାଚାର, ଜୁଲୁମ, ବେଠୀ, ମୁଠାଦାରୀ ପ୍ରଥା, ଗୋତି ପ୍ରଥାର ଲୋପ ଆଦି ଓ ଶୋଷଣ ବିରୋଧରେ କର୍ମୀମାନଙ୍କୁ ନେଇ କାର୍ଯ୍ୟ କଲେ । ଏହା ସଙ୍ଗେ ସଙ୍ଗେ ଯିବା ଆସିବା ରାସ୍ତାର ଉନ୍ନତି ପାଇଁ ମଧ୍ୟ ଉଦ୍ୟମ କଲେ । ଯାହାଫଳରେ ଆଦିବାସୀ ମାଳ ଅଞ୍ଚଳକୁ ରାସ୍ତାଘାଟ ଖୋଲିଲା । ଅନ୍ୟାୟ, ଅତ୍ୟାଚାର ଜୁଲୁମ୍ କ୍ରମେ କମିଲା । ମୁଠାଦାରୀ ପ୍ରଥା ଲୋପ ହେଲା ।

ଗୋତି ପ୍ରଥା ଲୋପ ହେଲା, ବେଠି, ଭେଟି କମିଲା । ସେତେବେଳେ ବଣ ଜଙ୍ଗଲ ହିଂସ୍ରଜନ୍ତୁଙ୍କ ମଧ୍ୟରେ ମଣ୍ଡଳର କର୍ମୀମାନେ ଯେପରି କାମ କରି ଯାଇଛନ୍ତି ତାହା ସ୍ମରଣୀୟ ହୋଇରହିବ ।

ମାଳ ଆଦିବାସୀ ଅଞ୍ଚଳରେ ଯେଉଁ ସବୁ କାର୍ଯ୍ୟ ବେସରକାରୀ ଉଦ୍ୟମରେ ହୋଇଛି ବା ଯେଉଁମାନେ ଆଦିବାସୀଙ୍କ ଉନ୍ନତି ପାଇଁ କାମ କରିଛନ୍ତି ସମସ୍ତେ ନବଜୀବନ ମଣ୍ଡଳର କର୍ମୀ, ନହେଲେ ସେହି ସଂସ୍ଥା ସହ ସଂପୃକ୍ତ । ବଣ ଜଙ୍ଗଲ, ପାହାଡ଼ ପର୍ବତ, ହିଂସ୍ର ଜୀବଜନ୍ତୁଙ୍କୁ ଖାତିରି ନକରି, ମ୍ୟାଲେରିଆ, ଡେଙ୍ଗୁଜ୍ୱର, କଳାଜ୍ୱରରେ ଆକ୍ରାନ୍ତ ହୋଇଛନ୍ତି କିନ୍ତୁ ସମସ୍ତ ବିଷମ ପରିସ୍ଥିତି ସତ୍ତ୍ୱେ କାମ କରିଛନ୍ତି । ନାନା ଦୁଃଖ କଷ୍ଟ ଭିତରେ ରହିଛନ୍ତି । ଆତ୍ମ ସୁଖ ଲୋଡ଼ି ନାହାନ୍ତି । ନାନା ବାଧା ବିଘ୍ନ ଭିତରେ ଲୋକଙ୍କ ନିନ୍ଦା, ଶତ୍ରୁତା ଭିତରେ ମଧ୍ୟ ସାହାସ ନହରାଇ କର୍ତ୍ତବ୍ୟ କରିଯାଇଛନ୍ତି । ବିଶ୍ୱନାଥ ପଟ୍ଟନାୟକ ଏହି ଆଦର୍ଶର ମଣିଷ । ସେ ଏହି ମାଳ ଅଞ୍ଚଳକୁ ଆଦରି ନେଇଛନ୍ତି ୧୯୪୧ ମସିହାରୁ । ୧୯୪୭ ନବଜୀବନ ମଣ୍ଡଳ ଗଠିତ ହେଲାବେଳକୁ ସେ ଏହି ଅଞ୍ଚଳର ଜଣାଶୁଣା 'ଆଜ୍ଞା' । ବିଶ୍ୱନାଥ ପଟ୍ଟନାୟକ 'ନବଜୀବନ ମଣ୍ଡଳ'ର ସକ୍ରିୟ ସଭ୍ୟଭାବେ ନିମ୍ନ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପୂରଣ ପାଇଁ କାମକଲେ :

୧. ଜାତି ଧର୍ମ ନିର୍ବିଶେଷରେ ଆଦିବାସୀ ଅଞ୍ଚଳମାନଙ୍କର ବାସିନ୍ଦାମାନଙ୍କର ସେବାକାର୍ଯ୍ୟ କରିବା,

୨. ଆଦିବାସୀମାନଙ୍କର ସଂସ୍କୃତିରେ ଏପରି ଯାହା ବିଶେଷତ୍ୱ ଅଛି, ଯହିଁରେ ଜାତୀୟ ଜୀବନ ଓ ସଂସ୍କୃତି ଆହୁରି ଅଧିକ ମୂଲ୍ୟବାନ ହୋଇପାରିବ ତାକୁ ଅଧ୍ୟୟନ କରିବା ଓ ସଂରକ୍ଷଣ କରିବା,

୩. ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ସାଂଗଠନିକ କାର୍ଯ୍ୟ ଚଳାଇରଖିବା ଯେପରି ସବୁ ପ୍ରକାର ଶୋଷଣରୁ ମୁକ୍ତ ହେବା ପାଇଁ ଓ ସର୍ବୋଦୟ ଭିତ୍ତିରେ ସେମାନଙ୍କ ସାମାଜିକ ସଂଗଠନ ବଢ଼ି ଉଠିଲା ଭଳି ତାହା ସେମାନଙ୍କୁ ସାହାଯ୍ୟ କରିବ ।

୧୯୪୧ ମସିହାରୁ କୁଢେନ୍ଦ୍ରୀକୁ ମୂଳକରି ବିଶ୍ୱନାଥ ବାବୁ ନିଜ ସମ୍ବଳ, ପରିଶ୍ରମ, ଲୋକସମ୍ପର୍କକୁ ପାଥେୟ କରି ଆଦିବାସୀ ଜନଜୀବନରେ ଯେଉଁ ନୂତନତାର ଅଭ୍ୟୁଦୟ ଆଣିଲେ ତାହା ଯେ ତାଙ୍କ ଲୌହ ଇଚ୍ଛାଶକ୍ତିର ପରିଚୟ ଦିଏ, ଏହା ସ୍ୱୀକାର କରିବାକୁ ହେବ । ଉତ୍କଳ ଖଦୀମଣ୍ଡଳ, ଉତ୍କଳ ନବଜୀବନ ମଣ୍ଡଳ, କସ୍ତୁରବା ଗାନ୍ଧୀ ସ୍ମାରକ ନିଧିର ଯେଉଁ କର୍ମୀମାନେ କାର୍ଯ୍ୟ କରିବାକୁ କୋରାପୁଟ ଆସିଲେ, ବିଶ୍ୱନାଥ ସେମାନଙ୍କ ସହ ସମ୍ପର୍କ ରଖି କାମକଲେ । କୋରାପୁଟ ଜିଲ୍ଲାରେ ଏହି ସଂସ୍ଥାଗୁଡ଼ିକ ଜରିଆରେ ଯେଉଁସବୁ

ଗଠନ ମୂଳକ କାର୍ଯ୍ୟ କରାଗଲା ସେ ନିଜର ଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରିବାକୁ ସେ ନୈତିକ ଦାୟିତ୍ୱ ଭାବେ ଗ୍ରହଣ କଲେ, ନିଜ ଇଚ୍ଛାରେ । ଏମିତି ସ୍ୱାଧୀନତା ପରେ ତାଙ୍କ ଦାୟିତ୍ୱ ଆହୁରି ବଢ଼ିଗଲା ।

## ସ୍ୱାଧୀନ ଭାରତରେ ଆଦିବାସୀ ସେବା :

ଭାରତରେ ଶ୍ରୀ ଇନ୍ଦୁଲାଲ ଯାଜ୍ଞିକ ସର୍ବପ୍ରଥମେ ଗୁଜରାଟର ''ମିଲଖେଡ଼ି'' ଆଶ୍ରମ ପ୍ରତିଷ୍ଠା କରିଥିଲେ । ତାଙ୍କୁ ଅନୁସରଣ କରି ଶ୍ରୀ ଅମୃତ ଲାଲ ବିଠ୍ଠଲ ଠକ୍କର, ଯେକି ପରବର୍ତ୍ତୀ ସମୟରେ 'ଠକ୍କର ବାପା' ନାମରେ ପରିଚିତ ହେଲେ, ପ୍ରଥମେ ଗୁଜରାଟର ପାଞ୍ଚମାହାଲ ଜିଲ୍ଲାର 'ଦାହୋଦ୍ ଝାଲେନ୍' ତାଲୁକରେ 'ଭିଲ୍' ଆଦିବାସୀ ଗୋଷ୍ଠୀର ସର୍ବାଙ୍ଗୀନ ଉନ୍ନତି ପାଇଁ ୧୯୨୧ରେ ୫ଟି ସ୍ଥାନରେ ସେବାକାର୍ଯ୍ୟ ଆରମ୍ଭ କଲେ । ତାଙ୍କ ସେବା ସଂସ୍ଥାର ୧୯୨୬ରେ 'ଭିଲ୍ ସେବା ମଣ୍ଡଳ' ନାମରେ ପ୍ରସିଦ୍ଧ ହେଲା । ତାଙ୍କର ଲକ୍ଷ୍ୟ ରହିଲା ସ୍କୁଲ ବସାଇ ଭିଲ୍ ପିଲାଙ୍କୁ ପାଠ ପଢ଼ାଇବା, ଭିଲ୍‌ମାନଙ୍କ ନିଶା ନିବାରଣ, କୁସଂସ୍କାର ଦୂର କରିବା, ସେମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ଆର୍ଥିକ ଉନ୍ନତି ପାଇଁ ଉଦ୍ୟମ କରିବା, ସେମାନଙ୍କୁ ନାନା ବୃତ୍ତି ଶିକ୍ଷାଦେବା, ସେମାନଙ୍କ ମଧ୍ୟରୁ କର୍ମୀ ବାହାର କରି ତାଲିମ ଦେବା । ତାଙ୍କ କେନ୍ଦ୍ରଗୁଡ଼ିକୁ 'ସେବାଶ୍ରମ' କୁହାଗଲା । ୧୯୩୬/୩୭ ବେଳକୁ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶରେ ଠକ୍କର ବାପା ଓଡ଼ିଶାର କେତେକ ଅଞ୍ଚଳରେ ଆଦିବାସୀ ଉନ୍ନତି ପାଇଁ ସେବାଶ୍ରମମାନ ଖୋଲିଲେ ।

୧୯୩୯ରେ ହିନ୍ଦ୍ ସେବକ ସଂଘ (Servants of India Society)ର ଆଜୀବନ ସଭ୍ୟ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ରାୟଗଡ଼ାକୁ କେନ୍ଦ୍ର କରି, କୋରାପୁଟ ଜିଲ୍ଲା ଆଦିବାସୀଙ୍କ ଅବସ୍ଥା ଅନୁଧ୍ୟାନ କଲେ ଓ ତଥ୍ୟ ସଂଗ୍ରହ କଲେ । ଭାରତୀୟ ଆଦିମ ଜାତିସଂଘର ଆର୍ଥିକ ସହାୟତା ବଳରେ ଶ୍ରୀ ଅମୃତଲାଲ ଠକ୍କର ଆଦିବାସୀ ପିଲାଙ୍କ ଶିକ୍ଷା ପାଇଁ ରାୟଗଡ଼ା ଠାରେ 'ଠକ୍କର ବାପା' ଆଶ୍ରମ ଖୋଲିଲେ । ଏମିତି ଅନେକ ସଂସ୍ଥା ଆଦିବାସୀ ଉନ୍ନତି ପାଇଁ ୧୯୫୦ ବେଳକୁ କୋରାପୁଟ ଜିଲ୍ଲାରେ କାମକଲେ ।

❋ ❋ ❋

- ତେର -

# ରଚନାତ୍ମକ କର୍ମ

୧୯୩୮-୩୯ ମସିହା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇନଥିଲା । ସେତେବେଳକୁ 'ଭାରତ ଶାସନ ଆଇନ ୧୯୩୫ ଅନୁସାରେ ଓଡ଼ିଶା ପ୍ରଦେଶ ବ୍ୟବସ୍ଥାପକ ସଭାରେ କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠ ହୋଇ ସରକାର ଗଠନ କଲା । ଶ୍ରୀ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ଥିଲେ । ଓଡ଼ିଶା ପ୍ରଦେଶ ଗଠିତ ହୋଇ ଦୁଇବର୍ଷ ହୋଇଥାଏ । କେନ୍ଦ୍ରରୁ ସାହାଯ୍ୟ ପାଇ ଚଳୁଥିଲା । ଏଣୁ ଓଡ଼ିଶାର ଆଦିବାସୀମାନଙ୍କ ପାଇଁ ଉନ୍ନତି ମୂଳକ କାର୍ଯ୍ୟ କରିବା ସମ୍ଭବ ନଥିଲା । କେବଳ ଓଡ଼ିଶା ସଚିବାଳୟରେ 'ବିକାଶ ବିଭାଗ' ଅଧୀନରେ ଆଦିବାସୀଙ୍କ ଉନ୍ନତି ଓ ବିକାଶ ପାଇଁ ଗୋଟିଏ ଉପବିଭାଗ (ସେଲ୍) ରହିଲା । ସମୟାନୁକ୍ରମେ ଏହା ଓଡ଼ିଶାର ''ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗ'' ହେଲା । ଆଦିବାସୀଙ୍କ ପ୍ରକୃତ କାମ ଆରମ୍ଭ ହେଲା ୧୯୪୭-୪୮ ମସିହାରୁ । ୧୯୪୮ରେ ଶ୍ରୀ ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ଓ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ମନ୍ତ୍ରୀ ହେଲେ ।

ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଆଦିବାସୀ ଓ ଗ୍ରାମ ମଙ୍ଗଳ ବିକାଶ ମନ୍ତ୍ରୀ ହେଲେ । ୧୯୪୭-୪୮ରେ ତାଙ୍କ ଉଦ୍ୟମରେ କୋରାପୁଟ ଜିଲ୍ଲାରେ ୪୦ଟି 'ସେବାଶ୍ରମ' ଓ ଫୁଲବାଣୀ ଜିଲ୍ଲାର ନୂଆଗାଁ ଠାରେ ପ୍ରଥମ ଆଶ୍ରମ ସ୍କୁଲ ଖୋଲିଲା । ଆଦିବାସୀ ପିଲାମାନେ ଯେପରି ପ୍ରାକୃତିକ ପରିବେଶ ଭିତରେ ରହି ସେବାଶ୍ରମ ଓ ଆଶ୍ରମ ସ୍କୁଲରେ ସାଧାରଣ ପାଠ୍ୟକ୍ରମ ସହ ବୃତ୍ତିଗତ ଶିକ୍ଷା ଲାଭ କରିବେ ସେହି ବ୍ୟବସ୍ଥା କରାଗଲା । ନାଚ ଗୀତ ଲାଗି ମଧ ବ୍ୟବସ୍ଥା କରାଗଲା । ଆଶ୍ରମ ସ୍କୁଲରେ ଚାଷକାମ, ବଢ଼େଇକାମ, ଦର୍ଜିକାମ ଯେମିତି ପିଲା ଶିଖି ପରବର୍ତ୍ତୀ କାଳରେ ସ୍ୱାବଲମ୍ବନଶୀଳ ହୋଇପାରିବେ ଏଥିପାଇଁ ଉପାୟମାନ ଖଞ୍ଜାଗଲା । ପିଲାମାନଙ୍କୁ ବହିପତ୍ର, ପଟା ଖଡ଼ି, ପୋଷାକ ପତ୍ର, ଖାଦ୍ୟ ମାଗଣାରେ ଦିଆଗଲା । ତା'ଛଡ଼ା ଆଦିବାସୀ ଛାତ୍ରଛାତ୍ରୀମାନଙ୍କୁ ଯେଉଁ ସ୍କୁଲରେ ପାଠ ପଢ଼ିଲେ ବି ବୃତ୍ତିଦେବାର ନିୟମ କରାଗଲା । ସରକାରୀ ଢ଼ଙ୍ଗରେ ଆଦିବାସୀମାନଙ୍କ ପାଇଁ ବିଦ୍ୟାଳୟମାନ ବସାଗଲା ।

ସ୍ୱାଧୀନତା ସଂଗ୍ରାମ କାଳରେ ଯେଉଁ କର୍ମୀମାନେ ଲଢ଼େଇ କରି ଜେଲ ଯାଇଥିଲେ, ଦୁଃଖ କଷ୍ଟ ସହିଥିଲେ, ଓଡ଼ିଶା କଂଗ୍ରେସ ସରକାର ସେମାନଙ୍କ କାର୍ଯ୍ୟପାଇଁ କୃତଜ୍ଞତା

ଜଣାଇ ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗର ଦାୟିତ୍ୱରେ ସେମାନଙ୍କୁ ଦରମା ଖଞ୍ଜା କର୍ମଚାରୀ କରି ରଖିଲେ ।

ଆମ ଦେଶର ସମ୍ବିଧାନ ପ୍ରଣେତାମାନେ ଆଦିବାସୀଙ୍କ ସମସ୍ୟା ସମ୍ବନ୍ଧରେ ଯେଉଁ ଦୃଷ୍ଟିକୋଣଟିକୁ ବୃହଦ୍ ପରିସର ମଧ୍ୟରେ ବିଚାର କରିଥିଲେ ଏବଂ ସେମାନଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ଭାରତର ସମ୍ବିଧାନ ଧାରା ୩୩୮ ଅନୁସାରେ ଜଣେ ସ୍ୱତନ୍ତ୍ର ଅଧିକାରୀ ପଦବୀ ସୃଷ୍ଟି କଲେ ଯାହାକୁ କି କମିଶନର ଫର୍ ସିଡ୍ୟୁଲ୍‌ଡ଼ କାଷ୍ଟ ଓ ସିଡ୍ୟୁଲଡ୍ ଟ୍ରାଇବ୍ ବୋଲି କୁହାଗଲା । ଶ୍ରୀ ଏଲ୍.ଏମ୍. ଶ୍ରୀକାନ୍ତ, ଏହି କମିଶନର ପ୍ରଥମ କମିଶନ୍‌ର ହେଲେ ୧୮-୧୧-୧୯୫୦ରେ ।

ଆଦିବାସୀଙ୍କ ଉନ୍ନତି କଳ୍ପେ ନିଆଯାଉଥିବା ପଦକ୍ଷେପ ଗୁଡ଼ିକର ବିଶ୍ଳେଷଣ କରି ପଣ୍ଡିତ ନେହେରୁ ମତ ଦେଲେ ଯେ (୧) ଲୋକମାନେ, ସେମାନଙ୍କର ରୁଚି ଓ ପ୍ରବୃତ୍ତି ମାଧ୍ୟମରେ ଉନ୍ନତି କରିବା ଉଚିତ ଏବଂ ତାଙ୍କ ଉପରେ ଆମ୍ଭେମାନେ କୌଣସି ବିଷୟ ଲଦିଦେବା ପ୍ରଚେଷ୍ଟାରୁ ବିରତ ରହିବା ଦରକାର । ସେମାନଙ୍କର ପାରମ୍ପରିକ କଳା ଓ ସଂସ୍କୃତି କ୍ଷେତ୍ରରେ ବିକାଶ ପାଇଁ ଆମ୍ଭେମାନେ ଉତ୍ସାହ ପ୍ରଦାନ କରିବା ଉଚିତ ।

(୨) ଜମି ଓ ଜଙ୍ଗଲ ଉପରେ ଆଦିବାସୀର ଅଧିକାରକୁ ଆମକୁ ସମ୍ମାନ ଦେବାକୁ ପଡ଼ିବ ।

(୩) ସେମାନଙ୍କ ମଧ୍ୟରୁ କେତେକ ଲୋକଙ୍କୁ ବାଛି, ତାଙ୍କ ଅଞ୍ଚଳରେ ପ୍ରଶାସନ ଓ ଉନ୍ନତି ମୂଳକ କାର୍ଯ୍ୟ କରିବା ପାଇଁ ତାଲିମ ଦେବାକୁ ପଡ଼ିବ । ପ୍ରଥମାବସ୍ଥାରେ ଅବଶ୍ୟ ବାହାରର କେତେକ ଜ୍ଞାନୀ ଓ କୁଶଳୀ ବ୍ୟକ୍ତିଙ୍କର ଏଥିନିମିତ୍ତ ଆବଶ୍ୟକତା ପଡ଼ିବ; ଅତ୍ୟଧିକ ପରିମାଣରେ ବାହାର ଲୋକଙ୍କର ଆଦିବାସୀ ଅଞ୍ଚଳକୁ ଅନୁପ୍ରବେଶ ରୋକିବାକୁ ପଡ଼ିବ ।

(୪) ଆମ୍ଭେମାନେ ଏସବୁ ଅଞ୍ଚଳକୁ ଅତ୍ୟଧିକ ପ୍ରଶାସନ (over administering) ପରିସରଭୁକ୍ତ କରିବା ଅନୁଚିତ । ନାନା ପ୍ରକାର ଯୋଜନା ମାଧ୍ୟମରେ ଜୀବନଧାରାକୁ ଅସ୍ତବ୍ୟସ୍ତ କରିଦେବା ଠିକ୍ ହେବନାହିଁ । ବରଂ ସେମାନଙ୍କର ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକ ମାଧ୍ୟମରେ ଆମ୍ଭେମାନେ ସେମାନଙ୍କ ପ୍ରଗତି ପାଇଁ କାମ କରିଯିବା ଉଚିତ, ସେଗୁଡ଼ିକର ବିରୋଧାଚରଣ କରିନୁହେଁ ।

(୫) ପରିସଂଖ୍ୟାନର ଗଣିତ କିମ୍ବା ଅର୍ଥବିନିଯୋଗର ପରିମାଣକୁ ଦୃଷ୍ଟିରେ ରଖି, ବିକାଶର ଫଳାଫଳକୁ ଆମ୍ଭେମାନେ ବିଚାରକରିବା ଉଚିତ ନୁହେଁ, ବରଂ ମାନବୀୟ ଚରିତ୍ର ଓ ଗୁଣାବଳୀର ବିକାଶକୁ ଆଧାର କରି ଏହାକୁ ବିଚାର କରିବାକୁ ପଡ଼ିବ ।

ଅବଶ୍ୟ ଓଡ଼ିଶା ସରକାର ଆଦିବାସୀ ଓ ଆଦିବାସୀ ଅଞ୍ଚଳଗୁଡ଼ିକର ବିକାଶ ପାଇଁ ଉପଯୁକ୍ତ ମତାମତ ପ୍ରତି ଧ୍ୟାନ ଦେଇଥିବେ, ଲକ୍ଷ୍ୟ ଠିକ୍ କରିଥିବେ, ପ୍ରଚୁର ପୁଞ୍ଜିର ମଧ୍ୟ ବ୍ୟବସ୍ଥା କରିଥିବେ କିନ୍ତୁ ଯେତେବେଳେ ପ୍ରକୃତ କ୍ଷେତ୍ରରେ ଏହା ପ୍ରୟୋଗାତ୍ମକ ଭାବେ କାର୍ଯ୍ୟକାରୀ କରାଗଲା, ଏହାର ପରିଣତି ଓ ଫଳାଫଳ ଯେ ଲକ୍ଷ୍ୟାନୁସାରୀ ହୋଇପାରିଲା ନାହିଁ, ଏହା ସମସ୍ତେ ଜାଣିଲେ । ଆଦିବାସୀମାନଙ୍କର ସ୍ଥାନୀୟ ପରିବେଶ, ପରିସ୍ଥିତି, କଳା, କୌଶଳ, ଜ୍ଞାନ ଓ ଅଭିଜ୍ଞତା ତଥା ଆବଶ୍ୟକତାକୁ ବିଚାରକୁ ନନେଇ, ଅଧିକାଂଶ ପ୍ରକଳ୍ପର ପରିକଳ୍ପନା କରାଯିବା ଫଳରେ, ଆଦିବାସୀଙ୍କ ଉପରେ ଅଣ-ଆଦିବାସୀୟ ବିଚାରଧାରାଟିକୁ ହିଁ ଲଦି ଦିଆଗଲା, ଯାହା ଫଳରେ ଆଦିବାସୀ ପୂର୍ବେ ଯେଉଁପରି ଶୋଷଣର ଶିକାର ହେଉଥିଲା, ଏବେ ବି ସେମିତି ହେଲା, ଅବଶ୍ୟ ତା'ର ରୂପ ଟିକିଏ ବଦଳିଗଲା ।

ବିଶ୍ୱନାଥ ଆଞ୍ଚା ସରକାରଙ୍କ ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗର କାମକୁ ନିକଟରୁ ଦେଖିଲେ, ସେ ଅନୁଭବ କଲେ ଲକ୍ଷ୍ୟ ମହତ୍ ହେଲେ ମଧ୍ୟ ସମସ୍ୟା ଦୂର କରିବା ସମ୍ଭବ ହୋଇ ପାରୁନାହିଁ । ଖାଲି ଟଙ୍କା ଖର୍ଚ୍ଚ କଲେ ଯେ କାମ ହୋଇଯିବ, ସେମିତିତ ନୁହେଁ । କର୍ମୀଲୋଡ଼ା କାମ କରିବା ପାଇଁ । ଯାହାର ସେବା ମନୋଭାବ ଥିବ । ଯିଏ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ପଛରେ ଗୋଡ଼ାଉନଥିବ । ଆଦିବାସୀଙ୍କ ସେବାକାଳରେ ତାକୁ ଅନେକ ସାମାଜିକ କଟକଣା ତଥା ନିହିତ ସ୍ୱାର୍ଥ ଶତ୍ରୁତାକୁ ସହିବାକୁ ପଡ଼ିବ । ସେ ଯଶକାମୀ ହେବ ନାହିଁ । ଲାଭ ପାଇଁ ଆଶା ରଖିବ ନାହିଁ । ସେବାକରୁଛି ବୋଲି ପ୍ରତିଷ୍ଠା ପଛରେ ଧାଇଁବ ନାହିଁ । ଏକାମ କରିବା ପାଇଁ ଯେଉଁ ପ୍ରେରଣା ଲୋଡ଼ା, ଯେଉଁ ଆଦର୍ଶ ଲୋଡ଼ା, ଦରମା ନିଆ କର୍ମୀଙ୍କ ଭିତରେ ଯେ ଏହା ଶହେଗୁଣ ଥିବ, ସେମିତି ଆଶା ରଖାଯାଇ ପାରିବ ନାହିଁ ।

ସରକାର ଯୋଜନା ଓ ସଂସ୍ଥା ଭିତରେ ଏମିତି କୌଣସି ଆୟୋଜନ ରହିଲା ନାହିଁ । ଯେଉଁଠି କର୍ମୀମାନେ ଗୋଟିଏ ସାନ ସାନ ଅଞ୍ଚଳର ଦାୟିତ୍ୱ ନେବେ । ସେଠି ଆଦିବାସୀମାନଙ୍କ ସହିତ ଏକାତ୍ମ ହେବେ । ସେମାନଙ୍କ ସହିତ ଦିନରାତି ବିତାଇବେ । ସେମାନଙ୍କ ବଦଭ୍ୟାସ, କୁସଂସ୍କାର, ବୃଥାଭୟ ଦୂରକରାଇ, ସେମାନଙ୍କୁ ନିଡ଼ର କରାଇବେ ।

ସଦ୍‌ବୁଦ୍ଧି ଦେବେ । ଶୋଷଣରୁ ମୁକୁଳିବାର ବାଟ ବତାଇବେ । ସେମାନଙ୍କୁ ନାନା ଧନ୍ଦା ଶିଖାଇ ଅର୍ଥାଗମର ଉପାୟମାନ କରିବେ ।

ସେତେବେଳେ ଅତି ଅନୁନ୍ନତ ଅଞ୍ଚଳକୁ ଯିବା ହିଁ କଷ୍ଟ, ପାହାଡ଼ ଚଢ଼ା, ନଈ ପହଁରା, ବଣ ଜନ୍ତୁର ଭୟ, ସାପ ବିଛାର ଅଦଉତି, ବର୍ଷା, ଶୀତର ପ୍ରକୋପ, ବିଭିନ୍ନ ପ୍ରକାର ରୋଗର ଦୌରାତ୍ମ୍ୟ, ତେଣୁ ସରକାରୀ କର୍ମଚାରୀ ରାସ୍ତାକଡ଼ ଗାଁ କଥା ଚିନ୍ତା କଲେ । ଅନୁନ୍ନତ ଅଞ୍ଚଳ ଶୋଷକ ଓ ସ୍ୱାର୍ଥପରମାନଙ୍କ ଚରାଭୂଇଁ ହୋଇରହିଲା ସେମିତି ୧୯୬୩ ଯାଏ ।

## କୋରାପୁଟ ଜିଲ୍ଲାରେ ଥିବା କେତେକ ଆଦିବାସୀ ସେବାକେନ୍ଦ୍ର :

କସ୍ତୁରବା ଗାନ୍ଧୀ ସ୍ମାରକୀ ଟ୍ରଷ୍ଟ କାମ ଆରମ୍ଭ କଲା ୧୯୪୯ ମସିହାରେ ଏବଂ କସ୍ତୁରବା ଗାନ୍ଧୀ ସ୍ମାରକ ନିଧି-ଉତ୍କଳ ଶାଖା ସହାୟତାରେ କୋରାପୁଟ ଜିଲ୍ଲାର କେତେକ ଅତି ଅନୁନ୍ନତ ଆଦିବାସୀ ଅଞ୍ଚଳରେ ଗ୍ରାମସେବା କେନ୍ଦ୍ର ପ୍ରତିଷ୍ଠା କରାଗଲା । ସେପରି କୋରାପୁଟ ଜିଲ୍ଲାର ରାୟଗଡ଼ା ତାଲୁକର ଥେରୁବାଲି ଅଞ୍ଚଳର ଡୁମ୍ରିଗୁଡ଼ା ଗାଁରେ । ଡୁମ୍ରିଗୁଡ଼ା, ରାୟଗଡ଼ା ସବ୍ ଡିଭିଜନ୍‌ର ଥେରୁବାଲି ରେଲଷ୍ଟେସନ ଠାରୁ ଚାରି ମାଇଲ ଦୂରରେ ଥିବା ଗାଁ । ସେଠି ସେତେବେଳେ ଅଗନା ଅଗନି ବଣ । ବାଘୁଆ ବଣ । ପାଖରେ ନିୟମଗିରି ପାହାଡ଼ ଅଙ୍କାବଙ୍କା ହୋଇ ଲମ୍ବିଯାଇଛି । ପାହାଡ଼ତଳ କେତେ ନା କେତେ ପ୍ରକାର ଗଛବୃଛରେ ଭର୍ତ୍ତି । ଏପଟେ ପାହାଡ଼ ସେପଟେ ପାହାଡ଼ । ମଝିରେ ଅପ୍ରଶସ୍ତ ସମତଳ ଭୂଇଁ, ଉପତ୍ୟକା । ସେ ଭିତରେ କନ୍ଧ ଗାଁ । ବଡ଼ ପରଜା, ସାନ ପରଜାଙ୍କ ଗାଁ । ସେମାନେ ଅତି ଅଶିକ୍ଷିତ । ଜୀବନ ସରଳ ରୈଖିକ । ବଣତାଡ଼ି, ପଡ଼ିଆ କରନ୍ତି । ଦେହ ମିହନ୍ତ ଲଗାଇ ଜମି ଉଠିଆ କରନ୍ତି । ବିଭାଘର, ବୁଡ଼ଘର, ଦଶାଘର ପାଇଁ, ମହାଜନଠୁ ପଇସା ଋଣ କରନ୍ତି । ଜମିଯାଏ । ପୁରୁଷ ପୁରୁଷ ଧରି ମହାଜନ ଘରେ ଗୋତି ଖଟନ୍ତି । ଋଣ ଛିଡ଼ିଣି ହୁଏ ନାହିଁ । ମୂଳ ସେମିତି ରହେ । ଖଟଣି ସୁଧ ବାବଦକୁ ମଜୁରା ହୁଏ ।

ବଣକୁ କନ୍ଦାଖୋଳି କି ପତରତୋଳି, ଦାରୁ କାଟି କି ଝିଟ୍‌କା ବେଟି ଗଲେ, ଏମିତି କି ଗାଧୋଇଲା ବେଳେ ନାଳ କଡ଼ରୁ ବାଘ ଝିଙ୍କି ନେଇଯାଏ ବଣ ଭିତରକୁ । ବାଘ ମଢ଼ କେଉଁଠି ଯେ ଲୁଚାଏ ଜଣାପଡ଼େ ନାହିଁ । ଏହି ଗାଁରେ ଜୀବନ ଓ ମଣିଷର ଦୁଃଖ ଅକଳନ ଥିଲା । ଏମିତି ଗାଁ ଡୁମ୍ରିଗୁଡ଼ା । ରୋଗ ବଇରାଗ ହେଲେ ଏଠି ଜାନି ଯାତ୍ରାକରେ । ପଶୁପକ୍ଷୀ ବଳିଦିଏ । ଦର୍ମୁରାଜା (ଆକାଶ ଦେବତା) ଓ ଧରତନୀ (ଧରିତ୍ରୀ ଦେବୀ)ଙ୍କୁ ପୂଜାକରେ ।

ଆଧିଭୌତିକ ଶକ୍ତି ଉପରେ ତା'ର ଅଖଣ୍ଡ ବିଶ୍ୱାସ । ଦେବତା ପାଖରେ ଦ୍ରୋହ କରିଛି ସେ, ଏଣୁ ଏତେ କଷ୍ଟ । ସେ ବୁଝେ ନାହିଁ ଜୀବାଣୁ ଦ୍ୱାରା ରୋଗହୁଏ । ଅପରିଷ୍କାର ରହିଲେ ରୋଗହୁଏ ।

ବିଶ୍ୱନାଥଙ୍କ ପରାମର୍ଶରେ ଉତ୍କଳ ନବଜୀବନ ମଣ୍ଡଳ ତୁମ୍ରିଗୁଡ଼ା ଗାଁକୁ ବାଛିଲେ ସେବାଶ୍ରମ କରିବା ପାଇଁ । ବାଲେଶ୍ୱର ଜିଲ୍ଲାର ନାରୀକର୍ମୀ ଶ୍ରୀମତୀ ମାଳତୀ ବିଶ୍ୱାଳ (ଲୋକ ମୁହଁରେ ମାଳ ଅପା) ଓ କଟକ ଜିଲ୍ଲା ନଗସପୁରର ନାରୀକର୍ମୀ ଶ୍ରୀମତୀ କେତକୀ ଦେବୀ ୧୯୪୯ରେ ଏଠାରେ ରହି ଅନୁନ୍ନତ କନ୍ଧ ଆଦିବାସୀଙ୍କ ସେବା କରିବା ପାଇଁ ପହଞ୍ଚିଲେ, ପାହାଡ଼ ଚଢ଼ି ଓହ୍ଲାଇ, ବଣ ଭିତରେ ପାଦରେ ଚାଲି ଚାଲି । ମାଟି ଝାଟିର କୁଡ଼ିଆ କରି ଆଶ୍ରମ ତିଆରି ହେଲା, ଏମାନେ ହୋଇଗଲେ କନ୍ଧ ମଣିଷର ଅତି ଆତ୍ମୀୟ, ନିଜଲୋକ । ମଣିଷ ସେବାର ଧର୍ମ ନେଇ ମାଳତୀ ଦେବୀ ଓ କେତକୀ ଦେବୀ ମମତାମୟୀ ମା ପାଲଟିଗଲେ ଏମାନଙ୍କର ।

ଥେରୁବାଲିଠୁ ତୁମ୍ରିଗୁଡ଼ାର ବିପରୀତ ଦିଗରେ ପ୍ରାୟ ବାଟ ଦିକୋଶ ଚାଲିଲା ପରେ ପଡ଼େ ସଂକଳ-ପଦର । ସେ ଗାଁରେ ବହୁତ ଜମି । ବଡ଼ କନ୍ଧ ଗାଁ ସଂକଳ ପଦର । ଜଣେ ଧନୀଲୋକ ମାଡ଼ି ବସିଥିଲେ ସବୁତକ ଜମି । ସବୁବେଳେ ଜମିକୁ ନେଇ ଏଠି ମାଲିମୋକଦ୍ଦମା । ଭୂମି ନଥିବା କନ୍ଧଙ୍କ ଜୀବନରେ ସୁଖ ବୋଲିବା ନାହିଁ । ବାଘ ଉତ୍ପାତ, କୁଷ୍ଠରୋଗ, ମଦନିଶାରେ ଗ୍ରସ୍ତଜୀବନ । ଏହି ଗାଁରେ ସର୍ବୋଦୟ କର୍ମୀ ଶ୍ରୀ ରତନ ଦାସ ଓ ଶାନ୍ତିଦେବୀ ସେବାକେନ୍ଦ୍ର ବସାଇଲେ । ସେମାନେ ଏଠା ଆଦିବାସୀଙ୍କ ଉପକାର ପାଇଁ ନାନା କାର୍ଯ୍ୟ କରୁଥିଲେ ଏବଂ ତା' ସଙ୍ଗେ ସଙ୍ଗେ କୁଷ୍ଠରୋଗୀଙ୍କୁ ଔଷଧ ଓ ଇଂଜେକ୍ସନ ମଧ ଦେଉଥିଲେ ।

ତୁମିମାନଗୁଡ଼ା, ଗରଣ୍ଡା, ତୁମ୍ବାକଣା ଓ ବୋଡ଼ିବାଡ଼ିରେ ମଧ ସେବାକେନ୍ଦ୍ର ପ୍ରତିଷ୍ଠା ହେଲା । ସେଠାରେ ଅନ୍ନପୂର୍ଣ୍ଣା ସାମନ୍ତରାୟ, ରାଧାମଣି ସାହୁ, ସଚ୍ଚିବାଳା ପଣ୍ଡା, ପାର୍ବତୀ ସ୍ୱାଇଁ, ବାସନ୍ତୀ ଦେବୀ ଓ କୃଷ୍ଣ ପ୍ରିୟା ଦେବୀ ଆଦି ଯାଇ ସେବା କାମ କଲେ ।

ନିଜର ସୁଖ ସ୍ୱାଚ୍ଛନ୍ଦ୍ୟକୁ ନଦେଖି, ବିଷ୍ଣୁପ୍ରିୟା ଦେବୀ ସମର୍ପି ଦେଲେ ନିଜ ପରିବାରକୁ ସେ ଅଞ୍ଚଳର ସେବା କରିବା ପାଇଁ । ହାତୀବାଡ଼ି କୁଷ୍ଠ କେନ୍ଦ୍ରରେ ବିଷ୍ଣୁପ୍ରିୟା ଦେବୀ ଓ ତାଙ୍କ ପୁତ୍ର ଡଃ ନିର୍ମଳ ସେବା ଆରମ୍ଭ କଲେ । ଏମାନେ ଥିଲେ ଅନନ୍ୟ କର୍ମୀ ।

୧୯୪୭ରୁ ୧୯୫୩ ମସିହା ଯାଏ ବିଶ୍ୱନାଥ ନିରବଚ୍ଛିନ୍ନ ଭାବେ ସରକାରୀ ଓ ବେସରକାରୀ ଗଠନମୂଳକ କାର୍ଯ୍ୟଗୁଡ଼ିକୁ ଆଦିବାସୀମାନଙ୍କ ଭିତରେ ପରିଚିତ କରାଇଲେ ଓ ଆଦିବାସୀଙ୍କ ମୌଳିକ ସମସ୍ୟା ସମ୍ପର୍କରେ ଶାସକ ଗୋଷ୍ଠୀ ବିରୁଦ୍ଧରେ ସତ୍ୟାଗ୍ରହ କରିବାରେ ମନଦେଲେ । ପ୍ରଥମ ଅବସ୍ଥାରେ ବିଶ୍ୱନାଥ ଖଦୀକାମ ସହ କୁଷ୍ଠରୋଗ ଓ ୟଜ୍ ରୋଗ ଚିକିତ୍ସା, ପ୍ରୌଢ଼ ଶିକ୍ଷା, ନିଶା ନିବାରଣ ଓ ଶୋଷଣ ବିରୁଦ୍ଧରେ ଲଢ଼ିବା ପାଇଁ, ନୂତନ ଚେତନାରେ ଲୋକଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ପଦକ୍ଷେପ ନେଲେ । ସମସ୍ତ କେନ୍ଦ୍ରଗୁଡ଼ିକରେ ପ୍ରଥମରେ ବହୁସଂଖ୍ୟାରେ ଅଣ-ଆଦିବାସୀ କର୍ମୀ ରହିଲେ କିନ୍ତୁ ପରବର୍ତ୍ତୀ କାଳରେ ଏହି କେନ୍ଦ୍ରଗୁଡ଼ିକୁ ପରିଚାଳନା କରିବା, ସହାୟତା ଯୋଗାଇବା ପାଇଁ ସ୍ଥାନୀୟ ଆଦିବାସୀ ଝିଅମାନଙ୍କୁ ସାମାନ୍ୟ ପଢ଼ାଶିଖା ଓ ପ୍ରସୂତି ବିଦ୍ୟା ଶିକ୍ଷା ଦିଆଗଲା । ସେମାନଙ୍କ ମନରେ ସହଯୋଗ ଓ ସେବା ମନୋଭାବର ବିକାଶ କରାଗଲା । ଜନସାଧାରଣ ଚାନ୍ଦା ଦେଲେ । କୁଢେନ୍ଦ୍ରୀ ଆଶ୍ରମରେ ଆଦିବାସୀ କର୍ମୀମାନଙ୍କ ପାଇଁ ଏକ ୨ ମାସିଆ ତାଲିମ କାର୍ଯ୍ୟକ୍ରମର ଆୟୋଜନ କରାଗଲା ।

ଏ ସମସ୍ତ କାର୍ଯ୍ୟ ବିଶ୍ୱନାଥଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହେଲା । ୧୯୫୫ ଯାଏ ସେ ସମସ୍ତ ସମାଜସେବୀଙ୍କ ଅଗ୍ରଣୀ ରୂପେ କାମ କଲେ ।

## ସ୍ୱାସ୍ଥ୍ୟ ସମସ୍ୟା ଓ ୟଜ୍ ରୋଗ :

ସେତେବେଳକୁ ରାୟଗଡ଼ା ଓ ଗୁଣୁପୁର ମାଳଅଞ୍ଚଳରେ ବାସ କରୁଥିବା ଲୋକମାନଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଭାରି ଉଦ୍‌ବେଗ ଜନକ ହୋଇପଡ଼ିଥିଲା । ଏଠାରେ ୟଜ୍‌ନାମକ ଏକ କୁଷ୍ଠ ଶ୍ରେଣୀୟ ରୋଗର ପ୍ରାଦୁର୍ଭାବ ଥିଲା । ଏହି ରୋଗ ହେଲେ ପ୍ରଥମେ କୁଷ୍ଠରୋଗ ପରି ଘା ହୋଇଯାଏ, ହାତଗୋଡ଼ ପଙ୍ଗୁ ହୋଇଯାଏ ଓ ବଙ୍କା ହୋଇଯାଏ । ସେତେବେଳକୁ ଏ ରୋଗର ଏକମାତ୍ର ପ୍ରତିକାର ଥିଲା ଅଏଲ୍ ପେନ୍‌ସିଲିନ୍ ଇଂଜେକ୍‌ସନ୍ ଓ ଆଇରନ୍ ଟ୍ୟାବଲେଟ୍ ଖାଇବାକୁ ଦେବା । ଘାଆଗୁଡ଼ିକୁ ପ୍ରତ୍ୟହ ସଫାକରିବା, ବିଶୋଧକ ଦ୍ୱାରା ଧୋଇବା । ୟଜ୍ ରୋଗୀମାନଙ୍କର ଏହି ଚିକିତ୍ସା ନବଜୀବନ ମଣ୍ଡଳ ଓ କସ୍ତୁରବା ଗାନ୍ଧୀ ସ୍ମାରକ ନିଧି ପକ୍ଷରୁ କରାଗଲା । ନବଜୀବନ ମଣ୍ଡଳ ତରଫରୁ ସୂର୍ଯ୍ୟମଣି ଦେବୀ, ହରପ୍ରିୟା ଓ ସତ୍ୟବତୀ ଦେବୀ ଓ ଚାରିଜଣ ଡାକ୍ତର ଏହାର ଦାୟିତ୍ୱ ନେଇ ନିଷ୍ଠାପର କାମ କଲେ । ବହୁ ଆଦିବାସୀ ଝିଅ ମଧ୍ୟ ତାଲିମ ପାଇ ରୋଗୀଙ୍କ ସେବାକଲେ । କ୍ରମେ

କୈଳାସ କୋଟା ନିକଟସ୍ଥ ବୋରିଙ୍ଗ ପାଇ, ମୁକ୍ତୁଡୁଲୀ, ବିଷମକଟକ ପାଖ ଢାମ୍ନଗୁଡ଼ା ସଉରାଗୁଡ଼ା, ପୁଟ୍ରୁଗୁଡ଼ାରେ ଯକ୍ଷ୍ମା ସେବାକେନ୍ଦ୍ରମାନ ଖୋଲିଲା । କସ୍ତୁରବା ଗାନ୍ଧୀ ସ୍ମାରକୀ ନିଧି ଢ଼ାମିଣି ଓ କଲ୍ୟାଣସିଂହପୁର ଠାରେ ଯକ୍ଷ୍ମା ସେବା କେନ୍ଦ୍ର ଖୋଲିଲେ । ସେବାର ଅନନ୍ୟ ଇତିହାସ ତିଆର ହେଲା ଏଠି । ନିଜର ସବୁ ସୁଖ ଛାଡ଼ି, ଅଭିଳାଷ ଛାଡ଼ି ଖାଲି ମଣିଷ ସେବାରେ, ଦୁସ୍ଥ ଅସହାୟର ସେବାରେ ଜୀବନକାଳ କଟାଇ ଦେବାର ଆଦର୍ଶ ଯେ କେବଳ ସେଇ ସମୟରେ ଏମିତି ବ୍ୟାପକ ଭାବରେ ଦେଖିବାକୁ ମିଳିଥିଲା, ତାହା ଏବେ ସହଜରେ ବିଶ୍ୱାସ କରିହେବ ନାହିଁ ।

## ଆଦିବାସୀ ସ୍ୱାର୍ଥ ସଂରକ୍ଷଣ :

୧୯୪୯ ମସିହାରେ ଓଡ଼ିଶା ସରକାର ଆଦିବାସୀମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ଗୋଟିଏ ରେଗୁଲେସନ୍ କଲେ । ପୋଡୁଚାଷ କରି ଯେଉଁ ଆଦିବାସୀମାନେ ଜୀବନ ଯାପନ କରୁଥିଲେ ସେମାନଙ୍କୁ ସ୍ଥାୟୀଭାବେ ବସାବାନ୍ଧି ରହିବାକୁ ସରକାର ଯୋଜନା କଲେ । ସେମାନଙ୍କ ପାଇଁ କଲୋନୀ ତିଆରି ହେଲା । ସ୍ୱାଧୀନତା ସଂଗ୍ରାମ କାଳରେ ଲକ୍ଷ୍ମଣ ନାୟକ ଓ ଶହ ଶହ ଗାନ୍ଧୀ କର୍ମୀ ଯେଉଁ ତ୍ୟାଗ ସ୍ୱୀକାର କରିଥିଲେ, ଅନ୍ୟ ଆଦିବାସୀମାନଙ୍କୁ ସେହି ସ୍ତରକୁ ଆଣିବା ପାଇଁ ସରକାର ଆଦିବାସୀ ମଙ୍ଗଳ ନାମରେ ପ୍ରଚୁର ଅର୍ଥର ବ୍ୟବସ୍ଥା କଲେ । ତତ୍‌କାଳୀନ ଗ୍ରାମ ମଙ୍ଗଳ ବିଭାଗର କାର୍ଯ୍ୟ ପ୍ରଣାଳୀ ପ୍ରଣୟନକାରୀ ଚିନ୍ତାମଣି ମିଶ୍ର ଅବଶ୍ୟ ଭଲ କଥାଟିଏ ହେବ ବୋଲି ଏହା କଲେ । କିନ୍ତୁ ଓଡ଼ିଶାର ଶତକଡ଼ା ୫୬ ଭାଗ ଯେଉଁ ଆଦିବାସୀ ଗୋଷ୍ଠୀ ସେମାନଙ୍କର ଯେତିକି ବିକାଶ ହେବା କଥା ହେଲା ନାହିଁ ।

ସେବା ଓ ନିଷ୍ଠାର ପ୍ରତୀକ ଆଦିବାସୀ ସେବକ ଅମ୍ବାଲାଲ୍ ବ୍ୟାସ ସୁଦୂର ଗୁଜରାଟରୁ ଆସି ଆନ୍ତରିକ ନିଷ୍ଠାର ସହ ଆଦିବାସୀମାନଙ୍କ ବିକାଶ ପାଇଁ ଯେଉଁ କାମ କରି ଯାଇଛନ୍ତି ତାହା ଚିର ସ୍ମରଣୀୟ । ସେ ନିଷ୍ଠାର ସହ କାମ କରିବା ସତ୍ତ୍ୱେ ଫଳ ଆଶାଜନକ ହେଲା ନାହିଁ ବୋଲି ମନେହୁଏ ।

ଓଡ଼ିଶାର ୧୩ ଗୋଟି ଜିଲ୍ଲାରେ ବସବାସ କରୁଥିବା ଆଦିବାସୀମାନଙ୍କ ପାଇଁ ଓଡ଼ିଶା ରାଜସ୍ୱ ବିଭାଗ ଓ ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗ ଜରିଆରେ ଖୁବ୍ କମ୍ ଟଙ୍କା ଖର୍ଚ୍ଚ ହେବା ପାଇଁ ଆସୁଥିଲା ।

ଯେଉଁ କେତେକ ପରିମାଣର ଟଙ୍କା କେତେକ ସଚ୍ଚୋଟ କର୍ମଚାରୀଙ୍କ ଦ୍ୱାରା ଆଦିବାସୀ ଗାଁରେ ପହଞ୍ଚିଲା ଆଦିବାସୀ ଲୋକେ ତା'ର ସଦୁପୋଯୋଗ କରିପାରିଲେ ନାହିଁ । ସେତେବେଳକୁ ଆଦିବାସୀ ଲୋକେ ମାନସିକ ସ୍ତରରେ ନୂତନ ପରିବର୍ତ୍ତନକୁ ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ ହୋଇ ପାରିନଥିଲେ । ପାରମ୍ପରିକ ଜୀବନଧାରାରେ ନୂତନ ପରିବର୍ତ୍ତନର କଳ୍ପନା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ତେଣେ ରାଜନୈତିକ ନେତୃବୃନ୍ଦ ଶାସନର ନିଗଡ଼ରେ ରହି ଆଦିବାସୀଙ୍କ ପ୍ରକୃତ ସମସ୍ୟା ବୁଝିବାରେ ଯେତେଟା କ୍ଷମ ହେବା କଥା ହୋଇପାରିଲେ ନାହିଁ ।

ସ୍କୁଲ୍ ଖୋଲା ହେଲା କିନ୍ତୁ ଯେଉଁ ଶିକ୍ଷକମାନେ ନିଯୁକ୍ତ ହେଲେ ସେମାନେ ଆଦିବାସୀ ଦୃଷ୍ଟିକୋଣଟିକୁ ବୁଝିପାରିଲେ ନାହିଁ । ଅଭାବ ଦାରିଦ୍ର୍ୟର ତାଡ଼ନାରେ ବାପ ମାକୁ ରୋଜଗାରରେ ସାହାଯ୍ୟ କରୁଥିବା ପିଲାମାନେ ସ୍କୁଲକୁ ଆସିବାକୁ ଚାହିଁଲେ ନାହିଁ କି ଶିକ୍ଷକ ବି ସେମାନଙ୍କୁ ବୁଝାଇ ପାରିଲେ ନାହିଁ କାହିଁକି ପାଠ ପଢ଼ିବାକୁ ହେବ । ଆଶ୍ରମ ସ୍କୁଲରେ ଧନ୍ଦାମୂଳକ ଶିକ୍ଷା ପାଇଲେ ସେମାନଙ୍କର କି ଲାଭ ହେବ ? ମୌଳିକ ତାଲିମ କ'ଣ ଓ କାହିଁକି ? ଖୁବ୍ କମ୍ ଛାତ୍ର ପାଠ ପଢ଼ିବାକୁ ଆସିଲେ । ଛାତ୍ରୀ ପ୍ରାୟ ଆସିଲେ ନାହିଁ । ଯେଉଁମାନେ ବି ପଢ଼ିବାକୁ ଆସିଲେ ଦୁଇ ତିନି ବର୍ଷ ପରେ ପାଠ ଛାଡ଼ିଦେଲେ । ଛୋଟ ଚାକିରି ମିଳିଲେ ଚାଲିଗଲେ । କାଁ ଭାଁ ଯେଉଁ କେତେଜଣ ମାଟ୍ରିକ ପାସ କଲେ ଶିକ୍ଷକତା ବା କିରାଣୀ ଚାକିରି କରି ସନ୍ତୁଷ୍ଟ ହୋଇଗଲେ । ପଇସା ଖର୍ଚ୍ଚ ହେଲା ସତ, ତାଲିମ ସଫଳ ହେଲା ନାହିଁ । ଲକ୍ଷ୍ୟରେ ପହଞ୍ଚିବା ଦୂରରେ ରହିଲା । ଏହା ଦେଶ ସ୍ୱାଧୀନ ହେବାର ଚାରି ପାଞ୍ଚ ବର୍ଷର କଥା ।

ଘଟଣା ବଦଳୁଥିଲା ଦିନ ପ୍ରତିଦିନ । ସମସ୍ୟାର ସମାଧାନ ପାଇଁ ବାଟମାନ ଫିଟୁଥିଲା ସତ, ସେ ବାଟରେ ଚାଲିଲା ବେଳକୁ ବେଶି ବାଟ ହୁଡ଼ିବାକୁ ହେଉଥିଲା । ସ୍ୱାଧୀନତା ପରେ ବହୁ ସରକାରୀ ଓ ବେସରକାରୀ ସଂସ୍ଥା ଆଦିବାସୀ ସେବା କରିବାକୁ ଆଗେଇ ଆସୁଥିଲେ କିନ୍ତୁ ସମସ୍ତେ ଠିକ୍ ବାଟ ଧରିବା ବଦଳରେ ମଝିରେ ରହିଯାଉଥିଲେ । ଏହି ଘଡ଼ି ସନ୍ଧି ମୁହୂର୍ତ୍ତରେ ବିଶ୍ୱନାଥ ପଟ୍ଟନାୟକ ମଧ୍ୟ ଇତଃସ୍ତତ ହେବାକୁ ଲାଗିଲେ । ପରାଧୀନ ବେଳର କଥା ଅଲଗା ଥିଲା । ବିଦେଶୀ ସରକାର ଥିଲା । ଆନ୍ଦୋଳନର କାରଣ ଥିଲା । ସଂଗଠନର ମୂଳରେ ଥିଲା ଦେଶପ୍ରେମର ମହତ୍ତ୍ୱ । ଏବେ ନିଜ ସରକାର, ଲୋକ ପ୍ରତିନିଧି ସରକାର, ସେମାନେ ବୁଝିବେ ସାଧାରଣ ମଣିଷର ସମସ୍ୟାର କଥା । ସରକାରୀ କର୍ମଚାରୀ

ସେବକ ହେବେ ଲୋକଙ୍କର । ଏକ ସୁଖଦ, ସୁନ୍ଦର ରାମରାଜ୍ୟ ହେବ ଏ ଦେଶ; ସତ୍ୟ ଅହିଂସାର ମୂଳଦୁଆରେ ଗଢ଼ି ଉଠିବ ଏ ଦେଶର ନୂତନ ସ୍ୱାଭିମାନ, ଗର୍ବ ଓ ଗାରିମା; ଏ ସ୍ୱପ୍ନ ବିଶ୍ୱନାଥଙ୍କୁ ସାକାର ହେଲା ପରି ଦିଶୁନଥିଲା ।

ସହଜେ ସେ ଅଳ୍ପଭାଷୀ । କେବେହେଲେ ନିରାଶା ତାଙ୍କୁ ଛୁଏଁ ନାହିଁ । ଆଶାର କାଣି ଆଙ୍ଗୁଠି ଧରି ବାଟ ଚାଲିବାରେ ଅଭ୍ୟସ୍ତ ବିଶ୍ୱନାଥଙ୍କୁ ଏହି ବିଫଳତାର କଥା ପଚାରିଲେ କହନ୍ତି- ''କେହି କେବେ ସମ୍ପୂର୍ଣ୍ଣ ବିଫଳ ହୋଇନାହିଁ । ଆଧୁନିକ ଜଗତ ସହ ପରିଚିତ ନଥିବା ଲୋକଙ୍କ ପାଇଁ ସରକାର ଉଦ୍‌ବେଗ ପ୍ରକାଶ କରିଛନ୍ତି, ବେସରକାରୀ ଲୋକ କାମ କରିବାକୁ ଆସିଛନ୍ତି, କିଏ ପାଦେ ଯାଇଛି, କିଏ ଅବା ସାତପାଦ ଯାଇ ତାଙ୍କର ବନ୍ଧୁ ହୋଇଛି । ପାଦେ ଯାଇଥିବା ଲୋକକୁ ତ ତା'ର ପ୍ରାପ୍ୟ ଦେବାକୁ ହେବ ।

❋ ❋ ❋

- ଚଉଦ -

# ରାୟଗଡ଼ାର ଅନାହାର ମୃତ୍ୟୁ

ଦେଶରେ ନାନା ସମସ୍ୟାର ମଞ୍ଜିମାନ ପୋତିଦେଇ ଇଂରେଜମାନେ ଚାଲିଗଲେ ନିଜ ଦେଶକୁ । ଛାଡ଼ି ଦେଇଗଲେ ସେମାନଙ୍କ ଶିକ୍ଷା, ସଂସ୍କୃତି, ଶାସନ ପ୍ରଣାଳୀ । ଆମେ ସ୍ୱାଧୀନ ବୋଲାଇଲୁ । ପତାକା ଉଡାଇଲୁ । ମିଠେଇ ବାଣ୍ଟିଲୁ । ଆମ ନେତାମାନେ ଭାବିଲେ ଗଡ଼ଜିଣା ହୋଇଗଲା । ଏଥର ଗଡ଼ର ମାଲିକ ହେଇ ହୁକୁମ୍ ତାମିଲ କରିବା ବେଳ ଆସିଲା । ଆମ କଳା ଲୋକଙ୍କ ମତିଗତିରେ ନାନା ପରିବର୍ତ୍ତନ ଆସିଲା । କ୍ଷମତାରେ ନଥିଲା ବେଳେ ଯେଉଁ ସାଧୁ ପ୍ରବୃତ୍ତି ଗୁଡ଼ିକ ଉବୁଟୁବୁ ହେଉଥିଲା କ୍ଷମତାକୁ ଆସିବା ମାତ୍ରେ ସେମାନେ ଯେ ବିରାଡ଼ି ବୈଷ୍ଣବ ପାଲଟି ଯିବେ ଏକଥା ଭାବି ଦଳେ ଗାନ୍ଧୀବାଦୀ ବ୍ୟସ୍ତ, ବିବ୍ରତ ହୋଇପଡ଼ିଲେ । ବାଟସାରା ନାଗଫେଣୀ କଣ୍ଟା, ପାଦେ ଚାଲିଲେ ପାଦରେ ଫୋଡ଼ି ହୋଇଯିବାର ଭୟ । ଯେଉଁମାନେ ଶାସନକୁ ଗଲେ ସେମାନେ ବେଶୀ ଇଂରେଜ ପାଲଟିଲେ କମ୍ ଭାରତୀୟ ହେଲେ । ସେମାନେ କହିଲେ ଏହା ଏକ ପରିବର୍ତ୍ତନର ସମୟ, ସମୟ କ୍ରମେ ସବୁ ଠିକ୍ ହୋଇଯିବ । ଏମାନେ ଦେଶ ଗଢ଼ିବାର ନୂଆ ନୂଆ ସ୍ଲୋଗାନ ମାନ ଇଜାଦ କଲେ, ମୁହଁରେ ଗାନ୍ଧୀକଥା କହି ମନରେ ଗଡ଼ସେ ହେଲେ । କଂଗ୍ରେସଦଳର ନୂଆ କାୟାକଳ୍ପ ହେଲା ।

ଯେଉଁ ମୂଲ୍ୟବୋଧ ନେଇ ଗାନ୍ଧିଜୀ ଓ ତାଙ୍କ ଅନୁଗାମୀମାନେ ସ୍ୱାଧୀନତା ପାଇଁ ଲଢ଼େଇ କରିଥିଲେ, ସ୍ୱାଧୀନତା ପରେ ସେମାନେ ଦେଖିଲେ ଭାରତଯାକ, କାଶ୍ମୀରରୁ କନ୍ୟାକୁମାରୀ ଯାଏ, ଲୋକମାନଙ୍କ ମନ ଗାନ୍ଧୀଙ୍କ ରଚନାତ୍ମକ ଆଦର୍ଶରୁ ଦୂରେଇ ଯାଉଛି, ସେମାନେ ନିଜ ସୁଖ ଖୋଜୁଛନ୍ତି, ପାଶ୍ଚାତ୍ୟ ପ୍ରଭାବ ବଢୁଛି । ବଡ଼କଥା ହେଲା ସମାଜରେ ହିଂସାତ୍ମକ ବାତାବରଣ ମୁଣ୍ଡ ଟେକୁଛି । ଶ୍ରେଣୀ ସଂଘର୍ଷ, ବିପ୍ଳବ-ବିଦ୍ୱେଷ ବଢୁଛି । କେହି କାହାକୁ ସହିପାରୁନାହାନ୍ତି । ସେତେବେଳର ବହୁ ଲେଖାରୁ ଏକଥା ଜଣାପଡ଼େ ।

## ରଚନାତ୍ମକ କର୍ମୀଙ୍କ ନୈରାଶ୍ୟ :

ଗାନ୍ଧୀଙ୍କ ମୃତ୍ୟୁପରେ କଂଗ୍ରେସ ଦଳ ବାଟ ଭୁଲିଗଲା, ସବୁ ମୂଲ୍ୟବୋଧ ବଦଳିଗଲା । ରଚନାତ୍ମକ କର୍ମୀମାନେ, ବିଶୁଦ୍ଧ ଗାନ୍ଧୀବାଦୀମାନେ ପୁଣି ଥରେ ଗାନ୍ଧୀବାଦରେ

ଦେଶକୁ ଚଳାଇବା ପାଇଁ କାମ ଆରମ୍ଭ କଲେ । ଲେଖା ବାହାରକଲେ । ମୂଳରୁ ତ ସେମାନେ କଥାରେ, କାମରେ, ଆଚରଣରେ ଗାନ୍ଧୀ ପଦାନୁସାରୀ ଥିଲେ, ଏଣୁ ଯେତେବେଳେ ଶାସନରେ ଥିବା ଲୋକେ ବେଳେ ବେଳେ କାର୍ଯ୍ୟ ଓ ବିଚାରରେ ଗାନ୍ଧୀ ଆଦର୍ଶ ବିରୋଧୀ ବୋଲି ଜଣାପଡୁଥିଲେ, ରଚନାତ୍ମକ କର୍ମୀମାନେ ନିରାଶ ହୋଇ ପଡୁଥିଲେ । ଗୋପବାବୁ ଲେଖିଲେ, "ବୈମନୁଷ୍ୟ ଘୋଟୁଛି, ପଶ୍ଚିମୀ ହାଓ୍ୱା ବୋହୁଛି ।" ଆଗରୁ ରଚନାତ୍ମକ କାର୍ଯ୍ୟ କରୁଥିବା କେତେ କର୍ମୀ ମଧ ବଦଳି ଯାଇଥିଲେ ।

ଶାସକବର୍ଗ ରଚନାତ୍ମକ କର୍ମୀମାନଙ୍କୁ ସମ୍ମାନ ଦେଖାଇଲେ ମଧ ସ୍ପଷ୍ଟ କରିଦେଲେ ଯେ ଶାସନ କ୍ଷେତ୍ରରେ ଗାନ୍ଧୀବାଦୀର ସମ୍ପୂର୍ଣ୍ଣ ପ୍ରୟୋଗ ସମ୍ଭବ ହେବ ନାହିଁ । କ୍ରମେ କଂଗ୍ରେସଦଳର ଶାସକମାନଙ୍କ ସହ ରଚନାତ୍ମକ କର୍ମୀମାନଙ୍କର ମତାନ୍ତର ବଢ଼ିଲା । ସେମାନେ ସ୍ଥିର କଲେ, ଲୋକମତ ଜାଗ୍ରତ କରିବା ପ୍ରଧାନ କାମ । ଲୋକେ ଚେତିଲେ, ବୁଝିଲେ ଶାସନ ଠିକ୍ ଚାଲିବ, ସୁଧୁରିବ ।

ଭବିଷ୍ୟତ କାର୍ଯ୍ୟପନ୍ଥା ପାଇଁ ସମସ୍ତ ଦେଶର ରଚନାତ୍ମକ କର୍ମୀ ଗୋଟିଏ ମଞ୍ଚରେ ଏକାଠି ହେବାର ନିଷ୍ପତ୍ତି ନେଲେ ।

## ସର୍ବୋଦୟ ସମାଜର ପ୍ରଥମ ବାର୍ଷିକ ସମ୍ମିଳନୀ :

୧୯୪୯ ମସିହା ମାର୍ଚ୍ଚ ମାସ ୯ ତାରିଖରୁ ୧୧ ତାରିଖ, ଏହି ତିନିଦିନ ମଧ-ଭାରତର ଇନ୍ଦୋର ପାଖରେ 'ରାଉ' ନାମକ ଏକ ସ୍ଥାନରେ ସର୍ବୋଦୟ ସମାଜର ପ୍ରଥମ ବାର୍ଷିକ ସମ୍ମିଳନୀ ବସିଲା । ଓଡ଼ିଶାରୁ ରଚନାତ୍ମକ କର୍ମୀଭାବେ ଆଚାର୍ଯ୍ୟ ମହାଶୟ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମନମୋହନ ଚୌଧୁରୀ, ଗୁଣନିଧି ମହାନ୍ତି, ଗୋକୁଳାନନ୍ଦ ମହାନ୍ତି, ଈଶ୍ୱରଲାଲ ବ୍ୟାସ, ପୁରୁବାଇ, ବିଶ୍ୱନାଥ ପଟ୍ଟନାୟକ, ଅଲେଖ ପାତ୍ର ଓ ଗୋଲକ ପାତ୍ର ଯୋଗଦେଇଥିଲେ । ସାରା ଭାରତରୁ ସର୍ବୋଦୟ ସମାଜର ୧୬୬୬ ଜଣ ସଭ୍ୟଙ୍କ ମଧରୁ ୪୦୦ ଜଣ ଏହି ସମ୍ମିଳନୀରେ ଯୋଗଦେଇଥିଲେ । ସେଠି ସ୍ଥିର ହେଲା ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ଓଡ଼ିଶାରେ ହେବ ।

ଏହି ସମ୍ମିଳନୀର ଗୋଟିଏ ଉଲ୍ଲେଖନୀୟ ଘଟଣା ଥିଲା ଯେ ନିମନ୍ତ୍ରଣ ସତ୍ତ୍ୱେ ଶାସକବର୍ଗରୁ କେହି ଯୋଗ ଦେଇନଥିଲେ ।

ବିଶ୍ୱନାଥ ମାର୍ଚ୍ଚ ମାସ ଶେଷ ଆଡ଼କୁ କୁଳେନ୍ଦ୍ରୀ ଫେରିଲେ । ଅକ୍ଟୋବର ୧୯୪୯ରେ ଗୋପବାବୁ, ରମାଦେବୀ କୁଳେନ୍ଦ୍ରୀ ଆଶ୍ରମକୁ ଆସି ତାଙ୍କ କାମ ଦେଖିଲେ ଓ ଆଖପାଖ ସେବାକେନ୍ଦ୍ରମାନ ବୁଲିଲେ । ଆସନ୍ତା ଏପ୍ରିଲ ମାସରେ ହେବାକୁ ଯାଉଥିବା ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ସମ୍ବନ୍ଧରେ ଆଲୋଚନା କଲେ ।

## ଅନୁଗୋଳରେ ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ :

୧୯୫୦ ମସିହା ମାର୍ଚ୍ଚ ମାସରେ କୋରାପୁଟ ଜିଲ୍ଲାର ୨୦/୨୫ ଜଣ ସ୍ୱେଚ୍ଛାସେବୀଙ୍କୁ ନେଇ ବିଶ୍ୱନାଥ ରେଳବାଟେ ଅନୁଗୋଳରେ ପହଞ୍ଚିଲେ । ସେଠି ସେ ସ୍ୱେଚ୍ଛାସେବକମାନଙ୍କ ଅସ୍ଥାୟୀ କୁଡ଼ିଆ ନିର୍ମାଣ କରିବା, ତୋରଣ ବାନ୍ଧିବା, ଖାଦ୍ୟପେୟର ବ୍ୟବସ୍ଥା କରିବା କାମମାନ କଲେ । ତାଙ୍କର ଡେଲାଙ୍ଗ ସମ୍ମିଳନୀ କଥା ମନେ ପଡ଼ିଯାଉଥିଲା । ପ୍ରକାଣ୍ଡ ସମ୍ମିଳନୀ, ଚିତ୍ର ପ୍ରଦର୍ଶନୀ, ଖଦୀ ଗ୍ରାମୋଦ୍ୟୋଗ ପ୍ରଦର୍ଶନ ଚମତ୍କାର ହୋଇଥିଲା । ଚିତ୍ର ପ୍ରଦଶନୀରେ ଓଡ଼ିଶା ଗୌରବର ସ୍ମାରକଭାବେ ପ୍ରସିଦ୍ଧ ଚିତ୍ରଶିଳ୍ପୀ ପୂର୍ଣ୍ଣଚନ୍ଦ୍ର ସିଂହ, ଗୋପାଳ କାନୁନ୍‌ଗୋ, ବିଭୂତି କାନୁନ୍‌ଗୋ, ମୁରଲୀଧର ଟାଲି, ଉଦୟନାଥ ରଥ, ଉପେନ୍ଦ୍ର କିଶୋର ଦାସ, ପଟ୍ଟଚିତ୍ର ଶିଳ୍ପୀ ରାମ ମହାରଣା, ଉର୍ମିଳା ଦେବୀଙ୍କ ଚିତ୍ରମାନ ସ୍ଥାନ ପାଇଥିଲା । ଦୀର୍ଘ ଏକ ମାସ କାଳ ଅନୁଗୋଳରେ ରହି ବିଶ୍ୱନାଥ ଏପ୍ରିଲ ମାସ ଶେଷ ଆଡ଼କୁ କୁଳେନ୍ଦ୍ରୀ ଫେରିଲେ ।

## ରାୟଗଡ଼ାରେ ମରୁଡ଼ି ଓ ଅନାହାର ମୃତ୍ୟୁ :

ମାଳ ଅଞ୍ଚଳରେ ମରୁଡ଼ିର ପଦଧ୍ୱନି ଶୁଭିଲା । ୧୯୫୦ ମସିହା ଶେଷ ଆଡ଼କୁ ଅବସ୍ଥା ଅସମ୍ଭାଳ ହେଲା । ବର୍ଷା ନାହିଁ, ଫସଲ ନାହିଁ । ଚାରିଆଡ଼ ହାହାକାର । ବର୍ଷା ଅଭାବରୁ ରାୟଗଡ଼ା ସବ୍‌ଡ଼ିଭିଜନ୍‌ର ପ୍ରାୟ ସମସ୍ତ ଅଞ୍ଚଳରେ ମରୁଡ଼ି ହୋଇଥାଏ । ସବୁଠୁ ବେଶି ଦୁର୍ଦ୍ଦଶାଗ୍ରସ୍ତ ସଉରା ଓ କନ୍ଧ ଲୋକେ । ବିଶ୍ୱନାଥ ଏ ବିଷୟରେ ନିଜର ସହକର୍ମୀମାନଙ୍କୁ ଜଣାଇଲେ । ଗୋପବାବୁଙ୍କୁ ଚିଠି ଲେଖିଲେ ସହାୟତା ପାଇଁ । ଶ୍ରୀ ଈଶ୍ୱରଲାଲ ବ୍ୟାସ ଆସିଲେ କୁଳେନ୍ଦ୍ରୀ ଦୁର୍ଭିକ୍ଷ ସାହାଯ୍ୟ ପାଇଁ । ଗୁଣୁପୁର ଅଞ୍ଚଳରେ ଗୁରୁତର ଅବସ୍ଥା । ଚାଉଳ ବାହାରୁ ଅଣାହେଲା । ଗୋପବାବୁ ରିଲିଫ ଭୋଜନ କେନ୍ଦ୍ର ପାଇଁ ଚାନ୍ଦା ଆଦାୟ କରି ପଠାଇଲେ । ମରୁଡ଼ି ପରେ ଦୁର୍ଭିକ୍ଷ ଫଳରେ ଆଗରୁ ଚାଲିଥିବା

ଗଠନ ମୂଳକ କାମ ବାଧାପାଇଲା । ସରକାରଙ୍କ ଦୃଷ୍ଟିକୁ ଅଣାହେଲା ଦୁର୍ଭିକ୍ଷକଥା । ସରକାର କିଛି କିଛି ରିଲିଫର ବ୍ୟବସ୍ଥାକଲେ, ସ୍ୱେଚ୍ଛାସେବୀ ସଂଗଠନ ମାଧ୍ୟମରେ । ଦୁଇବର୍ଷ ଧରି ବର୍ଷା ନାହିଁ । ଏଣୁ ଦୁର୍ଭିକ୍ଷ ।

## ଅନାହାର ମୃତ୍ୟୁ :

ମାରୁଡ଼ିର ଏକ କରୁଣ ଚିତ୍ର ଦେଇ ବିଶ୍ୱନାଥ ପଟ୍ଟନାୟକ ଅନାହାର ମୃତ୍ୟୁର ଚାକ୍ଷୁସ ପ୍ରମାଣ ଦେଇଛନ୍ତି । ତାହା ସେହି ସମୟର ଲୋକଙ୍କ ଅର୍ଥନୈତିକ ଅବସ୍ଥା, ସାମାଜିକ ଦୁଃସ୍ଥିତି, ଜମିଥିଲା ବାଲାଙ୍କ ଶୋଷଣ ଓ ସରକାରୀ କଳର ଉଦାସୀନତାକୁ ସ୍ପଷ୍ଟକରେ ।

ଗତ ୯.୯.୧୯୫୨ ମସିହା ଶୁକ୍ରବାର 'କୃଷକ'ରେ ପ୍ରକାଶିତ ବିଶ୍ୱନାଥ ପଟ୍ଟନାୟକଙ୍କ ଲେଖାର ଉଦ୍ଧୃତି ଏଠାରେ ପ୍ରସଙ୍ଗୋଚିତ ମନେହୁଏ :

(ସମ୍ବାଦର ଶିରୋନାମା : କୋରାପୁଟରେ ଖାଇବାକୁ ନପାଇ ଲୋକ ମଲେ । ପେଜ ପେଜ ବୋଲି କହୁ କହୁ ଦୁଇଟି ପିଲାଙ୍କ ପ୍ରାଣବାୟୁ ଉଡ଼ିଗଲା । ପିଲାଠୁ ମାଆ ଖାଦ୍ୟ ଛଡ଼ାଇ ନେଉଛି । ତାଳପତ୍ର ଖାଇ ଅଧିକାଂଶ କନ୍ଧ ପ୍ରାଣ ବଞ୍ଚାଇଛନ୍ତି । ରାୟଗଡ଼ାରେ ହାଡ଼ମାଳର ଦୃଶ୍ୟ ।)

ଗାନ୍ଧୀ ସେବାସଂଘର ବିଶିଷ୍ଟ କର୍ମୀ ବିଶ୍ୱନାଥ ପଟ୍ଟନାୟକ ଲେଖିଛନ୍ତି : ରାୟଗଡ଼ା ତାଲୁକାର କଳସପୁର ମୁଠା ଅଞ୍ଚଳରେ ଖାଇବାକୁ ନପାଇ ଚାରିଜଣ କନ୍ଧଲୋକ ମରିଯିବା ଖବର ପାଇ ସେ ଅଞ୍ଚଳକୁ ଯାଇଥିଲି । ଖାଦ୍ୟ ବିନା ସେ ଅଞ୍ଚଳର କନ୍ଧଲୋକେ ଯେମିତି କଷ୍ଟ ଭୋଗୁଛନ୍ତି ଯେ କୌଣସି ଲୋକ ସେମାନଙ୍କ ଚେହେରାକୁ ଦେଖିଲେ ଜାଣିପାରିବେ ଓ ମର୍ମାହତ ହେବେ । ଦେହ ଶୁଖି କଣ୍ଟା ଆକାରରେ ଝୁଲୁଛି । କେତେଜଣ ମରମର ଅବସ୍ଥାରେ ଅଛନ୍ତି । ଅଖାଦ୍ୟ ଖାଇ ଅନେକ ପେଟ ଗୋଳମାଳ ରୋଗରେ ଦୁଃଖ ଭୋଗୁଛନ୍ତି ଏବଂ ସେ ରୋଗରେ ଅନେକ ସଡୁଛନ୍ତି । ଗତବର୍ଷ ଦୁର୍ଭିକ୍ଷରେ ତ ଜଙ୍ଗଲର କନ୍ଦାସବୁ ଶେଷ ହୋଇଯାଇଛି । ଆଉ ଖାଇବାକୁ ମିଳୁନି । କେବଳ ତାଳପତ୍ର ଖାଇ ଅଧିକାଂଶ ଜୀବନକୁ ବଞ୍ଚାଇ ରଖିଛନ୍ତି । ଅନେକ ପରିବାରରେ ଦେଖିବାକୁ ମିଳିଲା ଯେ କଂସାଏ ତୋରାଣିରେ ଗୁଣ୍ଡାଏ ସୁଆଁ କିମ୍ବା କାଙ୍ଗୁଭାତ ଥାଇ ଛୁଆ ଖାଉଥିବା ବେଳେ ବେଶି ଖାଇଦେଲା ବୋଲି ମାଆ ଛୁଆଠୁଁ ଛଡ଼ାଇ ନେଉଛି ଅନ୍ୟ ଛୁଆକୁ ଦେବା ପାଇଁ । କେଉଁ କେଉଁଠି ମାଆବାପା ନିଜେ ଖାଇବାକୁ ଛୁଆଠୁ ଛଡ଼େଇ ନେଉଛନ୍ତି । ଏଭଳି ଭୋକକଷ୍ଟରେ

ଚକୁଥିବା କନ୍ଧଙ୍କ ଉପରେ ସ୍ଥାନୀୟ ଜମିବାଲା ଶୁଣ୍ଢୀ, କରଣ, ବ୍ରାହ୍ମଣଙ୍କ ନିଷ୍ଠୁର ବ୍ୟବହାର ଓ ମନୋବୃତ୍ତି କଥା ଶୁଣି ଆଶ୍ଚର୍ଯ୍ୟ ଲାଗୁଛି । ଭୋକିଲା ଲୋକେ କାମ ତ ପାଉନାହାନ୍ତି । ଆଜିକାଲି ରୁଆବଛା କାମ ସେହି ଜମି ମାଲିକଙ୍କର ଲାଗିଛି । କାମ ପାଇଁ ଭୋକିଲା ଲୋକେ କାମ ଖୋଜି ବୁଲୁଛନ୍ତି । ସେତିକିବେଳେ ଜମି ମାଲିକମାନେ ତାହାଙ୍କୁ କାମରେ ଲାଗିବାକୁ କହି କିଛି ସମୟ ନିଜର ରୁଆବଛା କାମ କରାଇ ନେଲାପରେ ଆଉ କାମ ନାହିଁ ବୋଲି ମୂଳ ମଜୁରି ନଦେଇ ଘଉଡ଼ାଇ ଦେଉଛନ୍ତି । ଭୋକିଲା ଲୋକେ ମଜୁରି କଥା ଉଠାଇଲେ ସାରା ଓଳିଏ କିମ୍ୱା ଦିନେ କାମ କରାଗଲେ ସିନା ମଜୁରି ଦିଆଯିବ, ଅଳ୍ପ ସମୟ ପାଇଁ ଦିଆଯିବ ନାହିଁ ଇତ୍ୟାଦି ଧମକ ଦେଇ ଘଉଡ଼ାଇ ଦେଉଛନ୍ତି । ବିଚରା ଭୋକିଲା ଲୋକେ ବଣ ଜଙ୍ଗଲକୁ ଯାଇଥିଲେ ଶାଗ ଡାଳ ଆଣି ଖାଇଥାନ୍ତୁ ବୋଲି ସୁମରି କାନମୁଣ୍ଡା ଆଉଁଷି ଘରକୁ ଫେରିଯାଉଛନ୍ତି । ଯେଉଁମାନଙ୍କର ଖରଦିକରି ଖାଇବା ଶକ୍ତି ରହିଛି ସେମାନଙ୍କୁ ଖରଦି ପାଇଁ ଧାନ ଚାଉଳ ମିଳୁନାହିଁ । ଯେଉଁମାନଙ୍କ ଠାରେ ଧାନ ରହିଛି, ସେମାନଙ୍କ ପାଖକୁ ଖରିଦ୍ ପାଇଁ ଗଲେ ନାନା ଧିକ୍କାରରେ ଟଙ୍କାରେ ଆଠ ଅଡ଼ା ବୋଲି ଯାହା ଦେଉଛନ୍ତି ତାହା ପ୍ରକୃତ ଅଡ଼ାରେ ମାପିଲାବେଳକୁ ଛଅ ଅଡ଼ା ହେଉଛି । ଶୁଣିଲି ସରକାର ତରଫରୁ କିଛିଦିନ ତଳେ ସାରା କଳସପୁର ଅଞ୍ଚଳ ପାଇଁ କେନ୍ଦୁଝରୀ ଗ୍ରାମରେ ଧାନ ବିକ୍ରି ହେଉଥିଲା, ତାହା ବନ୍ଦ ହେଲାଣି । ସେହି ଗାଁକୁ ଭିନ୍ନ ଭିନ୍ନ ଗ୍ରାମର ଦୂରତା ବେଶି ହେତୁ ସାଧାରଣତଃ ଖରଦି କରିବାକୁ ବିଶେଷ ଯାଉନଥିଲେ ଅଥଚ ଧାନ ସବୁ ଶେଷ ହୋଇଗଲା ।

ସରକାର ଧାନ ଚାଉଳ ଗଚ୍ଛିତ ରଖିଛନ୍ତି ଏବଂ ସେ ଅଞ୍ଚଳର ଜମିମାଲିକଙ୍କ ଠାରେ ଧାନ ଭରପୂରଥିବା ସତ୍ତ୍ୱେ ସାଧାରଣ ଲୋକେ ଧାନ ଦି'ଟା ଖରିଦ କରିବାକୁ ନପାଇ ଖାଇବା ବିନା ମରୁଛନ୍ତି ଅଥଚ ସେହି ଅଞ୍ଚଳର ଧାନ କଳା ବଜାରରେ ବିକ୍ରି ହେଉଛି ।

ଗୋଲାମାନ ଖୋଲି ଧାନ ବିକ୍ରି କରିବାର ବ୍ୟବସ୍ଥା କରିବା ପାଇଁ ଏବଂ ଖାଇବାକୁ ନପାଇ ମରମର ଅବସ୍ଥାରେ ଥିବା ଲୋକଙ୍କ ଦୁଃଖ ଓ ରୋଗ ଦୂର କରିବାର ବ୍ୟବସ୍ଥା କରିବାକୁ ରେଭିନ୍ୟୁ କମିଶନର୍ ଓ ସବ୍ ଡିଭିଜନାଲ ଅଫିସରଙ୍କୁ ଅନୁରୋଧ କରାଯାଇଛି । ଖାଇବାକୁ ନପାଇ ମରିଯାଇଥିବା ବ୍ୟକ୍ତିଙ୍କ ବିବରଣୀ ତଳେ ଦେଲି -

ରେକ ପଦର ଗ୍ରାମ : କଣ୍ଡାଗରେକୀରୁ ଓ କଣ୍ଡାଗରେ ସୁଜା, ବୟସ ୧୦ ଓ ୮ ବର୍ଷ । ପିତା ନାମ- ବଲାନା । ଖାଇବାକୁ ନପାଇ ଶାଗ ଡାଳ କେବଳ ଖାଇ ଆସ୍ତେ

ଆସ୍ତେ ଦୁର୍ବଳ ହୋଇପଡ଼ିଲେ । ଦୁର୍ବଳ ଅବସ୍ଥାରେ ଶାଗ ସିଝା ଆଉ ରୁଚିଲା ନାହିଁ । ଶେଷରେ ପେଜ ପେଜ କହି ମରିଗଲେ ।

ତଳଶିଖାବାଡ଼ି ଗ୍ରାମ : ପଦାବି ମାମିଡ଼ି ବୟସ ୩୦ ବର୍ଷ ପିତାନାମ - ପଦାବି ଏଙ୍କାଡୁ, ଏ ବିଚରା ପରିବାର ସହ ଶାଗ ଡାଳରେ ଜୀବନ ବଞ୍ଚାଇ ଆସୁଥିଲା । ଆସ୍ତେ ଆସ୍ତେ ଦୁର୍ବଳ ହୋଇ ଉଠି ପାରିଲା ନାହିଁ । ଲଗାଏତ ଚାରି ଦିନ ଉପବାସ ରହିବା ପରେ ବାଉଁଶ ଗଜା ପାଇଁ ସ୍ତ୍ରୀ ସହ ଜଙ୍ଗଲକୁ ଯାଇଥିଲା । ବାଉଁଶ ଗଜା ବାହାର କରି ତା' ସ୍ତ୍ରୀକୁ ଆଗରୁ ରୋଷେଇ କରିବାକୁ ପଠାଇଲା । ଭୋକରେ ଦୁର୍ବଳ ଲାଗୁଛି, ଚାଲି ପାରିବି ନାହିଁ କହି ଗଛମୂଳେ ପ୍ରାଣ ଛାଡ଼ିଦେଲା ।

ସାଲିବିଗ୍ରାମ : ମାଣ୍ଡାଙ୍ଗ ସିତାମ୍ମା (ସ୍ତ୍ରୀ) ବୟସ ୪୦ ବର୍ଷ । ସ୍ୱାମୀନାମ : ଆଡାଲୁ ମୁସିଲୋଡୁ, ଖାଇବାକୁ ନପାଇ ଶାଗ ଡାଳରେ ଜୀବନ ବଞ୍ଚାଇଥିଲା । ଆସ୍ତେ ଆସ୍ତେ ଦୁର୍ବଳ ହୋଇ ପ୍ରାଣ ଛାଡ଼ିଦେଲା ।

ଗତବର୍ଷ ଏହିଭଳି ଶହେ ଜଣ ଯାଏ ଗୁଣୁପୁର ଓ ରାୟଗଡ଼ ତାଲୁକରେ ଖାଇବାକୁ ନପାଇ ମରିଯାଇଥିଲେ । ଏହି ବରଷ ଏ ତିନି ଗ୍ରାମରେ ଚାରି ଜଣ ଖାଇବାକୁ ନପାଇ ମରିଯାଇଛନ୍ତି । ଅଜଣାଭାବେ ମଧ କାଁଭାଁ ମରିଥିବେ । ଏମାନଙ୍କ ଜୀବିତ ପରିବାର ମର ମର ଅବସ୍ଥାରେ ଭୋକରେ କଲବଲ ହେଉଛନ୍ତି ଏବଂ ତୋପରାଗୋଡ଼ା ଗ୍ରାମର ପିରାବାକା କାଲି ନାମକ ବ୍ୟକ୍ତି ଖାଇବାକୁ ନପାଇ ମରମର ଅବସ୍ଥାରେ ରହିଛି । ମରିଯିବାର ବିଶେଷ ସମ୍ଭବାନା ରହିଛି । ଏତେ ଦୁଃଖରେ ମଧ ମନୁଷ୍ୟ ବଞ୍ଚିବାକୁ ଚେଷ୍ଟା କରୁଛି, ଏ ହେଉଛି ଆଶ୍ଚର୍ଯ୍ୟର କଥା । ଭଗବାନଙ୍କର ଏ ବିଚିତ୍ର ଲୀଳା । ଧନ୍ୟ ତାଙ୍କର ବୁଝାବଣା । ଏଥିପାଇଁ ଭଗବାନଙ୍କୁ କେବଳ ଦାୟୀ କରାଯିବ ନାହିଁ, ରାଜ୍ୟ ସରକାର ହେଉଛନ୍ତି ଏଥିପାଇଁ ବିଶେଷ ଦାୟୀ । ଯେହେତୁ ଜାଣି ଶୁଣି ପ୍ରତିକାର ନକରି ଆଖିବୁଜି ଚାଲିଛନ୍ତି ।''

ଏ ଚିଠିଟି ସମ୍ପୂର୍ଣ୍ଣ ଦେବାର କାରଣ ତତ୍‌କାଳୀନ ସାମାଜିକ ଅବସ୍ଥାର ଚିତ୍ର ଦେବା ସଙ୍ଗେ ସଙ୍ଗେ ବିଶ୍ୱନାଥ ପଟ୍ଟନାୟକଙ୍କ ପରବର୍ତ୍ତୀ କାର୍ଯ୍ୟାବଳୀ ପାଇଁ ଏହା କିପରି ଭିତ୍ତିଭୂମି ହୋଇଥିଲା ତା'ର ସୂଚନା ଦେବା ।

## ଅନାହାର ମୃତ୍ୟୁର ସରକାରୀ ସ୍ପଷ୍ଟିକରଣ :

ରାୟଗଡ଼ା ଖାଦ୍ୟ ପରିସ୍ଥିତି ସମ୍ପର୍କରେ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀଯୁକ୍ତ ଟି. ସାଙ୍ଗନା ବିବୃତି ଦେଇ ଅନାହାରରେ କେହି ମରିନାହାନ୍ତି ବୋଲି କହିଲେ । ସେହି ବିବୃତିରେ ସେ

କହିଥିଲେ ଯେ ଏହି ସବ୍‌ଡିଭିଜନ୍‌ରେ ଅନାହାରରେ କେତେକ ଲୋକ ପ୍ରାଣ ହରାଇଛନ୍ତି ଓ ଖାଦ୍ୟାଭାବ ଯୋଗୁଁ ଲୋକେ ଚେରମୂଳ ଖାଇ ଜୀବନ ଧାରଣ କରିଛନ୍ତି ବୋଲି ଗତ ଅଳ୍ପ କେତେଦିନ ତଳେ ସମାଜରେ ପ୍ରକାଶିତ ଏକ ସମ୍ବାଦ ପଢ଼ି ମୁଁ ଏ ଅଞ୍ଚଳରେ ବିଭିନ୍ନ ସ୍ଥାନରେ ଗସ୍ତ କରିଥିଲି । ପ୍ରାୟ ୧୫ ଦିନ କାଳ ଏ ସମ୍ପର୍କରେ ରାୟଗଡ଼ା ସବ୍‌ଡିଭିଜନରେ ନାନା ସ୍ଥାନରେ ତଦନ୍ତ କରିଥିଲି । କିନ୍ତୁ ଜଣେ ହେଲେ ଲୋକ ଅନାହାରରେ ପ୍ରାଣ ହରାଇଥିବାର ପ୍ରମାଣ ପାଇ ନାହିଁ । ଯେଉଁ କେତେକ ଲୋକଙ୍କର ମୃତ୍ୟୁ ଘଟିଛି ସେମାନେ ବହୁଦିନ ଧରି ଯକ୍ଷ୍ମା ଓ ଅଜୀର୍ଣ୍ଣ ରୋଗରେ ପଡ଼ିଥିଲେ ।

ବିଶ୍ୱନାଥଙ୍କ ପ୍ରକାଶିତ ଲେଖା ଯେ ସଂପୂର୍ଣ୍ଣ ଭୁଲ ଏହା ହିଁ ବୋଧେ ସେ କହିବାକୁ ଚାହିଁଥିଲେ, ଏହା ହିଁ ଥିଲା କ୍ଷମତାରେ ନଥିବା ଓ କ୍ଷମତାରେ ଥିବା ଲୋକଙ୍କ ବିଚାରଧାରା । ଅନାହାରରେ ନଖାଇ ଲୋକ ମରିବା ଯଦିଓ ସତ୍ୟ, ଶାସନ ଏହାକୁ ସ୍ୱୀକାର କରେ ନାହିଁ, ନିଜ ଛବିକୁ ମଳିନ ନକରାଇବା ପାଇଁ । ଏହା ହିଁ ଏ ଦେଶର ଦୁର୍ଭାଗ୍ୟ । ଏଠି ସତ୍ୟ ହିଁ ସବୁଠୁ ବଡ଼ ମିଛର ରୂପ ନିଏ ।

## ନୂତନ ଆନ୍ଦୋଳନର ସନ୍ଧାନରେ ବିଶ୍ୱନାଥ :

୧୯୪୭ରୁ ୧୯୫୧ ଦୀର୍ଘ ଚାରି ବର୍ଷ କାଳ ବିଶ୍ୱନାଥ ଅନୁଭବ କଲେ ସତେ ଯେମିତି ସେ କିଛି କରିନାହାନ୍ତି । ଭୂଆଁ ବୁଲିଯାଇଛନ୍ତି । ସେ କଳ୍ପନା କରିଥିଲେ ଦେଶ ସ୍ୱାଧୀନ ହେଲେ ସରକାର ଆଦିବାସୀଙ୍କ ସମସ୍ୟାର ସମାଧାନ ପାଇଁ ଆନ୍ତରିକ ଉଦ୍ୟମ କରିବେ । ନିରନ୍ତର ଚେଷ୍ଟା କରିବେ । ସେ ଅନୁଭବ କଲେ, କୁଜେନ୍ଦ୍ରୀ, ରାୟଗଡ଼ା, ଗୁଣୁପୁର ତାଲୁକାର ଆଦିବାସୀର ସମସ୍ୟା ଭୂମିକୁ ନେଇ । ତା'ର ପୂର୍ବପୁରୁଷ ଲୁହ ଲହୁ ଦେଇ ପଥର ହଟାଇ, ବଣତାଡ଼ି ଯେଉଁ ଜମି ଉଠିଆ କରିଥିଲା, ତା ଆଉ ତା'ର ହୋଇ ରହି ନାହିଁ । ତା' ଅଭାବୀ ଜୀବନର ସୁଯୋଗ ନେଇ ଅଣ-ଆଦିବାସୀ ସେ ଜମି ମାଡ଼ିବସିଛି । ସତ୍ୱଧାରୀ ହୋଇଛି । ଜମି କମଉଛି । ଅୟସରେ ଅଛି । ସେଇ ଜମିରେ ଆଦିବାସୀ ଗୁତା, ଭାଗଚାଷ କରୁଛି । ପେଟକୁ ଦାନା ଅଣ୍ଟୁନାହିଁ, ପିଠିକୁ କନା ନାହିଁ । ହାହାକାର ଜୀବନ ନେଇ ସେ କହିପାରୁନାହିଁ ନିଜକଥା । ଅସହାୟତାର କରୁଣ ମୂର୍ତ୍ତି ହୋଇ ଯେମିତି ସେ ପଥର ପାଲଟି ଯାଇଛି । ବିଶ୍ୱନାଥଙ୍କର ମନେହେଲା ସେ ଅନ୍ୟାୟର ପକ୍ଷ ସମର୍ଥନ କରୁଛନ୍ତି କି ? ସରକାର ଉପରେ ବିଶ୍ୱସ ସ୍ଥାପନ କରି ସତେ ଯେମିତି ସେ ଆଦିବାସୀ ସମସ୍ୟାର ସମାଧାନ ପାଇଁ ବାଟ ପାଉନାହାନ୍ତି । ସେ ପାଲଟି ଯାଉଛନ୍ତି ଅନ୍ୟାୟପକ୍ଷର ମୂକ ସାକ୍ଷୀ ଯେମିତି ।

ସେ କ'ଣ ଏଇଥି ପାଇଁ ଆସିଥିଲେ ଏ ମାଳ ଅଞ୍ଚଳକୁ ? ଏଇ ପ୍ରଶ୍ନ ବାରମ୍ବାର ତାଙ୍କ ମନକୁ ଚହଲାଇ ଦେଲା । ସେତେବେଳକୁ କମ୍ୟୁନିଷ୍ଟ ଗୋଳ ଶୁଭିଲାଣି ଦେଶରେ । ପାଖ ମାନ୍ଦ୍ରାଜ ପ୍ରଦେଶ (ଏବେ ଆନ୍ଧ୍ର ପ୍ରଦେଶ)ର ତେଲେଙ୍ଗାନା ଅଞ୍ଚଳରେ ଜମି ମାଲିକମାନଙ୍କ ଠାରୁ ଜମିହୀନମାନେ ହିଂସା ଓ ବଳପ୍ରୟୋଗ ପୂର୍ବକ ଜମି ଦଖଲ କରିନେବା ପାଇଁ ଅଣ୍ଟା ଭିଡ଼ିଲେଣି । ହିଂସାକାଣ୍ଡ ଘଟାଇଲେଣି । ବିଶ୍ୱନାଥ ଘଟଣାର କାର୍ଯ୍ୟକାରିତା ବିଶ୍ଳେଷଣ କଲେ । ହଠାତ୍ ସେ ମନେକଲେ ମହାତ୍ମା ଗାନ୍ଧୀଙ୍କ ପ୍ରଦର୍ଶିତ ମାର୍ଗ ହିଁ ଏକମାତ୍ର ପନ୍ଥା । ସତ୍ୟ ଓ ଅହିଂସା ମାଧ୍ୟମରେ ଆଦିବାସୀ ସମସ୍ୟାର ସମାଧାନ କରାଯାଇ ପାରିବ । ସେ ହୋଇଗଲେ ଗାନ୍ଧୀବାଦୀ, ଅହିଂସ ସମାଜବାଦୀ । ଆଦିବାସୀଙ୍କୁ ଅର୍ଥନୈତିକ ଶୋଷଣରୁ ମୁକ୍ତ କରିବାକୁ ପଦକ୍ଷେପ ନେବାକୁ ହେବ । ସ୍ଥାନୀୟ ସମସ୍ୟା ଏହା । ଏହାର ମୂଳ ଖୋଜି ପ୍ରତିକାରର ନିଦାନ ବାହାର କରିବାକୁ ହେବ । ସେ ମନେକଲେ ସଂଗ୍ରାମ ଆହୁରି ସରିନାହିଁ । ସ୍ୱାଧୀନତା ଆହୁରି ଆସିନାହିଁ । ସମାଜରେ ଶୋଷଣ ଥିବା ଯାଏ, ଶୋଷିତମାନେ ଏମିତି ଦୟନୀୟ ଜୀବନ ବଞ୍ଚୁଥିବେ । ସର୍ବୋଦୟନେତାଙ୍କ ଚିନ୍ତା ଚେତନା ଭିତରେ ଥାଇବି ସେ ହୋଇଗଲେ ବିପ୍ଳବୀ । ସେ ସ୍ଥିରକଲେ ଆଦିବାସୀମାନେ ତାଙ୍କୁ ନିଜ ଲୋକ ବୋଲି ଭାବନ୍ତି । ସେମାନଙ୍କୁ ପୁଣିଥରେ ସଂଗଠିତ କରିବାକୁ ହେବ, ସେ ବହୁଚିନ୍ତା କରି, ମାନସ ମନ୍ଥନ କରି ଶେଷରେ ସେମାନଙ୍କୁ କହିଲେ, ''ଅର୍ଥନୈତିକ ଶୋଷଣରୁ ମୁକ୍ତ ହେବା ପାଇଁ ନିଜେ ପ୍ରସ୍ତୁତ ହୁଅ, ସ୍ୱର ଉଠାଅ । ତୁମ ପାଇଁ ଅନ୍ୟ କେହି କହନ୍ତୁ ଅବା ନକହନ୍ତୁ, ତୁମେ ନିଜେ କୁହ ।''

ଏମିତି ଏକ ସମ୍ପୂର୍ଣ୍ଣକ୍ରାନ୍ତିର ବୀଜ ଅଙ୍କୁରିତ ହେଲା ତାଙ୍କ ମନରେ । ଏହାଥିଲା ପୂର୍ବ ରଚନାତ୍ମକ କର୍ମଠାରୁ ପୂରାପୂରି ଅଲଗା । ସେ ନିଜ ମନର ସଂଶୟ ଓ ସମାଧାନ ପାଇଁ ବାଟ ବତାଇବାକୁ ବାପା ଗୋପବନ୍ଧୁ ଚୌଧୁରୀଙ୍କୁ ଚିଠି ଲେଖିଲେ । ଦିଗଦର୍ଶନ ଚାହିଁଲେ । କ'ଣ କଲେ ଏହି ଭୂ-ସମସ୍ୟାର ସମାଧାନ କରିହେବ । ୧୯୫୧ ଏପ୍ରିଲ ମାସ ୧୮ ତାରିଖରେ ଅହିଂସା ଭୂମି ବିପ୍ଳବ 'ଭୂଦାନ' ଆରମ୍ଭ ହେଲା ବିନୋବାଜୀଙ୍କ ନେତୃତ୍ୱରେ ତେଲେଙ୍ଗାନାରେ । ତା'ର ଅଳ୍ପ ଦିନ ପରେ କୁଜେନ୍ଦ୍ରୀରେ ବିଶ୍ୱନାଥ ଆରମ୍ଭ କଲେ 'ଭୂ-ସତ୍ୟାଗ୍ରହ' ।

❋ ❋ ❋

# ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ : ଭୂ-ସତ୍ୟାଗ୍ରହ

କୋରାପୁଟ ଆଦିବାସୀଙ୍କ ଭୂ-ସମସ୍ୟା ଓ ତା'ର ପ୍ରତିକାର ପାଇଁ ଯେଉଁ ଚେଷ୍ଟା ରାୟଗଡ଼ା ଓ ଗୁଣୁପୁର ତାଲୁକାରେ ବିଶ୍ୱନାଥ ପଟ୍ଟନାୟକଙ୍କ ନେତୃତ୍ୱରେ ହୋଇଥିଲା ତାହା ଏକ ବ୍ୟାପକ ଅହିଂସ ଆନ୍ଦୋଳନର ରୂପ ନେଇଥିଲା ଯହିଁରେ ଭୂମିହୀନ ଆଦିବାସୀ, ଜମି ମାଡ଼ି ବସିଥିବା ସ୍ୱଚ୍ଛଳଗୋଷ୍ଠୀ, ଅସାମାଜିକ ତତ୍ତ୍ୱ, ସରକାର, ଆଇନ ଶୃଙ୍ଖଳା ରକ୍ଷା ପାଇଁ ଥିବା ପୋଲିସ୍ ସମସ୍ତେ ଜଡ଼ିତ ହୋଇ ପଡ଼ିଥିଲେ ଏବଂ ଏହାର ଏକ ସୁଦୂର ପ୍ରସାରୀ ପ୍ରଭାବ ପଡ଼ିଥିଲା । ଓଡ଼ିଶା ସରକାର ଏହି ଆନ୍ଦୋଳନର ଯଥାର୍ଥତାକୁ ସ୍ୱୀକାର କରି ଯଥାବିଧି ପଦକ୍ଷେପମାନ ନେଇଥିଲେ ।

## ସ୍ୱାଧୀନ ଭାରତର ପ୍ରଥମ ତିନିବର୍ଷ (୧୯୪୭-୫୦) :

ମହାତ୍ମାଙ୍କ ମୃତ୍ୟୁପରେ କଂଗ୍ରେସ ଦଳରେ ଥିବା କର୍ମୀମାନେ ଚିନ୍ତା ଓ ଚେତନାରେ ଦୁଇ ଭାଗ ହୋଇଗଲେ । ଦଳେ ଶାସନ ଗାଦୀରେ ବସି ଭୋଗଭାଗ୍ୟ ଇଛିଲେ । ଦଳେ ବିଶୁଦ୍ଧ ଗାନ୍ଧୀବାଦୀ ପୂର୍ବପରି ରଚନାତ୍ମକ କର୍ମୀଭାବେ ସଂଗଠନ କାର୍ଯ୍ୟ କରିବା ପାଇଁ ମନ ସ୍ଥିର କଲେ । ଗାନ୍ଧିଜୀଙ୍କ ମୃତ୍ୟୁପରେ ନେତୃତ୍ୱର ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା ତାକୁ ପୂରଣ କରିବା ପାଇଁ ରଚନାତ୍ମକ କର୍ମୀମାନେ ୩ ବର୍ଷ କାଳ ନେତା ଖୋଜିବାରେ କଟାଇଦେଲେ । ନୂତନ ଗତିପଥର ସନ୍ଧାନରେ ବାରମ୍ବାର ସମ୍ମିଳନୀମାନ କଲେ । ଏହି ସମୟସୀମା ଭିତରେ କେତେକ କର୍ମୀ ସରକାରଙ୍କୁ ସମର୍ଥନ କରି ସରକାରୀ କାମରେ ଜଡ଼ିତ ହେଲେ । କିଏ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ହେଲା ତ କିଏ ଲୋକାଲବୋର୍ଡ଼ରେ ରହିଲା, କିଏ ସମବାୟ ସମିତି ସଭାପତି ହେଲା ତ, କିଏ ସ୍କୁଲ ପରିଚାଳନା କମିଟୀରେ ସର୍ବେସର୍ବା ହେଲା । କ୍ଷମତା ଡୋରରେ ବାନ୍ଧି ହୋଇ, ପୂର୍ବକଥାକୁ ପାଶୋରିଲେ । ଅନ୍ୟ କେତେକ ଏ ସଂଗଠନରେ ପଶି ଦେଶସେବା ବଦଳରେ ନିଜସେବାକୁ ବେଶି ମହତ୍ତ୍ୱ ଦେଲେ । ମୂଲ୍ୟବୋଧର ଅବକ୍ଷୟ ଓ ଚାରିତ୍ରିକ ସ୍ଖଳନର ଯୁଗ ଆରମ୍ଭ ହେଲା । କେତେକ କର୍ମୀ ଦୁର୍ନୀତିକୁ ନିଜ ସଂଗ୍ରାମର ସର୍ବଶ୍ରେଷ୍ଠ ଫଳ ବୋଲି ମନେକଲେ । ଏମାନଙ୍କୁ କାମିନୀ କାଞ୍ଚନର ମାୟା ବେଶି ବେଶି ଘାରିଲା । ସେବାନାମରେ ପାର୍ଥିବ ସୁଖଭୋଗର ଗୋଟିଏ ସୁଚିନ୍ତିତ ସୁନିୟୋଜିତ ରାସ୍ତା ଏମାନେ ପାଇଗଲେ । ଚିଙ୍ଗୁଡ଼ି ଗୁଚ୍ଛି ଶେଉଳ ଧରିଲେ ।

ଏମାନେ ଧନୀକୁ ଭଜିଲେ, ନିର୍ଦ୍ଧନକୁ ସାଧିଲେ, ତଥାପି ନେତା ବୋଲାଇଲେ । ଏମାନଙ୍କ କାର୍ଯ୍ୟକଳାପ, ନୀତିହୀନତା, ସ୍ୱାର୍ଥସର୍ବସ୍ୱତା ଦେଖି ଗଠନାତ୍ମକ କର୍ମୀ କାବାକାଠ ହୋଇ ଏମାନଙ୍କଠୁଁ ଶହେ ହାତ ଦୂରରେ ରହିଲେ । ଖାଇ ଚଉଡ଼ା ହେଲା । ମନ ଅଲଗା ହୋଇଗଲା । ଗାଦିବସା କର୍ମୀମାନେ ଫୁଲିଲେ, ଫଳିଲେ, ବଡ଼ବୋଲା ହେଲେ । କ୍ଷମତାର ଶିଙ୍ଗା ବଜାଇ ଚଉଦିଗ ଚମକାଇଲେ । ଏମାନଙ୍କ ଫନ୍ଦି ଫକିର ହୁନ୍ଦର ଦିନରେ ଦିଗୁଣ, ରାତିରେ ଚାରିଗୁଣ ବଢ଼ିଲା । ଗାନ୍ଧୀବାଦରେ ସ୍ୱାର୍ଥବାଦ ପ୍ରବେଶ କଲା, ଏହାକୁ ରୋକିବାକୁ ରଚନାତ୍ମକ କର୍ମୀମାନେ ସମର୍ଥ ହେଲେ ନାହିଁ ।

ମହାତ୍ମାଗାନ୍ଧୀଙ୍କ ମହାପ୍ରୟାଣ ଠାରୁ ତେଲେଙ୍ଗାନା ଆନ୍ଦୋଳନ ପର୍ଯ୍ୟନ୍ତ ଦୀଘ ୩ ବର୍ଷ କାଳ ରଚନାତ୍ମକ କର୍ମୀମାନେ ଯଥେଷ୍ଟ ନେତୃତ୍ୱ ନେଇ ନପାରିବାରୁ ହିଂସାର ଦର୍ଶନ ଲୋକମାନଙ୍କ ମଧ୍ୟରେ ପ୍ରବେଶ କଲା । କମ୍ୟୁନିଷ୍ଟ ଦର୍ଶନର ପ୍ରସାର ଓ ପ୍ରଚାର ଫଳରେ ଭୂମିହୀନ କୃଷକମାନେ ହିଂସାତ୍ମକ ଉପାୟରେ ନିଜର ଅଧିକାର ସାବ୍ୟସ୍ତ କରିବା ପାଇଁ ପ୍ରରୋଚିତ ହେଲେ । ତେଲେଙ୍ଗାନା ଅଞ୍ଚଳର ଉତ୍କଟ ଭୂ-ସମସ୍ୟା ଓ ଧନୀମାନଙ୍କ ଭୂମିହୀନଙ୍କ ପ୍ରତି ହିଂସା ଓ ପ୍ରତିଶୋଧର ମନୋବୃତ୍ତି ଏକ ବିସ୍ଫୋରକ ପରିସ୍ଥିତିକୁ ଜନ୍ମଦେଲା, ଆର୍ଥିକ ଅସମାନତା ଓ ଶୋଷଣ ବିରୁଦ୍ଧରେ ହିଂସାର ପଥ ବାଛିନେବା ଯୁକ୍ତିଯୁକ୍ତ ବୋଲି କମ୍ୟୁନିଷ୍ଟମାନେ କହିଲେ । ସମାଜର ଶୋଷିତ, ଦଳିତ ଗୋଷ୍ଠୀ ସେମାନଙ୍କୁ ଶୁଣିଲେ ।

୧୯୫୧ ମସିହା ଯାଏ କଂଗ୍ରେସ ଦଳର ନୀତି ଅନୁଯାୟୀ ଆର୍ଥିକ ସମାନତା ଆଣିବା ଲକ୍ଷ୍ୟପୂରଣ ପାଇଁ ଏମାନେ କୌଣସି ଦୃଢ଼ ପଦକ୍ଷେପ ନେଇ ପାରିଲେ ନାହିଁ ।

## ୧୯୫୧ ଏପ୍ରିଲ ୧୮ ତାରିଖ : ଭୂଦାନ ଆନ୍ଦୋଳନର ଐତିହାସିକ ଆରମ୍ଭ :

ସେଦିନ ଆନ୍ଧ୍ର ପ୍ରଦେଶର ପୋଚମପଲ୍ଲୀରେ ବିନୋବାଭାବେ ସଭାରେ ଗରିବ, ଭୂମିହୀନମାନଙ୍କୁ ସ୍ୱଚ୍ଛଳ, ଭୂ-ମାଲିକମାନେ ସ୍ୱଇଚ୍ଛାରେ ଭୂମିଦାନ କରିବା ପାଇଁ ନିବେଦନ କଲେ, ଯାହାଫଳରେ ସମସ୍ତେ ସୁଖ ଓ ଶାନ୍ତିରେ ରହିବେ । ସନ୍ଧ୍ୟା ପ୍ରାର୍ଥନା ସଭାରେ ବିନୋବାଙ୍କ ଭାଷଣ ହେଲା । ତାଙ୍କ ଆବେଦନ ଶୁଣି ପୋଚମପଲ୍ଲୀର ଜଣେ ଧନୀ ଭୂ-ମାଲିକ ଗରିବମାନଙ୍କ ପାଇଁ ସ୍ୱେଚ୍ଛାରେ ନିଜର ୧୦୦ ଏକର ଜମି ଦାନକଲେ । ଏହାର ପ୍ରଭାବ ଏମିତି ହେଲା ଯେ ବିନୋବାଜୀ ଭାବ ଗଦ୍‌ଗଦ୍ ହୋଇଉଠିଲେ । ସେ ଭାବିଲେ

ଲୋକଙ୍କୁ ବୁଝାଇ ପାରିଲେ, ହୃଦୟ ବଦଳାଇ ପାରିଲେ, ପୋଚମପଲ୍ଲୀର ସେଇ ରାମଚନ୍ଦ୍ର ରେଡଡ୍ଡୀଙ୍କ ପରି ବହୁ ଦାତା ଭୂଦାନ ଦେବେ ଏବଂ ଗରିବଙ୍କର ଉପକାର ହେବ । ସେ ଆନ୍ଧ୍ରରେ ଅଢ଼େଇ ମାସ ବୁଲି, ସଭା, ସମ୍ମିଳନୀ କରି ପ୍ରାୟ ୧୩ ହଜାର ଏକର ଜମି 'ଭୂଦାନ' ଭାବେ ସଂଗ୍ରହ କରିଥିଲେ ଏବଂ ଉକ୍ତ ଜମିକୁ ଭୂମିହୀନଙ୍କୁ ବଣ୍ଟାଗଲା, ଏମିତି ଆରମ୍ଭ ହେଲା ବିନୋବାଙ୍କ ପ୍ରବର୍ତ୍ତିତ ଭୂଦାନ ଯଜ୍ଞ ଏହା ଓଡ଼ିଶାରେ ପହଞ୍ଚିବାକୁ ଲାଗିଗଲା ଚାରି ବର୍ଷ । ତା' ପୂର୍ବରୁ ବିଶ୍ୱନାଥ ପଟ୍ଟନାୟକ ଗୁଣୁପୁର ଅଞ୍ଚଳରେ ବହୁ ଭାବିଚିନ୍ତି ଆରମ୍ଭ କଲେ ଭୂ-ସତ୍ୟାଗ୍ରହ ଆନ୍ଦୋଳନ ।

## ଭୂ-ସତ୍ୟାଗ୍ରହ ଆନ୍ଦୋଳନ କାହିଁକି ?

୧୯୪୦-୪୧ରୁ ବିଶ୍ୱନାଥ ପଟ୍ଟନାୟକ କୁଚ୍ଚେନ୍ଦ୍ରୀ, ଗୁଣୁପୁର ଓ ରାୟଗଡ଼ା ଅଞ୍ଚଳର ଶହ ଶହ ଗାଆଁ ବୁଲି, ସେଠା ଆଦିବାସୀଙ୍କ ଜୀବନଯାପନ ପ୍ରତ୍ୟକ୍ଷ କରିଥିଲେ । ସେ ଅଞ୍ଚଳରେ ୧୦୦ରୁ ୯୦ କି ୯୫ ଆଦିବାସୀ ଆଉ ଯେଉଁ ୫ କି ୧୦ ଭାଗ ଲୋକ ରହିଲେ ସେମାନଙ୍କ ହାତରେ ସବୁ ଜମି । ସେମାନେ ନାନା ଫନ୍ଦିଫିକର କରି, ଆଦିବାସୀଙ୍କ ସରଳତା ଓ ଅଭାବର ସୁଯୋଗ ନେଇ ତାଙ୍କ ପୂର୍ବପୁରୁଷଙ୍କ ଠାରୁ ଜମି ତକ ହାତେଇ ନେଇଥିଲେ । ସେମାନେ ମୁଖ୍ୟତଃ ତେଲୁଗୁ କୁମୁଟି-ସାହୁକାର, କେତେ ଧନୀ ଓଡ଼ିଆ ବ୍ରାହ୍ମଣ-ସାହୁକାର, ଓଡ଼ିଆ ଶୁଣ୍ଡୀ ଓ ତେଲୁଗୁ ଶୁଣ୍ଡୀ ସାହୁକାର । ନାନା ଉପାୟରେ ସେମାନେ ଆଦିବାସୀଙ୍କ ହାତରୁ ଜମି ନେଇ ଯାଇଥିଲେ । ପୂର୍ବପୁରୁଷଙ୍କ ଜମି ଚାଲିଯିବାରୁ ତାଙ୍କ ପିଲାମାନେ ହୋଇଗଲେ କାଙ୍ଗାଳ, ଦରିଦ୍ର, ଜମିହୀନ ।

ଆଦିବାସୀଙ୍କ ଅବସ୍ଥା ଦୟନୀୟ । ସାହୁକାରମାନେ ସବୁ ଜମି ମାଡ଼ି ବସିଛନ୍ତି । ଆଦିବାସୀର ଯଦି ହଳ ବଳଦ ଅଛି, ସାହୁକାର ତାକୁ ଭାଗରେ ଚାଷ କରିବାକୁ ଜମିଦବ । ଆଦିବାସୀ ନିଜେ ହଳ କରିବ, ବିହନ ବୁଣିବ, ଜମି ବାଛିବ, ଫସଲ ଅମଳ କରିବ, ସାହୁକାର ଜମି ଦେଇଛି ବୋଲି ମଞ୍ଜିଟିଏ ଖର୍ଚ୍ଚ ନକରି ନବ ମୋଟ ଫସଲରୁ ଅଧେ ଆଉ ଯଦି ସାହୁକାର ନିଜେ ହଳ ବଳଦ, ବିହନ ଦେବ, ଭାଗଚାଷୀ ପାଇବ ଶତକଡ଼ା କୋଡ଼ିଏ କି ତିରିଶି ଭାଗ ଫସଲ । ସାହୁକାର ନେଲାବେଳକୁ ମାପିବ ବଡ଼ ଖାରା ପିତଳ ମାଣରେ ଆଉ ଦେଲାବେଳକୁ ମାପିବ ଛୋଟ ମାଣରେ । ସବୁ କ୍ଷେତ୍ରରେ ପ୍ରପଞ୍ଚ, ବେଇମାନି, ଠକାମି । ଯେଉଁବର୍ଷ ଫସଲ ହବନାହିଁ, ସେଥିପାଇଁ ଭାଗଚାଷୀ ସର୍ତ୍ତ ଅନୁସାରେ ସେତିକି ଧାନ ଦେବାକୁ ବାଧ ହେବ, ଦେଇ ନପାରିଲେ କରଜ ତଳକୁ ଗୋଡି ଖଟିବ ।

ଏହା ଯେତେବେଳେ ବେଶି ବଢ଼ିଗଲା ୧୯୧୭ ମସିହାରେ ଆଦିବାସୀଠୁ ଅଣ-ଆଦିବାସୀ ହାତକୁ ଜମି ହସ୍ତାନ୍ତର ବନ୍ଦ କରିବା ଉଦ୍ଦେଶ୍ୟରେ ଏଜେନ୍ସି ଅଞ୍ଚଳ ପାଇଁ ଏ.ଟି.ଆଇ.ଏଲ.ଟି. ଆକ୍ଟ ହେଲା । ଏଥିରେ ବ୍ୟବସ୍ଥା ରହିଲା ଯେ ଜଣେ କଲେକ୍ଟର ସେଠି ଲାଟ ସାହେବଙ୍କ ପ୍ରତିନିଧି ବା 'ଏଜେଣ୍ଟ ଟୁ ଦି ଗଭର୍ଣ୍ଣର' ହୋଇ ରହିବେ । ଏସ୍.ଡ଼ି.ଓ, ସରକାରଙ୍କ ସହକାରୀ ପ୍ରତିନିଧି । ସ୍ପେଶାଲ ଆସିଷ୍ଟାଣ୍ଟ ଏଜେଣ୍ଟ ଟୁ ଦି ଗଭର୍ଣ୍ଣର' ହେବେ । ଏହି ଆକ୍ଟର ନିୟମ ଅନୁସାରେ ସରକାରଙ୍କ ବିନା ଅନୁମତିରେ ଆଦିବାସୀ ମାନେ ଜମି ବିକ୍ରୟ କରିପାରିବେ ନାହିଁ କି ବନ୍ଧକ ରଖିପାରିବେ ନାହିଁ । ଯଦି କୌଣସି କ୍ଷେତ୍ରରେ ଏହା ଆଦିବାସୀ ହାତରୁ ଅଣ-ଆଦିବାସୀ ହାତକୁ ଆସେ ତାହାହେଲେ ଏହି ହସ୍ତାନ୍ତର ଅବୈଧ (ଆଇନ ସମ୍ମତ ହେବ ନାହିଁ), କଲେକଟର କିମ୍ବା ଏସ୍.ଡ଼ି.ଓ.ଙ୍କୁ ଯଦି ସେ ଆଦିବାସୀ ଦରଖାସ୍ତ କରେ ଏବଂ ଯଦି ତଦନ୍ତରୁ ଘଟଣା ସତ ହୋଇଥିବାର ଜଣାଯିବ ତେବେ ସେ ଜମି ଅଣ ଆଦିବାସୀ ହାତରୁ ଛଡ଼େଇ ନେଇ ସେହି ଆଦିବାସୀଙ୍କୁ ବା ସେ ନଥିଲେ ତା'ର ଉତ୍ତରାଧିକାରୀକୁ ଫେରାଇ ଦିଆଯିବ । ଯଦିଓ ଆଇନ ହେଲା, ଏହା କାର୍ଯ୍ୟକାରୀ ନହେବା ଫଳରେ ଗୁଣୁପୁର ତାଲୁକ ଓ ରାୟଗଡ଼ା ତାଲୁକର ସବୁ ଆଦିବାସୀ ଜମି ଅଣ ଆଦିବାସୀଙ୍କ ହାତକୁ ଚାଲିଗଲା । ଆଇନ ଡାଳେ ଡାଳେ ଗଲାବେଳକୁ ସାହୁକାରମାନେ ପତ୍ରେ ପତ୍ରେ ଗଲେ ।

୧୯୪୮ରେ ଡଃ ମହତାବ ମନ୍ତ୍ରୀମଣ୍ଡଳ ତା ୨୩.୩.୪୮ ସରକାରୀ ଆଦେଶନାମା ସଂଖ୍ୟା ୩୧୮୯ ଆର ଅନୁସାରେ ବ୍ୟବସ୍ଥା ଖଞ୍ଜିଦେଲେ ଯେ, ଏ.ଟି.ଆଇ.ଏଲ.ଟି. ଆକ୍ଟ ଅନ୍ତର୍ଗତ ଘଟଣାକୁ ମଧ୍ୟ ଲିମିଟେସନ୍ ଆକ୍ଟର ନିୟମ ଲାଗୁ ହେବ । ଅର୍ଥାତ୍ ଯେଉଁ ଅଣ ଆଦିବାସୀମାନେ ୧୯୩୬ ମାର୍ଚ୍ଚ ୨୩ ତାରିଖ ଠାରୁ ଆଦିବାସୀ ଜମି ଭୋଗ ଦଖଲ କରି ଆସିଛନ୍ତି ତାଙ୍କ ଠୁ ୧୯୧୭ର ଆକ୍ଟ ଅନୁଯାୟୀ ଜମି କାଢ଼ି ଆଣି ହେବ ନାହିଁ ଏବଂ ଯଦି ଜମି ୧୯୧୭ ପରେ ହସ୍ତାନ୍ତରିତ ହୋଇଥାଏ ଆଉ ଦଖଲକାରୀ ଉକ୍ତ ଜମିକୁ ୧୨ ବର୍ଷ ଲଗାତାର ଦଖଲ ଭୋଗ କରିଥାଏ ତାକୁ ଆଉ ଦଖଲଚ୍ୟୁତ କରିହେବ ନାହିଁ । ଏହି ଆକ୍ଟ ଫଳରେ ଅଣ-ଆଦିବାସୀ ଭୂଦଖଲକାରୀ ମାନେ ହିଁ ବେଶି ଉପକୃତ ହେଲେ । ଆଦିବାସୀ ସେମିତି ନିଃସ୍ୱ, କାଙ୍ଗାଳ ହୋଇ ରହିଲେ । ଏହିସବୁ ବ୍ୟବସ୍ଥାର କୁଫଳକୁ ଦେଖି ବିଶ୍ୱନାଥ ପଟ୍ଟନାୟକ ବହୁଚିନ୍ତା କରି ଏକ ଚରମ ପଦକ୍ଷେପ ନେବାକୁ ମନେ ମନେ ସ୍ଥିର କଲେ ।

ବିଶ୍ୱନାଥ କିପରି ନିଃସ୍ୱ ଅସହାୟ ମଣିଷର ଦୁଃଖରେ ଦୁଃଖୀ ହୋଇ ସମାଧାନ ପାଇଁ ବାଟ ଖୋଜୁଥିଲେ ସ୍ପଷ୍ଟ ଜଣାପଡ଼େ । ''ତୋ ଡାକ ଯଦି କିଏ ନ ଶୁଣେ ତୁ ଏକୁଟିଆ

ଚାଲରେ ବାଟୋଇ'', ଏହି ଲକ୍ଷ୍ୟ ରଖି ସେ ଭୂ-ସତ୍ୟାଗ୍ରହର ନିଷ୍ପତ୍ତି ନେଲେ ଏବଂ ପୂର୍ବୋକ୍ତ କାର୍ଯ୍ୟପ୍ରଣାଳୀକୁ କାର୍ଯ୍ୟାନ୍ୱିତ କରିବା ପାଇଁ ରାୟଗଡ଼ା ଓ ଗୁଣୁପୁର ଅଞ୍ଚଳର ପ୍ରାୟ ୩୦/୩୫ଟି ଗ୍ରାମର ମୁଖିଆ ଭୂମିହୀନ ଲୋକମାନଙ୍କ ସହ ସାକ୍ଷାତ କଲେ ଏବଂ ସେମାନଙ୍କ ସମସ୍ୟା ସହ ପ୍ରତ୍ୟକ୍ଷଭାବେ ଜଡ଼ିତ ହେଲେ । ସେ ଆଦିବାସୀଙ୍କ ମାନସିକତାକୁ କେତେ ଗଭୀର ଭାବରେ ଅନୁଭବ କରୁଥିଲେ ଏବଂ ତାଙ୍କ ନିରୀକ୍ଷଣ ଶକ୍ତି କେତେ ତୀକ୍ଷ୍ଣ ଥିଲା ନିମ୍ନ କଥାରୁ ଜଣାପଡ଼େ ।

ସାଧାରଣତଃ ଅଣ-ଆଦିବାସୀମାନଙ୍କ ସହିତ ଆଦିବାସୀମାନେ ମନଖୋଲା କଥାବାର୍ତ୍ତା କରନ୍ତି ନାହିଁ । ସରକାରୀ କର୍ମଚାରୀମାନଙ୍କ ସହିତ ପ୍ରାୟ ନୁହେଁ । ତାଙ୍କ ପାଇଁ ଏମାନେ ବିଶ୍ୱାସର ପାତ୍ର ନୁହଁନ୍ତି । କର୍ମଚାରୀମାନଙ୍କ ମାନସିକତା ନିଆରା । ସେମାନେ କେବଳ ସେମାନଙ୍କ କଥା କହିବେ ଆଉ କାହାର କଥା ଶୁଣିବା ପାଇଁ ସେମାନଙ୍କର ଧୈର୍ଯ୍ୟ ନଥିବ । ସେମାନେ ଭାବନ୍ତି ଯେଉଁ ଭଲ ଉଦ୍ଦେଶ୍ୟ ନେଇ ସେମାନେ ଆଦିବାସୀ ପାଖକୁ ଆସିଛନ୍ତି, ସେଇ ଉଦ୍ଦେଶ୍ୟଟିକୁ ଚଟ୍ କରି କହିଦେବେ ଏବଂ ଆଦିବାସୀ ତା' କଥାର ମଞ୍ଜଟାକୁ ଧରିନେବେ ଆଉ ତା'ର ମତାମତ ଏମାନେ ଜାଣିଯିବେ । କିନ୍ତୁ ସେମାନେ ଆଦିବାସୀର ସେହି ସମୟର ମାନସିକତାକୁ ଜାଣିବା ପାଇଁ ପ୍ରାୟ ଚେଷ୍ଟା କରନ୍ତି ନାହିଁ । ସେତେବେଳେ ଆଦିବାସୀର ମନ ଆଉ କୁଆଡ଼େ । ପୁଅ ବେମାର ପଡ଼ିଚି । ଏ ବର୍ଷ ବର୍ଷା ନାହିଁ । ଡଙ୍ଗର ଧାନ ସରିଗଲାଣି । ସାହୁକାରର ବାକି ସୁଝିବାକୁ ଅଛି । କେତେକଥା । କିଏ କାହାକୁ ପାଙ୍ଗିଦେଇଚି । ଭୂତ ଛଡ଼ାଇବାକୁ ହେବ, ଏମିତି କେତେ କ'ଣ ? ଏମିତିରେ ତାକୁ ଯଦି ଜାପାନୀ ଚାଷ କଥା, ପାଠ କଥା, ଗ୍ରାମ ସଫେଇ କଥା କହିବା, ସେ ଶୁଣିବାର ଅବସ୍ଥାରେ ଥିବ କି ? ତା'ର ବି ସବୁକଥା ଶୁଣିବା ପାଇଁ ନିଜର ସମୟ ଅଛି । ତା ମନ ନପାଇଲା ଯାଏ ସେ ଶୁଣିବ ନାହିଁ । ଯଦି ମନ ପାଇ ଯାଇଛି ସବୁ ଶୁଣିବ ମନଦେଇ ।

ବିଶ୍ୱନାଥ ଏହା ଜାଣିଥିଲେ ବୋଲି ନିଜ କଥା କେବେ ତା ଉପରେ ଲଦି ଦିଅନ୍ତି ନାହିଁ । ତାଙ୍କ କାମ କରିବାର ଢଙ୍ଗ ଅଲଗା । ତରବର ହେବାର ନାହିଁ । ସହଜେ ତ କମ କଥା କହିବା ଲୋକ । କୌଣସି ମଣ୍ଡଳୀରେ ବସିଥିଲେ ଅପେକ୍ଷା କରିଥିବେ ଆଦିବାସୀଙ୍କ ଆଡୁ କଥା ଆରମ୍ଭ ହେଉ ବୋଲି । ସେ କେବଳ ସେମାନଙ୍କ ସମସ୍ୟା କଥା ପଚାରନ୍ତି । ସେମାନେ ପଚାରିଲେ ଉତ୍ତର ଦିଅନ୍ତି । ସେ କହନ୍ତି, ''ମୋର ଆଉ ଉଦ୍ଦେଶ୍ୟ କ'ଣ ? ସେମାନଙ୍କ ସମସ୍ୟା ସମାଧାନ କରିବା ତ ମୋର କାମ । ତେଣୁ ମୁଁ ମୋ କଥାଟା ହଠାତ୍ ଆରମ୍ଭ ନକରି ତାଙ୍କ କଥାଶୁଣେ । ତାଙ୍କ ପିଲାଙ୍କ ଦେହ ଖରାପ, ତାକୁ ଆଗେ ଔଷଧ

ଦିଆଯାଉ । ତା' ଦୁଇଦିନ ପରେ ପିଲା ଭଲ ହେବା ଅବସ୍ଥାରେ ସେ ମୋ କଥା ଶୁଣିପାରେ । ସେ ହୁଏତ ପଚାରିପାରେ "ଆଜ୍ଞା, ତୁ କୁଆଡ଼େ ଆସିଥିଲୁ । ଆଜ୍ଞା, ଆମେ କ'ଣ କରିବୁ ? ନହେଲେ କହିବ ଆଜି ହେଇ ପାରିବ ନାହିଁ, ପାଞ୍ଚ ଦିନ ପରେ ମୁଁ ସମୟ ଦେବି ।"

ଏମିତି ଢଙ୍ଗି ରଖି, ତା' ମନ ନେଇ କାମ କରିବାକୁ ପଡ଼େ । ତା' ସମସ୍ୟା ନବୁଝିଲେ, ସେ ବା କାହିଁକି କା' କଥା ଶୁଣିବ ?

## ଏବେ ବି ବେଠି, ଭେଟି :

ଅଭ୍ୟାସ ସହଜେ ବଦଳେ ନାହିଁ । ଯେଉଁମାନେ ସରକାରୀ ଲୋକ, ଦି'ପଇସା ଉପୁରି ନମିଳିଲେ ଦିନ୍‌ରେ ଭାତ ହଜମ ହୁଏ ନାହିଁ କି ରାତିରେ ନିଦ ଧରେନାହିଁ ଯାହାକୁ, ସେମାନେ ୧୯୪୮ ମସିହା ରେଗୁଲେସନ ୧ ଆଇନ ହୋଇ ବେଠି, ବେଗାରି, ଭେଟି, ଉଠିଗଲା ବୋଲି ଲୋକଙ୍କୁ ଜଣାଇଲେ ନାହିଁ । ସେଇ ପୂର୍ବ ପ୍ରଥାକୁ ଚାଲୁ ରଖିଲେ । ସରକାର ଆଇନ କଲାପରେ ମଧ ଜୟପୁର ଜମିଦାରୀରେ ଦୁଇବର୍ଷ ଯାଏ ବେଠି, ଭେଟି ରହିଥିଲା । ରାଜା ବିକ୍ରମଦେବ ବର୍ମା ୧୦ ହଜାର ବର୍ଗ ମାଇଲ ଅଞ୍ଚଳର ଅଧିକାରୀ । ତାଙ୍କ ହାତରେ ରାଜସ୍ୱ ଆଦାୟର ଭାର । ସେଇ ନିଙ୍ଗାମନ ତହସିଲଦାର, ଅମିନ । ସେଇ ପାନୁ ସିନ୍ଦୁର ଆଦାୟ । ସେଇ ଦଶରା ଭେଟି ଆଉ ବେଠିର ପ୍ରକୋପ । ସେଇ ଠିକାଦାର ଓ ଅମିନର ଭୟ । ବିଶ୍ୱନାଥ ସ୍ଥିରକଲେ ଏହା ଲୋକଙ୍କୁ ଜଣାଇବାକୁ ହେବ । ସେ ଅନ୍ୟକର୍ମୀମାନଙ୍କ ସହ ଗାଁକୁ ଗାଁ ବୁଲିଲେ । ଆଜି କେନ୍ଦୁଗୁଡ଼ାର କମାପଦର, ଖିରାମୁଣ୍ଡା, ବହୁପଦର, ଗୁମୁଡ଼ା, ବାମସଲା ତ, କାଲି କିନିଡ଼ିର ଡିବିରିସିଙ୍ଗି, ସନ୍ଧିଖଲୀ, ଡିମ୍ବିରିଗୁଡ଼ା, ବଡ଼ହୁମା, ନୂଆଗାଁ । ସବୁଠି କହିଲେ ବେଠି, ଭେଟି ଉଠିଗଲା ବୋଲି । ଲୋକଙ୍କୁ ସାହସ ଦେଲେ । ଲୋକେ ଜାଣିଲେ ବେଠି ନକଲେ କି ଭେଟି ନଦେଲେ ଆଉ ଦଣ୍ଡ ଭୋଗିବାକୁ ହେବନାହିଁ । ତିନି ଚାରି ବର୍ଷ ଭିତରେ ସେ ଅଞ୍ଚଳରୁ ବେଠି, ଭେଟି ଉଠିଗଲା ଏବଂ ଏହା ବିଶ୍ୱନାଥଙ୍କ ପ୍ରଚାର ଫଳରେ ସମ୍ଭବ ହେଲା । ଏକ କଳାଯୁଗର ଅବସାନ ଘଟିଲା ।

## ଗୁଣୁପୁର ଅଞ୍ଚଳ ଆନ୍ଦୋଳନର ମୂଳଭୂମି :

ବଂଶଧାରା ନଈର ଉପତ୍ୟକା । ପଟୁ ପଡ଼ି ମାଟି ଉର୍ବର । ମଞ୍ଜି ବୁଣିଦେଲେ ଫସଲ । ଏହି ଜମି ଲୋଭରେ ଏହି ଅଞ୍ଚଳକୁ ପଶିଆସିଲେ ଓଡ଼ିଆ ବ୍ରାହ୍ମଣ, କରଣ,

ଓଡ଼ିଆ ଶୁଣ୍ଢୀ, ତେଲେଙ୍ଗା ବ୍ୟବସାୟୀ ଓ ନାନା ଜାତିର ଲୋକ । ଆଦିବାସୀମାନଙ୍କୁ ଋଣ ଦେଇ, ପଇସା ଦେଇ ସବୁତକ ଜମି ହାତେଇ ନେଲେ, ସରକାରୀ ଅମିନ, ଠାଣାଦାରଙ୍କୁ ହାତରେ ରଖି । ଏହି ଅଞ୍ଚଳର ଆଦିବାସୀମାନେ ରାଜାଙ୍କ ଅନୁମତିରେ ବଣ କାଟି, ବଞ୍ଜର ଜମିକୁ ଉଠିଆ କରି ସମତୁଲ କରନ୍ତି, ଆଉ ସାହୁକାର ମାନେ ସେମାନଙ୍କ ସମତୁଲ କରିଥିବା ଜମିକୁ ଶାଗ ମାଛ ମୂଲରେ ମାଡ଼ିବସନ୍ତି । ଶହେ ବର୍ଷ ତଳେ ଏଠି କୌଣସି ଗଡ଼ିଆ, ଓଡ଼ିଆ ନଥିଲେ । ଶହେ ବର୍ଷ ତଳର କଥାକୁ କୋରାପୁଟ କଲେକ୍ଟର ୧୯୪୫ ମସିହାରେ ତାଙ୍କ ରଚିତ କୋରାପୁଟ ଗେଜେଟିଅରରେ ଲେଖିଲେ ଯେ ୧୮୪୮ ମସିହାରେ ଗୁଣୁପୁର ତାଲୁକାରେ କେତେ ଲୋକ ରାଜାଙ୍କ ବିରୁଦ୍ଧରେ ଓ ରାଜାଙ୍କ ମ୍ୟାନେଜରମାନଙ୍କ ଅତ୍ୟାଚାର ଓ ଅନ୍ୟାୟ ଶାସନ ବିରୁଦ୍ଧରେ ଆନ୍ଦୋଳନ କରି ସ୍ଥାନୀୟ ରାଜକର୍ମଚାରୀ ମାନଙ୍କୁ ବିଦା କରିଦେଲେ । ୧୮୫୫ ମସିହା ଜୁଲାଇରେ ବ୍ରିଟିଶ ସରକାର ଜୟପୁର ରାଜ୍ୟରେ ପୋଲିସ ଶାସନ ଓ ରାଜସ୍ୱ ଆଦାୟ କଥା ବୁଝିବା ପାଇଁ ଜଣେ ଏଜେଣ୍ଟଙ୍କୁ ନିଯୁକ୍ତି ଦେଲେ । ୧୮୬୩ ମସିହାରେ ଲେଫ୍‌ଟନାଣ୍ଟ ସ୍ମିଥ ଆସିଷ୍ଟାଣ୍ଟ ଏଜେଣ୍ଟ ଭାବେ ଓ କ୍ୟାପ୍‌ଟେନ ଗଲବ୍ରେଥ ଆସିଷ୍ଟାଣ୍ଟ ପୋଲିସ୍ ସୁପରିଟେଣ୍ଡେଣ୍ଟ୍ ଭାବେ ନିଯୁକ୍ତ ହେଲେ ।

ଇଂରେଜ ସରକାରଙ୍କ ଦ୍ୱାରା ପୋଲିସ ବ୍ୟବସ୍ଥା ଓ ବିଚାର ବ୍ୟବସ୍ଥାର ପ୍ରଚଳନ କରାଯିବା ଫଳରେ ଜୟପୁର ରାଜାଙ୍କ ପରାମର୍ଶଦାତାମାନେ ନିଜ କ୍ଷମତା ସଙ୍କୁଚିତ ହେବା ଭୟରେ ଅସନ୍ତୁଷ୍ଟ ହୋଇପଡ଼ିଲେ ଏବଂ ଏମାନଙ୍କ ପ୍ରେରଣାରେ ୧୮୬୪ ମସିହାରେ ଗୁଣୁପୁର ଓ ପାରଳାଖେମୁଣ୍ଡି ଅଞ୍ଚଳ ମଧ୍ୟରେ ରହୁଥିବା ପାର୍ବତ୍ୟ ସଉରାମାନେ ବିଦ୍ରୋହ କରିବା କଥା କୁହାଯାଉଥିଲେ ମଧ୍ୟ ପ୍ରକୃତରେ ପୁଟାସିଂ ଗ୍ରାମର ମୁଖିଆ ପ୍ରତି ଜଣେ ପୋଲିସ୍ ଇନ୍‌ସପେକ୍ଟରର ଅତ୍ୟାଚାରରୁ ଓ ଅନ୍ୟାୟ ଗିରଫଦାରିରୁ ଏହି ସଉରା ବିଦ୍ରୋହ ଆରମ୍ଭ ହୋଇଥିଲା ଏବଂ ଉତ୍ୟକ୍ତ ସଉରାମାନେ ପୁଟାସିଂ ଥାନା ପୋଡ଼ିଦେବା ସଙ୍ଗେ ସଙ୍ଗେ ପାଞ୍ଚ ଜଣ ପୋଲିସ ଜମାନଙ୍କୁ ହତ୍ୟା କରିଥିଲେ । ଏହି ବିଦ୍ରୋହ ଏତେ ତୀବ୍ର ହୋଇଥିଲା ଯେ ଏହାକୁ ଦମନ କରିବା ପାଇଁ ଗଞ୍ଜାମ, ବିଜୟନଗର ଓ ଜୟପୁର ରାଜାଙ୍କ ସହାୟତା ନିଆଯାଇ ପୋଲିସ ଦ୍ୱାରା ପାଞ୍ଚ ଜଣ ସଉରା ବିଦ୍ରୋହୀନେତାଙ୍କୁ ଧରି ଫାଶୀରେ ଝୁଲାଇ ଦିଆଗଲା ଏବଂ ୧୮୬୪ରେ ତିନି ଜଣ ବିଦ୍ରୋହୀ ନେତାଙ୍କୁ ଯାବତ୍ ଜୀବନ କାରାଦଣ୍ଡ ଦିଆଗଲା । ଅତଏବ ସରକାରୀ କର୍ମଚାରୀ ଓ ପୋଲିସ ପ୍ରତି ସଉରାଙ୍କ ଘୃଣା, କ୍ରୋଧ ଓ ଆକ୍ରୋଶ ଯେ ସ୍ୱଭାବଗତ ହୋଇ ଯାଇଥିଲା ଏଥିରେ ସନ୍ଦେହ ନାହିଁ । ଏଣୁ ସଉରାଙ୍କ ଜମି ଅଣଆଦିବାସୀ ମାନେ ଠକି ନେଇଥିବା ଓ ସେମାନେ ହିଁ ସେହି ଜମିର ପ୍ରକୃତ

ଅଧିକାରୀ ଓ ସେମାନେ ନିଜ ଜମି ପାଇବା ପାଇଁ ଆନ୍ଦୋଳନ କରିବା ଯୁକ୍ତିଯୁକ୍ତ ଏହି କଥା ଯେତେବେଳେ ବିଶ୍ୱନାଥ ଲୋକଙ୍କୁ ବୁଝାଇଲେ, ସେମାନଙ୍କୁ ଅର୍ଥନୈତିକ ଶୋଷଣରୁ ମୁକ୍ତ କରିବା ପାଇଁ ସେମାନେ ଏକ ନୈତିକ ସମର୍ଥନ ପାଇଲେ ଏବଂ ଆଜ୍ଞାଙ୍କ କଥା ମାନିବାକୁ ପ୍ରସ୍ତୁତ ହେଲେ ।

## ଭୂ-ସତ୍ୟାଗ୍ରହୀ ସମାଜ ଗଠନ ଓ ଏହାର ଲକ୍ଷ୍ୟ :

ସମସ୍ୟାର ଗୁରୁତ୍ୱ ଦୃଷ୍ଟିରୁ ତା ୨୨-୧୧-୫୧ ଦିନ କୁଜେନ୍ଦ୍ରୀ ଗ୍ରାମରୁ ନୀଳକଣ୍ଠ ଗମାଙ୍ଗୋ, ଗୋଇଣ୍ଡୁ, ବାଇରୁ ଗମାଙ୍ଗୋ ଓ ଅନ୍ୟ ସମସ୍ତ ଗ୍ରାମବାସୀଙ୍କ ଉପସ୍ଥିତିରେ ଦୁର୍ଭିକ୍ଷ ନିବାରଣୀ ସମିତିର ଗୋଟିଏ ଆଲୋଚନା ମୂଳକ ବୈଠକ ବସିଲା । ରିଲିଫ୍ କମିଟୀ ପକ୍ଷରୁ ଶ୍ରୀଯୁକ୍ତ ଈଶ୍ୱରଲାଲ ବ୍ୟାସ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଶ୍ରୀ ରାଧା ରତନ ଦାସ ଏଥିରେ ଉପସ୍ଥିତ ଥିଲେ ।

ଆଲୋଚନା ଭିତରେ ସ୍ପଷ୍ଟ ଜଣାଗଲା ଏଇଭଳି ଭାବରେ ପଡ଼ି ବାଣ୍ଟି ସାମୟିକ ସହାୟତା ଦ୍ୱାରା ଦୁର୍ଭିକ୍ଷକୁ ରୋକିବା ଅସମ୍ଭବ । କାରଣ ମୁଖ୍ୟତଃ ପ୍ରତିବର୍ଷ ୬ ମାସ ଏ ଅଞ୍ଚଳର ଲୋକେ ଅନ୍ନକଷ୍ଟରେ ପଡ଼ନ୍ତି । ମହୁଲ, ଆମ୍ବଟାକୁଆ, ସଲପ ବା ତେନ୍ତୁଳି ମଞ୍ଜି ଚୂନା ଖାଇ ବଞ୍ଚିବା କେବଳ ଭାଗ୍ୟବଳରୁ ସିନା ସମ୍ଭବ ଅନ୍ୟଥା ନୁହେଁ । ତେଣୁ ସ୍ଥାୟୀ ପ୍ରତିକାର କରି ଲୋକମାନଙ୍କୁ ଦୁର୍ଭିକ୍ଷ କବଳରୁ ମୁକ୍ତ କରିବା ପାଇଁ ଏକ ବ୍ୟାପକ ଆନ୍ଦୋଳନ ହେବା ଆବଶ୍ୟକ ହୋଇ ପଡୁଛି ।

ଲୋକମାନଙ୍କର ଏ ଭାଗ୍ୟ ବିପର୍ଯ୍ୟୟର କାରଣ ଅନୁସନ୍ଧାନ କରି ଦେଖାଗଲା ଯେ ଏସବୁ ଅଞ୍ଚଳର ଲୋକମାନେ ଭୂମିହୀନ । ଭାଗ ବା ଗୁତାରେ ଯେଉଁ ଜମି ବା ବାଡ଼ ଚାଷ କରୁଛନ୍ତି ଫସଲ ଅମଳ ଶେଷରେ ତାହା ଜମି ମାଲିକ ହାତରେ ହିଁ ରହୁଛି । ଲୋକମାନଙ୍କର ସରଳତା, ଅଶିକ୍ଷା ଓ ନିର୍ବୋଧତାର ସୁଯୋଗ ନେଇ ଋଣ ଦେବା ବେଳେ ଖାଲି କାଗଜରେ ଟିପନେବା, ପାଞ୍ଚ ଦେଇ ଶହେ ଲେଖିବା ଭଳି ଅନ୍ୟାୟ କାମ କରି ଏ ଅଞ୍ଚଳର ଧନୀମାନେ ଏହି ନିରୀହ ଗରିବ ବାସିନ୍ଦାମାନଙ୍କ ଠାରୁ କୌଶଳ କ୍ରମେ ସମସ୍ତ ଜମି ଠକାଇ ବା ଅପହୃତ କରି ନେଇଛନ୍ତି । ଏ ସାରା ଜିଲ୍ଲା (କୋରାପୁଟ)ର ମୁଖ୍ୟ ବାସିନ୍ଦା ହେଉଛନ୍ତି ଆଦିବାସୀ ସୌରା ଓ କନ୍ଧ ଲୋକ । ଶହ ଶହ ବର୍ଷ ଧରି ସେମାନେ ଏ ଜିଲ୍ଲାର ବଣ, ଜଙ୍ଗଲ, ପର୍ବତ ଭୋଗ କରି ପଥର ତାଡ଼ି ଜମି ପ୍ରସ୍ତୁତ କରି ଚାଷବାସ କରି ଚଳି ଆସୁଥିଲେ । କିନ୍ତୁ କ୍ରମେ

ବାହାରର ଅଣ ଆଦିବାସୀମାନେ ଏମାନଙ୍କ ଭିତରେ ପଶି ଏମାନଙ୍କୁ ମଦ ଇତ୍ୟାଦି ନିଶା ଦ୍ରବ୍ୟ ଦେଇ ଏମାନଙ୍କ ସମସ୍ତ ଜମି ଠକାଇ ନେଇଛନ୍ତି । ତେଣୁ ଦୁର୍ଭିକ୍ଷର ସ୍ଥାୟୀ ପ୍ରତିକାର ପାଇଁ ଏ ଲୋକମାନଙ୍କୁ ସେମାନଙ୍କର ଅପହୃତ ଜମି ଫେରାଇ ଦେଇ ସେ ସବୁ ଚାଷବାସ କରାଇବାର ବ୍ୟବସ୍ଥା କରିପାରିଲେ ସବୁଦିନ ପାଇଁ ସେମାନଙ୍କର ଉଦର ଚିନ୍ତା ବା ଅନ୍ନକଷ୍ଟ ଦୂରହେବ ।

ନିଜ ନିଜର ଜମି ଫେରିପାଇବା ପାଇଁ ଲୋକେ ବ୍ୟକ୍ତିଗତ ଭାବରେ ଗତ କେତେ ବର୍ଷ ଧରି ଚେଷ୍ଟା କରିଆସୁଛନ୍ତି । ନିଜର ଅପହୃତ ଜମିରେ ପ୍ରବେଶ କରିବା ଫଳରେ ସେମାନଙ୍କ ଉପରେ ହଜାର ହଜାର କେସ୍ କରାଯାଇ ସେମାନଙ୍କୁ ଜେଲ ଓ ଜୋରିମାନା କରାଯାଇଛି । ଏସବୁ ଅତ୍ୟାଚାର ସହି ମଧ ସେମାନେ ନିଜର ପୂର୍ବପୁରୁଷମାନଙ୍କ ଅର୍ଜିତ ଜମିକୁ ଚାଷ କରିବାକୁ ଚେଷ୍ଟା କରିବାରେ ଲାଗି ରହୁଛନ୍ତି । ପ୍ରତିବର୍ଷ ଏଭଳି ବହୁତ କେସ୍ ହେଉଥିଲେ ମଧ ସରକାର ଏ ଦିଗରେ ଅନୁସନ୍ଧାନ କରି କୌଣସି ପ୍ରତିକାର କରିବାରେ ମନ ଦେଇନାହାନ୍ତି । ଲୋକେ ପେଟ ବିକଳରେ ପୋଡୁଚାଷ କରିବାକୁ ଯାଇ ହଜାର ହଜାର କେସ୍‌ରେ ପଡ଼ିଛନ୍ତି । ମାଡ଼, ଜେଲ୍, ଜୋରିମାନା ସତ୍ତ୍ୱେ ଛାଡ଼ି ନାହାଁନ୍ତି, କାରଣ ଭୂମି ନଥିବା ଅବସ୍ଥାରେ ତାହାହିଁ କେବଳ ସେମାନଙ୍କର ଏକମାତ୍ର ଅବଲମ୍ବନ ହୋଇଛି । ଏ ଦିଗରେ ଲୋକମାନଙ୍କର ପ୍ରକୃତ ଅସୁବିଧା ଅନୁସନ୍ଧାନ କରାଯାଇ ନାହିଁ କିମ୍ବା ଲୋକମାନଙ୍କର ଉପକାର ପାଇଁ କିଛି କରାଯାଇ ନାହିଁ ।

*ଉଦ୍ଦେଶ୍ୟ :* ଏହିଭଳି ଆଲୋଚନା ଶେଷରେ ତୀବ୍ର ଭାବରେ ଅନୁଭବ କରାଗଲା ଯେ, ଦୁର୍ଭିକ୍ଷର ସ୍ଥାୟୀ ପ୍ରତିକାର ପାଇଁ ଲୋକମାନଙ୍କୁ କୌଣସି ପ୍ରକାରେ ଜମି ଫେରାଇବାକୁ ହେବ ଏବଂ ସେ ସବୁ ଜମିକୁ ଚାଷ କରିବା ପାଇଁ ଆବଶ୍ୟକ ବନ୍ଦୋବସ୍ତ କରାଯିବ । ଲୋକମାନେ ନାନା ନିର୍ଯାତନା ସହି ସହି ପ୍ରତିକ୍ରିୟାଶୀଳ ହୋଇଆସୁଥିବାର ଜଣାପଡୁଥିଲା । ଚଳିତବର୍ଷ ହଳ ଆରମ୍ଭ ସମୟରେ ଅତ୍ୟଧିକ ଲୋକ ଜମିରେ ପ୍ରବେଶ କରିବାକୁ ଆଗ୍ରହାନ୍ୱିତ ହେଲେ । କ୍ରମେ ଧନୀମାନଙ୍କ ଧନ ପ୍ରତି ସେମାନଙ୍କ ବିଦ୍ୱେଷ ବଢ଼ି ଉଠୁଥବାର ଜଣା ପଡୁଥିଲା । ଏପରି ପ୍ରତିକ୍ରିୟା ବଢ଼ି ଯଦି ଲୋକେ ହିଂସାର ପଥ ବରଣ କରିନିଅନ୍ତି ଓ କୌଣସି ପ୍ରକାରେ କମ୍ୟୁନିଷ୍ଟମାନେ ସେ ସୁଯୋଗରେ ଲୋକମାନଙ୍କ ଭିତରେ ପଶି ସେମାନଙ୍କୁ ହିଂସାତ୍ମକ ପନ୍ଥାରେ ପରିଚାଳିତ କରନ୍ତି ତେବେ ଏ ଅଞ୍ଚଳର ଅବସ୍ଥା ଖୁବ୍ ସଂଘାତିକ ହୋଇ ଉଠିବ, ଏହି ଆଶଙ୍କାରେ ସ୍ଥାନୀୟ କର୍ମୀମାନେ ପ୍ରଥମରୁ ଏହାର ପ୍ରତିକାରର ଉପାୟରେ ଚିନ୍ତା କଲେ ।

*ପନ୍ଥା :* ଆଲୋଚନା ପରେ ସ୍ଥିର କରାଗଲା ଯେ ମହାମାନବ ମହାତ୍ମାଗାନ୍ଧୀ ଅହିଂସା ଉପାୟରେ ଅସହଯୋଗ ଓ ସତ୍ୟାଗ୍ରହ ପନ୍ଥା ଅବଲମ୍ବନକରି ସମସ୍ତ ପ୍ରକାର ଅନ୍ୟାୟର ବିରୋଧକରି ଶେଷରେ ଜୟଯୁକ୍ତ ହୋଇଛନ୍ତି । ତେଣୁ କୋରାପୁଟର ଏହି ବ୍ୟାପକ ଅନ୍ୟାୟ ପାଇଁ ସେହି ଅହିଂସ ସଂଗ୍ରାମ ଓ ସତ୍ୟାଗ୍ରହ ପନ୍ଥା ଅବଲମ୍ବନ କରାଯିବ ।

*ନାମକରଣ :* ଏହି ବ୍ୟାପକ ଅନ୍ୟାୟର ପ୍ରତିରୋଧ କରିବା ଉଦ୍ଦେଶ୍ୟରେ ଲୋକମାନଙ୍କର ଯେଉଁ ସଂଗଠନ କରାଯିବ ତାହାର ନାମ କ'ଣ ରଖାଯିବ ଏ ବିଷୟରେ ବିଚାର ହେଲା । ଅନେକ ଆଲୋଚନା ପରେ ସ୍ଥିର ହେଲା ଯେ, ଏ ଅନୁଷ୍ଠାନର ନାମ ହେବ 'ଭୂ-ସତ୍ୟାଗ୍ରହୀ ସମାଜ' ।

*କାରବାର :* ଏହି 'ଭୂ-ସତ୍ୟାଗ୍ରହୀ ସମାଜ'ର କେନ୍ଦ୍ର ଅଫିସ ବର୍ତ୍ତମାନ ପାଇଁ କୁଜେନ୍ଦ୍ରୀ ଠାରେ ଅବସ୍ଥାପିତ ହେବ । ସମସ୍ତ ଚିଠିପତ୍ର ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, କୁଜେନ୍ଦ୍ରୀ, ପୋ.ଅ. କୁଜେନ୍ଦ୍ରୀ, ଭାୟା : ଗୁଣୁପୁର ଜି. : କୋରାପୁଟ ଠିକଣାରେ ହେବ । କେନ୍ଦ୍ର ସଂସ୍ଥା ଆବଶ୍ୟକ ମନେକଲେ ତାହାର ବିଭିନ୍ନ ଶାଖା ବିଭିନ୍ନ ସ୍ଥାନରେ କରିପାରିବ ।

*ପ୍ରଥମ କର୍ମବ୍ୟବସ୍ଥା :* ଲୋକମାନଙ୍କୁ ଜମି ଦିଆଇବାର ଦୁଇଟି ବାଟ ଅଛି । ଗୋଟିଏ ହେଉଛି ଇଷ୍ଟେଟର ଯେଉଁସବୁ ବଞ୍ଜାରି ଜମି ପଡ଼ିରହିଛି ଓ ଯେଉଁ ଜମି ସବୁ ବର୍ଷ ବର୍ଷ ଧରି ପଡ଼ିଆ ପଡ଼ିରହିଛି ସେହି ଜମିସବୁକୁ ଚାଷ କରିବାକୁ ଦେବାପାଇଁ ସରକାରଙ୍କୁ ଅନୁରୋଧ କରିବା;

*ଦ୍ୱିତୀୟ :* ଅପହୃତ ଜମିକୁ ଫେରାଇବା ପାଇଁ ସରକାରଙ୍କ ଉପରେ ଚାପଦେଇ ପୂର୍ବ ନିୟମର ପରିବର୍ତ୍ତନ କରିବା ଦିଗରେ ଉଦ୍ୟମ କରିବା;

*ତୃତୀୟ :* ଲୋକମାନଙ୍କର ବିଚାର ଓ କର୍ମପନ୍ଥାକୁ ବିଚାର କରବା ପାଇଁ ପ୍ରଦେଶର ନେତୃସ୍ଥାନୀୟ ବ୍ୟକ୍ତି ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ଉତ୍କଳ ଖଦୀ ମଣ୍ଡଳର ସମ୍ପାଦକ ଇତ୍ୟାଦିଙ୍କୁ ଚିଠି ଲେଖିବାକୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଅନୁରୋଧ କରାଗଲା ।

ସତ୍ୟାଗ୍ରହ କରିବା ଦିଗରେ ଅନ୍ୟବିଚାର ଓ କାର୍ଯ୍ୟବ୍ୟବସ୍ଥା ଇତ୍ୟାଦି ଦିଗରେ ଚିନ୍ତାକରି ପନ୍ଥା ସ୍ଥିର କରିବା ପାଇଁ ଶ୍ରୀ ରାଧାରତନ ଦାସ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଭାରପ୍ରାପ୍ତ ହେଲେ ।

ବୈଠକ ଆଲୋଚନା ଅନୁଯାୟୀ ୨୪-୧୧-୧୯୫୧ ତାରିଖ ଦିନ ଭୂ-ସତ୍ୟାଗ୍ରହୀ ସମାଜ ଗଠନର ଆବଶ୍ୟକତା, ଏହାର ଲକ୍ଷ୍ୟ, ଉଦ୍ଦେଶ୍ୟ, ପନ୍ଥା, କାରବାର କର୍ମବ୍ୟବସ୍ଥା ସମ୍ବନ୍ଧରେ ଏକ ପ୍ରାଞ୍ଜଳ ଚିତ୍ର ଦେଇ ବିଶ୍ୱନାଥ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କୁ ଚିଠି ଲେଖି ତାଙ୍କ ପରାମର୍ଶ ମାଗିଲେ ।

କୁଜେନ୍ଦ୍ରୀ

*ଶ୍ରୀ ଚରଣେଷୁ,* ୨୪/୧୧/୫୧

ବାପା - ସୌରା ଓ କନ୍ଧ ଲୋକେ ତାହାଙ୍କର ଯେଉଁ ସବୁ ଜମି ଅନ୍ୟାୟ ଭାବେ ଅଣ-ଆଦିବାସୀମାନେ ହସ୍ତାନ୍ତର କରି ନେଇଛନ୍ତି ବୋଲି ଅନୁଭବ କରୁଛନ୍ତି ସେସବୁ ଜମିରେ ଏବର୍ଷ ପ୍ରବେଶ କରି ଜେଲ୍, ଜରିମାନା ଓ ମାଡ଼ର ନିର୍ଯ୍ୟାତନା ଭୋଗୁଛନ୍ତି । ଗରିବ ହେତୁ ଅଦାଲତର ନ୍ୟାୟ ମଧ୍ୟ ପାଉନାହାନ୍ତି । ତେଣୁ ଏକ ତରଫିଆ ହୋଇ ଏକ ଜାତିକୁ ସନ୍ତୋଷ କରିବାକୁ ବସି ନରହି ଏ ଅନ୍ୟାୟର ବିରୋଧ କରିବା ପାଇଁ ମନରେ ଉଠୁଛି । ତେଣୁ ଏକ ସତ୍ୟାଗ୍ରହର ଆବଶ୍ୟକତା ଅନୁଭବ ହେଉଛି । ଏଥିପାଇଁ ପ୍ରାଥମିକ କାମ ସତ୍ୟାଗ୍ରହୀ ସଂଗ୍ରହ ଆରମ୍ଭ ହେବାକୁ ଯାଇଛି । କିଏ ନଜାଣେ ଯେ ଏ ଜିଲ୍ଲାର ସମସ୍ତ ଜମି ଦିନେ ଆଦିବାସୀଙ୍କର ଥିଲା । ବାହାରୁ ଲୋକେ ଆସି ଆଦିବାସୀଙ୍କର ସରଳତାରୁ ଫାଇଦା ଉଠାଇଲେ ଏବଂ ଅନ୍ୟାୟ ଭାବେ ସେମାନଙ୍କର ଜମି ସବୁ ନିଜର କରିନେଲେ । ବର୍ତ୍ତମାନ ଆଦିବାସୀଙ୍କର ମନରେ ଚେତନା ଆସିଛି । ଅଣ-ଆଦିବାସୀମାନେ ଜମି ଅପହରଣ କରି ନେଇଥିବା ସେମାନେ ବୁଝି ତା'ର ପ୍ରତିକାରର ଆଶ୍ରୟ ଲୋଡ଼ୁଛନ୍ତି । ଏ ପରିସ୍ଥିତିରେ ଯେଉଁମାନେ ଅନ୍ୟାୟ ବିରୋଧକାରୀ ବୋଲି ଅନୁଭବ କରୁଛନ୍ତି, ବସି ନରହି ଏ ଅନ୍ୟାୟର ବିରୋଧ ପାଇଁ ଆଦିବାସୀଙ୍କ ସହ ଲାଗିପଡ଼ିବା ଉଚିତ ମନେହେଉଛି । ମୋର ବିଶ୍ୱାସ ଆପଣଙ୍କର ସହଯୋଗରେ ବହୁ କଠିନ ପରିସ୍ଥିତିରେ ହେଲେ ମଧ୍ୟ ଏଥିରେ ନିଶ୍ଚିତ କୃତକାର୍ଯ୍ୟ ହେବୁ । ଶହ ଶହ ବର୍ଷର ବ୍ରିଟିଶ ଓ ଗଡ଼ଜାତ ଅନ୍ୟାୟ ଶାସନ ଲୋପ ହୋଇପାରିଲା । ଏ ଅନ୍ୟାୟ ମଧ୍ୟ କାହିଁକି ଲୋପ ନହେବ । ଏହା ଦ୍ୱାରା ଦେଶପ୍ରେମୀଙ୍କୁ ହିମତ୍ ମଧ୍ୟ ମିଳିବ ଯେ ଗରିବ ଓ ନିରୀହ ସାଧାରଣ ଲୋକଙ୍କ ମଧ୍ୟରେ ଦେଶାତ୍ମଭାବ ଆସିଲାଣି । ଏ ସତ୍ୟାଗ୍ରହର କ୍ରମବିକାଶର କଳ୍ପନା ଏହି ଭାବେ ମନରେ ଆସୁଛି । ଯାହାସବୁ ମନରେ ଉଠୁଛି ସେ ସବୁ ରତନ ଭାଇ ଓ ବ୍ୟାସଜୀଙ୍କ ସହ ପରାମର୍ଶ କରିଛି ।

ପ୍ରଥମେ ହେବ ସତ୍ୟାଗ୍ରହୀ ସଂଗ୍ରହ, ସଙ୍ଗେ ସଙ୍ଗେ ଅପହୃତ ଜମିର ତାଲିକା ଓ ଅପହୃତ କରିନେଇଥିବା ବ୍ୟକ୍ତିଙ୍କର ଇତିହାସ ସଂଗ୍ରହ । ଆଶାଜନକ ଭାବେ ସତ୍ୟାଗ୍ରହୀ ସଂଗ୍ରହ ପରେ, ସତ୍ୟାଗ୍ରହୀମାନେ ଦଳ ଦଳ ହୋଇ ଅପହୃତ କରି ନେଇଥିବା ବ୍ୟକ୍ତିଙ୍କୁ ଜମି ଫେରାଇ ଦେବାକୁ କହିବେ । ସେ ତ ବୋଧେ କେବେ ଫେରାଇବେ ନାହିଁ । ତା'ପରେ ସରକାରଙ୍କୁ ଜମି କିପରି ଅପହୃତ ହେଲା ଜଣାଇ ନ୍ୟାୟ ଦୃଷ୍ଟିରୁ ଫେରାଇବାକୁ କୁହାଯିବ । ସରକାର ଅଦାଲତ ନିୟମ ଅନୁଯାୟୀ ତ ତାରିଖ ପକାଇବେ । ତାରିଖରେ ଅଦାଲତକୁ ନିଜେ ଜମି ମାଲିକ ନଯାଇ ଏକ ପ୍ରତିନିଧି ଦଳ ଯାଇ ଯୋଗଦେବେ । ସେଠାରେ ଏକ ଷ୍ଟେଟ୍‌ମେଣ୍ଟ ଦେଇ ଆସିବେ । ପୁଣି ଦ୍ୱିତୀୟ ବାଇଦାକୁ ଯାଇ, ତା'ପରେ କୋର୍ଟକୁ ଆଉ ନଆସିବା କଥା ହାକିମକୁ ଶୁଣାଇଦେଇ ଆସିବେ । ତା'ପରେ ଅପହୃତ ଜମି ବ୍ୟକ୍ତିଙ୍କୁ ଓ ସରକାରଙ୍କୁ ଜଣାଇ ଅପହୃତ ଜମିରେ ସତ୍ୟାଗ୍ରହୀମାନେ ପ୍ରବେଶ କରିବେ । ସେଥିପାଇଁ ଯାହା ନିର୍ଯାତନା ଭୋଗିବେ । ଆସ୍ତେ ଆସ୍ତେ ମାସ୍ ସତ୍ୟାଗ୍ରହ ଆଡ଼କୁ ଗତିକରିପାରେ । ଶେଷରେ କୃତକାର୍ଯ୍ୟରେ ଜମି ଯାହା ଆସିବ ପ୍ରକୃତ ଜମି ମାଲିକମାନେ ନିଜ ନିଜ ଜମି ସବୁ ଫେରିପାଇବେ । ଏ କଳ୍ପନାକୁ ଆଗରେ ରଖି ସତ୍ୟାଗ୍ରହ ଆରମ୍ଭ ହେବ । ତେଣୁ ଏ ଆନ୍ଦୋଳନକୁ 'ଭୂ-ସତ୍ୟାଗ୍ରହୀ ସମାଜ' ନାମ ଦିଆଯାଇଛି । ଏହାର ଉଦ୍ଦେଶ୍ୟ ହେଉଛି ଯେଉଁ ଜମିଗୁଡ଼ିକ ଅନ୍ୟାୟ ଭାବରେ ଅପହରଣ କରାହୋଇଛି ସେ ସବୁକୁ ସତ୍ୟ, ଅହିଂସା ଓ ସତ୍ ଉପାୟରେ ଫେରସ୍ତ ଆଣି ଜମିର ପ୍ରକୃତ ଅଧିକାରୀଙ୍କୁ ଫେରସ୍ତ କରିଦେବା ଏବଂ ସତ୍ୟାଗ୍ରହୀଙ୍କ ପାଇଁ ନିମ୍ନ ଶପଥ ରଖାଯାଇଛି -

(୧) ସତ୍ୟ, ଅହିଂସା ଓ ନ୍ୟାୟ ବାଟରେ ସର୍ବଦା ଚାଲିବି ।

(୨) ମୁଁ ନିଜକୁ ସବୁ ପ୍ରକାର ପ୍ରଲୋଭନ ଠାରୁ ଦୂରରେ ରଖିବି ।

(୩) ମୋର ବ୍ୟକ୍ତିଗତ ଜୀବନରେ ମୁଁ ଛୁଆଁ ଅଛୁଆଁ ବାରିବି ନାହିଁ ଓ ନିଶା ସେବନ କରିବି ନାହିଁ ।

(୪) ମୁଁ ସର୍ବଦା ଖଦୀ ପିନ୍ଧିବି ।

(୫) ମୁଁ ଅନ୍ୟାୟର ବିରୋଧ ପାଇଁ ଅକୁଣ୍ଠିତ ଚିତ୍ତରେ ଜେଲ ଯିବା ପାଇଁ ଏପରିକି ନିଜ ଜୀବନକୁ ବଳିଦେବା ପାଇଁ ପ୍ରସ୍ତୁତ ରହିବି ।

(୬) ମୋର ଜେଲ ହୋଇଗଲେ ମୁଁ ମୋର ପରିବାର ଓ ଆଶ୍ରିତ କୁଟୁମ୍ବମାନଙ୍କର ଭରଣ ପୋଷଣ ପାଇଁ ଅନୁଷ୍ଠାନରୁ କୌଣସି ସାହାଯ୍ୟ ଚାହିଁବି ନାହିଁ ।

(୭) ଅନୁଷ୍ଠାନର ନିର୍ଦ୍ଦେଶ ଓ ନିୟମାବଳୀକୁ ମୁଁ ସବୁବେଳେ ପାଳନ କରିବି ।

(୮) ମୋର ବୟସ ୧୮ ବର୍ଷରୁ ଊର୍ଦ୍ଧ୍ୱ ଅଟେ । ମୁଁ ସ୍ୱଇଚ୍ଛାରେ ଉପରୋକ୍ତ ସର୍ତ୍ତକୁ ପାଳନ କରିବା ପାଇଁ ପ୍ରତିଶ୍ରୁତି ଦେଇ ସତ୍ୟାଗହୀ ହେବାକୁ ଇଚ୍ଛା କରି ନିମ୍ନରେ ମୋର ସ୍ୱାକ୍ଷର କଲି ।

ଏହାପରେ ଏକ ଆହ୍ୱାନ ପ୍ରଚାରପତ୍ର ବାହାରିବ ଏବଂ ଅବସ୍ଥାକୁ ଦେଖି ଯେତେବେଳେ ଯାହା ସୁଝିବ ତାହା କରାଯିବ । ଆପଣ ଏହାର ନେତୃତ୍ୱ ନେଲେ ଗୁରୁତ୍ୱ ବଢ଼ିଯାନ୍ତା ଏବଂ ଶହ ଶହ ବର୍ଷର ଅନ୍ୟାୟ ଲୋପ ହୋଇ ପ୍ରକୃତ ଜମିମାଲିକକୁ ଜମି ମିଳିଯାଆନ୍ତା । ଅନେକ ନିରୀହ ଲୋକେ ଜମିବାଡ଼ି ନଥାଇ ଖାଇବାକୁ ନପାଇ ଯେମିତି ହୀନିମାନରେ ଜୀବନ କଟାଉଛନ୍ତି ତାହା ଦୂର ହୋଇଯାଆନ୍ତା ।

ଏ ଦିଗରେ ଆପଣଙ୍କର ଆଶୀର୍ବାଦ, ନିର୍ଦ୍ଦେଶ ଓ ନେତୃତ୍ୱ ଭିକ୍ଷା କରେ । ମୋର ଦେହ ଖରାପଥିବାରୁ ଅନ୍ୟଦ୍ୱାରା ଚିଠି ଲେଖାଇଲି । କ୍ଷମାଦେବେ । ଆପଣ ମୋର ପୂଜ୍ୟ ଓ ନମସ୍ୟ ଆରାଧ ପିତା ଅଟନ୍ତି । ସେହିଭାବରେ ମୋର ବିଚାର ଆପଣଙ୍କର ଆଗରେ ଥୋଉଛି ଏବଂ ସରକାରଙ୍କର ମୁଖ୍ୟ କର୍ତ୍ତା ହିସାବରେ ମଧ ଜଣାଉଛି ।

ଆଜ୍ଞାଧୀନ ସେବକ
ବିଶ୍ୱନାଥ
୨୪/୧୧/୫୧

କହିବା ବାହୁଲ୍ୟ ଗୋପବାବୁ ଏ ଚିଠିର କୌଣସି ଉତ୍ତର ମଧ ଦେଲେ ନାହିଁ କି କୌଣସି ନିର୍ଦ୍ଦେଶ ମଧ ପଠାଇଲେ ନାହିଁ । ଦୀର୍ଘ ୧୩ ଦିନ ବିତିଗଲା । ବିଶ୍ୱନାଥ ଏ ସମ୍ବନ୍ଧରେ ସ୍ପଷ୍ଟ ହେବା ପାଇଁ ତା ୮/୧୨/୫୧ ଦିନ ବୁଲୁବାବୁଙ୍କୁ ଚିଠି ଦେଲେ ଏବଂ ସେ କାହିଁକି ଆନ୍ଦୋଳନ ନିଷ୍ପତ୍ତି ନେଲେ ସେ ସମ୍ବନ୍ଧରେ ଏକ ସ୍ପଷ୍ଟୀକରଣ ମଧ ଦେଲେ ଏମିତି, ‘‘ମୁଁ ଯେତେଦୂର ଅନୁମାନ କରୁଛି, ବାପାଙ୍କର ଇଚ୍ଛାବୋଧେ ଆଗରୁ ଜମି ମାଗିବା ପ୍ରଚାର ହେଉ । ତା’ ପରବର୍ତ୍ତୀ ଷ୍ଟେପ୍ ସତ୍ୟାଗ୍ରହ କଥା ଉଠିବ । କିନ୍ତୁ ଏ ଅଞ୍ଚଳ କଥା ତ ସ୍ୱତନ୍ତ୍ର । ଏଠାରେ ଜମି ମାଗିବା କଥା କାହିଁକି ଉଠିବ ? ମାଗିଲେ ମଧ ସ୍ୱତଃପ୍ରବୃତ୍ତ ହୋଇ ଦେବା ବହୁ କଷ୍ଟସାଧ । ଦିନେ ତ ସବୁଜମି ଆଦିବାସୀଙ୍କର ଥିଲା । ବାହାରୁ ଲୋକେ ଆସି ସେମାନଙ୍କର ସରଳତା ଓ ନିର୍ବୋଧତାର ସୁଯୋଗ ନେଇ ଜମି ସବୁ ଅପହରଣ କରିନେଇଛନ୍ତି ।

ଆଶାଥିଲା ସରକାର ଏକ ଅନୁସନ୍ଧାନ କମିଟୀ ବସାଇ ଅପହୃତ ଜମିର ତାଲିକା ନେଇ ପ୍ରକୃତ ଜମିମାଲିକମାନଙ୍କୁ ଜମିସବୁ ଫେରାଇ ଦେବେ । ଏଥିପାଇଁ ସରକାରଙ୍କୁ ବହୁବାର ଅନୁରୋଧ କରିଆସିଛି । ଫଳ ଓଲଟା ହେଉଛି । ଆଗରୁ ୧୯୧୭ ପରେ ସରକାରଙ୍କ ବିନାନୁମତିରେ ଆଦିବାସୀ ଜମି ଅଣ-ଆଦିବାସୀମାନେ ଖରଦି କରୁଥିଲେ । ଜମି ନେବାଲୋକ ଆଡୁ ଆପତ୍ତି ଉଠିଲେ ଫେରସ୍ତ ମିଳୁଥିଲା ଏବେ ତ ବାରବରଷ ରହିଛି । ଏହା ଫଳରେ କାଁ ଭାଁ ଯାହା କିଛି ଜମି ଫେରସ୍ତ ପାଉଥିଲେ ସେଥିରୁ ମଧ୍ୟ ଆଦିବାସୀ ବଞ୍ଚିତ ଥିଲେ । ପ୍ରତିବର୍ଷ ଜଙ୍ଗଲ ଚାଷ ନେଇ ହଜାର ହଜାର ମୋକଦ୍ଦମା ଆଦିବାସୀଙ୍କ ଉପରେ ହେଉଛି । ଏହାର ପ୍ରତିକାର ପାଇଁ ମନ୍ତ୍ରୀ ଓ ମାଜିଷ୍ଟ୍ରେଟ ଏବଂ ଇଷ୍ଟେଟର କ୍ଷମତାପନ୍ନ ବ୍ୟକ୍ତିଙ୍କ ଠାକୁ ଥରକୁ ଥର ଦୌଡ଼ି ମୋକଦ୍ଦମା ଉଠାଇବା ଏବଂ ଜୋରିମାନା କମ୍ କରିବାକୁ ଖୁସାମତ କରିବା ଇତ୍ୟାଦିରେ ପ୍ରତିବରଷ ସମୟ ଦେବାକୁ ପଡୁଛି ଏବଂ ଅପହୃତ ଜମିରେ ପ୍ରକୃତ ଜମି ମାଲିକ ପ୍ରବେଶ କରିବା ଫଳରେ ପ୍ରତିବରଷ ବାଡ଼ିଆପିଟା, ଜେଲ୍ ଓ ଜୋରିମାନା ଏବଂ କାଁ ଭାଁ ମର୍ଦ୍ଦର ହେଉଥିବା ମଧ୍ୟ ଦେଖିବାକୁ ମିଳୁଛି ଏବଂ ଲୋକଙ୍କ ବିକଳ, କାକୁତି, ବିନତି ସହିନପାରି ପରୋକ୍ଷରେ ଅନ୍ୟ ସମୟରେ ନ୍ୟାୟ ଦୃଷ୍ଟିରୁ ଜମିରେ ପ୍ରବେଶ ନେଇ ଉତ୍ସାହ ବାଧ୍ୟ ହୋଇ ଦେଇଆସୁଛି । ତେଣୁ ଅନ୍ୟାୟ କାମକୁ ପ୍ରଶ୍ରୟ ଦେଇ ଅସ୍ଥାୟୀ ଉପକାର ପାଇଁ ସରକାର ଓ ଇଷ୍ଟେଟର କ୍ଷମତାପନ୍ନ ବ୍ୟକ୍ତିଙ୍କ ପଛରେ ବରାବର ଦୌଡ଼ି ଖୁସାମତ କରିବାର ଇଚ୍ଛା ଆଉ ବଳୁନାହିଁ । ତେଣୁ ସତ୍ୟାଗ୍ରହୀର ଅହିଂସା ଆନ୍ଦୋଳନ କରିବା ଉଚିତ ମନେହେଉଛି । କାମ ତ ଅତି ବଡ଼ କଠିନ । କାହିଁକି ନା ପୁଞ୍ଜିପତି ଓ ସରକାରଙ୍କ ବିରୋଧରେ ହିଁ ପ୍ରକୃତ ଲଢ଼େଇ ହେବ । ଏଥିରେ ଭଗବାନଙ୍କର ଓ ଆପଣଙ୍କର ଆଶୀର୍ବାଦରେ ଯଶସ୍ୱୀ ହେବୁ ଏହି ବିଶ୍ୱାସ ଦୃଢ଼ ହେଉଛି । ତେଣୁ ଏ କାମରେ ଆପଣଙ୍କର ନିର୍ଦ୍ଦେଶ ଓ ପରାମର୍ଶ ଭିକ୍ଷା କରୁଛୁ ।

ପୁନଶ୍ଚ ଆପଣ ପଢ଼ିସାରି ବାପାଙ୍କୁ ମଧ୍ୟ ଏ ଚିଠି ଖଣ୍ଡକ ପଢ଼ିବାକୁ ଦେବେ କାହିଁକି ନା ଭିନ୍ନ ଭିନ୍ନ ଥର ଚିଠି ଲେଖିଲା ବେଳେ ଅନେକ ନୂଆ କଳ୍ପନା ଯାହା ମନରେ ଉଠୁଛି ହେଣ୍ଡିଭାବେ ଚିଠିରେ ଜଣାଉଛି । ତେଣୁ ବାପାଙ୍କୁ ଏ ଚିଠିଟି ପଢ଼ିବାକୁ ଦେବାକୁ ଅନୁରୋଧ । ଯଦି ସମ୍ଭବ ହେବ ତ ମୋଟାମୋଟି କଥାଟା ଗ୍ରାମସେବକରେ ଦେଲେ କେମିତି ହୁଅନ୍ତା ।''

୨୨/୧୧/୫୧ ଦିନ କୁଦ୍ରେନ୍ଦ୍ରୀ ଠାରେ ଭୂ-ସତ୍ୟାଗ୍ରହୀ ସମାଜର ଦ୍ୱିତୀୟ ବୈଠକ ବସି ଯେଉଁ ଜମିଗୁଡ଼ିକୁ ନିରୀହ, ସରଳ, ଗରିବ ଲୋକମାନଙ୍କ ଠାରୁ ଅନ୍ୟାୟ ଭାବରେ ଅପହରଣ କରାଯାଇଛି ସେ ସବୁକୁ ଅହିଂସା ଓ ସଦ୍ ଉପାୟରେ ଫେରସ୍ତ ଆଣି ଜମିର ପ୍ରକୃତ ଅଧିକାରୀକୁ

ଫେରସ୍ତ କରିଦେବା ଉଦ୍ଦେଶ୍ୟକୁ କାର୍ଯ୍ୟକାରୀ କରିବା ପାଇଁ (୧) ସତ୍ୟାଗ୍ରହୀ ସଂଗ୍ରହ, (୨) ଅପହୃତ ଜମି ଓ ଜମିର ପ୍ରକୃତ ଅଧିକାରୀ ତାଲିକା, (୩) ଅନ୍ୟାୟ ଭାବରେ ଅପହରଣ କରିଥିବା ବ୍ୟକ୍ତିଙ୍କର ପୂର୍ବ ଇତିହାସ ସଂଗ୍ରହ, (୪) ସତ୍ୟାଗ୍ରହୀ କିଏ ହୋଇପାରିବ, ତା'ର ଗୁଣ, ଚରିତ୍ର କିପରି ହେବା ଉଚିତ, (୫) ତଥା ସତ୍ୟାଗ୍ରହୀ ସତ୍ୟାଗ୍ରହ କରବା ପୂର୍ବରୁ ଏକ ଶପଥପତ୍ରରେ ସ୍ୱାକ୍ଷର କରିବା କଥା ଯାହା ୨୪/୧୧/୫୧ରେ ଗୋପବନ୍ଧୁ ଚୌଧୁରୀଙ୍କୁ ଚିଠିରେ ଲେଖାଯାଇଥିଲା, ତାକୁ ଅବିକଳ ଗ୍ରହଣ କରାଗଲା ।

ଏହି ଆନ୍ଦୋଳନରେ ଭାଗନେବା ପାଇଁ ଏ ଅଞ୍ଚଳର ତଥା ସମସ୍ତ ପ୍ରଦେଶର ଜନସାଧାରଣଙ୍କୁ ଆହ୍ୱାନ କରାଯିବା ପାଇଁ ସ୍ଥିର କରାଗଲା । ଆହ୍ୱାନ ପରିପତ୍ର ନିମ୍ନମତେ ପ୍ରସ୍ତୁତ କରିବା ପାଇଁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଦାୟିତ୍ୱ ଦିଆଗଲା । ଶ୍ରୀ ରାଧାରମନ ଦାସ ବରୀ ଯାଇ ପୂଜ୍ୟ ଗୋପବାବୁଙ୍କ ସହ ପରାମର୍ଶ କରି ଆସିଲା ପରେ ସିଦ୍ଧାନ୍ତ ଗ୍ରହଣ କରାଯିବାର ସ୍ଥିର ହେଲା ।

## ଭୂ-ସତ୍ୟାଗ୍ରହୀ ସମାଜର ପ୍ରଚାରପତ୍ର :

ଭାଇ ଓ ଭଉଣୀମାନେ !

ଆପଣମାନେ ଜାଣନ୍ତି ଯେ କୋରାପୁଟ ଜିଲ୍ଲାର ସମସ୍ତ ବାସିନ୍ଦା ହେଉଛନ୍ତି ଆଦିବାସୀ । ଏ ଅଞ୍ଚଳର ସମସ୍ତ ଜମିଜମା ଦିନେ ଆଦିବାସୀ ମାନଙ୍କର ଥିଲା । ସେମାନେ ହିଁ ଥିଲେ ଏ ସମସ୍ତ ଜମିଜମାର ପ୍ରକୃତ ସତ୍ତ୍ୱାଧିକାରୀ । କାଳକ୍ରମେ ବାହାରୁ ଲୋକେ ଆସି ଆଦିବାସୀମାନଙ୍କର ସରଳତା ଓ ନିର୍ବୋଧତାର ସୁଯୋଗନେଇ ଅନ୍ୟାୟ ଓ ଅସଦ୍ ଉପାୟରେ ସେମାନଙ୍କ ଠାରୁ ସମସ୍ତ ଜମି ଅପହରଣ କରି ନେଇଛନ୍ତି ଏବଂ ଆଜି ଆଦିବାସୀଙ୍କ ପରିବର୍ତ୍ତରେ ବାହାରୁ ଆସିଥିବା ଲୋକେ ହିଁ ହେଉଛନ୍ତି ସମସ୍ତ ଜମିର ମାଲିକ । ଫଳରେ ଏ ଅଞ୍ଚଳରେ ଆଦିବାସୀମାନେ ଆଜି ଭୂମିହୀନ । ନିଜ ଅଞ୍ଚଳରେ ଫସଲ ଆମଦାନି କରିସୁଦ୍ଧା ସେହି ଫସଲକୁ ଭୋଗ କରିବାର ଅଧିକାର ସେମାନଙ୍କର ନାହିଁ । ସେମାନଙ୍କ ମଧ୍ୟରୁ ଅନେକ ଯେ ଖାଇବାକୁ ନପାଇ ମରିଛନ୍ତି ଓ ମରୁଛନ୍ତି ଏକଥା କାହାରିକୁ ଅଛପା ନାହିଁ । ପ୍ରଧାନତଃ ବଣର ଫଳ ଓ କନ୍ଦା ଖାଇ ସେମାନେ ଜୀବିକା ନିର୍ବାହ କରୁଛନ୍ତି ଅଥଚ ଏଣେ ପୋଡୁଚାଷ କରିବା ଅପରାଧରେ ଆଦିବାସୀମାନଙ୍କ ଉପରେ ପ୍ରତ୍ୟେକ ବର୍ଷ ହଜାର ହଜାର ମକଦ୍ଦମା ଦାଏର କରାହେଉଛି ଏବଂ ସେଥିପାଇଁ ସେମାନେ ଜେଲ ମଧ୍ୟ ଭୋଗୁଛନ୍ତି । ତାହା ସହିତ ପୋଡୁଚାଷରୁ ଆମଦାନୀ କରୁଥିବା ଫସଲକୁ ଜୋରିମାନ ସ୍ୱରୂପ ଦେଇ

ସର୍ବସ୍ୱାନ୍ତ ହୋଇ ପୁଣି ସେହି ବଣୁଆ କନ୍ଦାର ଆଶ୍ରୟ ନେଉଛନ୍ତି । କିନ୍ତୁ କାହିଁକି ଯେ ସେମାନେ ନିର୍ବୋଧଭାବରେ ପୋଡୁଚାଷ କରୁଛନ୍ତି ତା'ର ମୂଳକାରଣ କେହି ଅନୁସନ୍ଧାନ କରୁନାହାନ୍ତି । ଏହାର ଏକମାତ୍ର କାରଣ ହେଉଛି ଯେ ସେମାନେ ଭୂମିହୀନ । ସେମାନେ କୋରାପୁଟ ଜିଲ୍ଲାର ସମସ୍ତ ଜମିର ମାଲିକ ହୋଇ ମଧ ନିଜର ସମସ୍ତ ସତ୍ତ୍ୱାଧିକାରରୁ ବଞ୍ଚିତ । ସେମାନଙ୍କ ପାଖରେ ଚଳିବା ପାଇଁ ଆଜି ଜମିଥିଲେ ସେମାନେ ପୋଡୁଚାଷ କରନ୍ତେ ନାହିଁ ବା ଖାଇବାକୁ ନପାଇ ମରନ୍ତେ ନାହିଁ ।

ବଡ଼ ସୁଖର କଥା, ଏତେ ବର୍ଷକାଳ ଅତ୍ୟାଚାର, ନିର୍ଯାତନା ଓ ଅନଟନରେ ସଢ଼ି ସଢ଼ି ଏବେ ସେମାନଙ୍କର ବୋଧଶକ୍ତି ଫେରିଆସିଛି । ସେମାନେ ଆଜି ସେମାନଙ୍କର ନ୍ୟାଯ୍ୟ ଦାବି ହାସଲ କରିବା ପାଇଁ ବଦ୍ଧ ପରିକର ହୋଇଛନ୍ତି । ଏହି ଘୋର ଅନ୍ୟାୟର ପ୍ରତିରୋଧ କରିବାର ଚେତନା ଆଜି ସେମାନଙ୍କ ପ୍ରାଣରେ ଏବଂ ଏଥିପାଇଁ ସେମାନେ ବିପ୍ଳବ ଲୋଡୁଛନ୍ତି । ଏହି ଚେତନାର ବଳରେ ସେମାନଙ୍କର ନ୍ୟାଯ୍ୟ ଦାବି ହାସଲ କରିବା ପାଇଁ ସେମାନେ ଆଜି ହିଂସାର ଆଶ୍ରୟ ନେବାକୁ ଯାଉଛନ୍ତି । ବେଳ ଥାଉଁ ଥାଉଁ ଆମେ (ଯେଉଁମାନେ କି ସେମାନଙ୍କର ଅବସ୍ଥା ବୁଝିଛୁ) ଯଦି ସେମାନଙ୍କୁ କୌଣସି ପନ୍ଥା ନଦେଖାଉ, ତେବେ ନିକଟ ଭବିଷ୍ୟତରେ ସେମାନେ ଯେ ହିଂସାର ଆଶ୍ରୟ ନେବେ ଏଥିରେ କୌଣସି ସନ୍ଦେହ ନାହିଁ । ଫଳରେ ସାରା ଦେଶରେ ବିଶୃଙ୍ଖଳା ଓ ଅଶାନ୍ତି ବ୍ୟାପିଯିବ ।

ବହୁଚିନ୍ତା ଓ ଗବେଷଣାପରେ ମନେହେଉଛି ଯେ ଏହି ବିପ୍ଳବର ଏକାନ୍ତ ହିଁ ପ୍ରୟୋଜନ । କିନ୍ତୁ ହିଂସାକୁ ଏଡାଇବା ପାଇଁ ଏ ଧାରାକୁ ପରିବର୍ତ୍ତନ କରିବା ଦରକାର । ଏ ଯୁଗର ମହାମାନବ ମହାତ୍ମାଗାନ୍ଧୀ ସତ୍ୟାଗ୍ରହର ଯେଉଁ ପନ୍ଥା ଦେଖାଇଛନ୍ତି ତାକୁ ଅନୁସରଣ କରିବା ଫଳରେ ହିଁ ଏହି ଅହିଂସାତ୍ମକ ବିପ୍ଳବ ଓ ସତ୍ୟାଗ୍ରହ ସଫଳ ହୋଇପାରିବ । ଅନ୍ୟାୟର ବିରୋଧ କରିବା ଓ ଜମିର ପ୍ରକୃତ ସତ୍ତ୍ୱାଧିକାରୀକୁ ତା'ର ଜମି ଫେରସ୍ତ କରିଦେବାର ଦାବି ନେଇ ଆମେ ଗୋଟିଏ ସତ୍ୟାଗ୍ରହର ଆୟୋଜନ କରୁଛୁ । ଏଣୁ ନିବେଦନ କରୁଯେ ଆପଣ ଜାତିବର୍ଣ୍ଣ ନିର୍ବିଶେଷରେ ଏଥିରେ ପୂର୍ଣ୍ଣପ୍ରାଣରେ ସହଯୋଗ କରି ଆମର ଏ ସତ୍ କାର୍ଯ୍ୟକୁ ସାଫଲ୍ୟ ମଣ୍ଡିତ କରନ୍ତୁ ।

ତା ୨୭-୧୧-୫୧

ନିବେଦକ

ଭୂ-ସତ୍ୟାଗ୍ରହୀ ସମାଜ

ପୋ.ଅ. : କୁନ୍ଦ୍ରେଜୀ ଜି. : କୋରାପୁଟ

ଏହି ପ୍ରଚାରପତ୍ରର ସ୍ୱର ଓ ଅନ୍ତର୍ନିହିତ ଅର୍ଥ ନିଶ୍ଚିତଭାବେ ଯେ ଧନୀମାନଙ୍କ ମନରେ ଆଶଙ୍କା, ଭୟ ଉଦ୍ରେକ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସତ୍ୟର ମୁହାଁମୁହିଁ ହେବା ପାଇଁ ଏକ ଆହ୍ବାନ ଥିଲା ଏଥିରେ ସନ୍ଦେହ ନାହିଁ । ଆତ୍ମ ସାହସ ନଥିଲେ ମଣିଷ ସତ୍ୟର ସାମନା କରିପାରେ ନାହିଁ । ଆହ୍ବାନ ଯାହା ପ୍ରଚାରପତ୍ରରେ ଥିଲା ତାହା ଏ ଅଞ୍ଚଳର ଧନୀମାନଙ୍କୁ ଭବିଷ୍ୟତ ବିପଦର ସୂଚନା ମନେହେଲା । ସେମାନେ ଧନ, ସରକାରୀ କ୍ଷମତା ଓ ଦଣ୍ଡଭେଦ ନୀତିରେ ଏକତା ବଦ୍ଧ ହୋଇ ଏହାର ଉଚିତ ମୁକାବିଲା କରିବା ପାଇଁ ପଦକ୍ଷେପମାନେ ନେଲେ ।

ଏହି ନିବେଦନ ପତ୍ର ରାୟଗଡ଼ା ଓ ଗୁଣୁପୁର ତାଲୁକାର ପ୍ରାୟ ୫୦ ଖଣ୍ଡ ଗାଁରେ ବଣ୍ଟାଗଲା । ପତ୍ରର ମର୍ମ କର୍ମୀମାନେ ସଭାସମିତି କରି ବୁଝାଇଲେ । ଏକ ନିର୍ଦ୍ଦିଷ୍ଟ ତାରିଖରେ ସମସ୍ତ ଗାଁର ପ୍ରତିନିଧିମାନେ କୁଜେନ୍ଦ୍ରୀରେ ମିଳିତ ହେବାର ଲକ୍ଷ୍ୟ ରଖାଗଲା ।

୧୫-୧୨-୫୧ ତାରିଖ ଦିନ ଭୂ-ସତ୍ୟାଗ୍ରହୀ ସମାଜ ତା'ର ଉଦ୍ଦେଶ୍ୟ ସାଧନ ଦିଗରେ ଓ ଭବିଷ୍ୟତ କର୍ମପନ୍ଥା ନେଇ ଆଲୋଚନା କଲା ଏବଂ ଭୂ-ସତ୍ୟାଗ୍ରହୀ ସମାଜର ବାର୍ତ୍ତା ପ୍ରଚାର ପାଇଁ ଏକ ୧୫ ଦିନିଆ ଶିବିରର ଆୟୋଜନ କରିବା ପାଇଁ ନିଷ୍ପତ୍ତି ନେଲା । ଏହି ଶିକ୍ଷା ଶିବିରର ସମସ୍ତ ଖର୍ଚ୍ଚ ଶ୍ରୀ ଈଶ୍ୱରଲାଲ ବ୍ୟାସ ବହନ କରିବାର ଭାର ନେଲେ । ଶିବିରର ଆୟୋଜନ ପାଇଁ ବିଶ୍ୱନାଥ ପଟ୍ଟନାୟକଙ୍କୁ ଦାୟିତ୍ୱ ଦିଆଗଲା । ଏହି ଶିବିରରେ ଶିକ୍ଷାର୍ଥୀମାନଙ୍କୁ ପରାମର୍ଶ ଓ ଉପଦେଶ ଦେବା ପାଇଁ ଭଦ୍ରକରୁ ଶ୍ରୀ ନିମାଇ ଚରଣ ସାହୁଙ୍କୁ ନିମନ୍ତ୍ରଣ କରିବା ପାଇଁ ସ୍ଥିର କରାଗଲା ।

ଏହି ଶିକ୍ଷା ଶିବିରରେ ୪୧ ଜଣ ବ୍ୟକ୍ତିଙ୍କୁ ଶିକ୍ଷାର୍ଥୀଭାବେ ଗ୍ରହଣ କରାଗଲା ଏବଂ ତା ୧୫-୧-୫୨ ରୁ ୨୯-୧-୫୨ ଯାଏ କୁଜେନ୍ଦ୍ରୀ ଠାରେ ଶିବିର ଖୋଲିବା ଠିକ୍ କରାଗଲା ।

## କୁଜେନ୍ଦ୍ରୀ ଶିକ୍ଷା ଶିବିର (୧୫-୧-୫୨ ରୁ ୨୯-୧-୫୨) :

ଏହି ଶିକ୍ଷା ଶିବିରରେ ଭୂ-ସତ୍ୟାଗ୍ରହୀ ସମାଜର ପରବର୍ତ୍ତୀ ଆନ୍ଦୋଳନ କିପରି କରାଯିବ ସେ ସମ୍ବନ୍ଧରେ କର୍ମୀମାନଙ୍କୁ ତାଲିମ ଦେବା, ଆନ୍ଦୋଳନ ସମୟରେ ସେମାନଙ୍କ ଆଚରଣ କିପରି ହେବ ସେ ବିଷୟରେ ବିଶେଷ ଆଲୋଚନା କରିବା ପାଇଁ କାର୍ଯ୍ୟକ୍ରମମାନ ସ୍ଥିର କରାଗଲା । ଶ୍ରୀ ଈଶ୍ୱରଲାଲ ବ୍ୟାସ, ଶ୍ରୀ ରାଧାରତନ ଦାସ, ଶ୍ରୀ ନିମାଇ ଚରଣ

ସାହୁ, ଶ୍ରୀ ସୁଧାଂଶୁ ଶେଖର ଦାସ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ପରିଚାଳନାଗତ ଦାୟିତ୍ୱ ନେଲେ । ଯେଉଁ ୪୧ ଜଣ ଶିକ୍ଷାର୍ଥୀ ଏହି ଶିବିରରେ ଯୋଗଦେଇଥିଲେ ସେମାନେ ହେଲେ : ରାୟଗଡ଼ା ତାଲୁକାର ମାରିଗୁଡ଼ା ଗ୍ରାମର ପିତାମ୍ବର ଚାରିସା, ପାଇକପଡ଼ାର ପୋଲଦୋରା, ଡୁମ୍ବରୀଗେଡ଼ାର ଲଛମନ ଦୋରା, ସଂଖଳ ପଦରର ମନାସିଂ, ବାଲିଖମ୍ବାରର ନୌକା ନାଏକ, ଡୁମ୍ବରୀଗେଡ଼ାର ମାଳତୀ ବିଶ୍ୱାଳ, ଗୁଣୁପୁର ତାଲୁକର ଗୁଡ଼ିଆବନ୍ଧରୁ ସୁନ୍ଦ୍ରୁ ଗମାଙ୍ଗ, କୁଜେନ୍ଦ୍ରୀର ନୀଳକଣ୍ଠ ଗମାଙ୍ଗ, ଗୁଇଣ୍ଡୁ ଗମାଙ୍ଗ, କେନ୍ଦୁଗୁଡ଼ାରୁ ନିମାଲ୍ଲା ଜାନି, ମାରିଗୁଡ଼ାରୁ କଛ ଗମାଙ୍ଗ, ପୁଣି ରାୟଗଡ଼ା ତାଲୁକାସ୍ଥ ସାଲିବିରୁ କୁକାୟା ଦୋରା, ମାଣ୍ଡିଙ୍ଗ୍ ଲାସୁମୋୟା, ପାଣ୍ଡରତଳାରୁ କଣ୍ଡାଗରେ ନିସୁ, ସିନାବାଡ଼ିରୁ ବିଶ୍ୱମ୍ଭର ଦୋରା, ଜୋରଡ଼ିରୁ ବରଜ ସୁନ୍ଦର ଦୋରା, ତୁମ୍ବାକଣାରୁ ନୀଳାମ୍ବର ଦୋରା ଆଦି । ଏହି ଶିକ୍ଷାର୍ଥୀମାନେ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରି ଭୂମିହୀନମାନଙ୍କ ମନରେ ଚେତନା ଜାଗ୍ରତ କରିବେ ବୋଲି ଶପଥ ନେଲେ ।

## ଗୋପବାବୁ ଓ ରମାଦେବୀଙ୍କ କୋରାପୁଟ ଜିଲ୍ଲାରେ ସର୍ବୋଦୟ ପଦଯାତ୍ରା :

ରାୟଗଡ଼ା ଓ ଗୁଣୁପୁର ଅଞ୍ଚଳରେ ଭୂ-ସତ୍ୟାଗ୍ରହର ପ୍ରସ୍ତୁତି ଚାଲିଥିବା ସମୟରେ, ବିନୋବାଜୀଙ୍କ ବାର୍ତ୍ତା ପ୍ରଚାର କିରବା ଓ ସର୍ବୋଦୟର ଲକ୍ଷ୍ୟ ଉଦ୍ଦେଶ୍ୟ ବୁଝାଇବା ପାଇଁ ଗୋପବାବୁ ପଦଯାତ୍ରା ଆରମ୍ଭ କଲେ ପୁରୀରୁ ୧୯୫୨ ମସିହା ଫେବୃଆରୀ ୧୪ ତାରିଖ ଦିନ । ଟାଇଁସୀ ସମ୍ମିଳନୀରେ ଓଡ଼ିଶାରେ ଭୂଦାନ ଯଜ୍ଞ ଚଳାଇବାକୁ ନିଷ୍ପତ୍ତି ପରେ ଏହି ପଦଯାତ୍ରା । ଏଥର ଗୋପବାବୁ ଓ ରମାଦେବୀ ଓଡ଼ିଶାର ଆଠଟି ଜିଲ୍ଲା ପଦଯାତ୍ରା କରିବା ଲକ୍ଷ୍ୟ ନେଇ ପୁରୀର ବିଭିନ୍ନ ଯାଗାରେ ପଦଯାତ୍ରା କରି ୧୯୫୨ ମାର୍ଚ୍ଚ ୧ ତାରିଖ ଦିନ ଗଞ୍ଜାମର ରାମଗିରି ଉଦୟଗିରିରେ ପହଞ୍ଚିଲେ । ସେଠି ବଳରାମ ହାତୀଙ୍କ ଘରେ ରହିଲେ । ଏ ଜଣେ କଂଗ୍ରେସ ପ୍ରେମୀ ଲୋକ । ସେଠୁ ଚାଲି ଚାଲି ପାହାଡ଼ ପର୍ବତ ଘାଟି ଚଢ଼ି ଓହ୍ଲାଇଲେ 'ସେରଂ'ରେ ମାର୍ଚ୍ଚ ୩ ତାରିଖ ଦିନ । ସେରଂରେ ଥାଆନ୍ତି ମିସ୍ ମନୋରୋ । ସମାଜସେବିକା । ତାଙ୍କ ଘରେ ଭୋଜନ କରି ଗୋପବାବୁ ମୁହାଁଇଲେ ପୁଟାସିଂ ଆଡ଼କୁ । କୋରାପୁଟ ଜିଲ୍ଲାର ପୁଟାସିଂ ଓ ଗଞ୍ଜାମ ଜିଲ୍ଲାର ସଉରା ମାଳର ଶେଷସୀମା ଏଠି ଲାଗିଛି । ପଦଯାତ୍ରୀ ଦଳ ସବୁଠି ଆଦିବାସୀଙ୍କ ସମସ୍ୟାମାନ ବୁଝୁଥାନ୍ତି । ତାଙ୍କ ଦୁଃଖ ଶୁଣୁଥାନ୍ତି । ସବୁଠି ସେଇ ଶୋଷଣ, ଆଦିବାସୀ ନିର୍ଯାତନାର ଚିତ୍ର । ସବୁଠି ଆଦିବାସୀ ଜୀବନ କୁ-ସଂସ୍କାର, ଅନ୍ଧବିଶ୍ୱାସର ଆବର୍ତ୍ତଭିତରେ । ଯାତରା, ପର୍ବ, ଓଷା, ବ୍ରତରେ, ପିଲାର ନାଁ

ଦିଆ, ପୁଅଝିଅର ବିବାହ, ମଲାଘର ଦଶାକ୍ରିୟା ପାଇଁ ଋଣ କରି ନିଜକୁ ବନ୍ଧାପକାଇ ଗୋଡି ହେବାର ଜୀବନ । ଧନୀ, ବ୍ୟବସାୟୀମାନଙ୍କର ଶୋଷଣକୁ ଦେଖି ଗୋପବାବୁ ଓ ରମାଦେବୀ ପହଞ୍ଚିଲେ କୋରାପୁଟ ଜିଲ୍ଲାର ସୀମା ଜଇତରରେ ମାର୍ଚ୍ଚ ୫ ତାରିଖ ୧୯୫୨ରେ । ସେଠି ଭୂ-ସତ୍ୟାଗ୍ରହୀ ସମାଜର ଶିକ୍ଷାର୍ଥୀମାନଙ୍କ ସହିତ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ବ୍ୟାସଜୀ, ଶ୍ରୀ ରାଧାରତନ ଦାସ, ଶାନ୍ତି ଦେଇ, ଶ୍ରୀ ସୁଧାଂଶୁଶେଖର ଦାସ ଓ ଗୁଣୁପୁରର ଶ୍ରୀ ପ୍ରହଲ୍ଲାଦ ପାଣିଗ୍ରାହୀ ବିପୁଳ ସମ୍ବର୍ଦ୍ଧନା ଜଣାଇଲେ ।

## ଗୁଣୁପୁରରେ ଭୂମିମାଲିକଙ୍କ ଫେରାଦ :

୧୯୫୨ ମାର୍ଚ୍ଚ ୫ ଦିନ ଗୋପବାବୁ ଗୁଣୁପୁରରେ ପହଞ୍ଚିଲେ । ବିପୁଳ ଶ୍ରଦ୍ଧା ଓ ସମ୍ମାନ ସହ ଲୋକେ ପଦଯାତ୍ରୀଙ୍କୁ ପାଛୋଟିନେଲେ । ଗୁଣୁପୁରର ଲୋକେ, କଂଗ୍ରେସନେତା ଓ ରଚନାତ୍ମକ କର୍ମୀ, ଭୂମିହୀନ ଆଦିବାସୀ, ଗୁଣୁପୁର ଅଞ୍ଚଳର ବ୍ୟବସାୟୀମାନେ ଓ ଭୂମିମାଲିକମାନେ ସେଠି ଜମାଥିଲେ । ଗୋପବାବୁ ତିନି ଦିନ ସେଠି ରହିଲେ ।

ସେତେବେଳକୁ ଭୂ-ସତ୍ୟାଗ୍ରହୀ ସମାଜର ଆନ୍ଦୋଳନ କଥା ସମସ୍ତଙ୍କ ମୁହଁରେ । ତୁଣ୍ଡ ବାଇଦ ସହସ୍ର କୋଶ । ଗୋପବାବୁ ଶୁଣିଥିଲେ ଭାଗଚାଷୀର ହନ୍ତସନ୍ତ ଅବସ୍ଥା, ଭୂମିମାଲିକର ଅତ୍ୟାଚାର, ଶୋଷଣର କଥା । ୧୯୪୮ର ଭୂସତ୍ୱ ଆଇନ ହୋଇ ମଧ ଭାଗଚାଷୀର କିଛି ଉପକାର ହୋଇନାହିଁ ବରଂ ଧନୀମାନେ, ଭୂମିବାଲାମାନେ ମିଛ ରେକର୍ଡ଼ କରି ବେଶି ଫାଇଦା ଉଠାଇଛନ୍ତି । ସେ ସଉରା ଭୂମିହୀନମାନଙ୍କୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ସହ ମିଶି ବାଟ ବାହାର କରିବା ପାଇଁ ପ୍ରବୋଧ ଦେଲେ ।

ଗୋପବାବୁ ଗୁଣୁପୁରରେ ଥିଲାବେଳେ ସେ ଅଞ୍ଚଳର ଜମି ସାହୁକାରମାନେ ଗୋଟିଏ ମେଣ୍ଟବାନ୍ଧି ତାଙ୍କୁ ଫେରାଦ ହେଲେ ଯେ ଆଦିବାସୀମାନେ ତାଙ୍କୁ ତାଙ୍କ ଜମିରୁ ବଳପୂର୍ବକ, ଜବର୍ଦ୍ଦସ୍ତି ତଡ଼ିଦେବା ପାଇଁ ବିଚାର କରୁଛନ୍ତି, ତେଣୁ ସେମାନେ ଡରି ଯାଇଛନ୍ତି । ଗୋପବାବୁ ତାଙ୍କୁ ଏ ବିପଦରୁ ବଞ୍ଚାଇବା ପାଇଁ ବାଟ ବାହାର କରନ୍ତୁ ।

ଏହି ସମ୍ବନ୍ଧରେ ଗୋପବାବୁ କିଛି ଜାଣିନଥିଲେ । ସେ ସାହୁକାରମାନଙ୍କୁ କୋକୁଆଭୟ ପ୍ରଚାର ନକରି ବରଂ ଭୂମିହୀନଙ୍କ ପ୍ରତି ସହାନୁଭୂତିଶୀଳ ହେବା ପାଇଁ ପରାମର୍ଶ ଦେଲେ ।

ମାର୍ଚ୍ଚ ୮ ତାରିଖ ୧୯୫୨ରେ ପଦଯାତ୍ରୀ ଦଳ କୁଢ଼େନ୍ଦ୍ରୀରେ ପହଞ୍ଚିଲେ । ତା ୮.୩.୫୨ରୁ ୧୧.୩.୫୨ ତିନିଦିନ କୁଢ଼େନ୍ଦ୍ରୀରେ ସେ ରହିଲେ । ସେଠାକୁ ପାଖ ୩୦/୪୦ ଖଣ୍ଡ ଗାଁର ଲୋକ ନିଜ ସମସ୍ୟାମାନ ନେଇ ଆସୁଥିଲେ । ସମାଧାନ ଖୋଜୁଥିଲେ ।

୧୧.୩.୫୨ ଦିନ ସନ୍ଧ୍ୟାରେ କଥା ପ୍ରସଙ୍ଗରେ ସେ ଜାଣିବାକୁ ପାଇଲେ ଗତ ଜାନୁଆରୀ ମାସରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ କେତେକ ଗାଁର ମୁଖିଆ ତଥା କର୍ମୀ ସମ୍ମିଳନୀରେ ଭୂ-ସତ୍ୟାଗ୍ରହୀ ସମାଜ ଗଠନ ହୋଇଛି ଏବଂ ବିଭିନ୍ନ ଉପାୟରେ ଆଦିବାସୀଙ୍କ 'ଅପହୃତ ଜମି' ସାହୁକାରମାନଙ୍କ ଠାରୁ ପୁନଃରୁଦ୍ଧାର ପାଇଁ ଭୂ-ସତ୍ୟାଗ୍ରହ ଆନ୍ଦୋଳନ କରାହେବ । ଭୂମିମାଲିକମାନଙ୍କୁ ନୋଟିସ୍ ଦେଇ ତାଙ୍କଠିଥିବା 'ଅପହୃତ ଜମି'କୁ ଭୂମିହୀନମାନେ ବଳପୂର୍ବକ ଚାଷକରିବେ, ସେଥିପାଇଁ ଆଦିବାସୀମାନେ ସଂଗଠିତ ହେବେ ।

ବୋଧହୁଏ ୨୪-୧୧-୫୧ରେ ଦେଇଥିବା ବିଶ୍ୱନାଥଙ୍କ ଚିଠି ଓ ନବକୃଷ୍ଣ ଚୌଧୁରୀଙ୍କୁ ୮-୧୨-୫୧ରେ ଦେଇଥିବା ଚିଠି ସେମାନଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । ଭୂ-ସତ୍ୟାଗ୍ରହ କଥା ଶୁଣି ଓ ନିଷ୍ପତ୍ତି ହୋଇଯାଇଥିବା ଶୁଣି ଗୋପବାବୁ କେବଳ ଏତିକି କହିଲେ, ''ଅପହୃତ ଜମି ପାଇଁ ଆନ୍ଦୋଳନ କରିବା କର୍ତ୍ତବ୍ୟ । କିନ୍ତୁ ତାହା କେଉଁ ମାର୍ଗରେ କରିବ ସେ ବିଷୟରେ ମୋତେ ଆଗରୁ କିଛି ପଚାରି ନାହଁ, ଏତେ ଡେରିରେ ଶୁଣୁଛି, ଜଣାଇ ନାହଁ । ସେଥିପାଇଁ ଆଶ୍ଚର୍ଯ୍ୟ ଲାଗୁଛି । ଯାହାହେଉ ତୁମେ ତୁମର ବସି ବିଚାର କରି ବିଶ୍ୱନାଥ ପଟ୍ଟନାୟକଙ୍କ ପରାମର୍ଶରେ କ'ଣ ନିଷ୍ପତ୍ତି ନେଇ ସାରିଛ, ମୋ ପରାମର୍ଶର ଆଉ କ'ଣ ଦରକାର ? ସଭା ସମିତି ବା ଆଉ କ'ଣ ହେବ ? ଭାବିଥିଲି ଏ ଅଞ୍ଚଳର ବହୁତ ଆଡ଼େ ଯିବି । ଥାଉ । ସେ ଗସ୍ତକ୍ରମ ବଦଳିଲା, କାଲି ସକାଳୁ ଆମେ ଏଠୁ ଯିବୁ । କଳାହାଣ୍ଡି ବାଟ ଧରିବୁ ।''

କେମିତି ଏକ ଆହତ ଅଭିମାନ ସେ କଥାରେ । ବିଶ୍ୱନାଥ ପଟ୍ଟନାୟକ ଓ ଉପସ୍ଥିତ ସମସ୍ତେ ନିର୍ବାକ । ଆଲୋଚନାର କଥାର ମୋଡ଼ ଯେ ଏମିତି ବଦଳିଯିବ ଏହା ସେମାନେ ଭାବିନଥିଲେ ।

୧୭-୩-୫୨ ଦିନ ଡୁମ୍ବରିଗୁଡ଼ାରେ ଗୋଟିଏ କର୍ମୀ ସମ୍ମିଳନୀ ହେଲା । ସେଠି ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ଉପସ୍ଥିତ କର୍ମୀମାନଙ୍କୁ ଉପଦେଶ ଦେଲେ । ପୂଜ୍ୟ ଈଶ୍ୱରଲାଲ ବ୍ୟାସ ଏହି ସମ୍ମିଳନୀରେ ଥିଲେ । ନିମ୍ନ ଆଲୋଚନା ଗୁଡ଼ିକ ହେଲା :

୧) ଯଦି ବର୍ତ୍ତମାନ ଜମିହୀନ ସର୍ବହରାମାନଙ୍କର ସ୍ୱାର୍ଥରକ୍ଷା ପାଇଁ କୌଣସି ସଂଗଠନ କରାଯାଏ ଏବଂ ସେମାନଙ୍କ ଅଭାବ ସର୍ବତୋଭାବେ ପୂରଣ କରିବା ପାଇଁ ସମାଜର

ସଂସ୍ଥାଦ୍ୱାରା ସରକାର ଆଇନ ମଧ୍ୟରେ ମଧ ପରିବର୍ତ୍ତନ ଓ ଆନ୍ଦୋଳନ କରିବାକୁ ପଡ଼େ ତେବେ ତାହା ଖୁବ୍ ଶୃଙ୍ଖଳିତ ଉପାୟରେ ହେବା ଦରକାର । କୋରାପୁଟର 'ଲୋଏର ଡିଭିଜନ' ରାୟଗଡ଼ା, ବିଷମକଟକ, ଗୁଣୁପୁର, ଗୁଡ଼ାରି ଆଦି ତାଲୁକାକୁ ବ୍ୟାପକ ଭାବରେ ଏ କାମ ପାଇଁ ହାତକୁ ନେବାକୁ ହେଲେ ବିକେନ୍ଦ୍ରିତ ଭାବରେ ନିର୍ଦ୍ଦିଷ୍ଟ ଅଞ୍ଚଳମାନଙ୍କ ପାଁଇ ୧୫ରୁ ୨୦ ଜଣ ପର୍ଯ୍ୟନ୍ତ କର୍ମୀ ରହିବା ଦରକାର । ସେ କର୍ମୀ ସ୍ଥାନୀୟ ଓ ଜମିଥିଲା ବାଲା ହୋଇଥିବା ଉଚିତ । ସେମାନେ ପ୍ରଥମେ ଲୋକଙ୍କୁ ଜମିର ଆବଶ୍ୟକତା ବୁଝାଇବେ । ଜମିହୀନକୁ ତା'ର ଦାବି ଚେତେଇଦେବେ । ଏ କାମ କରିବା ପାଇଁ ଲୋକଙ୍କ ବିଶ୍ୱାସ ଥିବା କର୍ମୀମାନେ ଅଧିକ ପରିମାଣରେ ଅର୍ଜନ କରିବା ଭଲହେବ ।

୨) ଏସବୁ କାମ ପାଇଁ ସମସ୍ତେ ଏକାଠି ହେବେ । ସାହସ ରଖିବେ । କର୍ମୀମାନେ ପ୍ରଥମେ ତ୍ୟାଗର ବାଟ ଦେଖାଇବେ । କର୍ମୀମାନେ ଆଗ ମାଡ଼ମୁହଁକୁ, ଜେଲକୁ ଯିବା ପାଇଁ ପ୍ରସ୍ତୁତ ହେବେ । ଫଳରେ ଲୋକମାନଙ୍କ ସାହସ ବଢ଼ିବ ।

୩) କର୍ମୀମାନେ ଲୋକମାନଙ୍କୁ ବୁଝାଇ ସାଦା କାଗଜ ଉପରେ ଟିପଚିହ୍ନ ନେବା ଓ ଦେବାକୁ ବିରୋଧ କରିବା ପାଇଁ ବୁଝାଇବେ । ଟିପଚିହ୍ନ ବିରୋଧରେ ଗୋଟିଏ ଜୋରସୋର ଆନ୍ଦୋଳନ ହେବା ଦରକାର । ଏହି ଟିପଚିହ୍ନ ନେଇ ପ୍ରତିବର୍ଷ ଯେଉଁ ଅନ୍ୟାୟ ଆଚରଣ, ଅତ୍ୟାଚାରୀ, ଧନଲିପ୍ସୁ, ନ୍ୟସ୍ତସ୍ୱାର୍ଥ ଲୋକମାନେ କରିଆସିଛନ୍ତି, ତା'ର ଫଳରେ ଆଜି ଆଦିବାସୀ, ଗରିବ ଲୋକଙ୍କ ହାତରୁ ସମସ୍ତ ଜମି ଚାଲିଯାଇଛି । ଏଣୁ କର୍ମୀମାନେ ନିଜ ଅଞ୍ଚଳରେ ବ୍ୟାପକଭାବେ ଯେପରି କେହି କାହାରିକୁ ଟିପ ନଦିଏ ବା କେହି ନନିଏ ସେ ପାଇଁ ପ୍ରଚାର ଚଳାଇବେ ଏବଂ ଯଦି ଏପରି ଘଟଣା ନଜରକୁ ଆସେ, ସେସବୁକୁ ଧରି ସଂଗଠନ ଜରିଆରେ ସରକାରଙ୍କୁ (ତାଲୁକା ଅଫିସର ଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀ ଯାଏ) ଏକଥା ଜଣାଇବେ । ଲୋକଙ୍କୁ ଏ ପ୍ରକାର ଟିପଦେବାରୁ ନିବର୍ତ୍ତାଇବେ ।

୪) ଗରୀବ ଲୋକଙ୍କୁ ସହଜରେ ନ୍ୟାୟ ମିଳୁନାହିଁ । ଧନୀ ସାହୁକାର, ସରକାରୀ କର୍ମଚାରୀଙ୍କ ସଲାସୂତ୍ରରାରେ, କୋର୍ଟ କଚେରିକୁ ଗରିବ ଧାଇଁ ଧାଇଁ ପଇସା, ସମୟ ଓ ଶ୍ରମ ଖର୍ଚ୍ଚ କରିପାରୁନାହିଁ, ଏଣୁ କର୍ମୀମାନେ ଏହି କ୍ଷେତ୍ରରେ ଉଚିତ ବିଚାର କରି କାର୍ଯ୍ୟକରିବେ ଓ ଗରିବମାନେ ନିଜ ନିଜର କଳିଗୋଳ ମେଣ୍ଟାଇବା ପାଇଁ କୋର୍ଟ କଚେରିର ଦ୍ୱାରସ୍ଥ ନହୋଇ ନିଜ ନିଜ ଭିତରେ ଆପୋଷ ବିଚାରରେ ସମାଧାନ କରିବେ ।

୫) ଲୋକମାନେ ଯେପରି ଗୁତା, ଭାଗ ଓ ଠିକା ହିସାବରେ କାମ ଓ ଚାଷ କରୁଛନ୍ତି ତା'ର କୌଣସି ଠିକଣା ନାହିଁ, ଏବକୁ ଠିକା ହେଲେ ମଧ ରସିଦ୍, ଭାଗଚାଷରେ ମଧ ଲିଖିତ ଅନୁମତି ଆଦି କେମିତି ଚାଷୀ ହାତକୁ ଆସିପାରିବ କର୍ମୀମାନେ ତାହାର ବ୍ୟବସ୍ଥା କରିବେ ।

୬) ବର୍ତ୍ତମାନ ସେଟ୍‌ଲମେଣ୍ଟ ଚାଲିଛି । ଆଗରୁ ରେଣ୍ଟ ସେଟଲମେଣ୍ଟ ହୋଇଥିଲା । ଏହା ଦ୍ୱାରା ସମସ୍ତ ଜମି ମପା ମପି ହୋଇ ଚଷୁଥିବା ଲୋକନାଁରେ ଜମିହେବାର ସୁବିଧା ଅଛି ଏଣୁ କର୍ମୀମାନେ ସ୍ଥାନୀୟ ଲୋକମାନଙ୍କୁ ଯେପରି ପଟ୍ଟା ମିଳେ ସେ ଦିଗରେ ବ୍ୟବସ୍ଥା କରିବେ ।

ଶେଷରେ ଡୁଙ୍ଗୁରିଗୁଡ଼ା କର୍ମୀ ସମ୍ମିଳନୀରେ ସ୍ଥିରହେଲା ଯେ, ବର୍ତ୍ତମାନ ଜରୁରୀ ପରିସ୍ଥିତିରେ କର୍ମୀମାନେ ନିମ୍ନ କାର୍ଯ୍ୟଗୁଡ଼ିକ କରିବେ :

୧. ସେଟ୍‌ଲମେଣ୍ଟ କାମରେ ଲୋକଙ୍କ ଉପକାରକୁ ଜଗି କର୍ମୀମାନେ ବିଭିନ୍ନ କେନ୍ଦ୍ର ଓ ଅଞ୍ଚଳର ବିକେନ୍ଦ୍ରିତ ବା କେନ୍ଦ୍ରିତ ଦାୟତ୍ୱ ନେବେ ।

୨. ବେଳ ଥାଉଁ ଥାଉଁ ବର୍ଷା ଆସିବା ପୂର୍ବରୁ ଧାନଗୋଲା ଖୋଲିବା ପାଇଁ ସବୁ ପ୍ରକାର ଚେଷ୍ଟା କରିବାକୁ ହେବ । ସରକାରକୁ କହି, ଖବରକାଗଜକୁ ଲେଖି, ଦରଖାସ୍ତ ଆଦି ମନ୍ତ୍ରୀ ମହାଶୟମାନଙ୍କୁ ପଠାଇ ଓ ବେସରକାରୀ ଆନ୍ଦୋଳନ କରି ଠିକ୍ ସମୟ ବେଳକୁ ଧାନଗୋଲାମାନ ଖୋଲାଇବାକୁ ହେବ ।

୩. ଜମି ଆନ୍ଦୋଳନକୁ ଧୀରେ ଧୀରେ ବ୍ୟାପକ ରୂପ ଦେବାକୁ ପଡ଼ିବ । କେବଳ ଆଦିବାସୀଙ୍କ ତରଫରୁ କରିବା ନ୍ୟାୟୋଚିତ ହେବ ନାହିଁ, କାରଣ-

୧. ଆଦିବାସୀ ଅଣ ଆଦିବାସୀ ଭାବ ଜାଗ୍ରତ ହେବ ।

୨. ଆଦିବାସୀମାନଙ୍କ ମଧ୍ୟରୁ ଗାଁର ମୁଖିଆ ନାଇକ ଆଦି ମଧ ଅନ୍ୟାୟ ଉପାୟରେ ଅଧିକ ସମ୍ପତ୍ତି କରିଛନ୍ତି, ତାଙ୍କ ସାଙ୍ଗରେ ଆମର ଓ ସାଧାରଣ ଆଦିବାସୀଙ୍କ ସମ୍ପର୍କ କ'ଣ ହେବ ?

୩. ଭାଗଚାଷୀ ଆଦିବାସୀ ଓ ଦାବିକରୁଥିବା ଆଦିବାସୀଙ୍କ ସଂଘର୍ଷ ହେବାର ସମ୍ଭାବନା ରହିଛି, ତାକୁ କେତେଦୂର କାର୍ଯ୍ୟକାରୀ କରାଯିବ, ଅତଏବ, ଜମି ଅନ୍ଦୋଳନକୁ ଚାଲୁ ରଖିବା ଉଚିତ । ମାତ୍ର ଏହାକୁ ଆଦିବାସୀ ଆଦି ନାମ ନଦେଇ ଭୂମିହୀନମାନଙ୍କ ପାଇଁ ଏ ବ୍ୟବସ୍ଥା ହେବା ଦରକାର ।

୪. ଆମର ବିପ୍ଳବ ଧନୀଙ୍କ ସଙ୍ଗେ ହେବ କି ସରକାରଙ୍କ ସଙ୍ଗେ ହେବ ? ସରକାରଙ୍କ ସଙ୍ଗେ ହେବା ବିଧେୟ । କାରଣ ସରକାରଙ୍କୁ ଦାବି କରିହେବ । ବିଚାର ଦାବି କରିହେବ । ନ୍ୟାୟକୁ ଟଙ୍କା ଦ୍ୱାରା ସରକାର ଅନ୍ୟାୟ କରି ପାରିବେ ନାହିଁ । ପୁଣି ଆନ୍ଦୋଳନକୁ ବ୍ୟାପକ ରୂପ ଦେବାର ସୁବିଧା ଏଥିରେ ଅଛି । ପୁଣି ଜମି ସମ୍ପର୍କରେ ଆନ୍ଦୋଳନ କରିବାର କାର୍ଯ୍ୟକ୍ରମ ହାତକୁ ନେବାର ଅସୁବିଧା ଥିଲେ ବଣ, ସରକାରୀ ପଡ଼ିଆ ଜମି, ରକ୍ଷିତ ଜଙ୍ଗଲକୁ ଜମିରେ ପରିଣତ କରାଯିବ । 'ବଣ କାଟିବା' ଆଦି କାର୍ଯ୍ୟକ୍ରମ ମଧ୍ୟ ଦରକାର ପଡ଼ିଲେ ହାତକୁ ନିଆଯାଇପାରେ ।

ଏହାଥିଲା ଗୋପବାବୁଙ୍କର ଆନ୍ଦୋଳନର ବିଚାରଗତ ଦିଗ ଓ ଦର୍ଶନ । ଏହାକୁ ସଂଗଠନ କରି କାର୍ଯ୍ୟକାରୀ କରାଇବା ସ୍ଥାନୀୟ କର୍ମୀମାନଙ୍କର ବୋଲି ସେ କହିବା ସଙ୍ଗେ ସଙ୍ଗେ ଆନ୍ଦୋଳନ ଅହିଂସାତ୍ମକ ଉପାୟରେ ହେବା ଉଚିତ ବୋଲି ମତ ଦେଲେ ।

୨୪-୩-୫୨ ଦିନ ଖିଲିଗିରାଇ ଗ୍ରାମର ଦଣ୍ଡାସି ଗମାଙ୍ଗ, ସାନିଆ ଗମାଙ୍ଗ, ଲଛିପୁରର ବି୍ସ ଗମାଙ୍ଗ, ସୁଣ୍ଡି ଗମାଙ୍ଗ, ଆମ୍ବାବାଡ଼ିର ଜଟିଆ ଗମାଙ୍ଗ, ଖତ ଗମାଙ୍ଗ, ଡିମିରିସିଙ୍ଗିର ନୀଳକଣ୍ଠ ଗମାଙ୍ଗ, ବହାପାଣି ଗମାଙ୍ଗ, ସୁଡ଼ିଆବନ୍ଧ ଗାଁର ଯାଗା ଗମାଙ୍ଗ, ଓଡ଼ିଆ ଗମାଙ୍ଗ, ମୋହନ ଗମାଙ୍ଗ, ମାତୁ ଗମାଙ୍ଗ, ଲାକିଆ ଗମାଙ୍ଗ, ଚଇତନ ଗମାଙ୍ଗ, ଲକ୍ଷ୍ମଣଗୁଡ଼ାର ପୁରିଆ ଗମାଙ୍ଗ, ଖମ୍ବାପଦରର ପୂର୍ଣ୍ଣଚନ୍ଦ୍ର ଗମାଙ୍ଗ, ମାରିଗୁଡ଼ାର କଞ୍ଚ ଗମାଙ୍ଗ, ଡକାଶିଖଲାର ବୁଢ଼ା ଗମାଙ୍ଗ, ସନ୍ୟାସିପୁରର ନରସିଂହ ଗମାଙ୍ଗ, କେନ୍ଦୁଗୁଡ଼ାର ସାନିଆ ଗମାଙ୍ଗ, ଜାନି ଗମାଙ୍ଗ, ରାଇଗୁଡ଼ାର କକାଂ ଗମାଙ୍ଗ, ଗୁଲ୍ଲା ଗମାଙ୍ଗ, ବେନା ଗମାଙ୍ଗ, ଉକୁମାଗୁଡ଼ାର କୁଣ୍ଡୀରୀ, ପିତାଲାମ୍ବେଙ୍ଗିର ଶାମରାଜୁ ଦୋରା, ଗରଣ୍ଡାର ପେଣ୍ଟାନୋ ଦୋରା, କୁଚ୍ଚେନ୍ଦ୍ରୀର ନୀଳକଣ୍ଠ ଗମାଙ୍ଗ, ଗୁଇଣ୍ଡୁ ଗମାଙ୍ଗ, ବିସା ଗମାଙ୍ଗ, ବୈରୁ ଗମାଙ୍ଗ, ଲାକଡ଼ା ଗମାଙ୍ଗ, ସମ୍ବରା ଗମାଙ୍ଗୋ, ଖଞ୍ଜା ଗମାଙ୍ଗ, ବିଶ୍ୱନାଥ ପଟ୍ଟନାୟକ ଓ ଗୁଣୁପୁରର ପହଲ୍ଲାଦ ପାଣିଗ୍ରାହୀ ତଥା ୫୦ ଜଣ ସାଧାରଣ ଗ୍ରାମବାସୀଙ୍କ ଉପସ୍ଥିତିରେ ଗୋପବାବୁ ଦେଇଥିବା ପରାମର୍ଶ ଅନୁସାରେ କାମ କରିବେ ବୋଲି ନିଷ୍ପତ୍ତି ନିଆଗଲା ଏବଂ ସରକାର କରିଥିବା ଓଡ଼ିଶା ଭାଗଚାଷ ଆଇନ, ଭାଗଚାଷୀ ପାଇବା ଫସଲର ୨/୩ ଭାଗ ତଥା ଭୂ-ସଂସ୍କାର ପ୍ରଥାକୁ ଶୀଘ୍ର ଲାଗୁ କରିବା ପାଇଁ ସରକାରଙ୍କୁ ଅନୁରୋଧ କରିବାକୁ ବିଶ୍ୱନାଥ ପଟ୍ଟନାୟକଙ୍କୁ ଦାୟିତ୍ୱ ଦିଆଗଲା ।

ଏସବୁ ବିଚାର ଆଲୋଚନା ଚାଲିଥିବା ସମୟରେ ବୋଡ଼ିବାଲି, କୁତୁସୁରୁ, ପତନଗୁଡ଼ି ଓ ଜୋରଙ୍ଗି ଆଦି କେତେକ ଗ୍ରାମର ଭୂମିହୀନ ଆଦିବାସୀ ଓ ଭାଗଚାଷୀ ତାଙ୍କର ଅପହୃତ ଜମିକୁ ଚଷିବା ଫଳରେ, ଏଥିରେ ଶୁଣ୍ଢୀ ଓ ଅନ୍ୟାନ୍ୟ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଭୂ-ସତ୍ୟାଗ୍ରହୀ ସମାଜ ଓ ବିଶ୍ୱନାଥ ପଟ୍ଟନାୟକଙ୍କୁ ସଂପୃକ୍ତ କରାଇଲେ । ପ୍ରକୃତ ଘଟଣା ଓ ତଥ୍ୟ ସଂଗ୍ରହ କରି ସର୍ବସାଧାରଣରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ପୋଲିସ କାହିଁକି ଘଟଣାର ପ୍ରକୃତ ଅନୁସନ୍ଧାନ ନକରି ଏପରି କରୁଛନ୍ତି, ଏହାର ପ୍ରତିବାଦ କରିବା ପାଇଁ ସ୍ଥିର ହେଲା ।

୧.୫.୫୨ରେ ଓଡ଼ିଶା ସରକାରଙ୍କ ବିଭିନ୍ନ କର୍ମଚାରୀଙ୍କୁ ଏହି ଭୂ-ସତ୍ୟାଗ୍ରହ ବିଷୟ ଲେଖି ଜଣାଇ ଦିଆଗଲା । ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ସମସ୍ୟାର ସମାଧାନ ପାଇଁ ଆଲୋଚନା କରିବାକୁ ଭୂ-ସତ୍ୟାଗ୍ରହୀ ସମାଜ କୁଜେନ୍ଦ୍ରୀର ଶ୍ରୀ ନୀଳକଣ୍ଠ ଗମାଙ୍ଗ, ଶ୍ରୀ ନିମାଇ ଚରଣ ସାହୁ ଏବଂ ବିଶ୍ୱନାଥ ପଟ୍ଟନାୟକଙ୍କୁ ପଠାଇବାକୁ ସ୍ଥିର କରାଗଲା ଏବଂ ଶ୍ରୀ ସୁଧାଂଶୁ ଶେଖର ଦାସଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଅନୁରୋଧ କରାଗଲା ।

ବୋଧହୁଏ ଏଇ ଭିତରେ ବିଶ୍ୱନାଥ ପଟ୍ଟନାୟକ ୮-୧୨-୫୧ରେ ନବକୃଷ୍ଣ ଚୌଧୁରୀଙ୍କୁ ଲେଖିଥିବା ଚିଠି ଗୋପବାବୁ ପଢ଼ିଲେ ଓ ବିଷୟ ଅବଗତ ହେଲେ । ସେ ଗୋଟିଏ ଲେଖାରେ କୋରାପୁଟ ଆଦିବାସୀ ସମସ୍ୟା ସମ୍ବନ୍ଧରେ ନିମ୍ନମତେ ମତାମତଟିଏ ଦେଲେ- ସେ ଲେଖିଥିଲେ, ''ଏ ଅଞ୍ଚଳର କର୍ମୀମାନେ ଭୁଲ ବୁଝିଛନ୍ତି ।'' ଏଠାକାର ପ୍ରଶ୍ନ- (୧) ଆଦିବାସୀ ଅଣ-ଆଦିବାସୀ ନୁହେଁ । ଆଦିବାସୀ ଲୋକେ ବି ଆଦିବାସୀ ଲୋକଙ୍କ ଉପରେ ଜୁଲମ କରୁଛନ୍ତି । ଏହା ଧନୀ ଦରିଦ୍ର ପ୍ରଶ୍ନ । ଏହା ଟଙ୍କା ପଇସାର ସଇତାନି ଲୀଳା । (୨) ଏଥିରେ କେବଳ କୁମୁଟୀ ଦୋଷୀ ନୁହଁନ୍ତି । ତେଲେଙ୍ଗା ଓଡ଼ିଆ ପ୍ରଶ୍ନ ଏଠି ନାହିଁ । ବହୁତ ଓଡ଼ିଆ ଏ ସଂପର୍କରେ ଦୋଷୀ । (୩) ଆଦିବାସୀଙ୍କ ଅପହୃତ ଜମି ଫେରାଇଦେବା ଯେଉଁ ଆଇନ ଉପରେ ନିର୍ଭର କରୁଛି, ସେ ଆଇନରେ ଫାଙ୍କି ଦେବାର ବହୁତ ବାଟ ଅଛି । ସେ ଆଇନ ଠାରୁ ବଳି ଆହୁରି ଜୋରଦାର ଆଇନ ଦରକାର । ନ ଠକେଇ, ଜମି କିଣି ନେଇ ଯେ ଲୋକ ବେଶି ଜମାକରୁଛି ଏବଂ ତା' ଫଳରେ ସାଇପଡ଼ିଶା ଲୋକେ ଉପାସ ପଡୁଛନ୍ତି, ସେ ଲୋକ ମଧ ଚୋର, ଠକ । ଏ ଅସ୍ତେୟ ନୀତି ଶିକ୍ଷିତ ଓ ଧନୀଲୋକ ବର୍ତ୍ତମାନ ସ୍ୱୀକାର କରିବାକୁ ନାରାଜ । ତାଙ୍କୁ ସ୍ୱୀକାର କଲାଭଳି ଆଇନ ଓ ଶାସନନୀତି ଆବଶ୍ୟକ ।

ସେତେବେଳକୁ ଭୂ-ସତ୍ୟାଗ୍ରହୀ ସମାଜ ବହୁ ନିଷ୍ପତ୍ତି ନେଇ ସାରିଥିଲେ । ଆନ୍ଦୋଳନର ପୃଷ୍ଠଭୂମି ତିଆରି ହୋଇଯାଇଥିଲା । ଗୋପବାବୁଙ୍କ ମତାମତ ପଢ଼ି ସେ ଅନୁଭବ କଲେ

ଶାସନ ନୀତିରେ ବିନା ଆନ୍ଦୋଳନରେ ଏତେ ଶୀଘ୍ର ପରିବର୍ତ୍ତନ ହେବ ନାହିଁ । ସେ ନିଜକୁ ବାନ୍ଧିହେଲା ଭଳି ମନେକଲେ । ପ୍ରଥମଥର ପାଇଁ ସେ ଅନୁଭବ କଲେ ସେ କିଛି କରି ପାରୁନାହାନ୍ତି । ନିଜର ଅସହାୟତା, ମନର ଦୁଃଖ ଓ ଆବେଗକୁ ରୋକି ନପାରି ଭାବ ପ୍ରବଣ ଭାବେ ବିଶ୍ୱନାଥ ପଟ୍ଟନାୟକ ଗୁଣୁପୁରରୁ ୨୫.୪.୫୨ ଦିନ ଗୋପବାବୁଙ୍କୁ ଏମିତି ଚିଠିଟିଏ ଲେଖିଲେ -

କୁଚ୍ଛେନ୍ଦ୍ରୀ

*ଶ୍ରୀ ଚରଣେଷୁ,* ୨୫/୪/୫୧

ବାପା - ଆପଣଙ୍କର ଧାରଣା ଯେ, ମୁଁ ଜଣେ ସାଂପ୍ରଦାୟୀକବାଦୀ, ତେଣୁ ତେଲୁଗୁ ଓଡ଼ିଆ ଭେଦ ମୋ ମନରେ ସବୁବେଳେ ରହିଛି । ଅବଶ୍ୟ ମୋ ନିଜ ଦୋଷ ମୁଁ ନିଜେ ଜାଣି ପାରୁନାହିଁ ବୋଧେ କିନ୍ତୁ ମୁଁ ନିଜକୁ ସବୁବେଳେ ନିଜ ଦୃଷ୍ଟିକୋଣରୁ କୌଣସି କଥା ବିଚାର କରିବାକୁ ଦେଇନାହିଁ । ଅବଶ୍ୟ ମୋର ବିଚାରର କୌଣସି ମୂଲ୍ୟନଥିଲେ ମଧ ନିଜର ସନ୍ତୋଷ ପାଇଁ ଏବଂ ଆପଣମାନଙ୍କ ଆଦର୍ଶକୁ ଅନୁସରି ଚାଲିବାକୁ ମୋର କ୍ଷୀଣ ଚେଷ୍ଟାର ମଧ କାଳେ ଖିଲାପ ହୋଇଯିବ ଏହି ଡରରେ ମଧ ଲକ୍ଷ୍ୟ ରଖି ଚାଲିଲେ ସୁଦ୍ଧା ମୁଁ କେଭେ ତେଲୁଗୁ ଓଡ଼ିଆ ବ୍ୟକ୍ତି ଆକ୍ଷେପରେ କଥା ଉଠାଇ ନାହିଁ । ଅନ୍ୟାୟ ସହିତ ବିରୋଧ କରିବା କଥା, ତେଣୁ ଏ ଅଞ୍ଚଳର କୁମୁଟି ମାନେ ବଡ଼ ଶୋଷକ ଅଟନ୍ତି, ଏକଥା ବରାବର କହିଆସିଛି । ତେଲୁଗୁ ମଧରେ ତେଲଙ୍ଗା, ରେଡ଼ିକା, ସୁନାରୀ, ଭଣ୍ଡାରୀ, କମା, ଧୋବା ଇତ୍ୟାଦି ବହୁତ ରହିଛନ୍ତି ଏବଂ ଜମିମାଲିକ ମଧରେ ବେଶି ହେଉଛନ୍ତି ଓଡ଼ିଆ ବ୍ରାହ୍ମଣ ଓ କୁମୁଟି, ଏ ସମସ୍ତ ଜାତି ଅଭାବରେ ପଡ଼ି ବାହାରୁ ସମସ୍ତେ ଆସିଥିଲେ । ବ୍ରାହ୍ମଣ, ତେଲେଙ୍ଗା ଭୂ-ସମ୍ପତ୍ତିର ମାଲିକ ହୋଇବସିଗଲେ । କୁମୁଟିମାନେ ପ୍ରତ୍ୟେକ କ୍ଷେତ୍ରରେ ଶୋଷିବାରେ ଲାଗିଲେ, ବ୍ରାହ୍ମଣ ତେଲେଙ୍ଗା ନିଜର ଅଭାବ ବେଶି ପରିମାଣରେ ବଢ଼ାଇ ନଥିବାରୁ ପ୍ରତ୍ୟେକ କ୍ଷେତ୍ରରେ ଶୋଷଣ ନକରି ନିଶ୍ଚିତ ଜାଗାରେ ବସି ଶୋଷିଲେ, କୁମୁଟିମାନେ ପ୍ରତ୍ୟେକ କ୍ଷେତ୍ରରେ ରହି ଶୋଷିବା ଦ୍ୱାରା ତାଙ୍କର ଅତ୍ୟାଚାରଟା ସବୁବେଳେ ଆଖି ଆଗରେ ପଡ଼ିଲା । ସେ ଦୃଷ୍ଟିରୁ ସମସ୍ତ ଅତ୍ୟାଚାର ଭିତରେ ଯେଉଁଟା ବେଶି ମନେହେଉଥିଲା ତା' କଥାଟା ଆଗେ ଉଠୁଥିଲା । ଅନ୍ୟମାନଙ୍କ କଥା କ୍ଷୀଣ ଗୁରୁତ୍ୱଭାବେ ଉଠୁଥିଲା । ପ୍ରଥମ ଅବସ୍ଥାରେ ତ ଜମି କଥା ଆଦୌ ଉଠୁନଥିଲା । ତଥାପି ଆମେ ଅପ୍ରକାଶ ଭାବରେ ଅପହୃତ ଜମି ନେଇ ବରାବର ଲାଗିଆସିଛୁ । ଅବଶ୍ୟ ଅଦାଲତ ଜରିଆରେ

ଅନେକଙ୍କର ଫେରାଇବାର ବ୍ୟବସ୍ଥା ମଧ କରିଛୁ । ସେତେବେଳେତ ଜମି ପ୍ରଶ୍ନ ହିଁ ଉଠୁନଥିଲା, କର୍ମୀକୁ ନିଜ ସୀମାବଦ୍ଧ ଗଣ୍ଡି ଭିତରେ ହିଁ ଚଳିବାକୁ ହେଉଥିଲା । ତଥାପି ଆଞ୍ଚଳିକ ଅବସ୍ଥା ଦୃଷ୍ଟିରୁ ଅନେକଟାକୁ ଗ୍ରହଣ କରିବାକୁ ହେଉଥିଲା । ନିରିବୁଧିଆ ଲୋକ ସବୁ ଗଣ୍ଡଗୋଳର ମୂଳକାରଣ- ନିଜ ଭିତରକୁ ନିରୀକ୍ଷଣ କରି ଦେଖୁଛି ମୁଁ ସେଇଆ ହୋଇପଡୁଛି । ଏହାର ପ୍ରାୟଶ୍ଚିତ କ'ଣ ହୋଇପାରେ ସେ ଚିନ୍ତା ସବୁବେଳେ ଘାରୁଛି । ଏ ଆଡ଼େ ପୂର୍ବଭଳି ବିଶେଷ ପରିଶ୍ରମ ଦେହ ସହୁ ନାହିଁ । କୌଣସି ନା କୌଣସି ରୋଗ ଆସି ତା'ପରକୁ ତା'ପର ଥୋଇ ହୋଇ ଯାଉଛି । ମା'- ଲେଖିଛନ୍ତି ରାମଚନ୍ଦ୍ରପୁର ଯିବାକୁ ଏବଂ କଟକ ଯିବାକୁ ଏହାର ପ୍ରାୟଶ୍ଚିତ ତ ଏହା ଦ୍ୱାରା ଦେଖୁନାହିଁ, ଦେଖୁଛି କୌଣସିଥିରେ ଆସକ୍ତ ନରହି ଲକ୍ଷ୍ୟ କଥା କହି ବୁଲିବା, ବେମାର ପଡ଼ିଲେ ନିଜର କେନ୍ଦ୍ରକୁ ଫେରିବା, ନତୁବା ଭଗବାନଙ୍କ ଇଚ୍ଛା, ଯେଉଁଠି ଯେମିତି ମୋଭଳି କଳଙ୍କକୁ ଦୂର କରାଇବା କଥା କରିବେ । ସେଥିପାଇଁ ମୁଁ ଭାବୁଛି ଖଦିମଣ୍ଡଳ ମୋ ଜରିଆରେ ଏ ଅଞ୍ଚଳର ଯାହା ସବୁ ଦାୟିତ୍ୱ ଦେଇଛି ଏବଂ ଯାହାକିଛି କରିବାକୁ ନିର୍ଦ୍ଦେଶ ଦେଉଛି ସେ ସବୁକାମ ନିମାଇ ଭାଇ, ସୁଧାଂଶୁ ଭାଇ କିମ୍ବା ରତନ ଭାଇ ଭଳି ବୁଧିଆ କର୍ମୀଙ୍କ ଦ୍ୱାରା ଚାଳିତ ହେଲେ ଭଲ । ମୁଁ ଆପଣମାନଙ୍କ ଦ୍ୱାରା ହିଁ ଯାହାକିଛି ମନୁଷ୍ୟସ୍ତରକୁ ଆସିଛି । ତେଣୁ ଆପଣମାନଙ୍କର ଯାହାକିଛି ନିର୍ଦ୍ଦେଶକୁ ସବୁବେଳେ ଶିରୋଧାର୍ଯ୍ୟ କରିନେବି । ଶକ୍ତି ମୁତାବକ କାମରେ ଲଗାଇବି । ଏକଥାକୁ ମୁଁ ମୋର ଜୀବନର ବ୍ରତ କରିନୈଇଛି । ଭଗବାନ ମନଉପରେ କେତେବେଳେ କେଉଁ ଚାପ ଦେବେ କେଜାଣି ଭବିଷ୍ୟତ୍ ତାଙ୍କୁ ହିଁ ଜଣା । ମୋ ଦ୍ୱାରା ଯେତେବେଳେ କୌଣସି ଦାୟିତ୍ୱ କାମ ହେବ ନାହିଁ ବୋଲି ସମସ୍ତଙ୍କର ଅନୁଭବ ହେଉଛି, ମୋ ବୁଦ୍ଧି ବୃତ୍ତିରୁ ମୁଁ ଅଧିକ ଆଶା କରିବା ମଧ ବୃଥା । ମୁଁ ଯେତିକିରେ ଅଛି ସେତିକରେ ହେଲେ ଠିକ୍ ରଖି ଭଗବାନ ମୁକ୍ତି କରିଦିଅନ୍ତୁ । ଏହି କେବଳ ପ୍ରାର୍ଥନା । ଆପଣମାନଙ୍କ ଠାରେ ଅବିଶ୍ୱାସ ହୋଇ ବଞ୍ଚିରହିବା ଠିକ୍ ମନେକରେ ନାହିଁ । ଜୀବନ ଅପେକ୍ଷା ବିଶ୍ୱାସକୁ ବଡ଼ ମନେକରେ । ଏହାକୁ ଛଳନା ମନେକରିବା ବର୍ତ୍ତମାନ ହାଉଆରେ ଠିକ୍ ହୋଇପାରେ କିନ୍ତୁ ଅନ୍ତରର କଥା ଭଗବାନ ହିଁ ଜାଣନ୍ତି । ଡାକ୍ତରଖାନାରୁ ଏ ଚିଠି ଲେଖୁଛି । ଭଲ ହେଲିଣି । ଚାରିଦିନ ପରେ ଡାକ୍ତରଖାନା ଛାଡ଼ିବି ।

ଆଜ୍ଞାଧୀନ ସେବକ,

ବିଶ୍ୱନାଥ

ନିଜକୁ ଅତି ଅକିଞ୍ଚନ ମନେକରୁଥିବା, ନିଜର ସ୍ୱବିଲୟ (self effacement)ରେ ବିଶ୍ୱାସୀ, ଗାନ୍ଧୀ ଆଦର୍ଶରେ ନିଜକୁ ହଜାଇଥିବା ମଣିଷ ବିଶ୍ୱନାଥଙ୍କ ମନଭିତରେ ଗୋପବାବୁଙ୍କ ମତାମତ କି ଯେ ଆତ୍ମଦହନ ଭରିଦେଲା ଯେ ସେ ଅବିଶ୍ୱାସୀ ହୋଇ ବଞ୍ଚିରହିବା ଅପେକ୍ଷା ମରଣକୁ ଶ୍ରେୟ ବୋଲି ଭାବିଲେ, ଏହି ଚିଠିରେ ତାଙ୍କର ଦୁଃଖ, ଗ୍ଲାନି, ମୂଲ୍ୟବୋଧ, ଜୀବନଧର୍ମିତା, ଅସହାୟତା ଯେଉଁପରି ଫୁଟି ଉଠିଛି ତାହା ଯେ କୌଣସି ବ୍ୟକ୍ତି ଅନୁଭବ କରିପାରିବ । ଏ ଚିଠି କେତେ ଯେ ପୀଡ଼ା, କଷ୍ଟ, ଯନ୍ତ୍ରଣା, ଦହନର କଥା ନ କହିଛି ? ମାନବୀୟ ଚିତ୍ତବୃତ୍ତିରେ କେତେବେଳେ ଯେ କେଉଁ ଭାବ ଫୁଟିଉଠିବ, ତାହା ସହଜେ ଜାଣିହୁଏ ନାହିଁ । ବିଶ୍ୱନାଥ ଶବ୍ଦ ରଚି ମନରଭାବକୁ ପ୍ରକାଶ କରିବାରେ ଏ ଚିଠିରେ ଯେତିକି ମୁଖର ହୋଇଛନ୍ତି ତାହା କହିବା ସମ୍ଭବ ନୁହେଁ ।

ଶେଷରେ ଭୂ ସତ୍ୟାଗ୍ରହୀ ଆନ୍ଦୋଳନକୁ ଅଧିକ ତୀବ୍ର, ସକ୍ରିୟ କରିବା ପାଇଁ ବିଶ୍ୱନାଥ ଖଦୀ ମଣ୍ଡଳ ସଭ୍ୟପଦରୁ ଇସ୍ତଫା ଦେଇଦେଲେ ।

## ଆମ ପୂର୍ବପୁରୁଷଙ୍କ ଜମିଛାଡ଼ :

ବିଶ୍ୱନାଥଙ୍କ ଦେହ ଖରାପ ହୋଇ ପଡ଼ିବାରୁ ସେ ଗୁଣୁପୁରରେ ଚିକିତ୍ସିତ ହେଲେ ମାର୍ଚ୍ଚ ମାସ ୨୭ ତାରିଖ ୧୯୫୧ରୁ । ପ୍ରାୟ ମାସେରୁ ଊର୍ଦ୍ଧ୍ୱ ସେ ଶଯ୍ୟାଶାୟୀ ହୋଇପଡ଼ିଲେ । ସେତେବେଳକୁ ଗାଁରେ ଗାଁରେ କର୍ମୀମାନଙ୍କ ପ୍ରଚାର, ଅପହୃତ ଜମିର ତାଲିକା ପ୍ରସ୍ତୁତି, ଅପହୃତ କରି ଜମି ନେଇଥିବା ବ୍ୟକ୍ତିଙ୍କ ଇତିହାସ ସଂଗ୍ରହ ଆଦି କାମ ଚାଲିଥାଏ । ବିଶ୍ୱନାଥ ପଟ୍ଟନାୟକ କୁଜେନ୍ଦ୍ରୀରେ ନଥାନ୍ତି । ସେତେବେଳକୁ ଫେବ୍ରୁଆରୀରୁ ବର୍ଷା ଆରମ୍ଭ ହୋଇଯାଉଥିଲା । ବୈଶାଖ ଆସିଲା, ଅକ୍ଷୟତୃତୀୟା, ଜମିରେ ବିହନ ଯାତ୍ରା, ବିହନ ବୁଣା ହେବ, କୁଜେନ୍ଦ୍ରୀର କେତେକ ଭୂମିହୀନ, ଗୁତା ଛଡ଼ା ହୋଇଥିବା ଚାଷୀ, ନିଜ ପୂର୍ବପୁରୁଷଙ୍କ ଜମିରେ ବଳପୂର୍ବକ ପଶିବା ପାଇଁ ସ୍ଥିର କଲେ । ତାରିଖ ୧୬.୪.୫୧ । ସୂର୍ଯ୍ୟ ଉଠିବାକୁ ବାକି, ସିନ୍ଦୁରା ଫାଟିଛି । ଭୋରବେଳ । ବଣର ଚଢ଼େଇ ଚେଁଚାଁ ଆରମ୍ଭ କଲେଣି । ବଂଶଧାରା ନଈ ସେମିତି ଗଡ଼ିଚାଲିଛି ପୂର୍ବଆଡ଼କୁ । କୁଜେନ୍ଦ୍ରୀ ଗାଁର ଭୂମିହୀନ ଆଦିବାସୀ ହଳରେ ଲଙ୍ଗଳ ଯୋଚି ସେମାନଙ୍କ ଅପହୃତ ଜମିରେ ବଳପୂର୍ବକ ଚଷିବା ପାଇଁ ପଶିଲେ । ବେକ ପଛେ କଟୁ ଜମି ଛାଡ଼ିବାକୁ ହେବନାହିଁ । ହେଉପଛେ ଲାଠିମାଡ଼, ପୁଲିସ ଡରାଣି, ଜେଲ, ସେମାନେ ଜମି ଛାଡ଼ିବେ ନାହିଁ । ଜମିଥିଲାବାଲାଙ୍କ କଳାହାଣ୍ଡି ଖମାରୀ ତ୍ରସ୍ତ । ଡରରେ ଜମି ପାଖକୁ ଯାଉନାହାନ୍ତି । ଜମିମାଲିକମାନେ କ'ଣ କରିବେ

ଜାଣିନପାରି ଧାଇଁଲେ ଗୁଣୁପୁର ତାଲୁକ ଅଫିସରଙ୍କ ନିକଟକୁ, ପୋଲିସ୍ ଥାନାକୁ । ପୋଲିସ ଆସି ଘଉଡାଇଲେ ସେମାନଙ୍କୁ । ହଳ ଲଙ୍ଗଳ ଜବତ୍ କଲେ । ଭୂ-ସତ୍ୟାଗ୍ରହୀ କର୍ମୀମାନେ ମତାଇ ଏହା କରିଛନ୍ତି ବୋଲି ଅଭିଯୋଗମାନ କରାଗଲା । ଏମିତି ଗୋଟିଏ ଅଘଟଣ ଘଟିଗଲା ୧୬.୪.୫୧ ଦିନ କୁଜେନ୍ଦ୍ରୀରେ ।

ଗୁଣୁପୁରରୁ ଫେରି ଅବସ୍ଥା ଅନୁଧ୍ୟାନ କରି ବିଶ୍ୱନାଥ ପଟ୍ଟନାୟକ କୋରାପୁଟ ଜିଲ୍ଲା ମାଜିଷ୍ଟ୍ରେଟ, ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟ୍, ସବ୍ ଏଜେଣ୍ଟ ରାୟଗଡ଼ା, ତାଲୁକା ଅଫିସର, ଗୁଣୁପୁର, ପୋଲିସ୍ ଇନ୍‌ସପେକ୍ଟର ଗୁଣୁପୁରଙ୍କୁ ୨୯.୪.୫୧ ଦିନ ନିମ୍ନ ମତେ ଚିଠି ଲେଖିଲେ ।

*ମାନନୀୟ ମହାଶୟ,*

ଏହା ମଧ୍ୟରେ ଗୋଟିଏ ଘଟଣା ଘଟିଯାଇଛି ଯାହାକି ଆପଣଙ୍କର ଅବଗତ ନିମିତ୍ତ ଜଣାଇଦେବା ସମୀଚୀନ ମଣିଲି ।

ମୋର ଗୋଡ଼ ଖରାପ ହେତୁ ମୁଁ ଗତମାସ ୨୭ ତାରିଖରୁ ପ୍ରାୟତଃ ଗୁଣୁପୁରରେ ଡାକ୍ତରଙ୍କ ଚିକିତ୍ସାଧୀନ ଥିବାର କଥା ଆପଣମାନେ ଜାଣିଛନ୍ତି । ଗୁଣୁପୁରରେ ଥିବା ଅବସ୍ଥାରେ କୁଜେନ୍ଦ୍ରୀର କେତେକ ଲୋକ ବର୍ଷା ପରେ ନିଜ ନିଜର ଅପହୃତ ଜମିରେ ମୋର ଅଜ୍ଞାତରେ ୨୬/୪/୫୨ ତାରିଖରେ ହଳ ପ୍ରବେଶ କରାଇଦେଲେ । ବର୍ଷ ବର୍ଷ ଧରି ଅତ୍ୟାଚାରିତ ପ୍ରଜାର ହୃଦୟର ରୁଦ୍ଧ ଆବେଗ ହଠାତ୍ ପ୍ରକାଶ ପାଇଗଲା । ପରେ ମୁଁ ଏ ଖବର ପାଇ କୁଜେନ୍ଦ୍ରୀ ଗଲି ଓ ଲୋକମାନଙ୍କୁ ବୁଝାଇବା ଫଳରେ ସେମାନେ ବର୍ତ୍ତମାନ ୧୫ଦିନ ପାଇଁ ସେଥିରୁ କ୍ଷାନ୍ତ ରହିଛନ୍ତି । ବର୍ତ୍ତମାନ ଏକଥା ସ୍ଥିର ହୋଇଛି । ଖୁବ୍‌ଶୀଘ୍ର ସେମାନଙ୍କର ଏକ ପ୍ରତିନିଧି ଦଳ ପ୍ରାଦେଶିକ ସରକାରକୁ ଭେଟିବେ ଓ ପୂର୍ବ ଆପତ୍ତି ସମୂହର ଆଶୁପ୍ରତିକାର ପାଇଁ ଆଲୋଚନା କରିବେ । ଆଲୋଚନା ପରେ ସେମାନେ ନିଜର ପନ୍ଥା ଠିକ୍ କରିବେ ଓ ଯାହା ସ୍ଥିର ହେବ ତାହା ମଧ୍ୟ ଆପଣମାନଙ୍କୁ ଜଣାଇ ଦିଆଯିବ । ଭୂ-ସତ୍ୟାଗ୍ରହୀ ସମାଜ ଲୋକମାନଙ୍କର ଏପରି ଏକ ସଂଘବଦ୍ଧ ଓ ବିଧାୟକ ଅହିଂସା ଉଦ୍ୟମର ସାହାଯ୍ୟ କରିବା ସ୍ୱାଭାବିକ । ବର୍ଷ ବର୍ଷ ଧରି ନିରୀହ ପ୍ରଜାର ରକ୍ତ, ମେଦ, ମାଂସ ଯେଉଁଭଳି ରୂପରେ ଶୋଷଣ କରାହୋଇ ଆଜି ତାକୁ ଜଙ୍ଗଲର ଚେର, ମୂଳ, ଡାଳପତ୍ରର ଆଶ୍ରୟ ନେବାକୁ ବାଧ କରାଯାଇଛି, ଏ ଭଳି ଏକ ଅନ୍ୟାୟର ତୀବ୍ର ପ୍ରତିରୋଧ କରିବା ମାନବ ଧର୍ମାନୁମୋଦିତ । ତେଣୁ ସରକାରଙ୍କ ନିକଟରେ ଶେଷ ଚେଷ୍ଟା କରିସାରିବା ପରେ ଏ

ସମାଜ ହୁଏତ ଅନ୍ୟ ଅହିଂସକ ପନ୍ଥା ଧରିପାରେ । କିନ୍ତୁ ତା' ପୂର୍ବରୁ ନୁହେଁ ଏବଂ ଆପଣମାନଙ୍କର ଅଜ୍ଞାତରେ ଅର୍ଥାତ ସରକାରଙ୍କ ଅଜ୍ଞାତରେ କୌଣସି ଚେଷ୍ଟା ହେବ ନାହିଁ । ତେଣୁ କୁଢେନ୍ଦ୍ରୀର ଲୋକେ ହଠାତ୍ ଜମିରେ ପ୍ରବେଶ କରିଯିବା ଫଳରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ଭୁଲବଶତଃ ଓ ନିଜର ହୃଦୟର କୋହକୁ ସେମାନେ ଚାପିନପାରି ତାହା କରିଦେଇଛନ୍ତି । ତେଣୁ ସେଥିରେ ହଠାତ୍ ଉତ୍‌କ୍ଷିପ୍ତ ହୋଇଯିବା ଠିକ୍ ନୁହେଁ । ଗତ ଆଲୋଚନାବେଳେ ଆପଣମାନଙ୍କୁ ଏକଥା ତ ଜଣାଇଥିଲି ଯେ ହଠାତ୍ ଗୋଟିଏ ପ୍ରବାହିତ ସ୍ରୋତକୁ ଅଟକାଇବା ବେଳେ ନିଶ୍ଚୟ କେତେକ ତ୍ରୁଟି ରହିଯାଏ । ତେଣୁ ଏହି ତ୍ରୁଟି ସେହିଭଳି ଏକ ତ୍ରୁଟି ।

ମୋର ଆଶା ପ୍ରତିନିଧି ଦଳ ସରକାରଙ୍କ ସହିତ ଆଲୋଚନା କରିବା ଫଳରେ କିଛି ଗୋଟାଏ ସନ୍ତୋଷଜନକ ସମାଧାନ ହୋଇଯିବ । ଆପଣମାନେ ଯଦି ଏ ଦିଗରେ ଟିକିଏ ସହାୟ ହୁଅନ୍ତି ତେବେ ତ ଏହା ଖୁବ୍ ସହଜ ହେବ ।

ଦରିଦ୍ରତା, ଏ ଅଞ୍ଚଳର ପରିସ୍ଥିତି, ଲୋକମାନଙ୍କର ପ୍ରକୃତ ଅବସ୍ଥା, ଖାଇବା ବିନା ବଣ-ଜଙ୍ଗଲର ଚେର, କନ୍ଦା, ଶାଗର ଆଶ୍ରୟ ନେବା କଥା ଯଦି ଆପଣମାନେ ସରକାରଙ୍କୁ ଜଣାନ୍ତି ତେବେ ତାହା ଲୋକମାନଙ୍କ ଆପତ୍ତି ଦିଗରେ ସହାୟ ହେବ ଓ ପ୍ରକୃତ ସତ୍ୟର ପ୍ରକାଶ କରିବା ଫଳରେ ଆପଣମାନେ ଭଗବାନଙ୍କ ରାଜ୍ୟରେ ନିଶ୍ଚିତ ପୁରସ୍କୃତ ହେବେ । ଆଶା ପ୍ରତିନିଧି ଦଳଙ୍କ ଆଲୋଚନା ବେଳେ ଆପଣମାନେ ଏପରି ସାହାଯ୍ୟ କରିବେ ।

ତେଣୁ ମୋର ଅନୁରୋଧ କୁଢେନ୍ଦ୍ରୀ ବା ଅନ୍ୟ କୌଣସି ଗ୍ରାମରେ ଯଦି ଏଭଳି ସାମୟିକ ତ୍ରୁଟି ବର୍ତ୍ତମାନ ଅବସ୍ଥାରେ ଘଟିଥାଏ ତାହାକୁ ଗୁରୁତ୍ୱପୂର୍ଣ୍ଣ ଦମନ ମୂଳକ ମନୋଭାବର ସହିତ ନନେଇ ଲୋକମାନଙ୍କର ପ୍ରକୃତ ମାନସିକ ସ୍ଥିତିର ପର୍ଯ୍ୟାଲୋଚନା ଓ କ୍ରମ ପରିଣାମ ପ୍ରତି ନଜର ଦେଲେ ଏ ପ୍ରକାର ସଂଘର୍ଷର ସନ୍ତୋଷଜନକ ସମାଧାନ ହେବ ଓ ଗୋଳମାଳ ବନ୍ଦ ହୋଇଯାଇ ପାରିବ ।

କୁଢେନ୍ଦ୍ରୀ　　　　　　　　　　　　　　　　　ବିଶ୍ୱନାଥ ପଟ୍ଟନାୟକ

୨୯.୪.୫୧

ସରକାରୀ କର୍ମଚାରୀଙ୍କ ଚମଡ଼ା କେତେ ଯେ ମୋଟା ଏହା ସମସ୍ତେ ଜାଣନ୍ତି । ଯାହାକୁ ଡାମଣ ପୋଡ଼ିଲେ କାଟେ ନାହିଁ ଛୁଞ୍ଚିବା ସେଠି କି କାମ କରିବ । ଉପରୋକ୍ତ ଦରଖାସ୍ତ ପଢ଼ି ତାକୁ କ୍ରିୟାନ୍ୱିତ କରିବାର ମାନସିକତା ଆଶା କରିବା, ସବୁବେଳେ ଅସମ୍ଭବ । ଆଉ

ଯେଉଁଠି ଧନୀ ସାହୁକାରଙ୍କ ସ୍ୱାର୍ଥ, ସେଠି ଏମାନେ ବନ୍ଧା । ତାଙ୍କ ଅଣ୍ଟାକରାଟରେ ଯାଙ୍କ ଆଖି । ଏ କର୍ମଚାରୀ ସବୁବେଳେ ଉଦାସୀନ, ନିସ୍ପୃହ, ଗରିବ ବୋଇଲେ ବେଶି, ଆଉ ଆଦିବାସୀ ବୋଇଲେ ପୂରା ନଛୋଡ଼ବନ୍ଧା ।

କୌଣସି ସମାଧାନ କରିବା ତ ଦୂରର କଥା ବରଂ ଶାସନ ପ୍ରତିକ୍ରିୟାଶୀଳ ହୋଇ ଦମନମୂଳକ ନୀତି ଅନୁସରଣ କଲା । ବହୁକର୍ମୀ ମଧ୍ୟ ଏହି ଜମି ପ୍ରବେଶ ନାମରେ ପ୍ରେରଣାଦାତା ଭାବେ ଅଭିଯୁକ୍ତ ହେଲେ । ସରକାରଙ୍କ ନିଷ୍କ୍ରିୟତାକୁ ଦେଖି ଭୂ-ସତ୍ୟାଗ୍ରହୀ ସମାଜ ୧.୫.୫୨ରେ ଗୋଟିଏ ବୈଠକ ଡକାଇଲା ପରବର୍ତ୍ତୀ କାର୍ଯ୍ୟପନ୍ଥା ନିରୂପଣ କରିବା ପାଇଁ । ୧.୫.୫୨ ଦିନ ଭୂ-ସତ୍ୟାଗ୍ରହୀ ସମାଜର ଏକ ବୈଠକ ବସି ଅନ୍ୟାୟର ବିରୋଧ କରିବା ମନୋଭାବ ଆଦିବାସୀ ସମାଜ ଭିତରେ ଦେଖାଯାଉଥିବାରୁ ତାକୁ ନରୋକି ସେ ଦିଗରେ ଉତ୍ସାହ ଦେବା ସର୍ବସମ୍ମତିକ୍ରମେ ସ୍ଥିର ହେଲା । ସରକାର ଓ ସାହୁକାରଙ୍କୁ ନଜଣାଇ କେତେକ ଆଦିବାସୀ ଭାଇ ନିଜର ସତ୍ୱ ରକ୍ଷା ପାଇଁ ଜମିରେ ପ୍ରବେଶ କରିଥିବାରୁ ଦୁଃଖ ପ୍ରକାଶ କରାଗଲା । ୨୪.୩.୫୨ର ବୈଠକ ଅନୁସାରେ ବୋଡ଼ିବାଲି, ଖାରିଗୁଡ଼ା, ଶରଧାପୁର, କେନ୍ଦୁଗୁଡ଼ା, ମିଟିଖିଲିଗିରାଇ, ମୁଲିପୁଟ୍ଟ, ଗଡ଼ିଆବନ୍ଧ, ଖାଜିଗୁଡ଼ା, କେନ୍ଦୁଗୁଡ଼ା, ଲଛିମପୁର, ଖମାପଦର, ସନ୍ୟାସିପୁର, ମେରିଙ୍ଗି, କୁଜେନ୍ଦ୍ରୀ, ଗରଣ୍ଡା, ଡୁମ୍ବାକଣା, ଜଞ୍ଜରିବାଡ଼ି, କର୍ଣ୍ଣଗୁଡ଼ା, ବାମଣିପିଣ୍ଡି, ରାଇଗୁଡ଼ା, ରୁଗୁଡ଼ାବାଇ, କାଙ୍କୁବାଡ଼ି, ବୋରିଙ୍ଗପାଇଁ, ଡାମିଣି, ସାଲିବି, ଢୋରିଡ଼ି, ଡିମିରିସିଙ୍ଗ, କର୍ମୀ କେନ୍ଦ୍ର ଗୁଡ଼ିକର କାର୍ଯ୍ୟ ଆଲୋଚନା କରାଗଲା ।

ବାରମ୍ବାର ଆପତ୍ତି ଓ ଅନୁରୋଧ ସତ୍ତ୍ୱେ ଓଡ଼ିଶା ସରକାରଙ୍କ ପକ୍ଷରୁ ଆଦିବାସୀଙ୍କ ଜମି ସମସ୍ୟା ସମ୍ବନ୍ଧରେ କୌଣସି ପ୍ରତିକାର କରାଗଲା ନାହିଁ । ଏଣୁ ୧୬.୫.୫୨ ତାରିଖରେ ବିଶ୍ୱନାଥ ପଟ୍ଟନାୟକ ତତ୍‌କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଚିଠିରେ ଲେଖିଲେ-

କୁଜେନ୍ଦ୍ରୀ
୧୬/୫/୫୨

*ଶ୍ରୀ ଚରଣେଷୁ,*

ବାପି - ଅପହୃତ ଜମି ସଂପର୍କରେ କୁଜେନ୍ଦ୍ରୀର ଯେଉଁ ପଚାଶ ଜଣ ଯାଏ ଗିରଫ ହୋଇ ଜାମିନରେ ଆସିଛନ୍ତି ସେମାନଙ୍କ ଉପରୁ ପୋଲିସ୍ କେସ୍ ଉଠାଇ ଦିଆଯିବ ବୋଲି କହିଥିଲେ, କାହିଁ ଆଜିଯାଏ କିଛି ହେଲା ନାହିଁ । ଯଦି ନହେଉଛି ତ ସରେଣ୍ଡର କରିଯାନ୍ତେ ।

ଆମେ ଚାହୁଁଥିଲୁ ସରକାର ସଙ୍ଗେ କୌଣସି ସଂଘର୍ଷ ନହୋଇ ପ୍ରକୃତରେ ଯେଉଁମାନେ ଶୋଷକ ତାହାଙ୍କ ସଙ୍ଗେ ହେଉ । ମଝିରେ ସରକାର ଆବୁଡ଼ା ପଡ଼ି ଧନୀ ମହାଜନଙ୍କ ଶୋଷଣ ନୀତିକୁ ରକ୍ଷା କରିବାକୁ ଚେଷ୍ଟା କରୁଛନ୍ତି । ଏଆଡ଼େ ଗରିବ ଲୋକ ଉପରେ ଯେଛାତା ଅତ୍ୟାଚାର ହେଲେ ମଧ୍ୟ ଆଖିବୁଜି ଦେଇ ଧନୀ ମହାଜନଙ୍କ ପଇସା ମୋହରେ ସବୁ ପାରି କରିଦିଆଯାଉଛି । ଏୟା ଯଦି ସରକାରଙ୍କର ନୀତି ହୁଏ ତାହାହେଲେ ଗରିବର ସ୍ଥାନ କେଉଁଠି ? ଏ ମନୋଭାବରେ ଗରିବ ଲୋକଙ୍କ ଭାଙ୍ଗେଣି ପଡ଼ିଛି । ଏ ମଧ୍ୟରେ ଗୁଡାରୀ ଅଞ୍ଚଳ ଓ ଆଉ କେଉଁ କେଉଁ ଜାଗାରେ ଧନୀ ମହାଜନମାନେ ଗୁଣ୍ଡା ସାହାଯ୍ୟରେ ନିରୀହ ସୌରାମାନଙ୍କ ଉପରେ ଅତ୍ୟାଚାର କରିଛନ୍ତି । ଗରିବ ହେତୁ ତା' କଥା ଶୁଣୁଛି କିଏ ? ଯେଉଁମାନଙ୍କୁ ଗୁହାରି କଲେ ସେମାନେ ସବୁ ସେପଟର ବରଂ ଏହା ଦ୍ୱାରା ଲାଭ ହେଉଛି ସରକାରୀ କର୍ମଚାରୀଙ୍କର । ସରକାର ଯଦି ଧନୀ ମହାଜନମାନଙ୍କର କେବଳ ବିଶ୍ୱାସଭାଜନ ହେବାକୁ ଚାହାନ୍ତି କାଳେ ସେମାନଙ୍କର ଉପରେ କୌଣସି ଅଞ୍ଚଳର ଦଳଗତ ସୃଷ୍ଟିକରି ଅଡୁଆରେ ପକାଇବେ ଏଥିପାଇଁ ବେଠି, ମାମୁଲ, ଅନ୍ୟାୟ ପାନୁ ମଧ୍ୟ ଯଦି ବନ୍ଦ କରବାକୁ ସାହସ ନକରନ୍ତି ତାହାହେଲେ ଦେଶର ଉଜ୍ଜ୍ୱଳ ଆଶା ନିମିତ୍ତ ଯେ ଆଶା କରାଯାଉଛି ତାହା ମୋ ଭଳି ମୋଟା ବୁଦ୍ଧିଆ ପକ୍ଷରେ ଜାଣିବା କଷ୍ଟ ହେଉଛି । ସରକାର ଏହାର ତଟକାଫଳ ବର୍ତ୍ତମାନ ଦେଖି ପାରୁ ନାହାନ୍ତି କିନ୍ତୁ ଭବିଷ୍ୟତ ଯେ କେତେ ବଡ଼ ବିପଜ୍ଜନକ ଏକଥା ପ୍ରତ୍ୟେକ ଲୋକ ଅନୁମାନ କରୁଛନ୍ତି । ଅନୁଷ୍ଠାନକୁ ବଜାଁଏ ରଖିବାକୁ ସମସ୍ତ ଅନ୍ୟାୟ ଅତ୍ୟାଚାରକୁ ପ୍ରଶ୍ରୟ ଦେଇ ଜାତିକୁ ମାରିବାକୁ ବସିବା ଅର୍ଥ ଅନୁଷ୍ଠାନକୁ ଦୁର୍ବଳ କରିବାଂ ହେବ ବୋଲି ମୋ ଭଳି ମୋଟା ବୁଦ୍ଧିଆର ମତ । ଆପଣ ଏଥିପାଇଁ ଯାହା ଭୁଲ ଭାବନ୍ତୁ ନା କାହିଁକି ଯାହା ଅନୁଭବ କରୁଛି ଲେଖିଦେଲି । ସେ ଯାହା ହେଉ ଅପହୃତ ଜମି ସମ୍ପର୍କ ମକଦ୍ଦମା ନେଇ ଯାହାକିଛି ବ୍ୟବସ୍ଥା ୨୫ ତାରିଖ ଭିତରେ କରିନେଲେ ଭଲ ହୁଅନ୍ତା । ତାହା ନହେଲେ ମାସ ଶେଷ ଯାଏ ଅପେକ୍ଷା କରି ନିର୍ଦ୍ଦିଷ୍ଟ ଦିନ ଠିକ୍ କରି ଆପଣମାନଂକୁ ଜଣାଇ ଶୋଷକଙ୍କ କାରସାଦିରେ ସରକାରଙ୍କ ଦ୍ୱାରା ଧରାହୋଇ ଜାମିନରେ ଛଡ଼ା ଯାଇଥିବା ବ୍ୟକ୍ତିମାନେ ଥାନାରେ ଯାଇ ଆତ୍ମ ସମର୍ପଣ କରିଦେବେ । ଏଥିପାଇଁ ଆପଣଙ୍କର ଉତ୍ତର ଅପେକ୍ଷାରେ ।

ଆଜ୍ଞାଧୀନ ସେବକ
ବିଶ୍ୱନାଥ

ଏହି ଚିଠି ସତେ ଯେମିତି ବିଶ୍ୱନାଥଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗକୁ ଦେଖାଇଦିଏ । ନିର୍ଭିକ, ଅହିଂସା ନୀତିରେ ଅଟଳ, ନ୍ୟାୟପୂର୍ଣ୍ଣ ଉପାୟରେ ଦାବୀ ହାସଲ କରିବାର ଦୃଢ଼ତା, କ୍ଷମତା ଓ ସରକାର ତଥା ଶୋଷକମାନଙ୍କ ପ୍ରକୃତ ମୁଖା ଖୋଲି ଦେବାର ସାହସ ଓ ଅତ୍ୟାଚାରିତ, ଦଳିତ ବର୍ଗର ଉତ୍‌ଥାନ ପାଇଁ ଚରମ ତ୍ୟାଗ କରିବାର ମନୋବୃତ୍ତି ଏଥିରେ ସ୍ପଷ୍ଟ ।

## ଚରମ ପଦକ୍ଷେପ :

୨୫.୫.୫୨ ତାରିଖ ସୁଦ୍ଧା ଓଡ଼ିଶାର ପ୍ରଧାନମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଠାରୁ କୌଣସି ନିଷ୍ପତ୍ତି ମୂଳକ ଉତ୍ତର ଆସିଲା ନାହିଁ । ଫଳରେ କୁଢେନ୍ଦ୍ରୀରେ ଭୂ-ସତ୍ୟାଗ୍ରହୀ ସମାଜର ଏକ ବୈଠକରେ ଆଖପାଖ ୨୬ଟି ଗ୍ରାମର ୪୫ ଜଣ କର୍ମୀଙ୍କ ଉପସ୍ଥିତିରେ ୦୧-୬-୫୨ ଠାରୁ ୨୦-୬-୫୨ ମଧ୍ୟରେ ସରକାର ଓ ଜମି ମାଡ଼ିବସିଥିବା ଲୋକଙ୍କୁ ଜଣାଇ ଭୂମିହୀନମାନେ ନିଜ ଭୂମିରେ, ଜବର୍ଦସ୍ତ ପଶି ଦଖଲକୁ ନେବା ପାଇଁ ଗୋଟିଏ ନିବେଦନ ପତ୍ର ପ୍ରସ୍ତୁତ କରାଗଲା । ଏହି ପତ୍ର ଜମି ମାଡ଼ିବସିଥିବା ସାହୁକାର ଓ ସରକାରଙ୍କ ପାଇଁ ଆହ୍ୱାନ ଥିଲା ।

## ନିବେଦନ ପତ୍ର :

ଶ୍ରୀଯୁକ୍ତ ବୈଶ୍ୟରାଜୁ ଲକ୍ଷ୍ମୀନାରାୟଣା, କୁଢେନ୍ଦ୍ରୀଙ୍କ ସମୀପେଷୁ,

*ମହାଶୟ,*

ଆପଣଙ୍କ ଆଖି ଆଗରେ ବର୍ଷ ବର୍ଷ ଧରି ଭୋକ ଉପାସରେ ନାନା ଅଖାଦ୍ୟ ଖାଇ ଆପଣଙ୍କୁ ତଥା ସରକାରଙ୍କୁ ମୋର ପେଟ ଦୁଃଖ କଥା ଓ ଜମିହୀନ ଅବସ୍ଥା କଥା ବାରମ୍ବାର ଜଣାଇ ନିରାଶ ହେଲି । ବର୍ଷ ବର୍ଷ ଧରି ସବୁ ପ୍ରକାର ମାଡ଼ଗୋଳ ଓ ଅତ୍ୟାଚାର ସହି ଆପଣମାନଙ୍କ ସୁଖ ସୁବିଧା ପାଇଁ ବ୍ୟବସ୍ଥା କରି ଆସିବା ସତ୍ତ୍ୱେ ମୋର ଏ ଦରମଲା ଦେହ, ଭୋକିଲା ପେଟ ଓ ମୋ ଛୁଆପିଲାମାନଙ୍କର କଷ୍ଟ କାନ୍ଦଣା ଆପଣମାନଙ୍କ କାନରେ ବାଜିଲା ନାହିଁ । ବାରମ୍ବାର ନିବେଦନ ସତ୍ତ୍ୱେ ଆପଣ ଯେତେବେଳେ ମୋର ଦୁଃଖ ଗୁହାରୀ ନଶୁଣିଲେ, ସେତେବେଳେ ଏଭଳି ଅନ୍ୟାୟର ବିରୋଧ ପାଇଁ ଭଗବାନଙ୍କର ଆଶ୍ରୟ ନେଇ ମୁଁ ମୋ ନିଜ ସତ୍ୱ ଜମିରେ ଚାଷ କରିବାକୁ ଠିକ୍ କରୁଛି । ଏ ଜମି ଆଜି ଆପଣଙ୍କ

ହାତରେ ରହିଥିଲେ ମଧ ମୋର ପୂର୍ବ ପୁରୁଷ ଏହାକୁ ପଥର ତାଡ଼ି ବାହାର କରିଥିଲେ ଓ ନିଜର ସରଳତା ଓ ଅଜ୍ଞାନ ପଣରୁ ଆପଣଙ୍କ ହାତକୁ ଯାଇଥିଲା । ଧର୍ମ ଦୃଷ୍ଟିରୁ ବିଚାର କଲେ ଜମିରେ ମୋର ପୂରା ଅଧିକାର ଅଛି । ଅଧର୍ମ ଓ ଅନ୍ୟାୟ କରିବା ଯେପରି ପାପ, ତାକୁ ଦେଖି ତୁନି ପଡ଼ିବା ବି ସେପରି ପାପ । ତେଣୁ ପାପରେ ଭାଗୀ ନହୋଇ ସେହି ଅଧର୍ମ ଓ ଅନ୍ୟାୟର ବିରୋଧ ପାଇଁ ମୁଁ ଆଜି ବାହାରୁଛି । ଅହିଂସା ଉପାୟରେ ଆପଣଙ୍କର ସମସ୍ତ ନିର୍ଯାତନା ସହି ୧୬.୬.୫୨ ତାରିଖ ସକାଳେ ଭୂମିରେ ପ୍ରବେଶ କରୁଅଛି ।

ନିବେଦକ ..........................

ଠିକଣା ............................

ଯେତେବେଳେ ପ୍ରତ୍ୟେକ ଜମି ମାଡ଼ିବସିଥିବା ଲୋକଙ୍କ ପାଖରେ ଏହି ନିବେଦନ ପତ୍ର ନିର୍ଦ୍ଦିଷ୍ଟ ତାରିଖରେ ଜମି ପ୍ରବେଶ କରିବାର ସୂଚନା ଥାଇ ପହଞ୍ଚିଲା, ଏହା ଯେ ଏକ ବିସ୍ଫୋରକ ଅବସ୍ଥା ସୃଷ୍ଟି କରିବ, ଏହା ବୁଝିବାକୁ ଆଉ ଧନୀ ସାହୁକାରମାନଙ୍କର ଅସୁବିଧା ହେଲାନାହିଁ । ଛଳ କପଟ କରି ବେନିୟମରେ ଭୂମି ଅଧିକାରୀ ହୋଇ ଭୂମିହୀନଙ୍କ ଅସହାୟତା, ଦାରିଦ୍ର୍ୟର ସୁଯୋଗରେ ମେଢ଼ ମଣ୍ଡପ ସଜାଇଥିବା ଲୋକେ ପ୍ରତିକ୍ରିୟାଶୀଳ ଓ ଉତ୍‌କ୍ଷିପ୍ତ ହେବା ସ୍ୱାଭାବିକ ଥିଲା । ଏହି ଅଘଟଣର ମୁକାବିଲା ପାଇଁ ସେମାନେ ପୋଲିସ୍, ଗୁଣ୍ଡା, ଅସ୍ତ୍ର ଶସ୍ତ୍ର, ହିଂସାର ଆଶ୍ରୟ ନେବା ପାଇଁ ମାନସିକ ପ୍ରସ୍ତୁତ ହେଲେ ।

ଏହିପରି ଭୂମି ଆନ୍ଦୋଳନର ସୂଚନା ପାଇ ବରୀରୁ ଗୋପବନ୍ଧୁ ଚୌଧୁରୀ ବିଶ୍ୱନାଥଙ୍କୁ ପତ୍ର ଲେଖିଲେ-

*ସ୍ନେହର ବିଶ୍ୱନାଥ,*

ତୋ'ର ଚିଠି ପାଇଲି । ପରିସ୍ଥିତି ପ୍ରକୃତରେ ଜଟିଳ ହେବାକୁ ଦେବା ଠିକ୍ ନୁହଁ । ଅପରର ଜମି ଜବରଦସ୍ତି ଚଷିଯିବାଟା ସତ୍ୟାଗ୍ରହର ବାଟ ନୁହଁ । ହଜାର ହଜାର ଜେଲ ଯିବାକୁ ବାହାରିଲେ ମଧ ତାହା କଦାପି ସଫଳ ହେବ ନାହିଁ ବୋଲି ମୋର ଦଢ଼ମତ । ବରଂ ଜମି ନ ଚଷିବା ଓ ଜମି ବାଲାଙ୍କର ଜମିକୁ ପଡ଼ିଆ ପକେଇଦବା ଭଳି ଅସହଯୋଗ ଆନ୍ଦୋଳନ ଅଧିକ ଭଲ ଓ ନ୍ୟାୟଯୁକ୍ତ ।

ତେବେ ଯେଉଁମାନେ ଭାଗଚାଷୀ ଥିଲେ, ସେମାନଙ୍କୁ ମାଲିକ ବେଦଖଲ କରିବାକୁ ବସିଲେ ସେମାନେ ଜମି ନଦେଇ ଜବରଦସ୍ତ ଚଷୀ ନିଜର ସତ୍ୱ ବଜାଏ ରଖିବାକୁ ସତ୍ୟାଗ୍ରହ

କରିପାରନ୍ତି । କିନ୍ତୁ ଅନ୍ୟଥା ଯେଉଁ ଜମିରେ କୌଣସି ପ୍ରକାର ସତ୍ୱ ନାହିଁ ସେ ଜମିକୁ ଦଖଲ କରିବାକୁ ବସିବା ସତ୍ୟାଗ୍ରହ ହୋଇନପାରେ । ଅଯଥା ଗୁଡ଼ିଏ ଲୋକ କଷ୍ଟ ପାଇବେ ଓ ଫଳ କିଛି ହେବ ନାହିଁ ବୋଲି ମତେ ଲାଗୁଛି ।

ଇତି

ଗୋପବନ୍ଧୁ ।

ଦିନକୁ ଦିନ ପରିସ୍ଥିତି ବଦଳୁଥିଲା । ଲୋକେ ଅତିଷ୍ଠ ହୋଇ ପଡୁଥିଲେ । ସାହୁକାରମାନେ ପ୍ରତିହିଂସା ପରାୟଣ ହେବା ପାଇ ପ୍ରସ୍ତୁତ ହେଲେ । ଜମିରେ ପ୍ରବେଶ କରିବା ଦିନ ପାଖେଇ ଆସୁଥିଲା । ଚାରିଆଡ଼େ ଅସ୍ୱସ୍ତିକର ପରିବେଶ । ଏମିତି ପରିସ୍ଥିତି ଗୁଣୁପୁର ଅଞ୍ଚଳର, କୁଜେନ୍ଦ୍ରୀର, ଗୁଡ଼ାରୀର । ସବୁଠି ଏକାପରି ।

ସେଦିନ ୧.୬.୫୨ ତାରିଖ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଯିଏ କି ନବଜୀବନ ମଣ୍ଡଳର ମୁଖ୍ୟଭାବେ ବହୁ କାମ କରିଥିଲେ ବିଶ୍ୱନାଥଙ୍କ ୧୬.୫.୫୨ ତାରିଖ ଚିଠିର ଉତ୍ତରରେ ଲେଖିଲେ :

ନବକୃଷ୍ଣ ଚୌଧୁରୀ

କଟକ
୧/୬/୫୨

*ସ୍ନେହର ବିଶ୍ୱନାଥ,*

ତମର ଚିଠି ପାଇଛି । ମୋ ପ୍ରତି ତମର ସ୍ନେହ ମତେ ସବୁବେଳେ ଅଭିଭୂତ କରିଥାଏ । ପରସ୍ପର ପ୍ରତି ସ୍ନେହ ଗୋଟିଏ କଥା ସାଧାରଣ କ୍ଷେତ୍ରରେ ବିଭିନ୍ନ ସମସ୍ୟାର ସମାଧାନ ପାଇଁ କାମ କରିବା ଆଉ ଗୋଟିଏ କଥା । ସେପରି କାମକଲା ବେଳେ ନିଜର ବୁଦ୍ଧି ଓ ବିବେକ ଅନୁସାରେ ଭଲ ମନ୍ଦ ଓ ଆଗପଛ ବିଚାରି କାମ କରିବାକୁ ପଡ଼େ । ପ୍ରତ୍ୟେକ ଲୋକର ବୁଦ୍ଧି ବିବେକ ଅନୁସାରେ କାମ ଭିନ୍ନ ଭିନ୍ନ ହୁଏ ।

ମୁଁ ତୁମକୁ ବୁଝାଇ କହିଥିଲି ଆଇନ ଅମାନ୍ୟ କରି ଅନ୍ୟର ଜମି ଦଖଲ କରି ଜମି-ପୁର୍ନବଣ୍ଟନ ସମସ୍ୟାର ସମାଧାନ କରି ହେବ ନାହିଁ । ଯେଉଁଠାରେ ଜଣେ ଜଣେ ଲୋକ ହଜାରେ ପାଞ୍ଚ ଶହ ଏକର ଜମି ନିଜେ ଚାଷ ନକରି ରଖିଛନ୍ତି ସେଠିକା କଥା ସ୍ୱତନ୍ତ୍ର । ସେଠି ମଧ୍ୟ ଜବରଦସ୍ତି ବିନା-କ୍ଷତିପୂରଣରେ ତାଙ୍କର ଜମି ନେଇହେବ ନାହିଁ । ଆମର ଶାସନ ବିଧାନ ନ ବଦଳିବା ଯାଏ ରୟତି ଜମି ପାଇଁ ପୂରା ମୂଲ୍ୟ କ୍ଷତିପୂରଣ ଦେବାକୁ

ପଡ଼ିବ ଅଥଚ ବହୁମୂଲ୍ୟ ଦେଇ ଯେଉଁ ଜମି ଏପରି ଭାବରେ ମିଳିବ ତାହା ବାଣ୍ଟିଦେଲେ ଅତିଅଳ୍ପ ଜମିହୀନ ଲୋକ ୪/୫ ଏକର ଲେଖାଁ ଜମି ପାଇପାରିବେ । ତେଣୁ ଅନ୍ୟ ନୂଆ ଜମି ଖୋଜି ବାହାର କରିବା ଓ ଅନ୍ୟକାମ ଯୋଗାଇ ଦେବା ହେଉଛି ଏକମାତ୍ର ଉପାୟ ଦାରିଦ୍ର୍ୟ ଦୂର କରିବା ପାଇଁ ।

ସେପରି ବହୁତ ଜମି ମିଳିପାରିବ କିନ୍ତୁ ଲୋକମାନଙ୍କୁ ନେଇ ସେଠି ବସାଇବା ଗୋଟିଏ ବଡ଼କାମ ଯାହା ଆମକୁ କରିବାକୁ ହେବ । ତମେମାନେ ସେ କାମ ହାତକୁ ନେଲେ ବହୁ ସଂଖ୍ୟକ ଲୋକଙ୍କର ସ୍ଥାୟୀ ଭାବରେ ଅବସ୍ଥା ବଦଳାଇ ପାରନ୍ତା । ତା'ଛଡ଼ା ରାସ୍ତା ବନ୍ଧ ପ୍ରଭୃତି କାମ ପାଇଁ ଚାରିଆଡ଼େ ବହୁତ ଲୋକ ଦରକାର । କନ୍ଧ ସଉରାମାନଙ୍କୁ ନେଇ ଶ୍ରମିକ ଦଳ ଗଢ଼ି ଏକାମ ସବୁ ହାତକୁ ନେଲେ ସେମାନେ ବହୁତ ଉପାର୍ଜନ କରିପାରିବେ । ସେ ଦିଗରେ ମଧ୍ୟ ତମେମାନେ ଆଦୌ ଧ୍ୟାନ ଦେଉନାହଁ । ସେଥିସକାଶେ ହାତରେ ଟଙ୍କା ଥିଲେ ସୁଦ୍ଧା ସ୍ଥାନୀୟ ଅଫିସରମାନେ କାମ ପୂରା କରିପାରୁନାହାନ୍ତି । ମୁଁ ତମକୁ କହୁଥିଲି, ଚା ବଗିଚାରେ କାମ କରିବା ପାଇଁ ଆସାମ ଭଳିଆ ଦୂରଦେଶକୁ ଯଦି ଆଦିବାସୀମାନଙ୍କୁ ନିଆଯାଇ ପାରୁଛି ଓଡ଼ିଶା ଭିତରେ ତାଙ୍କୁ ନେଇ ନିଶ୍ଚୟ କାମରେ ଲଗାଇ ହୁଅନ୍ତା ଯଦି ସେଥିପାଇଁ ସଂଗଠିତ ଉଦ୍ୟମ କରାଯାଇ ପାରନ୍ତା । ସରକାରୀ ଅଫିସରଙ୍କ ଦ୍ୱାରା ଏକାମ ହେବା କଷ୍ଟକର - ଚା ବଗିଚା ପାଇଁ ବଗିଚା ମାଲିକମାନେ ଲାଭ ଉଦ୍ଦେଶ୍ୟରେ ଏକାମ କରିପାରୁଛନ୍ତି । 'ଲାଭ ଉଦ୍ଦେଶ୍ୟ' ପରିବର୍ତ୍ତେ 'ଦେଶ ସେବା ବ୍ରତ' କେବଳ କାର୍ଯ୍ୟକାରୀ ହୋଇପାରେ । ସରକାରୀ ଚାକିରୀ ନୁହେଁ ।

ଯାହାହେଉ, ରାୟଗଡ଼ା ପ୍ରଭୃତି ଅଞ୍ଚଳ ପାଇଁ ମୁଁ ଜଣେ ଖୁବ୍ ଭଲ ସହାନୁଭୂତି ସମ୍ପନ୍ନ ଅଫିସର ପଠାଉଛି ସେ ସରକାରୀ ଅଫିସର ଦ୍ୱାରା ଯେତେଦୂର ଯାହା କରାଯାଇ ପାରିବ କରିବ । ତମେମାନେ ୨/୪ ମାସ ତାକୁ ପରୀକ୍ଷା କରି ଦେଖିଲେ ଭଲ ହୁଅନ୍ତା । ତା' ନକରି ଯଦି ତମେମାନେ ଅସହଯୋଗ ଓ ସତ୍ୟାଗ୍ରହ କର ତା'ହେଲେ ମୁଁ ନିରୁପାୟ । ସତ୍ୟାଗ୍ରହର ଅର୍ଥ ତ ହେଉଛି ଆଇନ୍ ଅନୁସାରେ ଦଣ୍ଡ ଦେବା ପାଇଁ ଯେଉଁମାନେ ଅଛନ୍ତି ସେମାନେ ତାହା ଦେବେ । ମୁଁ ଯେଉଁ ଅଫିସରକୁ ପଠାଉଛି ସେ ଚେଷ୍ଟା କରିବ ଆଦିବାସୀଙ୍କ ଉପରେ ଯେଉଁ ବେଆଇନ ଜୁଲୁମ୍, ଅତ୍ୟାଚାର ଓ ଶୋଷଣ ହେଉଛି ତାକୁ ବନ୍ଦ କରିବା ପାଇଁ ।

ଇତି

ସ୍ନେହାଧୀନ

ନବକୃଷ୍ଣ ଚୌଧୁରୀ

ନବକୃଷ୍ଣ ଚୌଧୁରୀଙ୍କ ଚିଠି ବିଶ୍ୱନାଥ ପାଇଲେ ୫/୬/୫୨ ତାରିଖରେ ସେତେବେଳକୁ ଭୂ-ସତ୍ୟାଗ୍ରହୀ ସମାଜର ନିଷ୍ପତ୍ତି କାର୍ଯ୍ୟକାରୀ ହୋଇ ସାରିଥିଲା । କେତେକ ସ୍ଥାନରେ ଭୂମିହୀନ ମାନେ ଜମି ଭିତରେ ପ୍ରବେଶ କରି ସତ୍ୱ ଜାହିର କରିବା ଫଳରେ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେଲା । ବହୁ ଲୋକେ ଗିରଫ ହେଲେ । ସତ୍ୟାଗ୍ରହ ଆରମ୍ଭ ହୋଇ ଯାଇଥିଲା । ଭୂମିହୀନ-ଅହିଂସ ଉପାୟରେ ଆନ୍ଦୋଳନ ଆରମ୍ଭ କଲେ । ଭୂ-ମାଲିକମାନେ ଏହାକୁ ବେଆଇନ୍ ଓ ଜବର୍ଦସ୍ତି ମନେକରି ବହୁ ମିଛକେସ୍‌ରେ ଲୋକଙ୍କୁ ଜଡ଼ିତ କରାଇଲେ । ସରକାରୀ ଅଫିସରମାନେ ମଧ୍ୟ ଏହି ସାହୁକାରମାନଙ୍କୁ ସମର୍ଥନ କଲେ । ଗିରଫଦାରୀ, ମାଡ଼, ଅତ୍ୟାଚାର ଆରମ୍ଭ ହେଲା । ଭୂମିହୀନ ଆନ୍ଦୋଳନକାରୀଙ୍କୁ ବତାଇ, ମତାଇ ବିଦ୍ରୋହ କରିବା ଆଳରେ ଭୂ-ସତ୍ୟାଗ୍ରହୀ ସମାଜର ବହୁ କର୍ମୀଙ୍କ ନାମରେ ମିଛ ମୋକଦ୍ଦମାମାନ ରୁଜୁ କରାଗଲା ।

ଭୂ-ସତ୍ୟାଗ୍ରହୀଙ୍କ ଭୂମିପ୍ରବେଶକୁ ଓଡ଼ିଶାର ସମ୍ବାଦପତ୍ର ଭିନ୍ନ ଦୃଷ୍ଟିରେ ଦେଖିଲେ । ଏହି କାର୍ଯ୍ୟକୁ ଡକାୟତି ପର୍ଯ୍ୟାୟଭୁକ୍ତ ମନେକରି ନିମ୍ନମତେ ଖବର ପ୍ରକାଶ କଲେ । ସମାଜ : ତା ୧୦/୬/୫୨

## କୋରାପୁଟରେ ଶବର ଗଣ୍ଡଗୋଳ

## ଦୁଷ୍ଟଲୋକଙ୍କ ପ୍ରରୋଚନାରେ ଏମାନେ ଅରାଜକତା ସୃଷ୍ଟି କରୁଛନ୍ତି

*(ନିଜ ପ୍ରତିନିଧିଙ୍କ ଠାରୁ)*

''ଜୟପୁର (କୋରାପୁଟ) ତା ୯/୬ - ଗୁଣୁପୁର ତାଲୁକାରେ ଶବରମାନଙ୍କ ମଧ୍ୟରେ ସଂଗଠିତ ଭାବରେ ଅରାଜକତା ବ୍ୟାପି ଯାଉଥିବାର ଅନୁମାନ କରାଯାଉଛି । ଗୋଦାବରୀ ଓ ପଦ୍ମପୁର ଅଞ୍ଚଳରେ ଶବରମାନେ ଅନ୍ୟ ଜାତିମାନଙ୍କ ଜମି ଜବରଦସ୍ତ ଅଧିକାର କରୁଛନ୍ତି । ଏହି ଅଞ୍ଚଳରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ସକାଶେ ସଶସ୍ତ୍ର ପୋଲିସ ବାହିନୀ ପଠାଯାଇ ସାରିଲାଣି । ଏହି ଶବରମାନଙ୍କ ମଧ୍ୟରୁ ଅନେକଙ୍କୁ ଗିରଫ କରାଯାଇଛି ।

ଶବରମାନଙ୍କ ମଧ୍ୟରେ ବ୍ୟାପି ଯାଇଥିବା ଏହି ଅଚାନକ ମନୋଭାବ କ୍ରମେ ବ୍ୟାପକ ଭାବରେ ପ୍ରସରିଯାଇ ଶାନ୍ତି ଶୃଙ୍ଖଳା ନଷ୍ଟକରି ସାଂଘାତିକ ପରିସ୍ଥିତି ସୃଷ୍ଟି କରିବାର ଆଶଙ୍କା ଦେଖାଗଲାଣି । ଏହା ମୂଳରେ ଦୁଷ୍ଟ ଲୋକମାନଙ୍କର ଷଡ଼ଯନ୍ତ୍ର ଥିବାର ଅନୁମାନ କରାଯାଉଛି । ଏମାନେ ଶବରମାନେ ସ୍ୱରାଜ ପାଇଗଲେଣି ଓ ସବୁ ଜମି ସେମାନଙ୍କର ଏବଂ ଅନ୍ୟ ଜାତିର ଲୋକେ ସେମାନଙ୍କୁ ଠକି ଜମି ଅଧିକାର କରିଛନ୍ତି ବୋଲି ଶବରମାନଙ୍କୁ ମତାଉଛନ୍ତି ।''

ପ୍ରକାରାନ୍ତରେ ଖୋଦ ଖବର କାଗଜ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀଙ୍କୁ ସମର୍ଥନ କରିବାକୁ ଯାଇ ଭୂ-ସତ୍ୟାଗ୍ରହୀ ସମାଜର କାର୍ଯ୍ୟକ୍ରମ ଗର୍ହିତ, ନିନ୍ଦନୀୟ, ଜନସ୍ୱାର୍ଥ ବିରୋଧୀ ଓ ଡକାୟତି ବୋଲି ପ୍ରମାଣିତ କରିବା ପାଇଁ ସଂବାଦ ପ୍ରକାଶ କଲେ ।

## SAVAR TROUBLE IN GUNUPUR AREA

*(Sree P. Sanyasi Raju)*

Orissa Governments Revenue and Police Officers having camped for twenty five days at Gudari, Gunupur taluk watched the events leading to Savar trouble in the surrounding villages.

However,. Savaras achieved their goal in criminally tresspassing, occupying, ploughing and seedling others' lands capriciously in the name of 'Bhusatyagraha'.

Public workers in Gunupur and its taluk with Kujendri Adivasi Ashramates have ably piloted these tumultous savaras to infringe existing landlaws.

Government admitting this illicit hazardous act of Bhusatyagraha neglected punishing tresspassers, abetors, or large crowds of savaras with borigis and wooden aticks who followed tresspassers in their tresspassing atrocities.

Now land holders are challanging anybody to prove that they have confiscated savaras' lands under dishonest or uncertain illegal means fifty or more years ago. And further they are demanding sufficient proof to say that they are constantly removing and keeping down savaras from cultivation when they are cultivating their lands since three or more years.

Land holders say that these are manipulating stories simply to speculate that this Savara trouble is due to such reasons. They say that the Government attentively conceeded savaras to go too far, even to injure them.

Anyhow, I am to say it is a revolution of the stomach. Though the trouble is caused to sleep by soothing influences, I fear it is only a temporary calmness.

May God bless - there should be no trouble in harvest season also.

(Visal Andhra Vani - Vol. - XI, Issue Nos. 15, Wednesday, 2nd July, 1952)

ଘଟଣାକୁ ଅଧିକ ବିଭ୍ରାନ୍ତ କରିବା ଓ ତେଜେଇବା ଅଭିସନ୍ଧି ରଖି "ବିଶାଳ ଆନ୍ଧ୍ରବାଣୀ" ନାମକ ଇଂରାଜୀ ସମ୍ବାଦପତ୍ର ୨-୭-୧୯୫୨ ତାରିଖରେ ଉକ୍ତ ସଂବାଦ ପ୍ରକାଶ କଲା ।

ଖବର କାଗଜରୁ ବିବରଣୀ ପଢ଼ି ତତ୍କାଳୀନ ଓଡ଼ିଶାରୁ ଲୋକସଭା ସଦସ୍ୟ ଶ୍ରୀ ଟି. ସାଙ୍ଗନା ଏହି ଘଟଣାର ତୀବ୍ର ନିନ୍ଦାକରିବା ସଙ୍ଗେ ସଙ୍ଗେ ଭୂ-ସତ୍ୟାଗ୍ରହୀ ସମାଜକୁ ସବୁ ବିଭ୍ରାଟର କାରଣ ବୋଲି ବର୍ଣ୍ଣନାକରି ଆନ୍ଦୋଳନରୁ କ୍ଷାନ୍ତ ରହିବା ପାଇଁ ୧.୭.୫୨ ତାରିଖର ପ୍ରକାଶିତ 'ପ୍ରଜାତନ୍ତ୍ର'ରେ ଶବରମାନଙ୍କୁ ଅନୁରୋଧ କଲେ -

"ମୁଁ ଶୁଣିପାରୁଛି ଆପଣମାନେ ସଂଘବଦ୍ଧ ହୋଇ ଅଣ-ଆଦିବାସୀମାନଙ୍କର ଜମି ବେଆଇନ ଭାବେ ଦଖଲ କରୁଛନ୍ତି । ଏହା ଯଦି ସତ ହୋଇଥାଏ ତାହାହେଲେ ନିନ୍ଦନୀୟ ବିଷୟ । ମୁଁ ଭାବୁଛି, ବୋଧହୁଏ ଆପଣମାନେ ଅଜ୍ଞ ଓ ସରଳବିଶ୍ୱାସୀ ହେବା ଯୋଗୁଁ କଂଗ୍ରେସ ବିରୋଧୀ ଅନୁଷ୍ଠାନମାନଙ୍କର ପ୍ରରୋଚନାରେ ଅନୁପ୍ରାଣିତ ଓ ପ୍ରଭାବିତ ହୋଇ ଏଭଳି ଅଦୂରଦର୍ଶୀ ଆନ୍ଦୋଳନକୁ ବରଣ କରିଛନ୍ତି । ଯେଉଁମାନେ ଆଜି ଦେଶବାସୀମାନଙ୍କର ଯୁଗଯୁଗ ବ୍ୟାପି ଆର୍ଥିକ, ସାମାଜିକ, ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ ସମସ୍ୟା ସହିତ ଓତଃପ୍ରୋତ ଭାବେ ଜଡ଼ିତ ନୁହଁନ୍ତି ଓ ଯେଉଁମାନେ ଆଦିବାସୀ ଅଞ୍ଚଳରେ ଆଗନ୍ତୁକ ସେମାନେ ଏଭଳି ଦାୟିତ୍ୱହୀନ ଓ ଭିତ୍ତିହୀନ ଆନ୍ଦୋଳନ କରାଇ ନିଜର କୃତିତ୍ୱ ଓ ନେତୃତ୍ୱ ସ୍ଥାପନ କରିବା ମନୋଭାବର ପରିଚୟ ଦିଅନ୍ତି । କାହିଁକି ?

ମୋ ମତରେ ଏଭଳି ଏକ-ଆଇନ ଆନ୍ଦୋଳନ ଦ୍ୱାରା ଆଦିବାସୀମାନଙ୍କର ସମସ୍ୟାର ସମାଧାନ ହୋଇପାରିବ ନାହିଁ ।

ମୁଁ ଦୃଢ଼ତା ସହ କହୁଛି ଯେଉଁ ବୃହତ୍ କଂଗ୍ରେସ ଅନୁଷ୍ଠାନ ବର୍ଷ ବର୍ଷ ଧରି ଅହିଂସା ଆନ୍ଦୋଳନ ଦ୍ୱାରା ଆତ୍ମଭୀରୁ ଓ ନିରୀହ ଜନତାଙ୍କୁ ଅବାଞ୍ଛିତ ଦାସତ୍ୱରୁ ମୁକ୍ତି ଦେଇଚି ଓ ଦୁନିଆ ଆଗରେ ସମକକ୍ଷ ଓ ସାହସୀ କରାଇ ଚକ୍ଷୁଖୋଲିଛି ସେ ଅନୁଷ୍ଠାନର ନୀତି ଓ ଆଦର୍ଶ ଦ୍ୱାରା ହିଁ ଆମ୍ଭ ଧନହୀନ, ବୁଦ୍ଧିହୀନ ଓ ଜ୍ଞାନହୀନମାନଙ୍କର ଶକ୍ତି, ମୁକ୍ତି ଓ ଶାନ୍ତି ସମ୍ଭବ । ବର୍ତ୍ତମାନ ସତ୍ୟାଗ୍ରହ ଓ ଆନ୍ଦୋଳନ କରିବା ସମ୍ଭବ ନୁହେଁ । ଆଜିକାଲି ନିଜେ ନିଜର ଯଥାସାଧ ଶାରୀରିକ ଓ ମାନସିକ ଶକ୍ତି ଖଟାଇ ଦେଶର ସମ୍ବଳ ବଢ଼ାଇବାକୁ ହେବ ।

ଆପଣମାନଙ୍କୁ ଆପଣମାନଙ୍କର ଜଣେ ଜାତିଭାଇ ଓ ପ୍ରତିନିଧି ହିସାବରେ ମୁଁ ବିନୀତ ଅନୁରୋଧ କରୁଛି ଯେ, ଆମ୍ଭମାନଙ୍କର ଜାତୀୟ ସରକାର ହାତରେ ନିଜ ନିଜ ଭାଗ୍ୟ ଡୋରି ସମର୍ପଣ କରି ଭଗବତ ବିଶ୍ୱାସୀ ହୋଇ ହିଂସା ଆନ୍ଦୋଳନକୁ ଯଥାଶୀଘ୍ର ତ୍ୟାଗ କରନ୍ତୁ ।

ଆମ୍ଭର ଜାତୀୟ ସରକାର ଆମ୍ଭମାନଙ୍କର ହିତ ଓ ଶୁଭାକାଂକ୍ଷୀ ନେତାମାନଙ୍କ ଦ୍ୱାରା ପରିଚାଳିତ । ଆମ୍ଭମାନଙ୍କ ସମୂହ ଉନ୍ନତି ଲାଗି ସେମାନେ ସତତ ଚିନ୍ତା କରିଛନ୍ତି, କରୁଛନ୍ତି ଏବଂ କରିବେ ହିଁ, କରିବେ । ଆମ୍ଭମାନଙ୍କ ଲାଗି ସରକାର ନାନା ପ୍ରକାର ବହୁମୁଖୀ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଏ ସବୁ ସମ୍ପୂର୍ଣ୍ଣ ହେଲେ ଅବଶ୍ୟ ଆମ୍ଭମାନଙ୍କର ମଙ୍ଗଳ ହେବ । ତେଣୁ ଧୈର୍ଯ୍ୟ ଧରନ୍ତୁ ଓ ସହିଷ୍ଣୁ ହୁଅନ୍ତୁ । ଧରିତ୍ରୀଭଳି ଆଦିବାସୀମାନଙ୍କର ଏହି ଗୁଣ ଗୁଡ଼ିକ ଥିବାରୁ ଆଜି ସୁଦ୍ଧା ଆଦିବାସୀର ଅସ୍ତିତ୍ୱ ଓ ନିଜତ୍ୱ ରହିଛି । ସେ ମହତ୍ତ୍ୱ ଗୁଣଗୁଡ଼ିକ କ୍ଷଣିକ ମୋହରେ ପଡ଼ି ପରଦ୍ୱାରା ଚାଳିତ ହୋଇ ହରାନ୍ତୁ ନାହିଁ ଓ ଲୋକଚକ୍ଷୁରେ ହାସ୍ୟାସ୍ପଦ ହୁଅନ୍ତୁ ନାହିଁ ।''

ତା ୧୭.୬.୫୨ରିଖରେ ସମାଜରେ ପ୍ରକାଶିତ ଶବର ଗଣ୍ଡଗୋଳକୁ ନେଇ ଲେଖାର ତୀବ୍ର ପ୍ରତିବାଦ ଜଣାଇଲେ ବିଶ୍ୱନାଥ ପଟ୍ଟନାୟକ ଯାହା ସେଇ ସମାଜରେ ଏମିତି ପ୍ରକାଶିତ ହେଲା -

''ଯଦି ନିଜର ଦାବିକୁ ସ୍ପଷ୍ଟଭାବରେ କହିବା ଓ ଅହିଂସା ଉପାୟରେ ନିର୍ଦ୍ଦିଷ୍ଟ ଯୋଜନାକୁ ହାସଲ କରିବାକୁ ଗଣ୍ଡଗୋଳ କୁହାଯାଏ ଓ ନିଜେ ସଂଗଠିତ ହେବାକୁ ଅନ୍ୟର ପ୍ରରୋଚନା କୁହାଯାଏ, ତାହାହେଲେ ଆମେମାନେ ନାଚାର । ଅନ୍ୟପକ୍ଷରେ ଯଦି ଗଣ୍ଡଗୋଳ ଓ ଅରାଜକତା ସୃଷ୍ଟିକଥା ବିଚାର କରାଯାଏ ତେବେ ଦେଖାଯିବ ଯେ ଏସବୁ ସେହି ସାହୁକାର ଓ ଜମିମାଲିକମାନଙ୍କ ଠାରୁ ସୃଷ୍ଟି ହୋଇଛି । ଚିରଦିନର ଭାଗଚାଷୀଙ୍କୁ ଜମିରୁ ବେଦଖଲ କରିବା, ତା'ର ନାଯ୍ୟ ପ୍ରାପ୍ୟ ଦାବିକଲେ ସେମାନଙ୍କ ଉପରେ ମିଥ୍ୟାଚୋରି ମୋକଦ୍ଦମା କରିବା, କର୍ମୀମାନଙ୍କୁ ମାଡ଼ଦେବା, ନିର୍ମମ ଭାବରେ ଚାଷୀଙ୍କୁ ଆଘାତ କରିବା ଆଦି ଦ୍ୱାରା ହିଁ ଏ ପ୍ରକାର ଆନ୍ଦୋଳନ ଆରମ୍ଭ ହେଲା । ଅତ୍ୟାଚାର ପ୍ରତିରୋଧ କରିବା ପାଇଁ ଲୋକମାନେ ସଂଘବଦ୍ଧ ହେଲେ ।

ଅତଏବ ଏ ପ୍ରକାର ଘଟଣାକୁ ଯଦି ଅରାଜକତା ଗଣ୍ଡଗୋଳ ଆଦି ନାମରେ କଳଙ୍କିତ କରାଯାଏ ତେବେ ଅସତ୍ୟକୁ ପ୍ରଶୟ ଦେବା କଥା ହେବ ସିନା ।''

ଏହି ପ୍ରତିବାଦରୁ ବିଶ୍ୱନାଥଙ୍କ ଆତ୍ମବଳର ସୂଚନା ମିଳେ ନାହିଁକି ? ଭାଙ୍ଗିଯିବ ପଛେ ନଇଁବ ନାହିଁ ଏ ମଣିଷ । ସତ୍ୟ ପାଇଁ ସବୁବେଳେ ଖଣ୍ଡା ଧାରରେ ଚାଲିଯିବାର ଅନମନୀୟ ମନର ଏ ମଣିଷ ।

୧.୭.୫୨ ତାରିଖରେ ପ୍ରକାଶିତ ଲୋକସଭା ସଦସ୍ୟ ଶ୍ରୀ ଟି. ସାଙ୍ଗନ୍ନାଙ୍କ ଅନୁରୋଧକୁ ଭୂ-ସତ୍ୟାଗ୍ରହୀ ସମାଜ ଏହା ଲୋକସଭା ସଦସ୍ୟଙ୍କ ଉପର ଠାଉରିଆ, କୌଣସି ସାରନଥିବା, ଭିତ୍ତିହୀନ, ପ୍ରଚାରମୂଳକ, ମୂଲ୍ୟହୀନ କଥା ବୋଲି ଅଗ୍ରାହ୍ୟ କରି ଗୋଟିଏ ପ୍ରତିବାଦ ପତ୍ର ତାଙ୍କ ନିକଟକୁ ପଠାଇଦେଲେ ଏବଂ ଖବରକାଗଜରେ ଗୋଟିଏ ସ୍ପଷ୍ଟିକରଣ ବାହାର କରାଇଲେ ।

## ଓଡ଼ିଶା ବିଧାନ ସଭାରେ ଧ୍ୱନି-ପ୍ରତିଧ୍ୱନି :

[ସମାଜ, ଜୁନ୍, ୨୦ ତାରିଖ ୧୯୫୨]

ଭୁବନେଶ୍ୱର, ତା ୧୮/୬- ଆଜି ସକାଳ ୭ଟା ବେଳେ ଓଡ଼ିଶା ଆସେମ୍ବ୍ଲି ବୈଠକ ଆରମ୍ଭ ହେଲା । ଆଜି ପ୍ରଶ୍ନୋତ୍ତର ବେଳେ ଶ୍ରୀ ହରିହର ମିଶ୍ର (ଗଣତନ୍ତ୍ର)ଙ୍କ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ମୁଖ୍ୟମନ୍ତ୍ରୀ (ଶ୍ରୀ ନବକୃଷ୍ଣ ଚୌଧୁରୀ) କହିଲେ ଯେ ଗୁଣୁପୁର ଅଞ୍ଚଳର କେତେକ ସଉରା ପ୍ରଭୃତି ଆଦିବାସୀ ଜମିଜମା ଆଇନ ଲଙ୍ଘନ କରି ଅନ୍ୟଙ୍କ ଜମି ଦାଖଲ ପାଇଁ ଚେଷ୍ଟା କରିଥିଲେ ବୋଲି ସରକାର ଖବର ପାଇଛନ୍ତି । ତେବେ ସେମାନେ ଅସ୍ତ୍ରଶସ୍ତ୍ର ଧରି ଯାଇନଥିଲେ ।

ଏ ସଂକ୍ରାନ୍ତରେ ଶ୍ରୀ ରାମକୃଷ୍ଣ ମିଶ୍ର, ଶ୍ରଦ୍ଧାକର ସୂପକାର ଓ କଳାହାଣ୍ଡି ମହାରାଜାଙ୍କ ବିଭିନ୍ନ ଅତିରିକ୍ତ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ ଯେ ସେଠାର ସଉରାମାନଙ୍କ ଅଭିଯୋଗ ଯେ ସେମାନଙ୍କ ଜମି ୫୦/୬୦ ବର୍ଷ ହେଲା ଅନ୍ୟମାନେ ନେଇଯାଇଛନ୍ତି । ସେମାନଙ୍କ ଗୁହାରି କେହି ଶୁଣିଲେ ନାହିଁ । ତେଣୁ ଅନ୍ୟ ଉପାୟ ନଦେଖି ସେମାନେ ଗୋଟିଏ ଭୂ-ସତ୍ୟାଗ୍ରହ କମିଟି ଗଠନ କରି ସେମାନଙ୍କ ଜମି ପୁଣି ଫେରିବା ପାଇଁ ସତ୍ୟାଗ୍ରହ କରିବେ । ତଦନୁଯାୟୀ ସେମାନେ ସତ୍ୟାଗ୍ରହ କରିଥିବା ସମ୍ବାଦ ସରକାର ପାଇଛନ୍ତି । ତେବେ ଏଥିପାଇଁ କଂଗ୍ରେସ କର୍ମୀମାନେ ସେମାନଙ୍କୁ ମତାଇ ନାହାନ୍ତି । କେତେକ ସମାଜସେବୀ କର୍ମୀ ସେମାନଙ୍କ ଭିତରେ ପ୍ରଚାର କରିଥିଲେ । ସଉରାମାନଙ୍କ ଅଭିଯୋଗ ଯେ ଏଭଳି ପନ୍ଥା ଗ୍ରହଣ ନକଲେ ସେମାନେ ସବୁବେଳେ ଅବହେଳିତ ହୋଇରହିବେ । ଏ ଖବର ପାଇବା ପରେ ସରକାର ସେଠାକୁ ଜଣେ ସ୍ପେଶାଲ ଅଫିସରଙ୍କୁ ପଠାଇବା ସ୍ଥିର କରିଛନ୍ତି । ସେ ଯାଇ ବିଷୟଟିର ପୁଙ୍ଖାନୁପୁଙ୍ଖ ବିଚାର କରି ସମାଧାନର

ଉପାୟ ସ୍ଥିର କରିବେ । ଏହାଛଡ଼ା ରେଭେନ୍ୟୁ ବୋର୍ଡ଼ର ସଭ୍ୟ ମଧ୍ୟ ସେଠାକୁ ଯାଇ ଆପୋଷ ମିଳାମିଶାର ସୂତ୍ରରେ ବିଷୟଟିକୁ ସମାଧାନ କରିବା ପାଇଁ ଚେଷ୍ଟା କରିବେ । ଅତିରିକ୍ତ ପ୍ରଶ୍ନର ଉତ୍ତର ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ କେତେକ ଭୂ-ସତ୍ୟାଗ୍ରହୀ ଗିରଫ ହୋଇଛନ୍ତି ଏବଂ ସେମାନଙ୍କ ବିରୁଦ୍ଧରେ ମୋକଦ୍ଦମା ଚାଲିଛି । କୁଜେନ୍ଦ୍ରୀ ଠାରେ ଯେଉଁ ସମାଜସେବୀ କର୍ମୀମାନେ ଭୂ-ସତ୍ୟାଗ୍ରହ ପାଇଁ ପ୍ରଚାର କରିଥିଲେ ସେମାନେ କହନ୍ତି ଯେ ସଉରାମାନଙ୍କ ଜମି ସେମାନେ ଯଦି ଏହି ଉପାୟରେ ଫେରିନପାଆନ୍ତି ତାହାହେଲେ ହିଂସା ନୀତିରେ ବିରୋଧ କରୁଥିବା ରାଜନୈତିକ ଦଳ ସେଠାରେ ପଶି ହାଇଦରାବାଦ ଭଳି କାଣ୍ଡ ଭିଆଇଥାନ୍ତେ ।

## ଆପୋଷ ସମାଧାନ ଦିଗରେ ଭୂ-ସତ୍ୟାଗ୍ରହୀ ସମାଜ :

ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ଅନୁସାରେ ଶ୍ରୀଯୁକ୍ତ ଭି.ରାମନାଥନ୍, ରେଭେନ୍ୟୁ କମିଶନର ଓଡ଼ିଶା ସରକାରଙ୍କ ତରଫରୁ, ଜିଲ୍ଲା ମାଜିଷ୍ଟ୍ରେଟ ସ୍ପେଶାଲ ସବ୍ ଏଜେଣ୍ଟ ଓ ଜୟପୁର ସମସ୍ଥାନମର ଦେଓ୍ୱାନଙ୍କ ସହିତ କୁଜେନ୍ଦ୍ରୀକୁ ଆସି ବିଶ୍ୱନାଥ ପଟ୍ଟନାୟକ, ଭୂ-ସତ୍ୟାଗ୍ରହୀ ସମାଜର ୪୫ ଜଣ କମିଟି ସଭ୍ୟ ଓ ଭୂ-ମାଲିକମାନଙ୍କ ସହିତ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ଭୂ-ସମସ୍ୟା ଓ ଅନ୍ୟାନ୍ୟ ସମସ୍ୟା ସମ୍ବନ୍ଧରେ ପ୍ରତିକାର କରିବା ପାଇଁ ଚେଷ୍ଟାକଲେ । ଏଥିପାଇଁ ୪ ମାସର ସମୟସୀମା ଧାର୍ଯ୍ୟ କରାଗଲା । ଯଦି ସରକାର ୪ ମାସ ମଧ୍ୟରେ ସମସ୍ୟାର କୌଣସି ସମାଧାନ ନକରନ୍ତି ତା'ହେଲେ ପୁଣିଥରେ ସତ୍ୟାଗ୍ରହ କରାଯିବ ବୋଲି ଭୂ-ସତ୍ୟାଗ୍ରହୀ ସମାଜ ସ୍ଥିର କଲେ ।

୧୩.୬.୫୨ ଦିନ 'ଭୂ-ସତ୍ୟାଗ୍ରହୀ ସମାଜ'ର ଜରୁରୀ ବୈଠକରେ କୋରାପୁଟ ଜିଲ୍ଲା କଂଗ୍ରେସ ସଭାପତି ଶ୍ରୀ ରାଧାମୋହନ ସାହୁ ବିଶେଷ ଭାଗ ନେଇଥିଲେ । ଏହି ବୈଠକରେ ଓଡ଼ିଶା ସରକାରଙ୍କ ଉଦ୍ୟମକୁ ପ୍ରଶଂସା କରାଯିବା ସଙ୍ଗେ ସଙ୍ଗେ ସଂପୃକ୍ତ ସମସ୍ତ ମାନନୀୟ କର୍ତ୍ତୃପକ୍ଷ ଓ କର୍ମଚାରୀଙ୍କୁ କୃତଜ୍ଞତା ଜ୍ଞାପନ କରାଗଲା ଏବଂ ୧୪/୬/୫୨ ଠାରୁ ୪ ମାସ ମଧ୍ୟରେ ଜମିଜମା ସମସ୍ୟା ସମାଧାନ ପାଇଁ ଭୂ-ସତ୍ୟାଗ୍ରହୀ ସମାଜର କର୍ମୀମାନେ ସରକାରଙ୍କୁ ପୂର୍ଣ୍ଣପ୍ରାଣରେ ସବୁ ପ୍ରକାର ସାହାଯ୍ୟ କରିବାର ନିଷ୍ପତ୍ତି ନେଲେ ।

ଠିକ୍ ଏହି ଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ବିନୋବାଜୀଙ୍କ ଭୂଦାନ ଯଜ୍ଞର କଥା ଶୁଣାଗଲା । ଏହି ଭୂମିହୀନଙ୍କ ସମସ୍ୟାକୁ ନେଇ ଏକ ଅଭିନବ ଯୁଗର ସୂତ୍ରପାତ ହେଲା । ବିଶ୍ୱନାଥ ସେଇ ଯଜ୍ଞର ଜଣେ ପୁରୋହିତ ହୋଇଗଲେ ୧୯୫୨ ମସିହାରେ ।

# ସ୍ପେଶାଲ ଅଫିସର୍ ଗୋପୀନାଥ ମହାନ୍ତି

ବିଶ୍ୱନାଥ ଦେଖିଲେ ଦେଶ ସ୍ୱାଧୀନ ହେଲାପରେ କଂଗ୍ରେସର ନୀତି ବଦଳିଗଲା । ଶାସକ କଂଗେସ ଗାନ୍ଧୀନୀତିରୁ ଦୂରେଇ ଯାଉଛି । ଦେଶରେ ଅଶାନ୍ତି ବଢ଼ି ବଢ଼ି ଯାଉଛି । ଲୋକଙ୍କ ଅବସ୍ଥା ସୁଧୁରିବା ବଦଳରେ ଅଭାବ ବଢ଼ି ଯାଉଛି । ଥିଲାବାଲାଙ୍କର ସୁବିଧା ପାଇଁ ସବୁ ହେଉଛି । ଗରିବ ଓ ଦଳିତଙ୍କ ପାଇଁ ସୁନ୍ଦର ସ୍ଲୋଗାନ ଛଡ଼ା ଆଉ କିଛି ନାହିଁ ।

୧୯୫୨ ରେ ଗୁଣୁପୁର ଓ ରାୟଗଡ଼ା ତାଲୁକରେ ଯେଉଁ ସତ୍ୟାଗ୍ରହ ହେଲା ତାହାର ଫଳସ୍ୱରୂପ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶା ଭାଗଚାଷ ଆଇନ ଓ ଭାଗଚାଷୀ ଫସଲର ଦୁଇ ତୃତୀୟାଂଶ ଭାଗ ପାଇବା ନିୟମ ଅନୁସାରେ ସେଠାର ଭୂ-ସମସ୍ୟାର ସମାଧାନ ପାଇଁ ଓଡ଼ିଶା ବିଧାନ ସଭାର ୧୮.୯.୫୨ ତାରିଖର ଘୋଷଣା ଅନୁସାରେ ଶ୍ରୀ ଗୋପୀନାଥ ମହାନ୍ତିଙ୍କୁ ସ୍ପେଶାଲ ଅଫିସର ଭାବେ ନିଯୁକ୍ତି ଦେଲେ ୧୯୫୨ ମସିହାରେ । ଏ ସମ୍ବନ୍ଧରେ ଶ୍ରୀ ଗୋପୀନାଥ ମହାନ୍ତି ଲେଖିଛନ୍ତି :

ଜୁନ୍ ୧୯୫୨ରେ ଭୂ ସତ୍ୟାଗ୍ରହ ଏନ୍‌କ୍ୱାରି କରିବାପାଇଁ ମୁଁ ବଛା ହେଲି; କିନ୍ତୁ ସେତେବେଳେ ମୋର ସ୍ତ୍ରୀ ଗୁରୁତର ଭାବେ ଅସୁସ୍ଥ ଥିଲେ । ତେଣୁ ମୁଁ ଯାଇ ପାରିଲି ନାହିଁ । ସେଥିପାଇଁ ଅନ୍ୟଜଣେ କର୍ମଚାରୀ ଶ୍ରୀ ଜଗନ୍ନାଥ ଦାସ କୁଜେନ୍ଦ୍ରୀ ଯାଇ କେତେକ ଆଦିବାସୀଙ୍କୁ ଓ ଆନ୍ଦୋଳନର ନେତାମାନଙ୍କୁ ଭେଟି କଥାଭାଷା କରି ସେମାନଙ୍କୁ କହିଦେଇ ଆସିଲେ ଯେ ଏନ୍‌କ୍ୱାଇରି ହେବ, କିନ୍ତୁ ଆଉ ଚାରିମାସ ସମୟ ଦରକାର । ସେ ପର୍ଯ୍ୟନ୍ତ ଆନ୍ଦୋଳନ ମୁଲତବି ରଖାଗଲା ।

"ଅଗଷ୍ଟ ୧୧ ତାରିଖ ୧୯୫୨ରେ ମୁଁ ଗୁଣୁପୁରରେ ପହଞ୍ଚିଲି ଓ ବିକ୍ଷୁବ୍ଧ ଅଞ୍ଚଳଯାକ ବୁଲି ବୁଲି ସହସ୍ର ଆଦିବାସୀଙ୍କୁ ବିବିଧ ଗ୍ରାମରେ ଭେଟି ସେମାନଙ୍କ ସଙ୍ଗେ ରହି ସେମାନଙ୍କ ଅବସ୍ଥା ବିଷୟରେ ଅନୁସନ୍ଧାନ କଲି । ସାହୁକାରମାନଙ୍କୁ ବି ଭେଟିଲି, ସରକାରୀ କର୍ମଚାରୀଙ୍କ ସଙ୍ଗେ ଆଲୋଚନା କଲି ଓ ବିବିଧ ନଥିପତ୍ର ଦେଖିଲି । ଅଗଷ୍ଟ ୨୭ରେ କଟକ ଫେରି ଆସିଲି ଓ ତାପରେ ମୋର ରିପୋର୍ଟ ପ୍ରସ୍ତୁତ କରି ଦାଖଲ କଲି । ଆଦିବାସୀମାନଙ୍କ ଶୋଚନୀୟ ଦୁରବସ୍ଥା, ସେମାନଙ୍କର ବିଭିନ୍ନ ସମସ୍ୟା, ସରକାରୀ କର୍ମଚାରୀଙ୍କ ଉଦାସୀନତା ଓ ଆଦିବାସୀମାନଙ୍କ ଦୁଃଖ ଦୂର କରିବାରେ ସରକାରୀ ବ୍ୟବସ୍ଥାର ଅପାରଗତା ଯାହା ଯାହା

ଦେଖିଲି, ବୁଝିଲି, ସବୁ ମୋ ରିପୋର୍ଟରେ ସ୍ଥାନ ପାଇଲା ଓ ତାହା ସହିତ ବିବିଧ ସମସ୍ୟା ସମାଧାନ ବିଷୟରେ ମୁଁ ମୋର ପରାମର୍ଶମାନ ମଧ୍ୟ ଦେଲି ।

ନବକୃଷ୍ଣ ଚୌଧୁରୀଙ୍କ ସହିତ ସେତେବେଳକୁ ମୋର ବ୍ୟକ୍ତିଗତ ସମ୍ପର୍କ ନଥିଲା । ମୁଁ ଭାବିନଥିଲି ଯେ ସରକାରୀକର୍ତ୍ତୃପକ୍ଷ ମୋର ରିପୋର୍ଟ ପଢ଼ି ଖୁସି ହେବେ, ବରଂ ଓଲଟା ହିଁ ଆଶଙ୍କାଥିଲା । ତେଣୁ ଆଶ୍ଚର୍ଯ୍ୟହେଲି, ଯେତେବେଳେ ଶୁଣିଲି ଯେ ରିପୋର୍ଟ ପାଇ ମୋ ସୁପାରିଶ ଗୁଡ଼ିକୁ ସରକାର ଗ୍ରହଣ କରି ସେ ସବୁ କାର୍ଯ୍ୟରେ ରୂପାନ୍ତରିତ କରିବା ପାଇଁ ମତେ ରାୟଗଡ଼ା ସବ୍‌ଡ଼ିଭିଜନର ଏସ୍.ଡ଼ି.ଓ କରି ଅବସ୍ଥାପିତ କଲେ । ମୁଁ ପହଞ୍ଚିଲି । ଆନ୍ଦୋଳନ ବନ୍ଦ ହୋଇଗଲା । ନୂଆକାର୍ଯ୍ୟକ୍ରମମାନ ଆରମ୍ଭ ହେଲା । ଦିନରାତି କାର୍ଯ୍ୟଚାଲିଲା, ଲାଗିଗଲା ନାନା ଦିଗରୁ ଆଦିବାସୀମାନଙ୍କ ସମସ୍ୟା ମାନଙ୍କର ସମାଧାନ କଳ୍ପେ ନାନା ଉଦ୍ୟମ । ତନ୍ମଧ୍ୟରେ ଥିଲା ପ୍ରଚଳିତ ଆଦିବାସୀ ଭୂମି ହସ୍ତାନ୍ତର ନିଷେଧକ ଆଇନ ୧୯୧୭, ଓଡ଼ିଶା ଭାଗ ଚାଷ ଆଇନ୍ ୧୯୪୭ ଓ ଓଡ଼ିଶା ମହାଜନୀ ଆଇନ୍ ୧୯୩୯ ଆଦି ଅନୁସାରେ ଆଦିବାସୀ ମାନଙ୍କ ବିବିଧ ଅଭିଯୋଗର ଉଦ୍‌ଘାଟନ ଓ ବିଚାର । ସେଥିପାଇଁ ଆଉ ଦୁଇଜଣ କର୍ମଚାରୀ ବି ନିଯୁକ୍ତ ହେଲେ । ଆଦିବାସୀ ମାନଙ୍କୁ କୋର୍ଟ ଫି ଛାଡ଼ ହେଲା ଓ ତାଙ୍କ ତରଫରୁ ସରକାରୀ ଖର୍ଚ୍ଚରେ ଓକିଲ ନିଯୁକ୍ତି ହେଲେ । ଆଦିବାସୀଙ୍କୁ ପତିତ ଜମି ଖୋଜି ବିତରଣ, ତାକୁ ଚାଷ କରିବା ପାଇଁ ସବୁ ପ୍ରକାର ସାହାଯ୍ୟ ବଣ୍ଟନ, ସରକାରରୁ ସେମାନଙ୍କ ପାଇଁ ବିବିଧ ଋଣ ବ୍ୟବସ୍ଥା, ଧାନ କରଜ ଦେବା ବ୍ୟବସ୍ଥା, ଗ୍ରେନ୍‌ଗୋଲା, ବିବିଧ ସାହାଯ୍ୟ ବ୍ୟବସ୍ଥା, ଖୋଜି ଖୋଜି ସବୁ ପ୍ରକାର ଅନ୍ୟାୟ ଅତ୍ୟାଚାରର ନିରାକରଣ, ସେମାନଙ୍କ ସୁବିଧାପାଇଁ କୂଅ, ପୋଖରୀ, ରାସ୍ତା, କ୍ଷୁଦ୍ର ଜଳସେଚନ ବ୍ୟବସ୍ଥା, ବିବିଧ କର୍ମସଂସ୍ଥାନ, ନିବିଡ଼ ଅଭ୍ୟନ୍ତରରେ ବାରମ୍ବାର ବୁଲି ବୁଲି ସେମାନଙ୍କ ସହିତ ସମ୍ବନ୍ଧ ପ୍ରତିଷ୍ଠା, ସେମାନଙ୍କର ଭୟଭଞ୍ଜନ, କୃଷି ଓ ଶିକ୍ଷା ବିସ୍ତାର, ଉଚିତମୂଲ୍ୟ ଓ ଉଚିତ ଦର ପ୍ରଚଳନ, ଉଚିତ ମାପ ପ୍ରଚଳନ ଓ ଠକେଇମାଣ ଧ୍ୱଂସ, ଉଚିତ ମୂଲ୍ୟର ଦୋକାନ, ଇତ୍ୟାଦି ଇତ୍ୟାଦି ବହୁବିଧ ଉନ୍ନତି ମୂଳକ କାର୍ଯ୍ୟହେଲା । ସେମାନେ ଅନେକ ଜମି ଓ ଅନ୍ୟାନ୍ୟ ଉପକାର ପାଇଲେ । ଭାଗଚାଷ ଆଇନ୍ ଅନୁସାରେ ମକଦ୍ଦମା ହୋଇ ଭାଗଚାଷୀ ରଇତଙ୍କୁ ସଂପୃକ୍ତ ବର୍ଷର ଓ ଅତୀତ ବର୍ଷ ମାନଙ୍କର ଭୂମି ମାଲିକ ଅନ୍ୟାୟ ଭାବେ ବଳକା ନେଇ ଯାଇଥିବା ପରିମାଣର ଫସଲ ମଧ୍ୟ ଲେଉଟାଇ ଦିଆଗଲା । ଅନ୍ୟାୟ ଋଣ ବକେୟା ଅନୁସନ୍ଧାନ କରି କାଟି ଦିଆଗଲା ।''

ଏ ସମସ୍ତ କାର୍ଯ୍ୟରେ ବିଶ୍ୱନାଥ ପଟ୍ଟନାୟକଙ୍କ ନେତୃତ୍ୱରେ ଭୂ-ସତ୍ୟାଗ୍ରହୀ ସମାଜ ସବୁ ପ୍ରକାର ସାହାଯ୍ୟ ସହଯୋଗ କଲେ ଏବଂ ନିଜେ ମୁଖ୍ୟମନ୍ତ୍ରୀ ଆସି ଘଟଣାର ତଦାରଖ କରି ଏ ସମସ୍ତକାର୍ଯ୍ୟ ତ୍ୱରାନ୍ୱିତ କଲେ । ଆଦିବାସୀଙ୍କ ପ୍ରତି ସହାନୁଭୂତିଶୀଳ ଶ୍ରୀ ଗୋପୀନାଥ ମହାନ୍ତି ଦୀର୍ଘ ଦୁଇ ବର୍ଷକାଳ ଦିନରାତି ଏକ କରି କାମକଲେ, ଯାହାଫଳରେ ଅବସ୍ଥାର ଦ୍ରୁତ ପରିବର୍ତ୍ତନ ଘଟିଲା । ଆଦିବାସୀ ଉପକୃତ ହେଲେ ସତ କିନ୍ତୁ ସାହୁକାର ମହାଜନମାନଙ୍କ ଆକ୍ରୋଶ ବଢ଼ିଲା ।

ରାୟଗଡ଼ାରୁ ଶ୍ରୀ ଗୋପୀନାଥ ମହାନ୍ତି ୧୯୫୪ରେ ଫେରିଲେ । ଏହି ଦୁଇବର୍ଷ ଭିତରେ ବିଶ୍ୱନାଥ ପଟ୍ଟନାୟକ ଓ ଗୋପୀବାବୁଙ୍କ ମଧ୍ୟରେ ଯେଉଁ ସୌହାର୍ଦ୍ଦ୍ୟ, ସ୍ନେହଭାବ ଗଢ଼ି ଉଠିଥିଲା, ଏଠି ଟିକିଏ ତାକୁ ଫଳେଇଦେବା ଉଚିତହେବ, ଯାହା ଦୁଇ ସହାନୁଭୂତିଶୀଳ ମଣିଷର କଥା କହିବ ।

ବିଶ୍ୱନାଥ ପଟ୍ଟନାୟକ ଗୋପୀବାବୁଙ୍କ ଠାରୁ ଦୁଇବର୍ଷ ବଡ଼ । ଗୋପୀବାବୁ କୋରାପୁଟ ଜିଲ୍ଲାରେ କଟାଇଥିଲେ ଦୀର୍ଘ ୧୦ ବର୍ଷ । ଏହି ଦଶବର୍ଷ ଭିତରେ ସେ ଦେଖିଲେ ଏ ଜିଲ୍ଲାର ମାଟି ପାଣି ପବନକୁ । ଦେଖିଲେ ଏ ଜିଲ୍ଲାର ନୀଳ ଆକାଶତଳେ ଲମ୍ବି ଯାଇଥିବା ପର୍ବତ ମାଳାକୁ, ବଣ ଜଙ୍ଗଲକୁ, ଜୀବ ଜନ୍ତୁଙ୍କୁ । ଦେଖିଲେ ପ୍ରକୃତି ଓ ଜୀବନକୁ, ଏକାକାର କରି ଦେଖୁଥିବା ଆଦିବାସୀ ମଣିଷଙ୍କୁ । ସେମାନଙ୍କ ଜୀବନଯାତ୍ରା, ଚିନ୍ତା ଓ ଚେତନା, ଭୟ ଓ ସମର୍ପଣ ଭାବକୁ, ଦେଖିଲେ ସେମାନଙ୍କ ଅନ୍ଧବିଶ୍ୱାସ, କୁସଂସ୍କାରକୁ, ଶମନ, ବେଜୁଣୀ, ଗୁରୁମାଇ, ପୂଜାରୀ, ଦିସାରୀ, ଶିରାଙ୍କ ପ୍ରତି ଥିବା ନିବିଡ଼ ବିଶ୍ୱାସକୁ, ଚିହ୍ନିଲେ ସେମାନଙ୍କ କବିପ୍ରାଣ ଚରିତ୍ରକୁ, ଅମାୟିକ ହସରେ ଫାଟି ପଡୁଥିବା ଧାଙ୍ଗଡ଼ିମାନଙ୍କୁ, ସୁରୁଡ଼ିରେ ତାନ ଦେଉଥିବା ଧାଙ୍ଗଡ଼ାକୁ, ଡୁଙ୍ଗ୍‌ଡୁଙ୍ଗା ବଜାଉଥିବା ପ୍ରେମିକ ହୃଦୟକୁ, ସେମାନଙ୍କ ଦଳିତ, ନିଷ୍ପେଷିତ ଗୋଟି ହେଇ ଜୀବନ ସାରି ଦେଉଥିବା ମଣିଷକୁ, ତାର ଆଶା, ହତାଶା, ଦୀର୍ଘଶ୍ୱାସକୁ; ଦେଖିଲେ ଡ଼ମ, ସରକାରୀ ଲୋକ, ମହାଜନ ସାହୁକାରଙ୍କ ମିଳିତ ଚକ୍ରାନ୍ତକୁ । ସେଥିଲେ କ୍ରାଂତଦର୍ଶୀ ଲେଖକ । ସଂବେଦନଶୀଳ ମନର ଅଧିକାରୀ । ସେ ନିଜ ଜୀବନାଭୂତିରୁ ଲେଖିଲେ ବଣ ମୂଲକର ଏହି ଅମୃତ ସନ୍ତାନ ମାନଙ୍କର ଗାଥା ତାଙ୍କ ଦାଦିବୁଢ଼ା, ଅମୃତର ସନ୍ତାନ, ପରଜା ଓ ବିଶୁଭାଇ ପରି ଗଦ୍ୟ ମହାକାବ୍ୟରେ । ଯେଉଁ ଅମୃତ ସନ୍ତାନ ବହିରେ ପୁୟୁ ଚରିତ୍ର ପାଲଟି ଗଲା ସର୍ବସଂହା ଧରିତ୍ରୀର ପ୍ରତୀକ, ପରଜାର ମାଣ୍ଡିଆଜାମି, ଶୁକ୍ରୁଜାନି ସାର୍ବଜନୀନ ଅତ୍ୟାଚାରର ମୂକସାକ୍ଷୀ ଆଉ ବିଶ୍ୱନାଥ

ପଟ୍ଟନାୟକ ଶିବଭାଇ ଉପନ୍ୟାସର ସେଇ ସହନଶୀଳ, ସଂବେଦନଶୀଳ, ଅହିଂସ, ତ୍ୟାଗ ଓ ସମାଜସେବାରେ ଅଭିମନ୍ତ୍ରିତ ଜଗନ୍ନାଥ ଭାଇ ଆଉ ଗୋପୀବାବୁ ହୋଇଗଲେ କୋରାପୁଟ ଜନ ମାନସରେ ନିଜର ଅତି ଆତ୍ମୀୟ ଲୋକଟିଏ । ଗୋଡ଼କୁ ବଳାପରି, କାନକୁ ନୋଳିପରି । ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ଆଦିବାସୀ ସମସ୍ୟାର ସମାଧାନ ପାଇଁ ବ୍ୟାକୁଳତା ବିଶ୍ୱନାଥଙ୍କୁ ଟାଣିନେଇ ଥିଲା ତାଙ୍କ ଆଡକୁ ।

ବିଶ୍ୱନାଥ ଗୋପୀବାବୁଙ୍କୁ ବାରମ୍ବାର ଭେଟନ୍ତି । କେବେ କେବେ ନିଜେ ଏକାକୀ । କେବେ କେବେ ସାଙ୍ଗରେ ଥାନ୍ତି ଶ୍ରୀ ରତନ ଦାସ, ଶ୍ରୀ ସୁଧାଂଶୁ ଶେଖର ଦାସ ତ ଆଉ କେତେବେଳେ ଆଉ କେଉଁ ଗାଁର ଲୋକ । ନିଜର ଚିରାଚରିତ ଢ଼ଙ୍ଗରେ ସେ ଗୋପୀବାବୁଙ୍କୁ ଆଦିବାସୀଙ୍କ ସମସ୍ୟାମାନ କହନ୍ତି । ନିଜର ଅନୁଭୂତି ଜଣାନ୍ତି । ଲୋକ ଚରିତ୍ର ବଖାଣନ୍ତି । ତାଙ୍କ ଲକ୍ଷ୍ୟ ନିର୍ଦ୍ଦିଷ୍ଟ । ମତାମତ ସ୍ୱଷ୍ଟ । ସେ ଅନୁରୋଧ କରନ୍ତି ଗୋପୀବାବୁଙ୍କୁ ଆଉ ଆଶା ରଖନ୍ତି ଲୋକମତ ଶାସନରେ ପ୍ରତିଫଳିତ ହେଉ ବୋଲି । ଗୋପୀବାବୁ ଯଦିଓ ଶାସନ କରିବାକୁ ଆସିଥିଲେ, ସେ ପ୍ରକୃତରେ ଆଦିବାସୀ ସେବାହିଁ କରୁଥିଲେ । ସିଏ ଆଦିବାସୀଙ୍କୁ ଯେତିକି ଚିହ୍ନିଥିଲେ, କିଏ ସେତିକି ଚିହ୍ନିଥିଲା ଯେ ? ଲେଙ୍ଗୁଠି ପିନ୍ଧି, ପେଣ୍ଡମ୍ ପିଇ, ଆମ୍ବ ଟାକୁଆ ଚୂନାର ଜାଉ ଓ ବଣକନ୍ଦା ସିଝା ଖାଇ, ପିତା ମାଛର ବାସ୍ନାରେ ହଜି, ସେମାନଙ୍କ ମେଳରେ ପିଁକାଟାଣି, ରିଞ୍ଜୋଡ଼ି ଗାଉଥିବା ଗୋପୀବାବୁ, ତାଙ୍କଭାଷା ଶିଖି ତାଙ୍କ ସଙ୍ଗେ କଥା ହେଉଥିବା ଗୋପୀବାବୁ, ବିଶ୍ୱନାଥଙ୍କ ଅତିପ୍ରିୟ ଥିଲେ, ସତେ ଯେମିତି ସଖା ସୋଦର ।

* * *

# ଭୂ-ସତ୍ୟାଗ୍ରହ ପରେ ଭୂଦାନ

**କୁ**ଜେନ୍ଦ୍ରୀ ଅଞ୍ଚଳରେ ଭୂ-ସତ୍ୟାଗ୍ରହୀ ସମାଜ ଗଠନ କରି ବିଶ୍ୱନାଥ ଆଙ୍କା କିଛି କିଛି କାମ ଆରମ୍ଭ କରିଥିଲେ । ଆଦିବାସୀଙ୍କ ଜମି ସମସ୍ୟାକୁ ନେଇ ଏହି ଭୂ-ସତ୍ୟାଗ୍ରହ ଓଡ଼ିଶା ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସକ୍ଷମ ହୋଇଥିଲା । ୧୯୫୨ ଏପ୍ରିଲ ୧୮ ଦିନ ତେଲେଙ୍ଗାନାରେ ବିନୋବାଜୀଙ୍କୁ ଗରିବ ଲୋକଙ୍କ ଜମି ସମସ୍ୟାର ସମାଧାନ ପାଇଁ ୧୦୦ ଏକର ଜମି ଦାନ ସୂତ୍ରରେ ମିଳିଥିଲା । ସେହିଦିନ ଠାରୁ ବିନୋବାଜୀ ଭୂଦାନ ଯଜ୍ଞ କଥା କହିଲେ ।

ଗୋପବାବୁ ୧୯୫୧ ରୁ ୧୯୫୪ ଯାଏ ମଝିରେ ମଝିରେ ଓଡ଼ିଶାରେ ପଦଯାତ୍ରା କଲେ । ଦେଶର, ଦେଶ ଲୋକଙ୍କର ଅବସ୍ଥା ସମ୍ପର୍କରେ ଜାଣିବା ପାଇଁ ସେ ୧୯୫୧-୫୨ ବର୍ଷେ କାଳ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ପଦଯାତ୍ରା କରି ସବୁ ଦେଖିଲେ । ଗୋପବାବୁ, ରମାଦେବୀ, ଆଚାର୍ଯ୍ୟ ମହାଶୟ ଓ ବହୁକର୍ମୀ ଯେଉଁମାନେ ସର୍ବସେବା ସଂଘ, ଉତ୍କଳ ଖଦୀ ମଣ୍ଡଳ, ନବଜୀବନ ମଣ୍ଡଳ ସହିତ ସମ୍ପୃକ୍ତ ଥିଲେ, ଯେଉଁମାନେ ସେବାଗ୍ରାମ ପ୍ରତିଷ୍ଠା କରି ମାଳ ଓ ଆଦିବାସୀ ଅଞ୍ଚଳର ସେବା କରୁଥିଲେ ସେମାନେ ଗାନ୍ଧିଜୀଙ୍କ ମୃତ୍ୟୁପରେ ବିନୋବାଜୀଙ୍କୁ ନିଜର ଆଦର୍ଶ ବୋଲି ମାନିନେଲେ ।

ରାଉ ସର୍ବୋଦୟ ସମ୍ମିଳନୀରେ ଓଡ଼ିଶା ତରଫରୁ ଗୋପବାବୁ, ଆଚାର୍ଯ୍ୟ ମହାଶୟ ଓଡ଼ିଶାରେ ସମ୍ମିଳନୀ ହେବା ପାଇଁ ପ୍ରସ୍ତାବ ଦେଲେ । ସେହି ପ୍ରସ୍ତାବ ଅନୁସାରେ ୧୯୫୧ ରେ ଓଡ଼ିଶାର ଅନୁଗୁଳ ଠାରେ ସର୍ବୋଦୟ ସମ୍ମିଳନୀ ହୋଇଥିଲା । ଏହି ସମ୍ମିଳନୀକୁ ବିନୋବାଜୀ ଆସିବାର ଥିଲା କିନ୍ତୁ କେତେକ ଅସୁବିଧା ଯୋଗୁଁ ସେ ଆସି ପାରିଲେ ନାହିଁ । ତାଙ୍କ ଅନୁପସ୍ଥିତିରେ କାକା କାଲେଲକର ଅନୁଗୁଳ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ।

ବିନୋବାଜୀଙ୍କ ଭୂଦାନ କାମ ଆରମ୍ଭ ହେବାପରେ ଗୋପବାବୁ ଭୂଦାନ କାମରେ ନିଷ୍ଠାର ସହ ଲାଗିଲେ ଏବଂ ରମାଦେବୀଙ୍କ ସହ ପଦଯାତ୍ରା କଲେ ।

୧୯୫୧-୫୨ ରେ ରାୟଗଡ଼ା-ଗୁଣୁପୁରରେ ମରୁଡ଼ି ହୋଇ ଦୁର୍ଭିକ୍ଷପଡ଼ି ୧୦୦ ଜଣ ଲୋକ ମରିଗଲେ, ଗୋପବାବୁ ଏହାଶୁଣି ମର୍ମାହତ ହୋଇ ପଡ଼ିଲେ । ଗଣତନ୍ତ୍ର

ଶାସନ, ଭୋଟ ଉପରୁ ତାଙ୍କ ବିଶ୍ୱାସ ତୁଟି ତୁଟି ଯାଉଥାଏ । ସେ କହିଲେ "କି ଆଶ୍ଚର୍ଯ୍ୟ ! ଭାରତ ସ୍ୱାଧୀନତା ପାଇଲାଣି ପାଞ୍ଚବର୍ଷ ହେଲା, କୋରାପୁଟରେ ଏତେ ଜମି ଅଛି, ତଥାପି ଲୋକେ ସେଠି ଖାଇବାକୁ ନ ପାଇ ମରୁଛନ୍ତି ?"

ସେତେବେଳକୁ ସମସ୍ତ ରଚନାତ୍ମକ କର୍ମୀମାନେ ଭାରତର ବିଚିତ୍ର ଅବସ୍ଥାକୁ ଅନୁଭବ କରୁଥିଲେ ଏମିତି, ଭାରତ ସ୍ୱାଧୀନ ହୋଇଛି, ଦଳେ କଂଗ୍ରେସ କର୍ମୀ, ତ୍ୟାଗ ବଦଳରେ ଭୋଗବାଦରେ ବିଶ୍ୱାସ ରଖି ଶାସନ ଚଳାଉଛନ୍ତି, ଗାନ୍ଧୀବାଦ ସମାଜବାଦ ଅନ୍ୟବାଦ ଉପରେ କେତେ ବାଦ-ବିବାଦ-ବିସଂବାଦ ହେଉଛି ତା ସଙ୍ଗେ ସଙ୍ଗେ ଭାରତରେ କେତେ କେନ୍ଦ୍ରରେ ରଚନାତ୍ମକ କାମ, ସୂତାକାମ, ଲୁଗାବୁଣା କାମ ହେଉଛି, ଗାନ୍ଧୀବାଦର ବ୍ୟାଖ୍ୟା, ପ୍ରଚାର ହେଉଛି, ଅହିଂସାର ନାମ ଚାରିଆଡ଼େ ଶୁଭୁଛି କିନ୍ତୁ ଫଳହେଉ ନାହିଁ, ଆଉ ଗରିବ ଯେଉଁଠି କି ସେଇଠି । ଏବେ ବି ଲୋକେ ଖାଇବାକୁ ନପାଇ ମରୁଛନ୍ତି, ଇଂରେଜ ସମୟରେ ବି ମରୁଥିଲେ । ଗରିବ ହାତରେ କିଣି ଖାଇବାକୁ ପଇସା ନାହିଁ । ଚାରିଆଡ଼େ ସ୍ୱାର୍ଥପରତା ବଢ଼ି ଚାଲିଛି । ପରଦୁଃଖ ପ୍ରତି ଉଦାସୀନତା ଗଭୀର ହେଉଛି । ହିଂସା, ଦ୍ୱେଷ, ଦୁର୍ନୀତିର ସୀମା ରହୁନାହିଁ । କି ସ୍ୱାଧୀନତାର ଫଳ ଇଏ ?

ବିନୋବାଜୀ ସେତେବେଳକୁ ଆନ୍ଧ୍ରପ୍ରଦେଶର ତେଲେଙ୍ଗାନା ଅଞ୍ଚଳରେ ଭୂଦାନ ସଂପର୍କରେ କାର୍ଯ୍ୟକରି ସଫଳ ହେଲେ ଏବଂ କ୍ରମେ ସେ ନିଜର ଚିନ୍ତାଧାରା ଭାରତର ଚାରିଆଡ଼େ ପ୍ରଚାର କରିବା ପାଇଁ ବାହାରିଲେ । ତାଙ୍କ ମତାନୁଯାୟୀ କର୍ମୀ ମାନଙ୍କର ଏକ ସମ୍ମିଳନୀ ସେ ଉତ୍ତର ପ୍ରଦେଶରେ ଡ଼କାଇଲେ । ଏହି ସର୍ବୋଦୟ ସମ୍ମିଳନୀରେ ଗୋପବାବୁ, ରମାଦେବୀ, ଆଚାର୍ଯ୍ୟ ହରିହର ଓ ବହୁ ବିଶିଷ୍ଟ ବ୍ୟକ୍ତି ଯୋଗଦେଲେ । ସମ୍ମିଳନୀ ପରେ ବିନୋବା ବିହାରରେ ପଦଯାତ୍ରା ଆରମ୍ଭ କଲେ ।

ଗୋପବାବୁ ମୂଳରୁ ବିନୋବାଙ୍କ କାମକୁ ସମର୍ଥନ କରୁଥିଲେ । ଭୂଦାନ ବିଷୟରେ ତାଙ୍କର ଧାରଣା ସ୍ପଷ୍ଟଥିଲା । ଏହି କାର୍ଯ୍ୟକ୍ରମ ଦ୍ୱାରା ଗରିବ ଲୋକେ ନିଶ୍ଚିତଭାବେ ଉପକୃତ ହେବେ ଏହି ବିଶ୍ୱାସ ତାଙ୍କର ଦୃଢ଼ ହେଲା । ଏଣୁ ୧୯୫୨ରୁ ୧୯୫୮ ଯାଏ ସେ ଏହି କାର୍ଯ୍ୟରେ ବୁଡ଼ି ରହିଲେ ।

## ବିଶ୍ୱନାଥ ଓ ବିନୋବା ସାକ୍ଷାତ :

ଗୋପବାବୁ କେତେକ ଉତ୍ସାହୀ ଓ ନିଷ୍ଠାପର କର୍ମୀଙ୍କୁ ଉଚିତ ମାର୍ଗଦର୍ଶନ ପାଇବା ପାଇଁ ବିନୋବାଙ୍କ ନିକଟକୁ ପଠାଇଲେ । ସେମାନଙ୍କ ଭିତରେ ଥିଲେ ବିଶ୍ୱନାଥ, ୧୯୫୧-

ମନମୋହନ ଚୌଧୁରୀ ଓ ରଙ୍ଗାଧର ଦାସ । ସେଦିନ ଥିଲା ୧୪.୧୨.୫୨ ତାରିଖ । ବିନୋବା ବିହାରର କରନ୍‌ବୋଡ଼ା ଗ୍ରାମରେ ରହଣି କରିଥାନ୍ତି । ସେଠି ତାଙ୍କୁ ଭେଟିଲେ । ଚାରି ପାଞ୍ଚ ଦିନ ବିନୋବାଙ୍କ ସାଙ୍ଗରେ ପଦଯାତ୍ରା କଲେ । ବିଭିନ୍ନ ସଭା ସମିତିରେ ଯୋଗ ଦେଲେ । ବିନୋବାଜୀଙ୍କ ପ୍ରବଚନ ଶୁଣିଲେ । ଭୂଦାନ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ପାଇଲେ । ଆଗରୁ ବିଶ୍ୱନାଥ ଭୂଦାନ ସମ୍ବନ୍ଧରେ ଗୋପବାବୁଙ୍କଠାରୁ ସୂଚନା ପାଇଥିଲେ । ଗ୍ରାମ ସେବକ ପତ୍ରିକା ପଢ଼ିଥିଲେ । ବିଶ୍ୱନାଥ କୁଢେନ୍ଦ୍ରୀ ଫେରିଲେ, ମନରେ ଏକ ନୂଆ କର୍ମ ପ୍ରେରଣା ନେଇ ।

## କୁଢେନ୍ଦ୍ରୀରେ ବିଶ୍ୱନାଥଙ୍କ ଭୂଦାନ ସଭା ଓ ସଫଳତା :

ବିଶ୍ୱନାଥ କରନ୍‌ବୋଡ଼ା ଗ୍ରାମରୁ ଫେରିଲେ । ସେତେବେଳକୁ ସେ ଗୋପବାବୁଙ୍କଠାରୁ ବିନୋବାଙ୍କ ଭୂଦାନ ସମ୍ବନ୍ଧରେ ସବୁ ବୁଝି ସାରିଥିଲେ । ସେ ନିଜ ଆଡୁ ପରୀକ୍ଷା କରିବାକୁ ଚାହିଁଲେ, ଭୂଦାନ ସମ୍ବନ୍ଧରେ ଲୋକଙ୍କୁ ବୁଝାଇ ପାରୁଛନ୍ତି କି ନାହିଁ ଏବଂ ଏହାର ଫଳାଫଳ କଣ ହେଉଛି ।

ଡ଼ିସେମ୍ବର ମାସ ୧୯୫୨ ମସିହାର ଶେଷ ସପ୍ତାହ । ବିଶ୍ୱନାଥ କୁଢେନ୍ଦ୍ରୀର ଭୂମିହୀନ ଓ ସ୍ୱଚ୍ଛଳ କୃଷକଙ୍କ ଗୋଟିଏ ସଭା ଡ଼ାକାଇଲେ । ସେ ସମସ୍ତଙ୍କୁ ବୁଝାଇଲେ ସରକାରଙ୍କୁ ଜମି ସମସ୍ୟାର ସମାଧାନରେ ସାହାଯ୍ୟ କରିବା ଆଉ ଏ ଦିଗରେ ନିଜେ ବି କିଛି କରିବା ।

ବାଇରୁ ଗମାଙ୍ଗୋ କୁଢେନ୍ଦ୍ରୀ ଗାଁର ସାଓନ୍ତା । ମୁଖ୍ୟ ସମ୍ମାନାସ୍ପଦ ଲୋକ । ସେ ଚାହିଁଲେ ଗାଁର ଗରିବ ସଉରାଙ୍କୁ ସାହାଯ୍ୟ କରି ପାରିବ । ବିଶ୍ୱନାଥ ନିଜ ସ୍ୱଭାବ ସୁଲଭ ଢ଼ଙ୍ଗରେ ବିନୋବାଜୀଙ୍କ ଭୂଦାନ କଥା କହିଲେ । ଧନୀ ଯଦି ତା ବଳକା ଜମିରୁ କିଛି ଗରିବ ଜମିହୀନଙ୍କୁ ଦାନଦିଏ, ସେ ନିଜର ଓ ଗୋଟିଏ ଗରିବ ପରିବାର ର କଲ୍ୟାଣର କାରଣ ହେବ, ଏହାହିଁ ମଣିଷ ଧର୍ମ । ପରର ଦୁଃଖକୁ ବୁଝି ତାକୁ ଦୂର କରିବା ସେବାଠୁ ବଡ଼ସେବା ଆଉ କିଛି ନାହିଁ । ବାଇରୁ ଗମାଙ୍ଗୋ ଚାହିଁଲେ କିଛି ଦେଇପାରିବ । ଅନ୍ୟମାନେ ବି କିଛି କିଛି ଜମି ଦିଅନ୍ତୁ ଗରିବ ସଉରା ମାନଙ୍କୁ । ଲୋକେ ତାଙ୍କ କଥା ଧୀରେ ସୁସ୍ଥେ ଶୁଣିଲେ । ଆଜ୍ଞା ଠିକ୍ କହୁଛନ୍ତି । କେତେକ ଲୋକେ ହୁଏତ ଭାବିଥିବେ, ଆଜ୍ଞା କହୁଛନ୍ତି ନ ଦେଲେ କଥାଟା ଅସୁନ୍ଦର ହେବ, କେତେଜଣ ବୋଧହୁଏ କଥାର ଗୁରୁତ୍ୱକୁ ବୁଝିପାରିଲେ ।

ସେଦିନ ସେହି ସଭାରେ ତାଙ୍କୁ ୪୨ ଏକର ଜମିଦାନ ମିଳିଲା । ଏହା ହୋଇଥିଲା ତାଙ୍କ ଜୀବନର ଗୋଟିଏ ନୂଆ ଅନୁଭୂତି । ସଫଳତାର ସନ୍ତକ । ଗୋପବାବୁ ଯେଉଁ ପରୀକ୍ଷା

୫୨ରେ ଓଡ଼ିଶାର ବିଭିନ୍ନ ଯାଗାରେ କହିଥିଲେ ଭୂଦାନକୁ ନେଇ ସେହି ପରୀକ୍ଷା ବିଶ୍ୱନାଥ କୁଚ୍ଚେନ୍ଦ୍ରୀରେ ପ୍ରୟୋଗ କରି ସଫଳ ହେଲେ । ତାଙ୍କର ବିଶ୍ୱାସ ହେଲା ଏହି କାର୍ଯ୍ୟ ଏହି ଅଞ୍ଚଳରେ ସଫଳ ହେବ । ବିଶ୍ୱନାଥ ଗୋପବାବୁଙ୍କୁ ଚିଠି ଲେଖିଲେ । ବ୍ୟାପକଭାବେ ଭୂଦାନ କାର୍ଯ୍ୟ ହାତକୁ ନିଆଯିବା ପାଇଁ ନେତାମାନେ ସ୍ଥିର କଲେ ।

ଜମିଦାନ କରିବା ପାଇଁ ଜମି ମାଲିକମାନେ ଏକ ଦାନ ପତ୍ରରେ ସ୍ୱାକ୍ଷର କରିବାକୁ ପଡ଼ିଲା । ସଂଗୃହୀତ ଜମିର ବିସ୍ତୃତ ବିବରଣୀର ରେକଡ଼ ରଖିବାକୁ ହେଲା । ବିଶ୍ୱନାଥ ୧୯୫୦ରେ ଏହି କଥା ଚିନ୍ତା କରିଥିଲେ । ଏବେ ସେ ଦେଖିଲେ ୧୯୫୨ ବେଳକୁ ସାରା ଭାରତରେ ଭୂଦାନ-ଯଜ୍ଞ ନାମରେ ଏହି କାମ ଆରମ୍ଭ ହୋଇ ଯାଇଛି । ସେ ଏହି କାର୍ଯ୍ୟକ୍ରମକୁ ଆହୁରି ସଫଳ କରିବା ପାଇଁ ଗାଁରୁ ଗାଁକୁ ବୁଲିଲେ । ସଭା ସମିତି କଲେ । ଭୂଦାନ ପାଇଁ ଲୋକମତ ଓ କ୍ଷେତ୍ର ପ୍ରସ୍ତୁତ କଲେ । କୁଚ୍ଚେନ୍ଦ୍ରୀ ଅଞ୍ଚଳରେ ପୁଣିଥରେ ଭୂସତ୍ୟାଗ୍ରହ ପରେ ଏକ ନୂତନ ଆନ୍ଦୋଳନ ଆରମ୍ଭ ହେଲା ।

୧୯୫୩ ମସିହା ଜାନୁଆରୀ, ଏକ ମାସପାଇଁ ବିଶ୍ୱନାଥ ରାମନାଗୁଡ଼ାର ଗରଣ୍ଡା ଠାରୁ ଆରମ୍ଭକଲେ ପଦଯାତ୍ରା । ନିଜ ଜେଲ ଜୀବନର ସାଥୀମାନଙ୍କ ସହିତ ବୁର୍ଜା, କୋରାପୁଟ, ନବରଙ୍ଗପୁର ଅଞ୍ଚଳରେ ବୁଲିଲେ । ସବୁଠି ଭୂଦାନ କଥା, ଜମିଦାନର କଥା । ନବରଙ୍ଗପୁରର ମହମ୍ମଦ ବାଜୀ, ଯିଏକି ବିଶ୍ୱନାଥଙ୍କ ସଖା, ବନ୍ଧୁ, ନୀରବ କର୍ମୀ, ମିତଭାଷୀ, ସବୁ ବେଳେ ଛାଇପରି ତାଙ୍କ ସହିତ ରହିଲେ । ଦୁଇପ୍ରାଣ ଏକ ଆତ୍ମା । କଥାରେ, କର୍ମରେ, ଚିନ୍ତାରେ, ଚେତନାରେ, ତ୍ୟାଗ ଓ ନିଷ୍ଠାରେ ଦୁହେଁ ଏକ ଓ ଅଭିନ୍ନ । ବିରଳ ବନ୍ଧୁତ୍ୱ, ଦୁହେଁ ବିରଳ ବ୍ୟକ୍ତିତ୍ୱ; ଯାହାର ଧର୍ମ ହୋଇଗଲା ମାନବଂ ଧର୍ମ, ସେବା ହୋଇଗଲା ମାନବସେବା, ସାରା ଜଗତ ହୋଇଗଲା ତାଙ୍କ ପାଇଁ ନିଜ ଭାଇ ବନ୍ଧୁ କୁଟୁମ୍ବ । ବିଶ୍ୱନାଥ ଜାନୁଆରୀ ଶେଷ ଆଡକୁ ଫେରିଲେ କୁଚ୍ଚେନ୍ଦ୍ରୀକୁ ।

## ଡୁମୁରିଗୁଡ଼ା ଗ୍ରାମରେ କର୍ମୀ ଶିବିର:

୧୯୫୩ ମସିହା ପ୍ରଥମାର୍ଦ୍ଧ । ଭୂଦାନ ପ୍ରଚାରରେ ଗୋପବାବୁ ରାୟଗଡ଼ାରେ ପହଞ୍ଚିଲେ । ସାଙ୍ଗରେ ରମାଦେବୀ, ଆଚାର୍ଯ୍ୟ ମହାଶୟ ଓ ବହୁ ବିଶିଷ୍ଟ ବ୍ୟକ୍ତି । ଗୋପୀନାଥ ମହାନ୍ତି ସେତେବେଳକୁ ରାୟଗଡ଼ା ଏସ୍.ଡ଼ି.ଓ । ତାଙ୍କ ପାଖକୁ ଖବର ଆସିଲା ଗୋପବାବୁ ପଦଯାତ୍ରାରେ ରାୟଗଡ଼ା ସବ୍‌ଡ଼ିଭିଜନରେ ପହଞ୍ଚିବେ । ଗୁଣୁପୁର ତାଲୁକ ଆନ୍ଧ୍ରସୀମାରେ ପାହାଡ଼ତଳେ ଛୋଟ ଗାଁଟିଏ ନାଆଁ ତାରି କଟିକୀ, ସେଠି ଗୋପବାବୁ ପହଞ୍ଚିବେ ପଦଯାତ୍ରାରେ, ସେଠୁ ଜୀପରେ ରାୟଗଡ଼ା, ତାପରେ ଅନ୍ୟଜାଗାକୁ ।ଗୋପବାବୁ ରାୟଗଡ଼ା ନିକଟସ୍ଥ ଥେରୁବାଲି ଠାରୁ ଅଳ୍ପଦୂରରେ ଡୁମରିଗୁଡ଼ା ଗାଁଠାରେ ଗୋଟିଏ କର୍ମୀ ଶିବିର

କରାଇଲେ । କୋରାପୁଟର ବିଭିନ୍ନ ଅଞ୍ଚଳରୁ ବହୁ ରଚନାତ୍ମକ କର୍ମୀ ଏଠାରେ ଭାଗ ନେଲେ । ସେତେବେଳେ ଡୁମରିଗୁଡ଼ା ଗ୍ରାମରେ ଶ୍ରୀମତୀ ମାଳତୀ ବିଶ୍ୱାଳ, ଲୋକଙ୍କର ପ୍ରିୟ ମାଳ ଅପା, କସ୍ତୁରବା ଗାନ୍ଧୀ ମେମୋରିଆଲ ଟ୍ରଷ୍ଟରେ କର୍ମୀଭାବେ କାମ କରୁଥାନ୍ତି । ନିଃସ୍ୱାର୍ଥପର କର୍ମୀ, ଲୋକ ସେବାରେ ସମର୍ପିତ ପ୍ରାଣ । ସେ ଏହି କର୍ମୀ ଶିବିରରେ ଦଶ ବାରଜଣ ମହିଳା କର୍ମୀଙ୍କୁ ନେଇ ପହଞ୍ଚିଲେ । ୫୦ ଜଣ ସ୍ୱେଚ୍ଛାସେବୀ ସେଠି ତାଲିମ ନେଲେ । ନିଜ ଇଚ୍ଛାରେ ସେଠି ବିଶ୍ୱନାଥ ପଟ୍ଟନାୟକ ଓ ସେହି ଅଞ୍ଚଳର ବହୁଲୋକ ଜମା ହେଲେ । ଆଲୋଚନା ହେଲା, ପରବର୍ତ୍ତୀ ଭୂଦାନ କାର୍ଯ୍ୟକ୍ରମ ବିଷୟରେ କ'ଣ କରିବାକୁ ହେବ । ବିଶ୍ୱନାଥ ଗୋପବାବୁଙ୍କ ସହ ମାସେ ସେହି ଅଞ୍ଚଳରେ ପଦଯାତ୍ରାରେ ବୁଲିଲେ ।

## ବିଶ୍ୱାସରାୟଙ୍କ କର୍ମୀପ୍ରୀତି :

ରାଧାକୃଷ୍ଣ ବିଶ୍ୱାସରାୟ, ଓଡ଼ିଶାର ଜଣେ ମନ୍ତ୍ରୀଥିଲେ ୧୯୪୬ ରୁ ୧୯୪୮ ଯାଏ । ଇଏ ଜଣେ ବଡ଼ ସ୍ୱାଧୀନତା ସଂଗ୍ରାମୀ । ଲବଣ ସତ୍ୟାଗ୍ରହ କରି ୧୯୩୦ ରେ ଚାରି ବର୍ଷ ରାଜ ମହେନ୍ଦ୍ରୀ ଜେଲରେ ଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହ କରି କଟେଇଲେ ବର୍ଷେ ବ୍ରହ୍ମପୁର ଜେଲରେ । ସେଠି ୨୯-୩-୪୩ରେ ଦେଖିଲେ ଲକ୍ଷ୍ମଣ ନାୟକଙ୍କ ଫାଶି । ୧୯୪୬ରେ କୋରାପୁଟ ତାଲୁକାରୁ ଏମ୍.ଏଲ୍.ଏ ହେଲେ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀର ସଭାପତିଥିଲେ । ଡ଼ଃ ହରେକୃଷ୍ଣ ମହତାବଙ୍କ ମନ୍ତ୍ରୀମଣ୍ଡଳରେ ଆଦିବାସୀ କଲ୍ୟାଣ ଓ ପୂର୍ତ୍ତବିଭାଗ ମନ୍ତ୍ରୀଥିଲେ । ତାଙ୍କ ଚେଷ୍ଟାରେ କୋରାପୁଟ ଜିଲ୍ଲାରେ ୫୦ ସରିକି ସେବାଶ୍ରମ ଖୋଲିଲା ଆଦିବାସୀ ପିଲାଙ୍କୁ ପାଠ ପଢ଼ାଇବା ପାଇଁ । ବିଶ୍ୱାସରାୟ ବାବୁ କୋରାପୁଟ ଜିଲ୍ଲାର ଯେଉଁ କଂଗ୍ରେସ କର୍ମୀ ବା ଗାନ୍ଧି ଗୁମାସ୍ତା ଥିଲେ ସେମାନଙ୍କୁ ତିରିଶ ଟଙ୍କା ଦରମାରେ ସେବକଭାବେ ନିଯୁକ୍ତି ଦେଲେ । ସେମାନଙ୍କ ନିଯୁକ୍ତି ପାଇଁ ନିମ୍ନତମ ଯୋଗ୍ୟତା ରଖାଗଲା ତୃତୀୟଶ୍ରେଣୀ, ବଡ଼ ଯୋଗ୍ୟତା ହେଲା ସେ କଂଗ୍ରେସକର୍ମୀ ହୋଇ ଜେଲ ଯାଇଥିବ, ଫଳରେ କୋରାପୁଟ, ନବରଙ୍ଗପୁର ଓ ମାଲକାନଗିରିର ବହୁ କର୍ମୀ ସେବକ ହୋଇ ଚାକିରିଆ ପାଲଟିଗଲେ । ତାଛଡ଼ା ବିଶ୍ୱାସରାୟ ଅନେକ ଛୋଟ ଛୋଟ ଚାକିରିରେ ମଧ ସେମାନଙ୍କୁ ପୂରାଇଦେଲେ । କର୍ମୀଙ୍କ ଅଭାବ ଦେଖାଗଲା ଏଣୁ ପୁଣି କର୍ମୀ ତିଆରିର ଆବଶ୍ୟକତା ପଡ଼ିଲା, ମହମ୍ମଦ ବାଜୀ ନବରଙ୍ଗପୁର ଅଞ୍ଚଳରେ ଓ ଅନ୍ୟକର୍ମୀମାନେ ଜୟପୁର ମାଲକାନଗିରି ଅଞ୍ଚଳରେ ନୂତନକର୍ମୀ ସୃଷ୍ଟି କରିବା ପାଇଁ କାମକଲେ, ଯେଉଁମାନେକି ତାଲିମ ପାଇ ଭୂଦାନ ଓ ସେବାକର୍ମ କରିବେ ।

## ମହମ୍ମଦ ବାଜୀ :

ମହମ୍ମଦ ବାଜୀ ବିଶ୍ୱନାଥ ପଟ୍ଟନାୟକଙ୍କଠୁ ବର୍ଷେ ସାନ । ୧୯୧୭ରେ ଜନ୍ମ ନବରଙ୍ଗପୁରରେ । ୧୯୩୮ରେ କଂଗ୍ରେସରେ ମିଶି ବ୍ୟକ୍ତିଗତ ସତ୍ୟାଗ୍ରହ କରି ୧୯୪୦ରେ ଜେଲଗଲେ, କୋରାପୁଟ ଜେଲରୁ ଫେରିଲେ ୧୯୪୫ ଶେଷ ଆଡକୁ । ଜେଲରେ ବିଶ୍ୱନାଥ ବାବୁଙ୍କ ସହ ଗୋଟିଏ ସେଲ୍‌ରେ ରହୁଥିଲେ । ଏଣୁ ଉଭୟେ ଉଭୟଙ୍କୁ ଚିହ୍ନିଥିଲେ ନିବିଡ଼ ଅନ୍ତରଙ୍ଗଭାବେ । ସ୍ୱାଧୀନତା ସଂଗ୍ରାମ ହେଉ କି ସେବାକର୍ମ, ଭୂଦାନ କର୍ମ ହେଉ କି ଗ୍ରାମ ସଂସ୍କାର ହେଉ ସବୁଥିରେ ଦୁହିଁଙ୍କର ସମାନସ୍ତରର ସମ୍ପର୍କ ଥିଲା । ମହମ୍ମଦ ବାଜୀ ଅଲେଖ ମତବାଦର ଜଣେ ବଡ଼ ସମର୍ଥକ ଓ ମାନବପ୍ରେମୀ ଥିଲେ । ସେ ବ୍ରହ୍ମଚାରୀ ଓ ଅଖଣ୍ଡ କର୍ମବିଶ୍ୱାସୀ ମଣିଷ । ଏଣୁ ସ୍ୱାଭାବିକ ଭାବେ ବିଶ୍ୱନାଥ ହୋଇଗଲେ ତାଙ୍କର ସ୍ନେହ ଶ୍ରଦ୍ଧାର ମଣିଷ, ଅତି ଅନ୍ତରଙ୍ଗ ।

## ଭୂଦାନ ଯଜ୍ଞ ସମିତି ଗଠନ ୧୯୫୩ :

ଏହି ଭିତରେ ବିନୋବାଜୀଙ୍କ ଭୂଦାନ ଯଜ୍ଞକୁ ସଫଳ କରିବା ପାଇଁ ଗୋପବାବୁ ଓ ରମାଦେବୀ ଓଡ଼ିଶାର ଆଠଟି ଜିଲ୍ଲା ପଦଯାତ୍ରା କରି ସାରିଥିଲେ । ସେତେବେଳକୁ ସେମାନେ କଟକ, ପୁରୀ, ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ସମ୍ବଲପୁର ଓ ଢେଙ୍କାନାଳ ଜିଲ୍ଲାର ଗସ୍ତ ସାରିଥାନ୍ତି । ଏହା ପୂର୍ବରୁ ୫.୫.୧୯୫୨ ଦିନ କଟକ ଜିଲ୍ଲା ଖଣ୍ଡସାହିଠାରେ ଭୂଦାନ ଯଜ୍ଞ ସମିତି ଗଠନ କରାଗଲା ।

ଭୂ-ଦାନ ଯଜ୍ଞରେ ପ୍ରତ୍ୟକ୍ଷ କାମ କରିବା ପାଇଁ ନିମ୍ନଲିଖିତ ରଚନାତ୍ମକ କର୍ମୀ ଓ ସେବକ ମାନେ ନିଜ ଆଡୁ ନାମ ଦେଲେ । ସେମାନେ ହେଲେ ସର୍ବଶ୍ରୀ ରଙ୍ଗାଧର ଦାସ, ମନମୋହନ ଚୌଧୁରୀ, କୃପାସିନ୍ଧୁ ରଥ, ଫକୀର ମିଶ୍ର, ଶ୍ୟାମ ସୁନ୍ଦର ପଣ୍ଡା, ଶରତ ଚନ୍ଦ୍ର ମହାରଣା, କୁଳମଣି ପ୍ରଧାନ, ପ୍ରଫୁଲ୍ଲ ସାହୁ, ରାଧାରତନ ଦାସ, ବାସୁଦେବେ ବ୍ରଜେନ୍ଦ୍ର, ଗୌରଶ୍ୟାମ ସାମନ୍ତରାୟ, ବୃନ୍ଦାବନ ପାଳ, ଈଶ୍ୱରଲାଲ ବ୍ୟାସ, ପଣ୍ଡିତ କୃପାସିନ୍ଧୁ ହୋତା, ଓ ବ୍ରଜ ମୋହନ ସାହୁ ।

ଭୂଦାନ ଯଜ୍ଞ ସମିତିର ଏକ ପ୍ରାଦେଶିକ କମିଟୀ ଗଠନ ହେଲା । ଏହି କମିଟିରେ ମନମୋହନ ଚୌଧୁରୀ, ଶରତ ଚନ୍ଦ୍ର ମହାରଣା, କୃପାସିନ୍ଧୁ ରଥ ଓ ବୃନ୍ଦାବନ ପାଳ ରହିଲେ । ଏହି କମିଟୀର କାମହେଲା ଭୂମି ସମସ୍ୟାର ତଥ୍ୟ ସଂଗ୍ରହ କରିବା, ଭୂଦାନ ଯଜ୍ଞର ସମ୍ବାଦ ପ୍ରଚାର, କାମର ପ୍ରସାର କରିବା ଓ ଅନ୍ୟାନ୍ୟ ଉପାୟ ନିର୍ଣ୍ଣୟ କରିବା ।

ଏମିତି ଭୂଦାନ ଆନ୍ଦୋଳନକୁ ଜୋରସୋର ଚଳାଇବା ପାଇଁ ଗୋପବାବୁ ସବୁଠି କହିଲେ । ଏହି ଅବସରରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପ୍ରଚେଷ୍ଟାରେ ୧୯୫୩ ମସିହାରେ ଭୂଦାନ ଯଜ୍ଞ ଆଇନ ପାଶ୍ ହୋଇଗଲା ଏବଂ ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇଗଲା । ଅତଃ ଏହି ଭୂଦାନ କାର୍ଯ୍ୟପନ୍ଥରେ ସରକାରୀ ସମର୍ଥନ ରହିଲା ।

୧୧-୧୧-୧୯୫୪ ରେ ଭୂଦାନ ଯଜ୍ଞ ସମିତିର ପ୍ରଥମ ବୈଠକ ପୁରୀରେ ବସିଲା । ଏହି ବୈଠକର ସଭାପତିତ୍ୱ କଲେ ଗୋପବାବୁ । ଏହି ବୈଠକରେ ବିନୋବାଜୀଙ୍କ ଓଡ଼ିଶା ଗସ୍ତ ସମ୍ବନ୍ଧରେ ବିସ୍ତାରପୂର୍ବକ ଆଲୋଚନା ହେଲା । କିପରି ଭୂଦାନ କାର୍ଯ୍ୟ ହେବ ସେ ସଂପର୍କରେ ପ୍ରସ୍ତାବମାନ ଗ୍ରହଣ କରାଗଲା ।

'ଭୂଦାନ ଯଜ୍ଞ ସମିତି' ଆଇନ ହେବା ପୂର୍ବରୁ ଭୂଦାନ କାର୍ଯ୍ୟ ଅନ୍ୟ ରଚନାତ୍ମକ କର୍ମ ପରି ଆରମ୍ଭ ହେଲା । ଲୋକଙ୍କୁ ବୁଝାଇ, ଜମି ସଂଗ୍ରହ କରିବା, ରେକର୍ଡ଼ ରଖିବା, ଜମିର ପୁନର୍ବଣ୍ଟନ କରିବା କାମ କୁଜେନ୍ଦ୍ରୀ ଅଞ୍ଚଳରେ ଓ ଗୁଣୁପୁର ଅଞ୍ଚଳରେ ଅନ୍ୟ ସର୍ବୋଦୟ କର୍ମୀଙ୍କ ସହଯୋଗରେ ବିଶ୍ୱନାଥ ଆରମ୍ଭ କଲେ । ଗୋପବାବୁଙ୍କ ମାର୍ଗରେ ଚାଲି ସେ ଭୂଦାନ କାମରେ ଏତେ ବ୍ୟସ୍ତ ରହିଲେ ଯେ କ୍ରମେ ସେ ଖଦୀ ସଂଗଠନ କାର୍ଯ୍ୟରୁ ଦୂରେଇଗଲେ ।

ସେତେବେଳକୁ ଡୁମରିଗୁଡ଼ାଠାରେ ମାଳ ଅପାଙ୍କ ସେବାକେନ୍ଦ୍ର କାମ କରୁଥିଲା । ହାତୀବାଡ଼ିଠାରେ ଡ଼ାକ୍ତର ଆଇଜାକ୍ ସାଆନ୍ତରା କୁଷ୍ଠରୋଗ ନିରାକରଣ ସମ୍ପର୍କରେ ତାଲିମ ଦେଉଥିଲେ । ସେହି ଅଞ୍ଚଳରେ ଏହି ରୋଗର ଦୂରୀକରଣ ପାଇଁ ଶାନ୍ତିଦେବୀ କାମ କରୁଥିଲେ । ଏହି କାମରେ ସ୍ଥାନୀୟ ଆଦିବାସୀ ସେବାକାରୀମାନଙ୍କୁ ତାଲିମ ଦେଇ ମିଶାଇବା ପାଇଁ ବିଶ୍ୱନାଥ ଆଗ୍ରହୀ ପଦକ୍ଷେପ ନେଲେ ।

୧୯୫୪ରେ ସେ କୁମ୍ଭମେଳାକୁ ଗଲେ । କୁମ୍ଭମେଳାରୁ ଫେରି ପୁଣିଥରେ ଭୂଦାନ କାମରେ ଲାଗିଗଲେ । ପାଦରେ ଚାଲି ଚାଲି ଗାଁରୁ ଗାଁକୁ ଯାଇ ସେ ଭୂଦାନ ଯଜ୍ଞର କଥା କହିଲେ, ଗରିବ ଲୋକଙ୍କ ପାଇଁ ଜମି ମାଗିଲେ ଓ ବୁଝାଇଲେ ଗରିବ ଲୋକଙ୍କୁ କେବଳ ଦୟାରେ କିଛି ଜମି ଦେଇଦେବା ଭୂଦାନର ଉଦ୍ଦେଶ୍ୟ ନୁହେଁ, ସାମାଜିକ ଦାୟିତ୍ୱ ଦୃଷ୍ଟିରୁ ଯାହାର କିଛି ନାହିଁ ତା ପାଇଁ କିଛି ବ୍ୟବସ୍ଥା କରିବାକୁ ହେବ ।

ପୂର୍ବରୁ ବିନୋବାଜୀଙ୍କର ଓଡ଼ିଶାରେ ପଦଯାତ୍ରା ପାଇଁ ପୂଜ୍ୟ ଗୋପବାବୁ ଅନ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହ ଠିକ୍ କରିଥିଲେ । ସେ ଅନୁଯାୟୀ ୧୯୫୫ ଜାନୁଆରୀ ୨୬ ତାରିଖ ଦିନ ପଶ୍ଚିମବଙ୍ଗରୁ ଆସି ଓଡ଼ିଶାରେ ବାଲେଶ୍ୱରର ଲକ୍ଷ୍ମଣନାଥ ଠାରେ ପହଞ୍ଚିବେ, ସେଠି ତାଙ୍କୁ ସାରା ପ୍ରଦେଶରୁ ବିପୁଳ ସମ୍ବର୍ଦ୍ଧନା ଦିଆଯିବାର ବ୍ୟବସ୍ଥା କରାଗଲା ।

ବିଶ୍ୱନାଥ ଲକ୍ଷ୍ମଣନାଥ ଯାତ୍ରା ପାଇଁ ପ୍ରସ୍ତୁତ ହେଲେ । ବିନୋବାଙ୍କ ଆସିବା କଥା ସାରା ଓଡ଼ିଶାରେ ଏକ ନୂତନ ସ୍ପନ୍ଦନ ଖେଳାଇଦେଲା ।

* * *

# ବିନୋବାଜୀଙ୍କ ଓଡ଼ିଶା ଗସ୍ତ ୧୯୫୫

ବିନୋବାଜୀ ଓଡ଼ିଶା ଗସ୍ତରେ ଆସିବେ । ଭୂଦାନ ବାର୍ତ୍ତା ପ୍ରଚାର କରିବେ । ଏଣୁ ୧୯୫୪ ମସିହା ସାରା ଗୋପବନ୍ଧୁ ଚୌଧୁରୀ ଓଡ଼ିଶା ସାରା ବୁଲି ଲୋକଙ୍କୁ ବୁଝାଇଲେ । ବର୍ଷାଦିନ, ସହଜେ କୋରାପୁଟ ମାଳରେ ବର୍ଷା । ମେଘ ବର୍ଷୁଛି ଯେ ବର୍ଷୁଛି । ହାଡଭଙ୍ଗା ଶୀତ, ମଶାର ପ୍ରକୋପ । ଏମିତି ପ୍ରକୃତିର ପ୍ରକୋପ ଭିତରେ ଗୋପବାବୁ କୋରାପୁଟ ଜିଲ୍ଲାର ମୁନିଗୁଡ଼ାକୁ ନିଜର ମୁଖ୍ୟ ରହଣୀ ଜାଗାକଲେ । ସେଠୁ କୋରାପୁଟ ଜିଲ୍ଲାରେ ବୁଲିଲେ । ତାପରେ କଳାହାଣ୍ଡି, ବଲାଙ୍ଗୀର, ଫୁଲବାଣୀ, ଗଞ୍ଜାମରେ ଭୂଦାନ ଆନ୍ଦୋଳନ ଚଳାଇ ରଖିଲେ ।

ଅଗଷ୍ଟ ମାସରେ ୫ରୁ ୨୪ ଯାଏ ସେ ବହୁ ଗାଁ ପାଦରେ ଚାଲି ଚାଲି ବୁଲିଲେ । କେତେ ଜାଗାକୁ ଜୀପରେ ଗଲେ । କୋରାପୁଟ ଜିଲ୍ଲାରେ ଗୋପବାବୁ ରାୟଗଡ଼ାରୁ ବାହାରି ଲକ୍ଷ୍ମୀପୁର, କାକରିଗୁମ୍ମା- ସିମୁଳିଗୁଡ଼ା ପଟାଙ୍ଗି ଯାଇ ତାପରେ ନନ୍ଦପୁର ଗଲେ ।

ବିନୋବାଜୀ ଗସ୍ତକାଳରେ ତାଙ୍କ ରହଣୀ ସ୍ଥାନ, ଅନ୍ୟ ସବୁ ବନ୍ଦୋବସ୍ତ କଲେ । କର୍ମୀ ମାନଙ୍କ ସଙ୍ଗେ ଆଲୋଚନା କଲେ । ବିଶ୍ୱନାଥ ପଟ୍ଟନାୟକ ତାଙ୍କ ସହିତ ଛାଇ ପରିଥାଆନ୍ତି । ସେ ବି ତାଙ୍କ ସହିତ ପଦଯାତ୍ରାରେ ବୁଲି ବହୁ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜିଲେ ।

ସେତେବେଳକୁ  ନବବାବୁଙ୍କ ସରକାର ଓଡ଼ିଶା ଭୂଦାନ ଯଜ୍ଞ ଆଇନ ଲାଗୁ କରି ସାରିଥାନ୍ତି । ଏହି ଆଇନ ଅନୁସାରେ 'ଓଡ଼ିଶା ଭୂଦାନ ଯଜ୍ଞ ସମିତି' ଗଢ଼ା ସରିଥାଏ । ଓଡ଼ିଶାର ବହୁ ସର୍ବୋଦୟ କର୍ମୀ ଏହି ସମିତିର ସଭ୍ୟ ହୋଇଥାନ୍ତି । ଏହି ଭୂଦାନ ଯଜ୍ଞ ସମିତିର ପ୍ରଥମ ବୈଠକ ନଭେମ୍ବର ୧୧, ୧୯୫୪ରେ ପୁରୀରେ ବସିଲା । ସଭାପତି ହେଲେ ଗୋପବାବୁ । ଏଠି ବିନୋବାଜୀଙ୍କ ଓଡ଼ିଶା ଗସ୍ତ ଓ ଭୂଦାନ କାର୍ଯ୍ୟ ବିଷୟରେ ବହୁ ବିଚାର ଆଲୋଚନା ହୋଇ କାର୍ଯ୍ୟକ୍ରମମାନ ସ୍ଥିର ହେଲା ।

## ବିନୋବାଜୀ ଓଡ଼ିଶା ଆସିଲେ :

ସେଦିନ ଥିଲା ୧୯୫୫ ମସିହା ଜାନୁଆରୀ ୨୬ ତାରିଖ । ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ପଶ୍ଚିମବଙ୍ଗରୁ ଆସି ଲକ୍ଷ୍ମଣନାଥ ଟପି ବିନୋବାଜୀ  ପ.ବଙ୍ଗର ବହୁ ସର୍ବୋଦୟ ନେତାଙ୍କ ସହିତ ଓଡ଼ିଶା ସୀମାରେ ଥିବା ଦେଓଳା ଗାଁରେ ପହଞ୍ଚିଲେ । ଭୋରରୁ ଓଡ଼ିଶାର

ଚାରି ଆଡରୁ ଆସି କର୍ମୀ ଜମାହୋଇଥାଆନ୍ତି । ବିନୋବାଜୀଙ୍କ ଦଳ ପହଞ୍ଚିବା ସଙ୍ଗେ ସଙ୍ଗେ ଶଙ୍ଖ, ହୁଳହୁଳି ଧ୍ୱନିରେ ଦେଓଳା ଗାଁ କମ୍ପି ଉଠିଲା । ଚାରିଆଡେ "ଜୟ ବିନୋବା" ସ୍ୱର । ଫୁଲମାଳ ଓ ସୂତାଭେଟି କାହିଁରୁ କେତେ । ସମ୍ବର୍ଦ୍ଧନା ଦେଖି ବିହ୍ୱଳ ହୋଇ ପଡ଼ିଲେ ବିନୋବାଜୀ । ଅଭୂତପୂର୍ବ ଏ ସ୍ୱାଗତ । ଓଡ଼ିଶା ତରଫରୁ ପ୍ରଥମେ ଆଚାର୍ଯ୍ୟ ହରିହର ବିନୋବାଜୀଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ ।

ଯେଉଁମାନେ ତାଙ୍କୁ ପାଛୋଟି ନେଲେ ସେମାନଙ୍କ ଭିତରେ ଥିଲେ ଓଡ଼ିଶାର ଯେତେକ ବଡ଼ଲୋକ । ଗୋପବାବୁ, ଆଚାର୍ଯ୍ୟ ହରିହର, ଶ୍ରୀନବକୃଷ୍ଣ ଚୌଧୁରୀ, ଓଡ଼ିଶା ଆସେମ୍ଲିର ବାଚସ୍ପତି ଶ୍ରୀ ନନ୍ଦକିଶୋର ଦାସ, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ, ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଶ୍ରୀ ନିଶାମଣି ଖୁଣ୍ଟିଆ, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ମହମ୍ମଦ ବାଜୀ, ଶ୍ରୀ ମନମୋହନ ଚୌଧୁରୀ ଓ ବହୁ ଭୂଦାନକର୍ମୀ ।

ବିନୋବାଜୀ ଥିଲେ ଋଷିପ୍ରତିମ । ଶାନ୍ତ ଧୀର ନମ୍ର । ସତେଯେମିତି ପୁରାଣ ଯୁଗର ଋଷି । ଏଇ ଜଗତରେ ଶାନ୍ତି, ମୈତ୍ରୀ, କରୁଣାର ଧାରା ବୁହାଇ ଦେବାକୁ ଆସିଛନ୍ତି । ଆସିଛନ୍ତି ସୁନୀତିର ପ୍ରତିଷ୍ଠା କରିବା ପାଇଁ । ଧ୍ୟାନ, ଧାରଣା, ମନ୍ତ୍ରରେ ବାୟୁମଣ୍ଡଳ ପବିତ୍ର ହୋଇ ଯାଉଥାଏ ।

## ଲକ୍ଷ୍ମଣନାଥ:

ଦେଓଳାରୁ ବିନୋବାଜୀ ଆସି ରହଣୀକଲେ ବାଲେଶ୍ୱର ଜିଲ୍ଲାର ଲକ୍ଷ୍ମଣନାଥରେ । ହଜାର ହଜାର ଲୋକ । ବଡ଼ ସଭା । ଓଡ଼ିଶାରେ ଭୂଦାନ କାମ କେତେ ଆଗେଇଲା ସେ ବିଷୟରେ ବିସ୍ତୃତ ଆଲୋଚନା ହେଲା । ଗୋପୀବାବୁ ସୂଚାଇଦେଲେ ଭୂଦାନ ମିଳିଛି ଏକ ଲକ୍ଷ ୧୫ ହଜାର ଏକର, ଗ୍ରାମଦାନ ଗାଁ ମିଳିଛି-୪୬ । ଏହା ଶୁଣି ବିନୋବାଜୀ କହିଲେ ଓଡ଼ିଶାରେ ଭୂଦାନର ମହାନଦୀ ବହିବ ।

## ବିନୋବାଜୀଙ୍କ ଦିନଚର୍ଯ୍ୟା :

ବିନୋବାଙ୍କ ସବୁକାମ ଘଣ୍ଟା କଣ୍ଟା ଅନୁସାରେ ଚାଲେ । ପାହାନ୍ତିଆ ୪ଟା ୧୫ମି.ରେ ପଦଯାତ୍ରା ଆରମ୍ଭ ହୁଏ । ସରେ ସକାଳ ସାତଟାରେ । ଚାଲୁ ଚାଲୁ ସେ କେତେ ଲୋକଙ୍କ ସହିତ କେତେ ଆଲୋଚନା କରନ୍ତି । ପ୍ରଶ୍ନର ସମାଧାନ କରନ୍ତି । କୋଉଠି ଟିକିଏ ଖୋଲାସ୍ଥାନ ମିଳିଲେ ବସି ପଡ଼ନ୍ତି । ଆଖି ବୁଜି ଧ୍ୟାନରେ । ତାପରେ କିଛି ସମୟ ପ୍ରାର୍ଥନା ହୁଏ । ପୁଣି ପଦଯାତ୍ରା ରହଣୀ ଜାଗାରେ ପହଞ୍ଚିବା ଯାଏ ।

ଉପର ଓଳି ସଭାହୁଏ । ବିନୋବାଜୀ ଭାଷଣ ଦିଅନ୍ତି । ସୂତ୍ରଯଜ୍ଞ ହୁଏ । ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଶୁଣନ୍ତି । ବର୍ଷାହୁଏ ତଥାପି ପଦଯାତ୍ରା ବନ୍ଦହୁଏ ନାହିଁ । ବର୍ଷା ହେଲେ ସେ ନିଜ ସ୍ୱଭାବ ସୁଲଭ ସ୍ୱରରେ କହନ୍ତି, ''ଶୀତ, ବର୍ଷା ଖରା ସବୁତ ଈଶ୍ୱରଙ୍କ ଦାନ, ସବୁ କଲ୍ୟାଣକର ।''

## ପୁରୀରେ ଅଖିଳ ଭାରତୀୟ ସର୍ବୋଦୟ ସମ୍ମିଳନୀ :

ପୁରୀ ସହରର ତାଳବଣିଆ । ବିସ୍ତୃତ ବାଲି ପଡ଼ିଆ । ଧାଡ଼ି ଧାଡ଼ି ତାଳ ବରଡ଼ାର ଘର । ବହୁତ ବଡ଼ ଆୟୋଜନ । ରୋଷେଇ ଘର, ରହିବା ଘର, ପ୍ରଦର୍ଶନୀ ଘର, କାର୍ଯ୍ୟାଳୟ । ଗୋପ ବାବୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତିଆରି । ଓଡ଼ିଶାର ସବୁ ସର୍ବୋଦୟ କର୍ମୀଙ୍କ ସହଯୋଗ । ଓଡ଼ିଶା ସରକାର ମଧ୍ୟ ସହଯୋଗ କରିଥାନ୍ତି । ସେହି ସମ୍ମିଳନୀକୁ କିଏ ନ ଆସିଥିଲେ ବୋଲି ନାହିଁ । ଓଡ଼ିଶା ବାହାରୁ ଆସିଥିଲେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦଜୀ, ଦାଦା ଧର୍ମାଧିକାରୀ, କାକା କାଲେଲକର, ଶଙ୍କର ରାଓ ଦେଓ, ପଣ୍ଡିତ ରବିଶଙ୍କର, ଜୟପ୍ରକାଶ ନାରାୟଣ, ଧୀରେନ୍ ମଜୁମ୍‌ଦାର, ସାଧୁ ତୁଡ଼୍‌କୋଜୀ ଓ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ।

ମା ରମାଦେବୀ ନାରୀକର୍ମୀମାନଙ୍କୁ ନେଇ ଦିନରାତି କାମ କଲେ । ମା ଅନ୍ନପୂର୍ଣ୍ଣା ସେ, ତାଙ୍କ ରନ୍ଧା ଖାଦ୍ୟରେ ତୃପ୍ତହେଲେ ହଜାର ହଜାର ଲୋକ ।

୨୦ ମାର୍ଚ୍ଚରୁ ୨୭ ମାର୍ଚ୍ଚ ଯାଏ ପୁରୀରେ ଏହି ସମ୍ମିଳନୀ ହେଲା । ବିନୋବାଜୀ ପୁରୀରେ ବାରଦିନ ରହିଲେ । ଏପ୍ରିଲ ପହିଲା ୧୯୫୫ରେ ପୁରୀରୁ ବିନୋବାଜୀ ପଦଯାତ୍ରାରେ ବାହାରି କୋଣାର୍କ, ବେରବୋଇ, ବେଗୁନିଆପଡ଼ା, ଖୋର୍ଦ୍ଧା, ନୟାଗଡ଼, ଓଡ଼ଗାଁ ହୋଇ ଗଞ୍ଜାମ ଜିଲ୍ଲାରେ ପାଦଦେଲେ । କରଚୁଲି, ଆସ୍କା ବାଟଦେଇ ବ୍ରହ୍ମପୁରରେ ପହଞ୍ଚିଲେ । ମେ ମାସ ୭ ତାରିଖ ଠାରୁ ୧୦ ତାରିଖ ଯାଏ ସେ ବ୍ରହ୍ମପୁରରେ ରହଣି କଲେ ।

ସେହି ତିନିଦିନ ବ୍ରହ୍ମପୁରରେ ଅଖିଳ ଭାରତ କଂଗ୍ରେସ କମିଟୀର ସାଧାରଣ ଅଧିବେଶନ ଡ଼କା ଯାଇଥିଲା । ସେତେବେଳକୁ କଂଗ୍ରେସ କାର୍ଯ୍ୟକାରୀ କମିଟୀର ମୁଖ୍ୟଥିଲେ ପଣ୍ଡିତ ନେହେରୁ । ତାଙ୍କ ସହିତ ଏହି ଅଧିବେଶନକୁ ଆସିଥିଲେ ଲାଲ ବାହାଦୂର ଶାସ୍ତ୍ରୀ, ଗୁଲଜାରୀ ଲାଲ ନନ୍ଦା । ଭାରତର ପ୍ରତି ପ୍ରଦେଶର କଂଗ୍ରେସ କମିଟୀ ସଭାପତି ଆଦି ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ନେଇ ତିନିଦିନ ଧରି ଏହି ଅଧିବେଶନ ଚାଲିଥିଲା ।

ଅଧିବେଶନରେ ସମସ୍ତଙ୍କ ଆଗରେ ବିନୋବାଜୀ ଭୂ-ଦାନ ବିଚାର ଥୋଇଲେ । ବିଚାର ବିମର୍ଶପରେ କଂଗ୍ରେସ ଲୋକେ ଭୂଦାନ କର୍ମରେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ।

ସେଠୁ ଦିଗପହଣ୍ଡି, ପୋଡ଼ା ମାରି ଦେଇ ତପ୍ତପାଣି, ସେଠାରୁ ଗଞ୍ଜାମମାଳର ପାହାଡ଼ ପର୍ବତ ଘେରା ନଈ ନାଳ ଭର୍ତ୍ତି ରାମଗିରି-ଉଦୟଗିରିରେ ଯାଇ ରହଣି । ସେଠୁ ଗଞ୍ଜାମମାଳ ଓ କୋରାପୁଟ ମାଳର ମିଶିବା ଯାଗା ସିନ୍ଦବା ଘାଟି । ଏହା ଘାଟିରାସ୍ତା ଥିଲା । ଖାସ ବିନୋବାଜୀଙ୍କ ଆସିବା ପାଇଁ ଏ ରାସ୍ତା ତିଆରି ହୋଇଥିଲା । ସିନ୍ଦବା ଘାଟିତଳେ 'ଅଡ଼ବା' ଗ୍ରାମ । କୋରାପୁଟ ଜିଲ୍ଲାର ପ୍ରଥମ ରହଣି, ଦ୍ୱିତୀୟ ରହଣି କୋରାପୁଟ ଜିଲ୍ଲାର ଗୁଣପୁର ତାଲୁକାରେ ଥିବା ଗାଁ ମେରିଙ୍ଗି । ମେ ମାସ ୩୧ ତାରିଖ ୧୯୫୫ରେ ବିନୋବାଜୀଙ୍କ ପାଦ କୋରାପୁଟ ଜିଲ୍ଲାରେ ପଡ଼ିଲା । ମେରିଙ୍ଗିରେ ବିଶ୍ୱନାଥ ଆଞ୍ଚା, ମହମ୍ମଦବାଜୀ, ରତନ ଦାସ, ସୁଧାଂଶୁ ଦାସ, ବାଇରୁ ଗମାଙ୍ଗୋ, ଶାନ୍ତିଦେବୀ, ମାଳତୀ ଦେବୀ ଓ ଶହ ଶହ କର୍ମୀ ବିନୋବାଜୀଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ଆଦିବାସୀ ନୃତ୍ୟ, ବାଦ୍ୟ, ଗୀତର ଆସର ଭିତରେ ବିନୋବାଜୀ ଚିହ୍ନୁଥିଲେ କୋରାପୁଟର ଆତ୍ମାକୁ । ଏ ଦେଶର ମାଳ ଅଧିବାସୀଙ୍କ ସଂସ୍କୃତିକୁ । ଅନୁଭବ କଲେ ବିଶ୍ୱନାଥ ଆଞ୍ଚାଙ୍କ ଉଦ୍ୟମରେ ବଦଳିଥିବା ଆଦିବାସୀଙ୍କ ଦୃଷ୍ଟିକୋଣକୁ । ଚିହ୍ନିଲେ ସେମାନଙ୍କ ଦୁଃଖ, ଦୈନ୍ୟ, ଶୋଷଣର ସ୍ୱରୂପକୁ । ବିନୋବାଜୀ କୋରାପୁଟ ଜିଲ୍ଲାରେ କଟେଇଲେ ୧୨୦ ଦିନ, ଦୀର୍ଘ ୪ ମାସ । ତା ଭିତରୁ ୭୦ ଦିନ କେବଳ ରାୟଗଡ଼ା ସବ୍ ଡ଼ିଭିଜନରେ ।

ଯୁଆଡ଼େ ଦେଖ ପର୍ବତ ଝୋଲା । ନଈ, ପାହାଡୀ ଝରଣା । ଘଞ୍ଚବଣ । ହିଂସ୍ରଜନ୍ତୁ । ବାଟ ନାଇଁ କି ଘାଟ ନାଇଁ । ଆଦିବାସୀ ଗାଁକୁ ଯିବାକୁ କୋଉଠି କେମିତି ପଡ଼ିଛି ପାଦଚଲା ବାଟଟିଏ । ତୀଖ ପାହାଡ଼, ଚଢ଼ି ଉତୁରି ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବାକୁ ହୁଏ । ବଣ ଭିତରେ କୋଉଠି କେମିତି ପଡ଼େ କନ୍ଧ ଗାଁ, କି ସଉରା ଗାଁ । ପୁରୁଣା ସଭ୍ୟତାର ଲୋକ । କିଏ କହୁଛି କୁଭି ଭାଷା ତ କିଏ ସଉରା ଭାଷା । କିଏ କିଏ ଟିକିଏ ଟିକିଏ ବୁଝି ପାରନ୍ତି ତେଲୁଗୁ କଥା । ଏହି ସହରିଆ ଲୋକଙ୍କ ମେଳକୁ ଦେଖି ସେ ଯେମିତି ଆଶ୍ଚର୍ଯ୍ୟ ହୋଇ ପଡୁଛି । ବିନୋବାଜୀ ଯେଉଁ ଗାଁକୁ ଗଲେ ସେଠି କହିଲେ ସର୍ବୋଦୟର କଥା । ତାଙ୍କ କଥାକୁ ଶ୍ରୀ ମନମୋହନ ଚୌଧୁରୀ ଓଡ଼ିଆରେ ଅନୁବାଦ କରୁଥିଲେ । ସାରା ଓଡ଼ିଶାରେ ଅନୁବାଦ ମନମୋହନ ଚୌଧୁରୀ କରିଥିଲେ ।

ଆଦିବାସୀ ଜୀବନରେ ବ୍ୟକ୍ତିଗତ କଥା ବେଶି ମନେ ରଖେନାହିଁ । ଏଠି ସବୁ ସମୂହର କଥା । ସୁଖରେ ସମସ୍ତେ ମିଶି ଆନନ୍ଦ କରନ୍ତି । ଦୁଃଖରେ ସମସ୍ତେ ମିଶି ଦୁଃଖ ବାଣ୍ଟି ନିଅନ୍ତି । ତାଙ୍କର ଜୀବନ ଗୋଷ୍ଠୀଗତ ଜୀବନ । ଏହା ଆଦିବାସୀ ଜୀବନର ବୈଶିଷ୍ଟ୍ୟ । କନ୍ଧ ଜୀବନ ଦର୍ଶନ କହେ, ''ପାହାନାହା ତିଞ୍ଜାରା'' । ସମସ୍ତେ ବାଣ୍ଟିକରି ଖାଇବେ ।

ବିନୋବାଜୀ ମଧ୍ୟ ତାଙ୍କ କଥା ପ୍ରସଙ୍ଗରେ ସେଇ ସମସ୍ତେ ବାଣ୍ଟିକରି ଖାଇବା କଥା କହିଲେ । ଜମି, ଜଙ୍ଗଲ, ପାଣି ପ୍ରକୃତିର ଦାନ । ଏ ଗୁଡ଼ିକ ଉପରେ ସମସ୍ତଙ୍କର ସମାନ ଅଧିକାର ରହିଛି । ସେ କହନ୍ତି, ''ଆଜି କେତେକ ଲୋକ ଜମିର ମାଲିକ ହୋଇ ବସିଛନ୍ତି, ଗାଁର ସବୁଜମି ଗାଁର ହେବା ଉଚିତ । ଗାଁରେ ଯେତେଲୋକ ଅଛନ୍ତି, ସମସ୍ତେ ଗୋଟିଏ ପରିବାରର ଲୋକପରି । ସେ ଜୋର ଦେଇ କହୁଥିଲେ ଜମି ସମସ୍ତଙ୍କର ହେଉ । ଜମି ର ମାଲିକ ବୋଲି କେହି ନରହୁ । ଜମି ମୋର ଏହା କେହି ନକହୁ । ଜମିର ମାଲିକାନା ସ୍ୱତ୍ୱ ନ ରହୁ ।

ଗାଁରେ ଯେତେଲୋକ ଅଛନ୍ତି ଯାହାର ବୟସ ଏକୋଇଶ ବର୍ଷରୁ ଅଧିକ ସେମାନେ ମିଶି ଗ୍ରାମସଭା ଗଢ଼ନ୍ତୁ । ଗ୍ରାମସଭା ଅଧୀନରେ ଜମି ରହୁ । ଗ୍ରାମସଭାର ଅନୁମତି ନନେଇ କେହି ଜମି କିଣାବିକା ନ କରନ୍ତୁ ।

ଏହି ସାମ୍ୟବାଦର କଥାକୁ ଗ୍ରାମ ସ୍ୱରାଜ ନାମ ଦିଆଗଲା । ୧୯୫୫ରେ ଗ୍ରାମଦାନ ଆନ୍ଦୋଳନ କୋରାପୁଟ ଜିଲ୍ଲାରେ ଗୋଟିଏ ନୂଆଯୁଗ ଆରମ୍ଭ କଲା ।

## କୋରାପୁଟ ଜିଲ୍ଲାରେ ବିନୋବାଜୀଙ୍କ ପଦଯାତ୍ରା ଓ କୁଜେନ୍ଦ୍ରୀ ଆଶ୍ରମ :

ବିନୋବାଜୀଙ୍କ ଓଡ଼ିଶା ଆସିବା ପୂର୍ବରୁ ବିଶ୍ୱନାଥ ଆଞ୍ଚା, କୁଜେନ୍ଦ୍ରୀ ଓ ଆଖ ପାଖ ଗାଁ ଗୁଡ଼ିକରେ ସର୍ବୋଦୟ କଥା କହିଲେ । ବିନୋବାଜୀ, ଭୂଦାନ କଥା ବୁଝାଇଲେ । ସେ ଗାଁ ଲୋକଙ୍କ ସହିତ ମିଶି ଜମି ସମସ୍ୟା, ଜମିଦାନ ଓ ଜମି ନଥିବା ଲୋକଙ୍କୁ ଜମିଥିବା ଲୋକ ଦାନ ଦେବାକୁ ଉତ୍ସାହିତ କଲେ । ତାଙ୍କ ଉଦ୍ୟମ, ଚେଷ୍ଟା ଫଳରେ ପାଖାପାଖି ଗାଁର ଶହେ ଜଣ ରୟତ ନିଜ ଜମିର ଆଂଶିକ ଦାନ ଦେଇଥିଲେ ।

ଏହା ବିଶ୍ୱନାଥ ଆଞ୍ଚାଙ୍କ ବ୍ୟକ୍ତିତ୍ୱର ପ୍ରଭାବଥିଲା । ଲୋକଙ୍କ ସେବା ଓ ଉତ୍‌ଥାନ ବିଶ୍ୱନାଥ ଆଞ୍ଚାଙ୍କ ଜୀବନଦର୍ଶନ ଥିଲା । ତାଙ୍କ ସରଳତା, ଲୋକଙ୍କ ସହ ତାଙ୍କ ପରି

ହୋଇ, ତାଙ୍କ ଜୀବନ ଓ ଚଳଣି ସହ ଏକାକାର ହୋଇଯିବାର ମନଟିଏ ଥିବାରୁ, ତାଙ୍କ କାମ ଓ କଥାରେ ସମାନତା ଥିଲା । ଧୀର, ସ୍ଥିର ଥିଲେ ସେ । ତାଙ୍କ କଥାକୁ ସମସ୍ତେ ଆଦରି ନେଉଥିଲେ ।

ମେରିଙ୍ଗିରେ ବିନୋବାଜୀ ଓ ତାଙ୍କ ଦଳ ଦିନେ ରହି ତା ଆରଦିନ ବିକ୍ରମପୁରରେ ପହଞ୍ଚିଲେ । ଗୁଣୁପୁର ସହର ଡେ଼ଇଁଲେ ବଂଶଧାରା ନଈ । ଡ଼ଙ୍ଗାରେ ନଈପାର ହୋଇ ଆସିଲେ ପଡ଼େ ବିକ୍ରମପୁର । ବିକ୍ରମପୁରରୁ ଲମ୍ବିଯାଇଛି ମାଟି ରାସ୍ତା । ବିକ୍ରମପୁରରୁ ଛଅ ମାଇଲ ସିଧା ଦକ୍ଷିଣ ମୁହାଁ ଗଲେ ପଡ଼େ କୁଜେନ୍ଦ୍ରୀ । ଦୁଇଶହ ସରିକି ସଉରା ଓ କନ୍ଧ ଘରକୁ ନେଇ ଆଦିବାସୀ ଗାଁ । ଏହି ଗାଁରେ ରହନ୍ତି ବିଶ୍ୱନାଥ ଆଷ୍ଟା । ଏଇ ଗାଁ ତାଙ୍କ ମୁଖ୍ୟକର୍ମ କେନ୍ଦ୍ର । ଏଠି ଥାଏ ତାଙ୍କର ଆଶ୍ରମ । ବରୀ ଆଶ୍ରମର ଢ଼ାଞ୍ଚାରେ ତିଆରି । ମାଟି ଝାଟି ଘର । ବାଡ଼ ବଗିଚା ସ୍କୁଲ । ତା ଭିତରେ ସୂତାକଟା, ତୁଳାଭିଣା, କେତେକାମ । ଏହି ଅଞ୍ଚଳରେ ଓଡ଼ିଶାର ଚରଖା ସଂଘ, ଖଦୀ ମଣ୍ଡଳ ତରଫରୁ ଅନେକ ରଚନାତ୍ମକ କାମ ହେଉଥିଲା । ବିଶ୍ୱନାଥ ଆଷ୍ଟା ଥିଲେ ଏ ସବୁର ମୂଳରେ ।

ଏହି ଗାଁରେ ଜୁନ୍ ମାସ ୨ ଓ ୩ ତାରିଖ ୧୯୫୫ ଦୁଇଦିନ ରହିଲେ ବିନୋବାଜୀ । ଦୁଇଦିନ ପରେ ତାଙ୍କ ଦଳ କୁଜେନ୍ଦ୍ରୀରୁ ଚାଲିଲେ ବିଷମ କଟକ ଆଡ଼େ । ବାଟରେ ଚାକୁଣ୍ଡା ଗାଁ । ତାପରେ ଶୁଷ୍କୀ ଡ଼ାମଣି । ମୁର୍ତ୍ତୁଲି ଗାଁର ନାରୀକର୍ମ କେନ୍ଦ୍ର ଦେଖି ହାଜାରୁଡ଼ାଂ ଗାଁରେ ରହିଲେ । କୁଜେନ୍ଦ୍ରୀରୁ ବିଷମ କଟକ ଲାଗିଗଲା ପାଞ୍ଚଦିନ । ଜୁନ୍ ୮ ରେ ବିନୋବାଜୀ, ଗୋପବାବୁ ଓ ତାଙ୍କ ଦଳ ଗଲେ କୁତ୍ରାଗଡ଼ । ସେଠୁ ଡ଼ାଙ୍ଗସୁରଡ଼ାରେ ପହଞ୍ଚିଲେ ଜୁନମାସ ୧୦ ତାରିଖ ଦିନ ।

ବର୍ଷାକାଳ । ବଂଶାଧାରା ନଈରେ ପାଣି ଭର୍ତ୍ତି । ବଣରେ ହିଂସ୍ରଜନ୍ତୁ । ଏଠି ବର୍ଷାକାଳେ ଭାରିଶୀତ । ବାଘ ମାତିବାର ସମୟ । କୋଉଠି ବଣୁଆ ହାତୀ ତ କୋଉଠି ମହାବଳ ବାଘ । ଏଠି ବାଘ ମଣିଷ ଉଠାଇନିଏ ଗାଁ ମୁଣ୍ଡରୁ । ହାତୀପଲ ଡ଼ାଳ ଖାଆନ୍ତି । କୋଟିଆ କନ୍ଧର ମାଳ ପ୍ରଦେଶ ଇଏ । କୁମୁଡ଼ାବାଲି, ଡ଼ାଙ୍ଗସୁରଡ଼ା, ହନୁମନ୍ତ ପୁର, ବେଲମ୍‌ଗୁଡ଼ା, ଶିରିଗୁଡ଼ାର ଛାତିଏ ଉଚ୍ଚ ହାତୀଆ ଘାସ ଭିତର ଦେଇ ପଦଯାତ୍ରା ଦଳ ଚାଲନ୍ତି । ତାଜା ଶାଳ ଗଛର ଛନଛନିଆ ପତ୍ର ପବନରେ ଥରୁଥାଏ । ଆକାଶରେ ମେଘମାଳ । କଳା ମେଘରୁ ପାଣି ଅଜାଡ଼ି ହୋଇପଡ଼େ । ପାହାଡୀ ଝରଣାର ଖର ସ୍ରୁଅ ଅଟକାଇ ଦିଏ ଏମାନଙ୍କୁ ବାଟରେ । ଘଞ୍ଚ ସର୍ଗିବଣ, ବାଉଁଶ ବଣ । ମଶା ପ୍ରବଳ । ତାଙ୍କ କାମୁଡ଼ାରେ, ଡାଳୁରୁ

ତଳିପାଯାଏ ଛୁଞ୍ଚ୍ ଫୋଡ଼ିଲା ପରି ଯନ୍ତ୍ରଣା । ଏଇ ମଶା 'ଏଜେନ୍‌ସୀ ମ୍ୟାଲେରିଆ'କୁ ମଣିଷ ଭିତରେ ଛାଡ଼ିଦିଅନ୍ତି । ଯାଙ୍କ କାମୁଡ଼ାରେ ହଠାତ୍ ଜର ବଢ଼ିଯାଏ । ତାତି ବଢ଼ିଯାଏ ୧୦୪ ଡିଗ୍ରୀରୁ ଅଧିକ । ମୁଣ୍ଡକୁ ଧରେ । ରୋଗୀ ମରିବାକୁ ବେଳ ଲାଗେ ନାହିଁ । କେଉଁଠି କେଉଁଠି କଳା ଜର ହୁଏ । ଏମିତି ପରିବେଶ ଭିତରେ ଅଣଷଠି ବର୍ଷର ବିନୋବା, ଷାଠିଏ ବର୍ଷର ଗୋପବାବୁ ସାଙ୍ଗରେ କେତେକ କର୍ମୀ, ପୁରୁଷ, ସ୍ତ୍ରୀ ଆଉ ପିଲାମାନଙ୍କ ଦଳ ।

ସମାଜରେ ବାସ କରୁଥିବା ଆଦିବାସୀ, ଗିରିଜନ, ଦଳିତ, ହରିଜନଙ୍କ ଅବସ୍ଥାରେ ପରିବର୍ତ୍ତନ ଆଣିବା, ସମାଜରେ ଏମାନଙ୍କର ସ୍ୱାଭିମାନକୁ ପରିଚିତ କରାଇବା, ଯୁଗଯୁଗର ଅନ୍ଧବିଶ୍ୱାସ, କୁସଂସ୍କାର ଦୂରକରି ସେମାନଙ୍କୁ ଶିକ୍ଷିତ କରାଇବା ସଙ୍ଗେ ସଙ୍ଗେ ସ୍ୱାବଲମ୍ବୀ କରାଇବା ଓ ଶୋଷଣରୁ ମୁକ୍ତ କରାଇ ଏକ ସୁସ୍ଥ ସୁନ୍ଦର ଶୋଷଣହୀନ, ଶ୍ରେଣୀହୀନ ସମାଜର ଗଠନ କରିବାର ଲକ୍ଷ୍ୟ ନେଇ ଆଗେଇ ଚାଲୁଥିଲେ ପଦଯାତ୍ରୀ ଦଳ । ଏମାନଙ୍କର ପାଞ୍ଚଗୋଟି ମୌଳିକ ଅଭାବ-ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟର ଦୂରୀକରଣ ପାଇଁ ଅନେକ କାର୍ଯ୍ୟକ୍ରମ ହାତକୁ ନିଆ ଯାଇଥିଲା ।

ବିଶ୍ୱନାଥ ଆଞ୍ଚା ଥିଲେ ଗୋପବାବୁଙ୍କ ପଦାନୁସାରୀ । ତାଙ୍କର ଲକ୍ଷ୍ୟଥିଲା ଦଳିତ ସମାଜର ସମ୍ପୂର୍ଣ୍ଣ ଉତ୍‌ଥାନ । ୧୯୪୧ ରୁ ୧୯୫୫ ଦୀର୍ଘ ୧୫ ବର୍ଷ କାଳ ଏମାନଙ୍କ ଉନ୍ନତି ପାଇଁ ସେ କଟାଇଦେଲେ ଦିନରାତି । ବିନୋବାଜୀଙ୍କ ପଦଯାତ୍ରା ବିଷମକଟକରୁ ରାୟଗଡ଼ା, ଜପାଖାଲ, ଗୁମ୍ମା, କୁମ୍ଭିକୋଟ, କୁଟିଲି, କୁଟିଙ୍ଗା, ଲକ୍ଷ୍ମୀପୁର, ଡୁମୁଣିପୁର, କାକରି ଗୁମ୍ମା ଡେ଼ଇଁ ଜୁନ-୨୯ରେ କୋରାପୁଟରେ ପହଞ୍ଚିଲା । ସେଠୁ ଏମାନେ ତହିଁ ଆରଦିନ ଜୟପୁର ବାହାରିଲେ । ବାଟରେ ରହିଲେ ଦେଓଘାଟି, ଘାଟ୍ ଗୁମରରେ । ଚାରି ଆଡ଼େ ପର୍ବତ, ବଣ । ମଝିରେ ସାପ ପରି ପେଟେଇ ପଡ଼ିଥିଲା ଜୟପୁର ବିଜୟ ନଗରମ୍ ରାସ୍ତା । ଜୁଲାଇ ୧, ୧୯୫୫ରେ ଘାଟି ଓହ୍ଲାଇଲେ । ପହଞ୍ଚିଲେ ଜୟପୁର । ଏଠି ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ କର୍ମୀ ଓ କଂଗ୍ରେସଦଳର ଗଣ୍ୟମାନ୍ୟ ବ୍ୟକ୍ତି ବିନୋବାଜୀଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜଣାଇଲେ । ସେଠୁ ନବରଙ୍ଗପୁର ରେ ପହଞ୍ଚିଲେ ।

ଜୁଲାଇ ୫, ୧୯୫୫ । ଇନ୍ଦ୍ରାବତୀ ନଈରେ ପାଣି ଭର୍ତ୍ତି । ୧୯୧୦ରୁ ତିଆରି ହୋଇଥିବା ଲୁହାପୋଲ ତଳ ଦେଇ ସୁ ସୁ ଗୋଳିଆ ପାଣି ମାଡ଼ି ଚାଲିଛି । ମୁଣ୍ଡ ଉପରେ ମେଘ । ନଈକୂଳରୁ ସହର ଯାଏ ନବରଙ୍ଗପୁର ଅଞ୍ଚଳର କେତେନା କେତେ ଲୋକ । ସ୍ୱାଧୀନତା ସଂଗ୍ରାମୀ ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ, ସୀମାଞ୍ଚଳ ବେହେରା, ଜଗନ୍ନାଥ

ତ୍ରିପାଠୀ, ଆଦି ସୂତାମାଳ ଦେଇ ପଦଯାତ୍ରୀ ଦଳଙ୍କୁ ସସମ୍ମାନେ ପାଛୋଟି ନେଲେ । ତା ଆରଦିନ ଜୁଲାଇ ୬ ତାରିଖରେ ପାପଡ଼ାହାଣ୍ଡିରେ ପହଞ୍ଚିଲେ । ପାପଡ଼ାହାଣ୍ଡି ସହିଦ ମାଟି । ଏହାର ଉପକଣ୍ଠରେ ବହି ଯାଉଛି ଟୁରି ନଈ । ୧୯୪୨ରେ ଭାରତଛାଡ଼ ଆନ୍ଦୋଳନରେ ଭାଗ ନେଇ ବସ୍ତରିଆ ଭତରା, ସନୁଭତରା, ବଳି ସଉରା, ବୁନୁ ଅମନାତ୍ୟ ଆଦି ସଂଗ୍ରାମୀଗଣ ପୋଲିସଗୁଳିରେ ପ୍ରାଣ ହରାଇଥିଲେ । ସେମାନଙ୍କ ସ୍ମୃତିରେ ସେଠି ଗୋଟିଏ ସଭା ହେଲା । ତାପରେ ବିନୋବାଜୀ ଟୁରି ନଈ ପାରହୋଇ ପହଞ୍ଚିଲେ ଡ଼ାବୁଗାଁରେ । ସେତେବେଳକୁ ଏ ଅଞ୍ଚଳରେ ମହମ୍ମଦ ବାଜୀଙ୍କ ଉଦ୍ୟମରେ ବହୁଗ୍ରାମ ଦାନ ହୋଇ ସାରିଥିଲା । ବିନୋବାଜୀଙ୍କ ପ୍ରେରଣା, ଗୋପବାବୁଙ୍କ ଆଲୋଚନା ଯେମିତି ଗୋଟିଏ ନୂଆଯୁଗ ଆରମ୍ଭ କଲା ।

ଡ଼ାବୁଗାଁରୁ ପାଦଚଲା ବାଟଦେଇ ମୋକିଆ, ଫୁପୁଗାଁ, ବାଲିପଟାଗୁଡ଼ା ଦେଇ ବିନୋବାଜୀ ଫେରିଲେ ବଣ ଘାଟିବାଟେ କୋରାପୁଟକୁ । କୋରାପୁଟରୁ ସୁନାବେଡ଼ା, ସେମିଳିଗୁଡ଼ା, କାକରିଗୁମ୍ମା, ଲକ୍ଷ୍ମୀପୁର ହୋଇ ନାରାୟଣ ପାଟଣା । ମାଳ ଅଞ୍ଚଳର ବହୁ ଗାଁ ଦେଖି ସେପ୍ଟେମ୍ବର ୬ ତାରିଖ ୧୯୫୫ରେ ଗୁଡ଼ାରି ଠାରେ ରହଣି କଲେ । ଗୁଡ଼ାରି ରୁ ଗୁଣୁପୁର, ଗୁଣୁପୁରଂରୁ ପୁଣିଥରେ କୁଜେନ୍ଦ୍ରୀ । କୁଜେନ୍ଦ୍ରୀରେ ବିନୋବାଜୀ, ଗୋପବାବୁ ରହିଲେ ୨୧ ସେପ୍ଟେମ୍ବରରୁ ୨୯ ସେପ୍ଟେମ୍ବର ଯାଏ, ଦୀର୍ଘ ଆଠ ଦିନ । ୩୦ ତାରିଖରେ କୁଜେନ୍ଦ୍ରୀ ଛାଡ଼ି ଜଗନ୍ନାଥପୁରରେ ରହିଲେ ।

## କୁଜେନ୍ଦ୍ରୀ, ୧୯୫୫ ସେପ୍ଟେମ୍ବର ୨୧ରୁ ୨୮ ଯାଏ :

ବିନୋବାଜୀଙ୍କ ପଦଯାତ୍ରା ସରିବାକୁ ଯାଉଥାଏ । ଜାନୁଆରୀ ୨୬, ୧୯୫୫ରୁ ୨୮ ସେପ୍ଟେମ୍ବର ୧୯୫୫, ଦୀର୍ଘ ୮ ମାସ ସେ ରହିଗଲେ ଓଡ଼ିଶାରେ । ଓଡ଼ିଶା ତାଙ୍କୁ ନିରାଶ କରି ନଥିଲା । ବିନୋବାଜୀ ଓଡ଼ିଶାକୁ ଆସିବା ଆଗରୁ ଗୋପବାବୁଙ୍କୁ ଉଦ୍ୟମ ଓ ଚେଷ୍ଟାରେ ସାରା ଓଡ଼ିଶାରୁ ୧୧୫୩୧୨ ଏକର ଜମି ଭୂଦାନ ସୂତ୍ରରେ ଏବଂ ୪୬ଟି ଗ୍ରାମଦାନ ରୂପେ ମିଳିସାରିଥିଲା ।

ଓଡ଼ିଶାରେ ପ୍ରଥମ ପାଦଦେଇ ୨୬-୧-୧୯୫୫ ଦିନ ବିନୋବାଜୀ ଗୋଟିଏ ମହତ୍ୱପୂର୍ଣ୍ଣ ବାଣୀ ଉଚ୍ଚାରଣ କରିଥିଲେ, ଏହା ହେଉଛି ସେହି ଭୂମି, ଯାହା ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରିଥିଲା । ଏଥିରୁ ଓଡ଼ିଶାର ମହନୀୟତାକୁ ସେ ମୁକ୍ତ ଭାବେ ସ୍ୱୀକାର କରିଥିଲେ । ଓଡ଼ିଶା ଯେ ତ୍ୟାଗର ପ୍ରତୀକ ସେ ଅନୁଭବ କଲେ ଭୂଦାନଯାତ୍ରା କାଳରେ । କେବଳ କୋରାପୁଟ ଜିଲ୍ଲାରୁ ତାଙ୍କୁ ମିଳିଲା ୬୦୫ଟି ଗ୍ରାମଦାନ । ଏହା ଯେ ବିଶ୍ୱନାଥ ପଟ୍ଟନାୟକ, ମହମ୍ମଦବାଦୀଙ୍କ ଭଳି ବହୁ ଏକନିଷ୍ଠ, ଆଦର୍ଶବାଦୀ କର୍ମୀଙ୍କର ପ୍ରବଳଚେଷ୍ଟାର ଫଳଥିଲା, ଏହା ନିଶ୍ଚିତ ଭାବେ ସତ୍ୟ ।

କୁଜେନ୍ଦ୍ରୀରେ ୮ ଦିନ ରହଣି ଭିତରେ ବିନୋବାଜୀ ଓଡ଼ିଶାର ଭିନ୍ନ ଭିନ୍ନ ଜାଗାରୁ ଆସିଥିବା ଭୂଦାନ ନେତାମାନଙ୍କ ସହ ବିଚାର ବିମର୍ଶ କଲେ । କର୍ମୀମାନଙ୍କ ସଙ୍ଗେ ମିଶିଲେ । ସର୍ବାସେବା ସଂଘର ନେତାମାନଙ୍କ ସହ ଆଲୋଚନା କଲେ । ବର୍ତ୍ତମାନ ସୁଦ୍ଧା ଆମେ ସାମାଜିକ ଓ ଅର୍ଥନୈତିକ ସ୍ୱାଧୀନତା ପାଇନାହୁଁ ବା ଧନୀ ଓ ଗରିବ ମଧ୍ୟରେ ଥିବା ପାର୍ଥକ୍ୟକୁ ଦୂର କରି ପାରି ନାହୁଁ, ଏହା ଘୋଷଣା କରି କହୁଥିଲେ ଏହା କେବଳ ଅହିଂସାତ୍ମକ ବିପ୍ଳବଦ୍ୱାରା ହିଁ କରାଯାଇ ପାରିବ । ଏହି ଲକ୍ଷ୍ୟକୁ ପୂରଣ କରିବା ପାଇଁ କୁଜେନ୍ଦ୍ରୀରେ କେତେକ ନିଷ୍ପତ୍ତି ଗ୍ରହଣ କରାଗଲା । ଗୋପବାବୁ ଓ ବିଶ୍ୱନାଥ ଆଞ୍ଜାଙ୍କ ଭୂମିକା ଏହି ନିଷ୍ପତ୍ତି ଗ୍ରହଣରେ ନ୍ୟୂନ ନଥିଲା ।

୧୯୫୫ ସେପ୍ଟେମ୍ବର ମାସ ୨୩ ତାରିଖ ଦିନ ବିନୋବାଜୀ ତାଙ୍କର ଏକ ନୂଆ କାର୍ଯ୍ୟକ୍ରମ ଘୋଷଣା କଲେ । ଏହାକୁ ଶ୍ରମଦାନ ଯଜ୍ଞ କୁହାଗଲା । ଏହାର ଉଦ୍ଦେଶ୍ୟହେଲା କେତେକ ଚାଷୀ, ଶ୍ରମିକ ସେମାନଙ୍କ ମାସିକ ପରିଶ୍ରମ କରି ଯେତିକି ରୋଜଗାର କରିବେ, ସେଇ ରୋଜଗାରରୁ ଦିନକର ରୋଜଗାର ବିନୋବାଙ୍କ ସମ୍ପତ୍ତିଦାନ ପାଣ୍ଠିରେ ଜମାଦେବେ । ଏଥିପାଇଁ ଦାନପତ୍ର ଲେଖିଦେବେ ବର୍ଷେ ପାଇଁତ କିଏ ତା ମନକୁ ଯେତେ ଆସିବ ସେତେ ବର୍ଷ ପାଇଁ । ଜଣେ ଚାହିଁଲେ ଆଜୀବନ । ବିଶ୍ୱନାଥ ଆଞ୍ଜା 'ସମ୍ପତ୍ତିଦାନ' ଯଜ୍ଞ କଥା କୁଜେନ୍ଦ୍ରୀର ଲୋକଙ୍କୁ ବୁଝାଇଲେ ତର୍ଜମା କରି ସେମାନଙ୍କ ଭାଷାରେ । ୭ ଦିନ ଭିତରେ କୁଜେନ୍ଦ୍ରୀ ଗାଁରୁ ୧୫୦ଟି ପ୍ରତିଶ୍ରୁତି ଦାନପତ୍ର ମିଳିଲା । ବର୍ଷକୁ ଟ୨୦୦୦/ର ଦାନପତ୍ର । କୁଜେନ୍ଦ୍ରୀରେ ୨୦୦ ପରିବାର ଭୂଦାନ ଯଜ୍ଞରେ ସାମିଲ ହୋଇଗଲେ ।

ବିନୋବାଜୀ ଓଡ଼ିଶା ଛାଡ଼ିଲା ବେଳକୁ କେବଳ କୋରାପୁଟ ଜିଲ୍ଲାରୁ ମିଳିଥିଲା ୬୦୫ଟି ଗ୍ରାମଦାନ ପରେ ହେଲା ୮୧୨ । ଗୋପବନ୍ଧୁଙ୍କ କଥା ଓ ପ୍ରେରଣାରେ ସାରା

ଓଡ଼ିଶାର ଭୂଦାନ କର୍ମୀ କୋରାପୁଟ ଜିଲ୍ଲାରେ ବହୁପ୍ରକାର ରଚନାତ୍ମକ କାମ କରୁଥାନ୍ତି । ଲୋକସେବାର ଏପରି ସାମୂହିକ ଉଦ୍ୟମ ଓ ଭୂଦାନକର୍ମୀଙ୍କ ତ୍ୟାଗ, ନିଷ୍ଠା, ସରଳ ଜୀବନ ଯାପନ ଏକ ନୂଆ ଚେତନାର ରାହା ନିର୍ମାଣ କରିଥିଲା । ଏମାନେଥିଲେ ଗ୍ରାମ ସ୍ୱରାଜ୍ୟ ପାଇଁ ଅହିଂସ ଓ ନିଃସ୍ୱାର୍ଥପର ଭାବେ କାମକରୁଥିବା ମଣିଷ । ଗାନ୍ଧୀ, ଗୋପବନ୍ଧୁ, ବିନୋବାଥିଲେ ଏମାନଙ୍କ ପଥ ପ୍ରଦର୍ଶକ । ଦଳିତ ମଣିଷର ସର୍ବାଙ୍ଗୀନ ଉନ୍ନତିରେ ଏମାନଙ୍କ ଯୋଗଦାନ ଓ ସଫଳତା ପାଇଁ ନିଜର ବ୍ୟକ୍ତିସତ୍ତାକୁ ହରାଇ ସମଷ୍ଟିରେ ବିଲୀନ ହୋଇଯିବାର ଚେଷ୍ଟା କୋରାପୁଟ ଜିଲ୍ଲାର ଯୁଗ ଯୁଗ ଧରି ନିଷ୍ପେଷିତ, ଶୋଷିତ ମଣିଷ ପାଇଁ ବରଦାନ ହୋଇଗଲା । ଏହାକୁ ପରବର୍ତ୍ତୀ କାଳରେ ସ୍ୱାର୍ଥୀ ସମାଜ ଅନ୍ୟଦୃଷ୍ଟିରେ ଦେଖି, କାହାର କାହାର ଦୋଷ ଦୁର୍ବଳତା, ତ୍ରୁଟି ବିଚ୍ୟୁତିକୁ ସମାଲୋଚନା କରି ଏହା କୌଣସି ମତେ ଲୋକ କଲ୍ୟାଣକର କାର୍ଯ୍ୟ ନୁହେଁ ଏମିତି ଏକ ଭ୍ରମ ସିଦ୍ଧାନ୍ତରେ ପହଞ୍ଚିଲା । ଲୋକ ଚରିତ୍ର ସହଜରେ ବୁଝି ହୁଏ ନାହିଁ । ଏହା ଦିଧାରୀ ଖଣ୍ଡା । ଏପଟେ ବି କଟିବ, ସେପଟେବି । ଭଲ କାମରେ ବି ଲୋକ ନିନ୍ଦାଥୁଆ, ଖରାପକାମରେ ତ ସହଜେ । ଏଣୁ ବିଶ୍ୱନାଥ ଆଜ୍ଞା ବିଚଳିତ ହୁଅନ୍ତି ନାହିଁ । ସବୁ ଯେମିତି ସ୍ୱଭାବଗତ । ସେ କହନ୍ତି- "ମଣିଷ ଭୁଲକରେ, ଭୁଲରୁ ଶିଖେ । ପଡ଼ିଲେ ହିଁ ଉଠିବାର ମହତ୍ତ୍ୱକୁ ଜାଣିହୁଏ । କୌଣସି ଆଶା, ଫଳ ନରଖି କାମ କରିଯିବା ହିଁ ଧର୍ମ ।" ଏହା ହିଁ ତାଙ୍କ ଜୀବନ ଦର୍ଶନ ।

## ବିନୋବାଙ୍କ ଓଡ଼ିଶାରୁ ବିଦାୟ :

ବିନୋବା ଆସିଥିଲେ ଓଡ଼ିଶାକୁ ପଦଯାତ୍ରାରେ, ରହିଗଲେ ଓଡ଼ିଶାରେ ଆଠମାସ । କେତେ ଯାଗା ସେ ପଦଯାତ୍ରା ନ କଲେ ସତେ ! ଏବେ ଆଶ୍ଚର୍ଯ୍ୟ ଲାଗେ ସେତେବେଳର ଲୋକଙ୍କ ମନୋବଳକୁ ଦେଖି । ପ୍ରଥମ ପଦଯାତ୍ରାରେ ବିନୋବା କୋରାପୁଟ ଜିଲ୍ଲାର ମେରିଙ୍ଗି, ବିକ୍ରମପୁର, କୁଜେନ୍ଦ୍ରୀ, ଚାକୁଣ୍ଡା, ଶୁଣ୍ଠୀ ଡ଼ାମିଣି, ମୁର୍ତ୍ତୁଲି, ହଜାରୁ ପଙ୍ଗ, ବିଷମ କଟକ, କୁଟାଗଡ଼, ଲୁହାଗୁଡ଼ି, ଚାନ୍ଦିପୁଟ, ଚନ୍ଦ୍ରଗିରି, ଡ଼ାଙ୍ଗସୁରୁଡ଼ା, ଚାଟିକଣା ଆଦି ଶହ ଶହ ଗ୍ରାମ ପଦ ଯାତ୍ରା କରି ୧୯୫୫ ମସିହା ସେପ୍ଟେମ୍ବର ୨୯ ତାରିଖରେ ଗୁଣୁପୁରରୁ ଆନ୍ଧ୍ରର ପାର୍ବତୀପୁର ଯିବା ରାସ୍ତାରେ ଓଡ଼ିଶାର ସୀମା ଜଗନ୍ନାଥ ପୁରରେ ପହଞ୍ଚିଲେ । ଏହାଥିଲା ଓଡ଼ିଶାରେ ତାଙ୍କ ଶେଷ ରହଣି ।

ଦୀର୍ଘ ସେତେକଦିନ ବିଶ୍ୱନାଥ ଆଜ୍ଞା ତାଙ୍କ ସହ ଛାଇ ପରିଥିଲେ ଦିନରାତି ସବୁବେଳେ ।

* * *

-ଉଣେଇଶ -

# କୋରାପୁଟ ଜିଲ୍ଲାରେ ନିର୍ମାଣ କର୍ମ

ଅବିଭକ୍ତ କୋରାପୁଟ ଜିଲ୍ଲା । ଆଦିବାସୀ ବହୁଳ କୋରାପୁଟ ଜିଲ୍ଲା । ଭାରତର ଅନ୍ୟ ପ୍ରଦେଶର ତୁଳନାରେ ଓଡ଼ିଶାରେ ଦାରିଦ୍ର୍ୟ ବେଶୀ । ଓଡ଼ିଶାର ଗ୍ରାମ ଗହଳିରେ ବହୁ କଥାରେ ଅଭାବ । ସେଇ ଅଭାବରୁ ଲୋକଙ୍କୁ ମୁକୁଳାଇବାର ବ୍ରତ ନେଇ ବହୁ ସର୍ବୋଦୟ କର୍ମୀ ଅଣ୍ଟା ଭିଡ଼ିଥିଲେ । କୁଜେନ୍ଦ୍ରୀର ବିଶ୍ୱନାଥ ଆଞ୍ଚା ଜଣେ । ନିଜ ମନ, ଚିନ୍ତା, ଚେତନାରେ କାମ ଓ କଥାରେ ସେ ଦଳିତ ପ୍ରାଣ, ସେମାନଙ୍କ ସେବାରେ ନିଜକୁ ସମର୍ପି ଦେଇଛନ୍ତି ।

ବିନୋବାଜୀ ଓଡ଼ିଶାରୁ ବିଦାୟ ନେଲେ । ବହୁ ଗ୍ରାମଦାନ ମିଳିଲା । ଗ୍ରାମଦାନ ପରେ ଗାଁ ଗୁଡ଼ିକରୁ ମିଳିଥିବା ଜମି ଜମିହୀନ ମାନଙ୍କୁ ବଣ୍ଟାହେବ । ଗ୍ରାମଦାନ ଗାଁରେ ନିର୍ମାଣ କାମ ମାନ ହେବ । ଗ୍ରାମଦାନ ପରେ ଗ୍ରାମ-ସ୍ୱରାଜ୍ୟର ଚିନ୍ତା କରାଗଲା । ଏହାର ମୂଳକଥା ହେଲା :

ଗ୍ରାମରୁ ଗରିବଲୋକଙ୍କ ଅବସ୍ଥାରେ ଉନ୍ନତି ଆଣିବାକୁ ହେବ । ସମସ୍ତେତ ଯେମିତି ଭାଇ ଭାଇ ଭଳି ଚଳିବେ । ପରସ୍ପରକୁ ସାହାଯ୍ୟ ସହଯୋଗ କରିବେ । ଥିବା ଜମିରେ ଉତ୍ପାଦନ ବଢ଼ାଇବେ । ଗାଁ ଲୋକେ ଏକାଠି ବସି ନିଜକଥା ଚିନ୍ତା କରିବେ । ବିଚାର କରିବେ । ନିଜ ଉନ୍ନତି ପାଇଁ ଯୋଜନାମାନ କରିବେ । ମହାତ୍ମାଗାନ୍ଧୀ, ବିନୋବା ଯେଉଁ ଗ୍ରାମ-ସ୍ୱରାଜ୍ୟର ସ୍ୱପ୍ନ ଦେଖିଥିଲେ ତାକୁ ସାକାର କରିବେ ।

ପ୍ରତି ଗାଁରେ ଗ୍ରାମସଭା ଗଠନ ହେବ । ଗ୍ରାମସଭା ଗାଁର ସବୁପ୍ରକାର ଉନ୍ନତି ପାଇଁ କାମ କରିବେ । ମା' ତା ପୁଅ ଝିଅର କଥା ବୁଝିଲା ପରି, ଗ୍ରାମସଭା ଗାଁର ସବୁଲୋକଙ୍କ କଥା ବୁଝିବ ।

ଗାଁର ଉନ୍ନତି ପାଇଁ ଗ୍ରାମପାଣ୍ଠି ଗଠନ ହେବ । ଏହି ପାଣ୍ଠି ଗ୍ରାମବାସୀଙ୍କ ସାହାଯ୍ୟ, ସହଯୋଗ ଦାନରେ ବଢ଼ିବ । ଏହି ପାଣ୍ଠି ଗ୍ରାମସଭାର ତତ୍ତ୍ୱାବଧାନରେ ଗାଁର ଲୋକ ମଙ୍ଗଳ ପାଇଁ ଖର୍ଚ୍ଚ ହେବ ।

ଗାଁରେ କେହି ବେରୋଜଗାର ରହିବେ ନାହିଁ । ଜମିହୀନ ରହିବେ ନାହିଁ । କୃଷକ ମାନେ ହିଁ ଜମିର ଭୋଗଦଖଲ, ଉତ୍ପାଦନ, ସ୍ୱତ୍ତ୍ୱାଧିକାରୀ ହେବେ ଏବଂ ଗ୍ରାମସଭା ଗ୍ରାମରେ ଥିବା ସମସ୍ତ ଭୂ-ସମ୍ପତ୍ତିର ମାଲିକ ହେବେ ।

ଏହି ବିଚାରକୁ ନିଷ୍ଠାପର ଭାବେ କାର୍ଯ୍ୟକାରୀ କଲେ ଗ୍ରାମବାସୀମାନଙ୍କର ଧନ ଜୀବନର ସୁରକ୍ଷା, ଗାଁର ମଙ୍ଗଳ, ଦେଶର ସୁରକ୍ଷା ଓ ମାନବିକତାର ବିକାଶ ନିଶ୍ଚିତ ଭାବେ ହେବ । ମହାତ୍ମାଗାନ୍ଧୀ ଓ ବିନୋବାଜୀଙ୍କ ଏହି ବିଚାରଧାରାକୁ ଅନ୍ତଃକରଣରେ ସ୍ୱୀକାର କରି ନେଇଥିଲେ ବିଶ୍ୱନାଥ ଆଞ୍ଚା, ଏଣୁ କୋରାପୁଟ ଜିଲ୍ଲାରେ ଗ୍ରାମଦାନ ପରେ ଗ୍ରାମନିର୍ମାଣ ପାଇଁ ସେ କାମ ଆରମ୍ଭ କଲେ ଆହୁରି ଅଧିକ ଆଗ୍ରହରେ । ବିନୋବାଜୀଙ୍କ ସହ ପଦଯାତ୍ରାବେଳେ ବିଶ୍ୱନାଥ ଆଞ୍ଚା ବହୁଗ୍ରାମ ବୁଲି ଲୋକଙ୍କ ପ୍ରକୃତ ଅବସ୍ଥା, ସମସ୍ୟା ସବୁ ଅନୁଭବ କରିଥିଲେ, ଆଦିବାସୀ ଜନ ଜୀବନ ସହ ନିଜକୁ ଦୀର୍ଘ ୧୫ ବର୍ଷ କାଳ ଜଡ଼ିତ କରିଥିବାରୁ ସେ ଆଦିବାସୀମାନଙ୍କ ଦ୍ୱାରା ବେଶୀ ମାନ୍ୟ ଓ ଗ୍ରହଣୀୟ ହୋଇ ଗଲେ । ତାଙ୍କ କଥା ଓ କାମର ସମାନତା, ଗାଁ ଲୋକଙ୍କ ସହିତ ତାଙ୍କପରି ହେବାର ମାନସିକତା ହିଁ ତାଙ୍କ ବ୍ୟକ୍ତିତ୍ୱର ମୁଖ୍ୟ ଆକର୍ଷଣ ଥିଲା ।

ଦଳିତ ଗରିବ ଲୋକଙ୍କ ପାଇଁ କାମ କରିବା କଥାକୁ ନେଇ ୧୯୫୨ ମସିହାରେ ଉତ୍ତରପ୍ରଦେଶର ସେବାପୁରୀ ଠାରେ ସାରା ଭାରତର ଭୂଦାନ କର୍ମୀଙ୍କୁ ନେଇ ସଭା ବସିଲା । ଓଡ଼ିଶାରୁ ଗୋପବାବୁ, ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣା, ମନମୋହନ ଚୌଧୁରୀ, ନବବାବୁ, ମାଳତୀ ଦେବୀ, ମହମ୍ମଦ ବାଜୀ ଓ ବହୁ ଭୂଦାନ ନେତା ଏହି ସଭାରେ ଯୋଗଦେଲେ ।

ଏହି ସେବାପୁରୀ ସମ୍ମିଳନୀରେ 'ଅଖିଳ ଭାରତ ସର୍ବସେବା ସଂଘ' ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ାହେଲା । ଏହାରି ସଭାପତି ହେଲେ ଶ୍ରୀ ଧୀରେନ୍ ମଜୁମ୍‌ଦାର । ଶ୍ରୀ ଅଣ୍ଣା ସାହେବ ସହସ୍ରବୁଦ୍ଧେ ଏହାର ମନ୍ତ୍ରୀ (ସଚିବ) ବା ସଞ୍ଚାଳକ ରହିଲେ, ଶ୍ରୀ ବଲ୍ଲଭ ସ୍ୱାମୀ ହେଲେ ସମ୍ପାଦକ ।

ଏହି ସଂଘ ବିନୋବାଜୀଙ୍କ ଦ୍ୱାରା ଗଠିତ ହୋଇନଥିଲା । ବରଂ ଏହି ଅନୁଷ୍ଠାନ ବିନୋବାଜୀଙ୍କୁ ତା'ର ପରାମର୍ଶଦାତା ଭାବେ ମାନୁଥିଲା । ତାଙ୍କ ଉଦ୍ଦେଶ୍ୟକୁ କାମରେ ପରିଣତ କରିବାପାଇଁ ଉଦ୍ୟମ କରୁଥିଲା । ଗାନ୍ଧୀ ସ୍ମାରକ ନିଧିରୁ ପାଣ୍ଠି ଆଣି ସର୍ବସେବା ସଂଘ କାର୍ଯ୍ୟ କରାଉଥିଲା ତଥା ସରକାରୀ ବେସରକାରୀ ସ୍ତରରୁ ସାହାଯ୍ୟ ଆଣୁଥିଲା, ସେବାପୁରୀ ସମ୍ମିଳନୀରେ ଭାରତର ବିଭିନ୍ନ ଅଞ୍ଚଳରେ ଭୂଦାନକାର୍ଯ୍ୟ କରିବା ପାଇଁ ଏହି ସଂଘକୁ ଦାୟିତ୍ୱ ଦିଆଗଲା ।

ସେବାପୁରୀ ସମ୍ମିଳନୀରେ, ଗୋପବାବୁ ଯେହେତୁ, କୋରାପୁଟ ଜିଲ୍ଲାରୁ ସବୁଠୁ ବେଶୀ ଗ୍ରାମଦାନ ମିଳିଥିଲା, ସେଠି କିପରି ଗ୍ରାମଦାନ ଗାଁରେ ନିର୍ମାଣକାର୍ଯ୍ୟ ହେବ, ସେ ସମ୍ବନ୍ଧରେ ନିଜର ମତ ଉପସ୍ଥାପନ କରିଥିଲେ । ସେ ଚାହୁଁଥିଲେ କୋରାପୁଟ ଜିଲ୍ଲାରେ କିଛି ନିର୍ମାଣ କର୍ମ ହେଉ । ଏଥିପାଇଁ ତାଙ୍କ ପ୍ରସ୍ତାବକ୍ରମେ ଏହି ବିଷୟ ଆଲୋଚନା କରି ନିଷ୍ପତ୍ତି ନେବାପାଇଁ ବିନୋବାଜୀ କୁଜେନ୍ଦ୍ରୀ ଠାରେ ୧୯୫୫ ସେପ୍ଟେମ୍ବର ୨୧ ଠାରୁ ୨୮ ତାରିଖ ଯାଏ ଆଠ ଦିନ ରହିଲେ । ସାରା ଦେଶର ନେତା ଏଠି ଜମାହେଲେ । କଥା ଆଲୋଚନା ହେଲା । ସର୍ବସେବା ସଂଘର ସଭାପତି, ସଞ୍ଚାଳକ, ସମ୍ପାଦକଙ୍କୁ ନିମନ୍ତ୍ରଣ କରା ଯାଇଥିଲା । ସେମାନେ ଆସିଲେ । ଆଲୋଚନା ପରେ ନିଷ୍ପତ୍ତି ହେଲା ଯେ ଅଖିଳ ଭାରତ ସର୍ବସେବା ସଂଘ କୋରାପୁଟ ଜିଲ୍ଲାର ନିର୍ମାଣକାର୍ଯ୍ୟ ହାତକୁ ନେବେ । ସଂଘ ଶେଷରେ କାମ କରିବା ପାଇଁ ରାଜି ହେଲେ । କୋରାପୁଟ ଜିଲ୍ଲାର ଗ୍ରାମଦାନ ନିର୍ମାଣ କର୍ମ ସର୍ବସେବା ସଂଘର ସଞ୍ଚାଳକ ଶ୍ରୀ ଅଣ୍ଣା ସାହେବ ସହସ୍ରବୁଦ୍ଧେଙ୍କ ପ୍ରତ୍ୟକ୍ଷ ପରିଚାଳନାରେ କରାଯିବାର ସର୍ବସମ୍ମତ ନିଷ୍ପତ୍ତି ନିଆଗଲା ।

ସର୍ବସେବା ସଂଘ ବାହାରୁ ଲକ୍ଷ ଲକ୍ଷ ଟଙ୍କା ଆଣି ଉନ୍ନୟନ କାର୍ଯ୍ୟ କରିବାକୁ ଚିନ୍ତାକଲେ । ସଂଘ, ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଯିଏକି ନିଜେ ଜଣେ ସଚ୍ଚୋଟ ସର୍ବୋଦୟ ନେତା, ତାଙ୍କ ସରକାରଙ୍କ ଠାରୁ କେତେ ଲକ୍ଷ ଟଙ୍କା ସାହାଯ୍ୟ ପାଇବା ଆଶା ରଖିଲେ । ୧୯୫୫-୫୬ ବେଳକୁ ଓଡ଼ିଶା ସରକାର ଆଦିବାସୀ ଉନ୍ନୟନ କାମ ଉପରେ ବିଶେଷ ଗୁରୁତ୍ୱ ଦେଉଥାନ୍ତି । ନୂଆ ନୂଆ କରି ଗୋଷ୍ଠୀ ଉନ୍ନୟନ କାର୍ଯ୍ୟ ଆରମ୍ଭ ହୋଇଥାଏ । ସରକାର ଓ ଗୋଷ୍ଠୀ ଉନ୍ନୟନ କର୍ମଚାରୀଙ୍କ ସହାୟତାରେ ଗ୍ରାମଦାନ ନିର୍ମାଣ କାର୍ଯ୍ୟ ପାଇଁ ଯୋଜନାକଲେ ଟଙ୍କାର ଯେ ଅଭାବ ରହିବ ନାହିଁ । ଏହା ସଂଘ ଭାବିଲେ । କେବଳ କାମ କରିବା ପାଇଁ ଉତ୍କୃଷ୍ଟ କର୍ମୀ ଲୋଡ଼ା । ସମର୍ପଣ ଭାବଥିବ, ବିପରୀତ ପରିସ୍ଥିତି ଓ ଭିନ୍ନ ପରିବେଶରେ ନିଃସ୍ୱାର୍ଥପର ଭାବେ କାମ କରିବା ପାଇଁ କର୍ମୀ ଲୋଡାହେଲେ । ଶ୍ରୀ ଅଣ୍ଣାସାହେବଙ୍କ ଦୃଷ୍ଟିପଡ଼ିଲା ଭୂଦାନକର୍ମୀଙ୍କ ଉପରେ ।

ମନେ ମନେ ବିଶ୍ୱନାଥ ଆଜ୍ଞା ଭାବୁଥିଲେ ବାହାରୁ ଟଙ୍କା ଆସିଲେ କର୍ମୀମାନଙ୍କ ନିଷ୍ଠା, ତ୍ୟାଗ ଆଦର୍ଶ ବଦଳି ଯିବ ନାହିଁତ ? ତଥାପି କର୍ମୀ ମାନଙ୍କ ଉପରେ ବିଶ୍ୱନାଥ ଆଜ୍ଞାଙ୍କର ଥିଲା ଆଶା ଓ ବିଶ୍ୱାସ । ସାମୂହିକ ଚେତନାରେ ଅହିଂସ ଉପାୟରେ ବନ୍ଧୁପଣିଆର ଭାବ ଆଣି ସେମାନଙ୍କ ପାଇଁ କାମ କରିଯିବାର ଆଦର୍ଶରେ ପ୍ରେରଣା ପାଇଥିବା ଏହି କର୍ମୀମାନେ ଯେ ଟଙ୍କା ମୋହରେ ଭାସିଯିବେ ନାହିଁ, ଏ କଥାକୁ ବିଶ୍ୱନାଥ ଆଜ୍ଞା ଦଶଥର ଭାବୁଥିଲେ ।

ଗୋପବାବୁ ନିଜ ଅନୁଭୂତି, ମଣିଷ ସମାଜର ଚିନ୍ତା ଓ ଚେତନାକୁ ଦେଖି ଠିକ୍ ଏମିତି ଏକ ଆଶଂକା କରିଥିଲେ ସର୍ବସେବାସଂଘର ନିର୍ମାଣ କର୍ମରେ ଟଙ୍କା କର୍ମୀମନରେ ଏକ ବ୍ୟତିକ୍ରମ ସୃଷ୍ଟି କରିପାରେ । ଯଦିଓ ସେ ଆଶଙ୍କା କରୁଥିଲେ ତଥାପି ସେ ଯେମିତି ଭାବୁଥିଲେ ସର୍ବସେବା ସଂଘ ତାଙ୍କ ମତକୁ ମାନି କାମ କରିବ । ଏଇ ଆଶା ସେ ଛାଡ଼ି ନଥିଲେ । ସେ କହୁଥିଲେ ଲୋକ ନିଜେ କାମ କରନ୍ତୁ, ନିଜ ସମ୍ବଳରେ, ନିଜ ଶକ୍ତିରେ ଉନ୍ନତି କରନ୍ତୁ । ସବୁଜୋର ଗ୍ରାମଦାନ, ସମ୍ପତ୍ତିଦାନ, ଭୂଦାନ ଉପରେ ଦିଆଯାଉ । କଣ ପ୍ରଥମେ ଦରକାର ସେହି କାମ ହାତକୁ ନିଆଯାଉ । ଗୋଟିଏ କାମ ସରିଲେ ଆଉ ଗୋଟିଏ କାମ ଆରମ୍ଭ କରାଯାଉ । ଏହା ଥିଲା ତାଙ୍କ ମତ । ବିଶ୍ୱନାଥ ଆଞ୍ଚା ଗୋପବାବୁଙ୍କ ଏହି ମତର ପ୍ରବଳ ସମର୍ଥକ ଥିଲେ ।

କୁଢେନ୍ଦ୍ରୀ ନିଷ୍ପତ୍ତି ଅନୁସାରେ ଶ୍ରୀ ଅଣ୍ଣା ସାହେବ ସହସ୍ରବୁଦ୍ଧେ ସର୍ବସେବା ସଂଘ ତରଫରୁ କୋରାପୁଟ ଜିଲ୍ଲାରେ ଗ୍ରାମଦାନ ହୋଇଥିବା ଗ୍ରାମ ଗୁଡ଼ିକରେ ନିର୍ମାଣ କର୍ମ କରାଇଲେ ।

ଅଣ୍ଣା ସାହେବଙ୍କ ନିର୍ମାଣ କାମ ବିଷୟରେ ଅଲଗା ଧାରଣା ଥିଲା । ଭିନେ ମତ ଥିଲା । ସେ ଚାହୁଁଥିଲେ ନିର୍ମାଣ କାର୍ଯ୍ୟ କହିଲେ ଏକ ବ୍ୟାପକ ଉନ୍ନୟନ ଯୋଜନା ଦ୍ୱାରା ଗ୍ରାମାଞ୍ଚଳର ଉନ୍ନତି କରିବାକୁ ହେବ । ଜମିର ଉନ୍ନତି, ଜମିକୁ ପାଣି ଯୋଗାଇବା ପାଇଁ ବନ୍ଧ ବାନ୍ଧିବା, ନୂଆ ପ୍ରଣାଳୀରେ ଉନ୍ନତ ବିହନ ନେଇ ଚାଷ କରିବାକୁ ସେ ବୁଝୁଥିଲେ । ଚାଷୀମାନଙ୍କୁ ହଳ ବଳଦ ଯୋଗାଇବା, ଚାଷ ଉପକରଣ ଦେବା, ଲୋକମାନଙ୍କୁ ପନିପରିବା ଚାଷ କରିବା ପାଇଁ ଉତ୍ସାହ, ସାହାଯ୍ୟ ଦେବା, ଫଳଚାଷ କରିବା, ଆଦି ଉପରେ ସେ ଜୋରଦେଲେ । ଧନ୍ଦା ମୂଳକ ବ୍ୟବସ୍ଥା କରିବା ଓ ବିଭିନ୍ନ କାମରେ ବିଜ୍ଞାନର ପ୍ରୟୋଗ କରି ନୂଆ କାମମାନ ହାତକୁ ନେବା ପାଇଁ ସେ ଚାହୁଁଥିଲେ । ଏଥିରେ ସ୍ଥାନୀୟ ସମ୍ବଳକୁ ଭିତ୍ତିକରି କାମକରିବା ନଥିଲା । ଏକା ସାଙ୍ଗରେ ଅନେକ କାମ ହେବ ଏବଂ ଲୋକେ ପ୍ରଗତି ଓ ଉନ୍ନତିର ସ୍ୱାଦ ଅଳ୍ପଦିନରେ ଭୋଗ କରିବେ, ଏହି ସ୍ୱପ୍ନ ଅଣ୍ଣାସାହେବ ଦେଖୁଥିଲେ ।

ଅଣ୍ଣା ସାହେବ ଭାବୁଥିଲେ ସ୍ଥାନୀୟ ସମ୍ବଳକୁ ନେଇ ଉନ୍ନତି ମୂଳକ କାମ କରିହେବ ନାହିଁ । ସହଜେ ଲୋକେ ଗରିବ । ସମ୍ବଳ ନାହିଁ । ଜମି ପଥୁରିଆ । ଟାଙ୍ଗରା । କେବଳ ବର୍ଷା ଉପରେ ନିର୍ଭର କରି ଯାହା କିଛି ଚାଷ ହୁଏ । ଏହି ଅଞ୍ଚଳରେ କୂଅ ଖୋଳିବା, ଆଞ୍ଚା

ପୋଖରୀ ଖୋଳିବା, ଜଳସେଚନ ପାଇଁ ସୁବିଧା କରିବା ପାଇଁ ପ୍ରଚୁର ପରିମାଣରେ ଟଙ୍କା ଲୋଡ଼ା । ସ୍ଥାନୀୟ ଲୋକଙ୍କ ଠାରୁ ଅର୍ଥ ମିଳିବ ନାହିଁ । ବାହାରୁ ଟଙ୍କା ଆଣିବାକୁ ହେବ । ଅଣ୍ଣା ସାହେବଙ୍କ ଯୋଜନାକୁ ଆଗେଇନେବା ପାଇଁ ଗାନ୍ଧୀ ସ୍ମାରକ ନିଧି ଲକ୍ଷ ଲକ୍ଷ ଟଙ୍କା ସାହାଯ୍ୟ କଲେ । ଓଡ଼ିଶା ସରକାର ମଧ୍ୟ ଅନୁଦାନ ଆକାରରେ କେତେ ଲକ୍ଷ ଟଙ୍କା ଦେଲେ ।

ଅଣ୍ଣା ସାହେବଙ୍କ ମତଥିଲା ଦରମା ନଦେଲେ କାମ କରିବାକୁ ଉପଯୁକ୍ତ ଲୋକ ମିଳିବେ ନାହିଁ । ବୈଷୟିକ ଯୋଜନା ପାଇଁ ଓ କାମ ପାଇଁ ଯୋଗ୍ୟ ଲୋକ ନ ମିଳିଲେ କାମ ଅଟକି ଯିବ । ଏଣୁ ସେ ବାହାରୁ ଲୋକ ଅଣାଇଲେ । ବେତନ ବ୍ୟବସ୍ଥା କଲେ । କୋରାପୁଟ ଜିଲ୍ଲାରେ ଯେତେ ଭୂଦାନ କର୍ମୀ ଥିଲେ ନିର୍ମାଣ କର୍ମରେ ଯୋଗଦେବା ପାଇଁ ସେମାନଙ୍କ ସଂଖ୍ୟା ସେତେ ବେଶି ନଥିଲା । ନିର୍ମାଣ କର୍ମପାଇଁ କର୍ମୀ ମିଳୁନଥାନ୍ତି, ଏଣୁ ଯେଉଁ ଭୂଦାନ କର୍ମୀ ଏଥିରେ ଯୋଗ ଦେଲେ ତାଙ୍କୁ କାମପାଇଁ ବେତନ ଦିଆଗଲା ।

ଗ୍ରାମ ନିର୍ମାଣ କାମ ବଡ଼ ବ୍ୟାପକ ଭାବରେ ଆରମ୍ଭ କରାଗଲା । ତାଙ୍କ ପାଇଁ ଗ୍ରାମ ପୁନର୍ଗଠନ ମୁଖ୍ୟ ହୋଇଗଲା । ଅଣ୍ଣାସାହେବ ଏହି କାମରେ ବାନ୍ଧି ହୋଇଗଲେ । ଲକ୍ଷ ଲକ୍ଷ ଟଙ୍କା କାମ ପାଇଁ ମିଳିଲା । ଟଙ୍କାର ସତ୍ ବିନିଯୋଗ କରିବା, ହିସାବ ରଖିବା, ଜିନିଷ ଉପକରଣ କିଣିବା, କାମ ପାଇଁ କର୍ମଚାରୀ ନିଯୁକ୍ତି ଦେବାରେ ସେ ମନଦେଲେ । ଦାୟିତ୍ୱମାନ ବାଣ୍ଟିଦେଲେ । କାମର ଦେଖାଶୁଣା କରିବା, ଆଉ ଲୋକ ସମ୍ପର୍କ ରଖିବା କାମ କରିବାକୁ ହେଲା । ସମସ୍ୟାମାନ ଆସିଲେ ତା'ର ସମାଧାନ କରିବା ପାଇଁ ମୁଣ୍ଡ ଖେଳାଇବାକୁ ପଡ଼ିଲା । ଏଣୁ ସେ ନିର୍ମାଣ କାମକୁ ମୁଖ୍ୟକଲେ । ଭୂଦାନ କାମ ଗୌଣ ହୋଇଗଲା ।

ଯଦିଓ ଅଣ୍ଣା ସାହେବଙ୍କ କାର୍ଯ୍ୟ ପଦ୍ଧତି ଭୂଦାନ ନେତାଙ୍କଠାରୁ ଅଲଗାଥିଲା ତଥାପି ବିଶ୍ୱନାଥ ଆଜ୍ଞା ଏହାର ବିରୋଧ କଲେ ନାହିଁ । ସେ ଚାହୁଁଥିଲେ ଯାହା ପଛେ ହେଉ ଦଳିତ ଗରିବ, ଅସହାୟ ଲୋକଙ୍କର କିଛିକାମ ହେଉ । ସେ ନିଜ ମତେ ନିର୍ମାଣ କର୍ମରେ ସାହାଯ୍ୟ କରୁଥିଲେ । କେତେବେଳେ କେମିତି ଲୋଡ଼ା ପଡ଼ିଲେ ପରାମର୍ଶ ବି ନେଉଥିଲେ ।

## ନିର୍ମାଣକର୍ମ ଓ କୋରାପୁଟ ଜିଲ୍ଲାରେ ଭୂଦାନ ଆନ୍ଦୋଳନ:

ଗୋଟିଏ ଲକ୍ଷ୍ୟ ଗୋଟିଏ ଉଦ୍ଦେଶ୍ୟ ନେଇ ଦୁଇଟି ସମାନ୍ତରାଳ ଅନୁଷ୍ଠାନ କାମକଲେ ଯାହା ହେବାର କଥା ତାହାହେଲା । ଗୋଟିଏ ପଟେ ରହିଲେ ବେତନ ଭୋଗୀ ନିର୍ମାଣ କର୍ମୀ । ଅନ୍ୟପଟେ ରହିଲେ କେବଳ ଆଦର୍ଶକୁ ନେଇ ସମାଜସେବାରେ ନିଜର ସବୁ ସମର୍ପିଦେବା ଭୂଦାନକର୍ମୀ । ଏହି ଦୁଇ ଦଳର କାମ, ଚିନ୍ତା, ଚେତନା ଓ କର୍ମପ୍ରଣାଳୀ ଭିତରେ ବହୁ ପାର୍ଥକ୍ୟ ରହିଲା । ଅଣ୍ଣା ସାହେବ ଭୂଦାନରେ କାମକରୁଥିବା ଗଠନମୂଳକ କର୍ମୀଙ୍କୁ ନିଯୁକ୍ତି ଦେଇ ପାରିନଥିଲେ । ତେଣୁ ଯେଉଁ କର୍ମୀମାନେ ନିର୍ମାଣକର୍ମ ସଂସ୍ଥାରେ ବେତନଭୋଗୀ କର୍ମଚାରୀ ହୋଇ ପାରିଲେ ନାହିଁ ସେମାନଙ୍କୁ ବିଶ୍ୱନାଥ ଆଞ୍ଚାଙ୍କ ନେତୃତ୍ୱରେ କାମ କରିବାକୁ ଗୋପବାବୁ ଉପଦେଶ ଦେଲେ ।

କଥା ପ୍ରସଙ୍ଗରେ ଗୋପବାବୁ, ବିଶ୍ୱନାଥ ଆଞ୍ଚାଙ୍କୁ କହିଲେ, ''ଆମେ କର୍ମୀମାନଙ୍କୁ ସରକାରୀ କର୍ମଚାରୀଙ୍କ ପରି ସୁବିଧାଭୋଗୀ କର୍ମଚାରୀ ଦଳରେ ପରିଣତ ନକରି ଲୋକଙ୍କ ସମର୍ଥନ ଓ ଭରସାରେ ଛାଡ଼ିଦେବା ଉଚିତ ।''

ପୁଣି ସେ କହିଲେ, ''ଏମାନଙ୍କୁ ସାମାନ୍ୟ ଭତ୍ତା ଦେବା ଉଚିତ । ସମାଜର ଦାନ ଓ ଅନୁଦାନ ଉପରେ ନିର୍ଭର କରି, ଅର୍ଥଲାଳସା ନରଖି କେବଳ ସମାଜ ସେବାରେ ଏମାନେ ସମୟ ଦେବେ ।'' ଏଣୁ ଏମାନଙ୍କୁ ନିଧିମୁକ୍ତ କର୍ମୀ କୁହାଗଲା ।

ଗୋଟିଏ ପଟେ ନିଧିଯୁକ୍ତ କର୍ମୀ ରହିଲେ ଅଣ୍ଣାସାହେବଙ୍କ ନେତୃତ୍ୱରେ କାମ କରିବା ପାଇଁ, ଅନ୍ୟପଟେ ରହିଲେ ନିଧିମୁକ୍ତ କର୍ମୀ କେବଳ ଆଦର୍ଶ, ପର ଉପକାରରେ ନିଜକୁ ନିୟୋଜିତ କରିବା ପାଇଁ ।

ଗୋଟିଏ କଥା ପ୍ରମାଣିତ ହେଲା । ନିର୍ମାଣ କର୍ମର ପ୍ରଭାବ, କାର୍ଯ୍ୟ-ପ୍ରଣାଳୀ ଓ ପ୍ରଚୁର ଅର୍ଥର ସୁଲଭତା, ଭୁଦାନର ମୂଳ ଢାଞ୍ଚା ତଥା କର୍ମୀଙ୍କ ମନୋବଳ ଉପରେ ଏପରି ପ୍ରଭାବ ବିସ୍ତାର କଲାଯେ, କୋରାପୁଟ ଜିଲ୍ଲାର ଭୂଦାନ କାର୍ଯ୍ୟରେ ନୈରାଶ୍ୟ ଆସିଗଲା । ଏହି ନିର୍ମାଣକର୍ମ ଭୂଦାନ ପାଇଁ ଦୁର୍ଭାଗ୍ୟଜନକ ହେଲା ।

ବିଶ୍ୱନାଥ ଆଞ୍ଚା, ଅଣ୍ଣା ସାହେବ ସହସ୍ରବୁଦ୍ଧେଙ୍କ ମତର ପ୍ରକାଶ୍ୟ ବିରୋଧ କରିବା ଉଚିତ ମନେକଲେ ନାହିଁ । ସହଜେତ ସ୍ୱଳ୍ପଭାଷୀ । ବହୁ ଭାବିଚିନ୍ତି ପଦେଅଧେ କଥା କହନ୍ତି । ମା ପୁଅକୁ ବୁଝାଇଲା ପରି ନିଜ କଥାକୁ କାହା ଉପରେ ଲଦିଦେବା ସେ ଉଚିତ ମଣନ୍ତି ନାହିଁ । ସେ ବୁଝାନ୍ତି ନିଜର ମତକୁ । କାମ କରିଯିବା, ଫଳରେ ଆଶା ରଖିବା ନାହିଁ । ଭଲ କାମର ଭଲ ଫଳ ମିଳିବ ଏଇ ଆଶା ମନରେ ଥାଏ ।

ନିର୍ମାଣ କର୍ମର ପ୍ରଭାବ ଓ ପରବର୍ତ୍ତୀ ପରିସ୍ଥିତିକୁ ଅନୁଧ୍ୟାନ କରି ଓଡ଼ିଶା ପ୍ରଦେଶ ଭୂଦାନ ଯଜ୍ଞ ସମିତିର ସଂଯୋଜକ ଶ୍ରୀ ଶରତ ଚନ୍ଦ୍ର ମହାରଣା ମତଦେଲେ:- ଭୂଦାନ ଆନ୍ଦୋଳନ ବେଳେ ସାରା ଓଡ଼ିଶାରୁ ରଚନାତ୍ମକ କର୍ମୀମାନଙ୍କୁ ସେ ଏହି କୋରାପୁଟ ଜିଲ୍ଲାକୁ ପଠାଇଲେ । ଏହି କର୍ମୀମାନେ ପୂର୍ବରୁ ଗାନ୍ଧିଜୀଙ୍କ ରଚନାତ୍ମକ କେନ୍ଦ୍ରଗୁଡ଼ିକରେ କାର୍ଯ୍ୟକରୁଥିଲେ । ନିର୍ମାଣକର୍ମ ଆରମ୍ଭ ପୂର୍ବରୁ ଭୂଦାନ ଆନ୍ଦୋଳନ ସୁଚିନ୍ତିତ ଯୋଜନା ଭିତର ଦେଇ କାମ କରୁଥିଲା । ପରବର୍ତ୍ତୀ କାଳରେ ଏହି କର୍ମୀଭିତରୁ ୧୧ରୁ ୧୦ ଜଣ କୋରାପୁଟ ଜିଲ୍ଲାରେ ରହିଗଲେ । ଆଉ ଯେଉଁ କର୍ମୀଥିଲେ ସେମାନଙ୍କ ଭିତରୁ ୧୧ରୁ ୧୦ ଫେରିଗଲେ ନିଜ ଘରକୁ ।

ଅନେକ କହନ୍ତି କୋରାପୁଟ ଜିଲ୍ଲାରେ ଏହି ନିର୍ମାଣକାର୍ଯ୍ୟ ହିଁ ଭୂଦାନ ଆନ୍ଦେଳନ ର ବାଟ ବନ୍ଦ କରିଦେଇଥିଲା । କାଳ ହୋଇଥିଲା । ଏ ସମ୍ବନ୍ଧରେ ବିଶ୍ୱନାଥ ଆଞ୍ଚାଙ୍କୁ ପଚାରିବାରୁ ସେ କହିଲେ, ''ନିର୍ମାଣ କର୍ମୀମାନେ ତାଙ୍କ ମତରେ କାମ କରୁଥିଲେ, ଆମେ ଆମ ମତରେ । କେହି କାହାକୁ ବିରୋଧ କରିବାର ପ୍ରଶ୍ନ କେଉଁଠି ଉଠୁଥିଲା । କାମ ହେଉଥିଲା, ସମାଜର ଦଳିତ ଗୋଷ୍ଠୀ ଉପକାର ପାଉଥିଲେ । ମୂଳଥିଲା ମଣିଷର ସେବା । କିଛି କିଛି କାମ ହେଉଥିଲା ।'' (୯-୮-୨୦୦୦ ସାକ୍ଷାତ୍‌କାରରୁ)

କର୍ମୀଜୀବନ ସହଜ ନଥିଲା ଏହି ଜିଲ୍ଲାରେ, ନ୍ୟୁନତମ ସୁବିଧା ସୁଯୋଗ ଭିତରେ, ପ୍ରତିକୂଳ ପରିସ୍ଥିତିରେ । ''ବାଘ, ହାତୀ, ବଣ ପାହାଡ଼, ମ୍ୟାଲେରିଆ, ଦୂରତା, ଅଶିକ୍ଷିତ, ଅନୁନ୍ନତ ଅସ୍ୱାସ୍ଥ୍ୟକର ଆଦିବାସୀ ଗାଁରେ ବାହାରୁ ଆସିଥିବା ଅଣ ଆଦିବାସୀଙ୍କ ଅଭ୍ୟସ୍ତ ଚଳଣି ଓ ପରିବେଶର ସାମାନ୍ୟତମ, ସୁଖ ସୁବିଧା ବି ନଥାଏ । ଭାଷା ଭିନେ, ସମାଜଭିନେ, ପରିସ୍ଥିତି ଭିନେ, ନାନା ସମସ୍ୟା । ଭୂଦାନ କାର୍ଯ୍ୟ ବି ଖୁବ୍ ଧୈର୍ଯ୍ୟ, ସହିଷ୍ଣୁତା,

ପରିଶ୍ରମ ଓ ଏକନିଷ୍ଠତା ଲୋଡ଼େ । ସେଠି ଭୋକ ଉପାସ, ଦେହ ବାଧିକା କି ବିପଦକୁ ଖାତିର ନକରି, ନିଜ ଜୀବନକୁ ତୁଚ୍ଛ ମନେକରି, ଚାଲି ଚାଲି ଦୂର ଦୂର ଅଞ୍ଚଳ ବୁଲିବାକୁ ହୁଏ । ସେଠି ଅନୁନ୍ନତ ଆଦିବାସୀଙ୍କ ଭିତରେ ଯେଉଁ ତ୍ୟାଗର ମୂର୍ତ୍ତିମାନ କାମ କରି ଆସୁଥିଲେ, ତାଙ୍କ ତ୍ୟାଗ ତପସ୍ୟା କେଡ଼େ କଠୋର ଓ ଅମାନୁଷିକ ମୁଁ ୧୯୫୨-୫୪ ଭିତରେ ରାୟଗଡ଼ା ଏସ୍.ଡ଼ି.ଓ ଥିଲାବେଳେ ନିଜ ଆଖିରେ ଦେଖିଥିଲି,'' ଗୋପୀନାଥ ମହାନ୍ତିଙ୍କ ଏହି ମତାମତ ଯଥେଷ୍ଟ ଗୁରୁତ୍ୱ ରଖେ । ବିଶ୍ୱନାଥ ଆଜ୍ଞାଙ୍କ ସମ୍ବନ୍ଧରେ ସେ ଲେଖନ୍ତି, ''ଚାଲିଥିବେ ଖାଲିପାଦ, ଖାଲିଦେହ ବିଶ୍ୱନାଥ ପଟ୍ଟନାୟକ, କେତେବେଳେ ଦେହରେ ଜର ତାତିରେ ଖଇ ଫୁଟୁଛି, ୧୦୩°, ମାନିବେ ନାହିଁ, ହସି ହସି ବାଟ ଧରିବେ, ଆସୁ ପଛେ ସଞ୍ଜ, ହୋଇଥାଉ ବାଘୁଆ ବାଟ, ଯେଉଁ ବାଟରେ ବାଘ ମଣିଷ ଖାଇଛି । ସେହିପରି ଥରେ, ସଞ୍ଜ ଆଗରୁ ଜଙ୍ଗଲ ଭିତରେ ଠାଏ ତାଙ୍କ ସଙ୍ଗେ ଦେଖା । ସେ ବାଟ ଧରିଥାନ୍ତି, ଆଗରେ ଘାଟି ମୁଣ୍ଡରେ ମହାବଳ ବାଘ ଛପିଥାଏ । ଦୈବୀଯୋଗକୁ ଜୀପ୍ ପହଞ୍ଚିଲା ବାଘ ପଳେଇଲା ।''

ଏହାଥିଲା କୋରାପୁଟ ଜିଲ୍ଲାରେ ଭୂଦାନ କର୍ମୀଙ୍କ ଜୀବନ । ବିଶ୍ୱନାଥ ଆଜ୍ଞାଙ୍କୁ ତୁଳନା କରିବା କାହିଁକି ? ସେ ତାଙ୍କ ପରି, ଗାନ୍ଧୀ-ଗୋପବନ୍ଧୁ ବତାଇଥିବା ବାଟରୁ ଇଞ୍ଚେ ପାଦ ଖସିବ ନାଇଁ, ଗୋଟିଏ ଲକ୍ଷ୍ୟ । ସମାଜରେ ମଣିଷର ଅସୁମାରୀ ଦୁଃଖ । ଅଭାବୀ ମଣିଷର ଦୁଃଖ ସବୁଠୁ ବେଶୀ । ତାର ସେବା ହିଁ ଧର୍ମ । ତାକୁ ନିଜ ଗୋଡ଼ରେ ଛିଡ଼ା ହେବାର ଦମ୍ଭ ଟିକିଏ ଦେଇପାରିଲେ ବଡ଼କାମ ହେଲା ବୋଲି ଧରିନେବାକୁ ହେବ ।

ଏମିତିରେ ୧୯୫୬ ମସିହା ସରିବାକୁ ଯାଉଥିଲା । ନବବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱର ଶେଷବର୍ଷ । ସେତେବେଳକୁ ଭୂଦାନ କର୍ମୀମାନେ ମଧ ଟିକିଏ ଶିଥିଳ ପଡ଼ିଆସିଲେଣି । ୧୯୫୫-୫୬ ବେଳକୁ ଅଞ୍ଚଳ ଶାସନ ଆଇନ ଓ ଭାଗଚାଷୀ ଆଇନ୍ ଭଳି ପ୍ରଗତିଶୀଳ ଆଇନକୁ ଏବଂ ତାପଛରେ ଥିବା ପରିକଳ୍ପନାକୁ କାର୍ଯ୍ୟକାରୀ କରିବାରେ ମୁଖ୍ୟମନ୍ତ୍ରୀ ନବବାବୁ, ନିଜଦଳ ଶାସକ କଂଗ୍ରେସଦଳ ନା ସରକାରୀ କର୍ମଚାରୀ ସାହାଯ୍ୟ କଲେ ବରଂ ବିରୋଧ କଲେ ନିଜ ନିଜ ଆଚରଣରେ । ନବବାବୁଙ୍କର ବିଶ୍ୱାସ ହେଲା ଶାସନରେ ରହି ଏ ଆଇନ ଗୁଡ଼ିକୁ କାର୍ଯ୍ୟକାରୀ କରାଇହେବ ନାହିଁ । ଏଥିପାଇଁ ଶାସନ ବାହାରେ ରହି ଲୋକଙ୍କୁ ସଂଗଠିତ କରିବା ପାଇଁ ସେ ନିଷ୍ପତ୍ତି ନେଲେ । ସେ ଅକ୍ଟୋବର ମାସ ୧୯୫୬ରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ତାଙ୍କ ଇସ୍ତଫା ଭୂଦାନ ଆନ୍ଦୋଳନ

ଓ ଲୋକ ସଂଗଠନ କାର୍ଯ୍ୟକୁ ନିଶ୍ଚିତଭାବେ ସାହାଯ୍ୟ କରିଥିଲା କିନ୍ତୁ ୧୯୫୬ ପରେ ଡ଼ଃ ମହତାବଙ୍କ ମନ୍ତ୍ରୀମଣ୍ଡଳ ଭୂଦାନ ଆନ୍ଦୋଳନକୁ ଭଲ ଆଖିରେ ଦେଖିଲେ ନାହିଁ । ବରଂ ସମାଲୋଚନା କଲେ । ଏତିକି ବେଳକୁ ବହୁ ଭୂଦାନକର୍ମୀ କ୍ଷେତ୍ର ଅଭିଜ୍ଞତାକୁ ନେଇ ଅଣ୍ଣା ସାହେବଙ୍କ ନିର୍ମାଣ କାର୍ଯ୍ୟରେ ଶହେଟଙ୍କିଆ କର୍ମଚାରୀ ହେବାକୁ ବରଂ ଶ୍ରେୟ ମଣିଲେ । ଭୂଦାନ ଆନ୍ଦୋଳନ, ଗ୍ରାମଦାନ ସଂଗଠନ ପାଇଁ ବହୁ ନିଷ୍ଠାପର କର୍ମୀ ଆଉ ମିଳିଲେ ନାହିଁ ।

ଅର୍ଥର ମୋହ, କି କଷ୍ଟପ୍ରଦ ଜୀବନରୁ ମୁକ୍ତି ପାଇଁ କର୍ମୀମାନେ ଏ ବାଟ ବାଛିନେଲେ ଏ ସମ୍ବନ୍ଧରେ ବିଶ୍ୱନାଥ ଆଜ୍ଞା କିଛି ମତ ଦିଅନ୍ତି ନାହିଁ । ସେ କହନ୍ତି, ମଣିଷ ଚରିତ୍ରର କଥା । ‘‘ସମସ୍ତେ ସବୁକାଳେ ଗୋଟିଏ ଆଦର୍ଶରେ ବାନ୍ଧି-ହୋଇ ରହିବେ, ସେଥିପାଇଁ ସବୁଛାଡ଼ି କାମ କରିବେ କାହିଁକି ଆଶା କରିବା ।’’ ଏମିତି ସନ୍ଧିକାଳରେ ଡ଼ିସେମ୍ବର ୩୧ ତାରିଖ ୧୯୫୬ ଦିନ ପାଲନୀ ଠାରେ ସର୍ବୋଦୟ ସମ୍ମିଳନୀ ହେଲା । ସେଠି ଭୂଦାନକର୍ମୀଙ୍କ ନିଧିମୁକ୍ତି ପ୍ରସଙ୍ଗ ବିଚାର ହେଲା । ବିନୋବାଜୀ ନିର୍ଦ୍ଦେଶ ଦେଲେ ଯେ ଭୂଦାନକର୍ମୀମାନେ ଆଉ ଗାନ୍ଧୀ ସ୍ମାରକ ନିଧି, ଉତ୍କଳ ଖଦୀ ମଣ୍ଡଳ କି ସର୍ବସେବା ସଂଘ ଆଦି ସଂସ୍ଥାରୁ କୌଣସି ଭତ୍ତା ପାଇବେ ନାହିଁ । ତାଙ୍କୁ କୌଣସି ଗସ୍ତ ଖର୍ଚ୍ଚ ଦିଆଯିବ ନାହିଁ । ସେମାନେ ଗ୍ରାମବାସୀଙ୍କ ‘ସମ୍ପତ୍ତିଦାନ’ ଓ ‘ସର୍ବୋଦୟ ପାତ୍ର’ ଆଦି ସ୍ଥାନୀୟ ସାହାଯ୍ୟରୁ ଯାହା ମିଳିବ ସେତିକିରେ ପେଟ ପୋଷିବେ ।

ଏଠି ଗୋଟିଏ କଥା ସ୍ପଷ୍ଟ ହେଲା । ଭୂଦାନକର୍ମୀ ମାନେ ତ୍ୟାଗର ପରାକାଷ୍ଠା ଦେଖାଇଲେ ପଇସା ମୋହ ରହିବ ନାହିଁ । ମାଗିଲେ ଯାହା ମିଳିବ ସେତିକିରେ ସନ୍ତୁଷ୍ଟ ହେବେ । କେବଳ ସେବାହିଁ ସେମାନଙ୍କର ଧର୍ମ ହେବ । କେଉଁ ଆଡୁ କିଛି ସାହାଯ୍ୟ ନମିଳିଲେ ହିଁ ମଣିଷ ତ୍ୟାଗୀ ଓ ସ୍ୱାବଲମ୍ବୀ ହେବ । ଗୋପବାବୁ ବି ଏଇୟା କହୁଥିଲେ । ଆଦର୍ଶକୁ ଧରିଲେ ସବୁ ଛାଡ଼ିବାକୁ ହେବ । ଏହା ନିଧିମୁକ୍ତିର ନିୟମ ହୋଇଗଲା । ଭୂଦାନକର୍ମୀମାନେ ଏକ କଠୋର ପରୀକ୍ଷାର ସମ୍ମୁଖୀନ ହେଲେ ।

କୋରାପୁଟ ଜିଲ୍ଲା ଅଧିବାସୀ ଗରିବ, ଦରିଦ୍ର । ନିଜେ ଅନାହାରରେ ରହନ୍ତି । କର୍ମୀମାନଙ୍କୁ କଣ ବା ଦେବେ । ସମସ୍ତେତ ଆଉ ବିଶ୍ୱନାଥ ଆଜ୍ଞା କି ଗୋପବାବୁ ନୁହନ୍ତି ଯେ ମାଗିଯାଚି ପେଜ ଜାଉ, ସିଝାକନ୍ଦା, ମକାପୋଡ଼ା କି ଆମ୍ବଟାକୁଆ ସିଝା ଖାଇ ରହିଯିବେ । ଯେଉଁମାନେ ଭୂଦାନ କାମର ବିରୋଧୀ, ଧନୀ ସାଉକାର, ବଡ଼ଚାଷୀ ବିଶ୍ୱନାଥ

ସେମାନେ ବା କାହିଁକି ଦାନ ଦେବେ । ଏମିତି ଅନେକ ସମସ୍ୟାମାନ ତାଙ୍କ ଆଗରେ ଆସି ଠିଆହେଲା । ନିଧିମୁକ୍ତି ସମୟରେ ସମ୍ପତ୍ତିଦାନ ଓ ଶସ୍ୟ ଦାନ ସାହାଯ୍ୟରେ ଅନେକ କର୍ମୀ ରହି କାମ କରୁଥିଲେ । ଯେଉଁ କର୍ମୀମାନେ ସମତଳ ଅଞ୍ଚଳରୁ ଆସିଥିଲେ ଏଠା ପରିବେଶ, ପରିସ୍ଥିତି ତାଙ୍କ ପାଇଁ ପୂରା ଅଲଗାଥିଲା, ଚଳଣି ବି ଅଲଗା ଥିଲା । କେତେକର୍ମୀ ପିଲା କୁଟୁମ୍ବ ଛାଡ଼ି ଆସିଛନ୍ତି । ଫେରିଯିବାକୁ ମନ ଛନଛନ ହେଲାଣି । ଏଣୁ ବିନୋବାଜୀଙ୍କ ନିର୍ଦ୍ଦେଶ ଯେ ସେମାନଙ୍କ ମନରେ କିଛିଟା ନିରାଶା ଆଣିଥିବ, ଧୈର୍ଯ୍ୟ ମଧ ତୁଟିଯିବା ପାଇଁ ବାଟ ଖୋଜିଥିବ, ଏହା ଯେ କୌଣସି ଲୋକ ବୁଝିବାରେ ଅସୁବିଧା ନାହିଁ; ବୋଧହୁଏ ଅନ୍ୟକାରଣ ମଧ୍ୟରୁ ଏହା ବି ଗୋଟିଏ ହୋଇଥିବ ଯାହା ପରବର୍ତ୍ତୀ କାଳରେ ଭୂଦାନ ଆନ୍ଦୋଳନକୁ ପ୍ରଭାବିତ କରିଥିଲା । ଅତଃ ସ୍ୱାଭାବିକ ଭାବେ ବହୁ ନିଧିମୁକ୍ତ କର୍ମୀ ଅଣ୍ଣା ସାହେବଙ୍କ ନିଧିଯୁକ୍ତ ନିର୍ମାଣ କାର୍ଯ୍ୟରେ ଯୋଗଦେଲେ ।

ଯେଉଁମାନେ ଏହି ସୁଯୋଗ ପାଇ ପାରିଲେ ନାହିଁ ସେମାନେ ଭୂଦାନ-ଯଜ୍ଞ ସହ ସମ୍ପର୍କ ରଖିଲେ । ସର୍ବୋଦୟର ପ୍ରକାଶିତ ଲେଖା, ବହି, ପତ୍ର ପତ୍ରିକା ବିକ୍ରିକଲେ । ଖଦୀ ମଣ୍ଡଳ ସହ ମଧ ଯୋଗସୂତ୍ର ରଖି କିଛି ଅର୍ଜନ କଲେ । ଯେଉଁମାନେ କସ୍ତୁରବା ସ୍ମାରକ ନିଧିରେ କର୍ମୀଥିଲେ ନିଜ ନିଜର ପୁରୁଣା ଆଶ୍ରମ ଛାଡ଼ିଦେଲେ ସତ, କିନ୍ତୁ ସେମାନଙ୍କ ଖାଇବା ପିଇବା ପାଇଁ ପୂର୍ବରୁ ଲୋକମାନଙ୍କ ଉପରେ ନିର୍ଭର ନକରି ଲୋକ ଆଧାରରେ ଚଳୁଥିଲେ । ସମ୍ପତ୍ତିଦାନ, ଶସ୍ୟ ଦାନ ସଂଗ୍ରହ କରି ।

ପରିସ୍ଥିତି ବଦଳୁଥିଲା । ସହସ୍ରବୁଦ୍ଧେ ନିଜ ଚିନ୍ତା ଓ ଚେତନାରେ ନିର୍ମାଣକାର୍ଯ୍ୟ ଚଳାଇଲେ । ଗୋପବାବୁ, ବିଶ୍ୱନାଥ ଆଜ୍ଞାଙ୍କ ମତର ଗୁରୁତ୍ୱ ଆଉ ରହିଲା ନାହିଁ । ସହସ୍ରବୁଦ୍ଧେ ଭାରତର ବହୁ ଆଡରୁ ବିଶେଷଜ୍ଞ ମାନଙ୍କୁ ଏ ଜିଲ୍ଲାକୁ ଅଣାଇଲେ । ବହୁ ଯୁବକ ମଧ ଯୋଗଦେଲେ । ଓଡ଼ିଶାର ଗ୍ରାମର ସମସ୍ୟା ସମାଧାନ ଓ ଗ୍ରାମ ପୁନର୍ଗଠନ ସେ ନିଜ ଦୃଷ୍ଟିରୁ କରିବାକୁ ଚାହିଁଲେ । ଅର୍ଥ ବଳରେ ସେବା କରିବାର ମନୋବୃତ୍ତିର ସୂତ୍ରପାତ ହେଲା । ପୂର୍ବର ଆଦର୍ଶ ଆଉ ରହିଲା ନାହିଁ । ଫଳରେ କୋରାପୁଟର ଭୂଦାନକର୍ମୀ ମାନେ ଭୂଦାନ କାର୍ଯ୍ୟ ଛାଡ଼ି ଅଣ୍ଣା ସାହେବଙ୍କ ଆଡକୁ ମୁହାଁଇଲେ । ଭୂଦାନକର୍ମ ପାଇଁ କର୍ମୀ ନିଅଣ୍ଟ ପଡ଼ିଲେ ।

କୋରାପୁଟ ଜିଲ୍ଲାରେ କାମ କରିବା ସେତେବେଳକୁ ୧୮ ବର୍ଷ ହୋଇଗଲାଣି । ସେ ଯେତିକି ପଦଯାତ୍ରା କରିଥିଲେ, ଯେତିକି ଲୋକ ସମ୍ପର୍କରେ ଆସିଥିଲେ, ସେମାନଙ୍କ ସମସ୍ୟାକୁ ଦେଖିଥିଲେ, ନିଜ ଶକ୍ତି ମତେ ସେତିକି କରୁଥିଲେ । ସେ ଥିଲେ ରଚନାତ୍ମକ କର୍ମୀ । ତାଙ୍କ କାମ କରିବାର ଢ଼ଙ୍ଗ ଥିଲା ଏକାନ୍ତ ବ୍ୟକ୍ତିଗତ । ସେ ନିଜ ଦୃଷ୍ଟିରୁ ଯାହା ଠିକ୍ ମନେ କରୁଥିଲେ, ଯାହା ତାଙ୍କ ଆତ୍ମା ସମର୍ଥନ କରୁଥିଲା ସେହି କାମ କରୁଥିଲେ । ପ୍ରଚାରର ଆଟୋପରେ ନିଜକୁ ପ୍ରତିବିମ୍ବିତ କରାଇବା କେବେହେଲେ ତାଙ୍କ ମନରେ ନଥିଲା । ନୀରବ କର୍ମୀ । ନିର୍ମାଣକାର୍ଯ୍ୟ ଆରମ୍ଭ ହେବାପରେ ସେ ଦେଖିଲେ ଭୂଦାନ କର୍ମ କରିବାକୁ ଆଉ କର୍ମୀ ବାହାରୁ ନାହାନ୍ତି । ନୂଆ ଭୂଦାନ୍ ହେଉନାହିଁ । ଗ୍ରାମଦାନ ହେଉନାହିଁ । ଭୂଦାନ ବାର୍ତ୍ତା ପ୍ରଚାର ହେଉନାହିଁ । ଯାହା ଯେତିକି ହେବା କଥା ଆଉ ହେବାର ଦିଶୁନାହିଁ, ବରଂ ବନ୍ଦ ହୋଇଯିବାକୁ ବସିଲାଣି ।

ପୂର୍ବର କର୍ମୀମନ ଆଉ ନାହିଁ । ତ୍ୟାଗ, ଆଦର୍ଶ, ନିଷ୍ଠାରେ ଯେମିତି କଳଙ୍କି ଲାଗିବା ଆରମ୍ଭ ହୋଇଗଲା । ଯେଉଁ କେତେଜଣ ନିଷ୍ଠାପର କର୍ମୀଥିଲେ ସେମାନେ ମଧ୍ୟ ଏହି ବଦଳୁଥିବା ପରିସ୍ଥିତିକୁ ଦେଖି ବିବ୍ରତ ହୋଇ ପଡୁଥିଲେ । ବିଶ୍ୱନାଥ ଆଞ୍ଚା ଆଶାବାଦୀ ଥିଲେ । ସେ ଆଶା ଛାଡ଼ିନଥିଲେ ।

ଏଇ ଭିତରେ ଆଉ ଗୋଟିଏ କଥା ହେଲା । ଓଡ଼ିଶାରେ ସରକାରଙ୍କ ତରଫରୁ ଗୋଷ୍ଠୀ ଉନ୍ନୟନ ବ୍ଲକ ପଦ୍ଧତିର ପ୍ରଚଳନ କରାଗଲା । ୧୯୫୭ରେ ବଳବନ୍ତରାୟ ମେହେଟ୍ଟା କମିଟିଙ୍କ ସୁପାରିଶକୁ ଡ଼ଃ ମହତାବଙ୍କ ମନ୍ତ୍ରୀମଣ୍ଡଳ ଗ୍ରହଣ କରି ପଞ୍ଚାୟତିରାଜର ପ୍ରଚଳନ କରାଇଲେ । ଅଣ୍ଣା ସାହେବଙ୍କୁ ପରୀକ୍ଷାମୂଳକ ଭାବେ ଗୋଟିଏ ବ୍ଲକରେ ଗୋଷ୍ଠୀ-ଉନ୍ନୟନ କାର୍ଯ୍ୟ କରିବା ପାଇଁ ଦାୟିତ୍ୱ ଦିଆଗଲା । ଅଣ୍ଣା ସାହେବ ସରକାରୀ କର୍ମଚାରୀଙ୍କ ସହାୟତାରେ ନିର୍ମାଣକାର୍ଯ୍ୟ କରିବାରେ ଲାଗି ପଡ଼ିଲେ । ବହୁ ଅର୍ଥ ଖର୍ଚ୍ଚ ହେଲା । ଆଦିବାସୀଙ୍କ ନାମରେ ଅଣ-ଆଦିବାସୀଙ୍କ ହାତରେ ପଇସା ପଡ଼ିଲା । ଏହା ବିଶ୍ୱନାଥ ଆଞ୍ଚା ଦେଖିଲେ । ସେତେବେଳକୁ ସେ ସର୍ବୋଦୟ ଓ ଭୂଦାନ କାର୍ଯ୍ୟର ସଂଯୋଜକ ଥିଲେ । ବିନୋବା ୧୯୫୫ରେ ଓଡ଼ିଶା ଆସିଲେ । ଆଣ୍ଣା ସାହେବ ନିର୍ମାଣ କାର୍ଯ୍ୟ ଆରମ୍ଭ କଲାପରେ ବିଶ୍ୱନାଥ ଆଞ୍ଚା ଆଉ ସଂଯୋଜକ ହୋଇ ରହିବାକୁ ମନ କଲେନାହିଁ । ୧୯୫୬ରେ ସେ ଏହି ପଦ ଛାଡ଼ିଦେଲେ ।

ନିର୍ମାଣ କାର୍ଯ୍ୟ କରୁଥିବା କର୍ମୀମାନେ, ଗାନ୍ଧୀବାଦୀଙ୍କ ପରି ଗ୍ରାମାଭିମୁଖୀ, ଲୋକାଭିମୁଖୀ ହୋଇ ପାରିଲେ ନାହିଁ । ଅଣ୍ଣା ସାହେବଙ୍କ ନେତୃତ୍ୱରେ ଯେଉଁ ଗ୍ରାମୋନ୍ନତିର କାର୍ଯ୍ୟକ୍ରମ ବେସରକାରୀ ସ୍ତରରେ ଆରମ୍ଭ ହୋଇ ଯେତିକି ସଫଳ ହେବା କଥା ହୋଇ ପାରିଲା ନାହିଁ ।

ଅଣ୍ଣା ସାହେବ ସହସ୍ରବୁଦ୍ଧେ ଯଦିଓ ଗାନ୍ଧୀ ଓ ବିନୋବାଙ୍କ ଦର୍ଶନ ସହ ପରିଚିତ ଥିଲେ, ତାଙ୍କ ନିର୍ବାଚିତ କର୍ମୀମାନେ ସର୍ବୋଦୟ କର୍ମୀଙ୍କ ପରି ତାଲିମ ପାଇ ପାରିଲେ ନାହିଁ । କର୍ମୀମାନଙ୍କ ବିଚକ୍ଷଣତା, କଷ୍ଟ ସହିଷ୍ଣୁତା, ସହନଶୀଳତା, ସଂଯମ, ଗାଆଁକୁ ଗାଆଁ ଭେଦିଯିବାର ଢ଼ଙ୍ଗ, ଗାଆଁ ଲୋକଙ୍କ ଦୁଃଖ ସୁଖରେ ସହଭାଗିତା, ଏକାକାର ହେବାର ଯେଉଁ ମୌଳିକ ଆବଶ୍ୟକତା ଥିଲା, ଅଣ୍ଣା ସାହେବଙ୍କ କର୍ମୀମାନେ ସେପରି ତାଲିମ ପାଇ ପାରିଲେ ନାହିଁ । ଏକ ବିଚାରଗତ ପାର୍ଥକ୍ୟ ମୂଳକର୍ମୀ ଓ ବେତନଭୋଗୀ କର୍ମୀମାନଙ୍କ ମଧ୍ୟରେ ରହିଗଲା ।

ଗୋପବାବୁ ଭଲଭାବରେ ଜାଣିଥିଲେ ତାଙ୍କର ଅତିପ୍ରିୟ ମାନସ ସନ୍ତାନ ବିଶ୍ୱନାଥଙ୍କୁ । ବିଶ୍ୱନାଥଙ୍କ ଉପରେ ତାଙ୍କର ଥିଲା ଅଖଣ୍ଡ ବିଶ୍ୱାସ । ବିଶ୍ୱନାଥଙ୍କ ଆଦିବାସୀ-ପ୍ରାଣତା, ଆଦର୍ଶବାଦ, ଆତ୍ମତ୍ୟାଗ, କର୍ମଠତା, ସେବା ମନୋଭାବ, ଜନପ୍ରିୟତା, ଗାନ୍ଧୀବାଦରେ ଅଖଣ୍ଡ ବିଶ୍ୱାସ ଦେଖି ଗୋପବାବୁ ତାଙ୍କଠାରେ ଆସ୍ଥା ରଖିଥିଲେ । ବିଶ୍ୱନାଥ ଆଞ୍ଚା କୋରାପୁଟ ଜିଲ୍ଲାରେ ଭୂଦାନ ଆନ୍ଦୋଳନର ମୁଖ୍ୟ ଲୋକ । ସେ ବି ଗୋପବାବୁଙ୍କୁ ପିତୃପ୍ରତିମ ଭକ୍ତି କରନ୍ତି । ମହାତ୍ମାଙ୍କ ଡ଼େଲାଙ୍ଗ ସମ୍ମିଳନୀରେ ବିଶ୍ୱନାଥ ଆଞ୍ଚା ପ୍ରଥମେ ତାଙ୍କ ସମ୍ପର୍କରେ ଆସିଥିଲେ ୧୯୩୪ ରେ । ସେହି ଦିନଠୁ ସେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଆଉ ତାଙ୍କ କାମ, ବାଣୀ, କୀର୍ତ୍ତିପ୍ରତି ଅନୁରକ୍ତ, ଆଉ ତାଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନକରିବା ଥିଲା ତାଙ୍କର ସବୁଠାରୁ ପ୍ରିୟକାର୍ଯ୍ୟ ।.

୧୯୫୭ ବେଳକୁ ବିଶ୍ୱନାଥ ଆଞ୍ଚା ଉତ୍କଳ ନବଜୀବନ ମଣ୍ଡଳର ସଭାପତି ଥାନ୍ତି । ମାଳତୀ ଚୌଧୁରୀ ନବଜୀବନ ମଣ୍ଡଳ କାମରେ ପୂରାସମୟ ଦେଇ କାମକରନ୍ତି । ବିଶ୍ୱନାଥ ଆଞ୍ଚା ତାଙ୍କୁ ସାହାଯ୍ୟ କରନ୍ତି । କୋରାପୁଟ ଜିଲ୍ଲାରେ ନବଜୀବନ ମଣ୍ଡଳର ୧୨ଟି କେନ୍ଦ୍ରଥାଏ, ଗଞ୍ଜାମ ଜିଲ୍ଲାରେ ୭ଟି । ଆଦିବାସୀଙ୍କ ସେବା, ଶୋଷଣରୁ ମୁକ୍ତି ଓ ଆଦିବାସୀଙ୍କ ସ୍ୱାର୍ଥରକ୍ଷା ନବଜୀବନ ମଣ୍ଡଳର ଲକ୍ଷ୍ୟଥିଲା । ଭୂଦାନ କର୍ମ, ନିର୍ମାଣ କର୍ମ, ଗ୍ରାମଦାନ ହୋଇଥିବା ଗ୍ରାମ ଗୁଡ଼ିକର ଉନ୍ନତି, ଏ ସବୁ ଦେଖିଲାବେଳକୁ ଯେତେ ନିଷ୍ଠାପର

ଭୂଦାନ କର୍ମୀ ଲୋଡ଼ା ସେତିକି ନଥାନ୍ତି । ଷାଠିଏ କି ସତୁରି ଜଣ କର୍ମୀଙ୍କୁ ନେଇ ଭୂଦାନ ପ୍ରତି ଲୋକଙ୍କର ଆସ୍ଥା ଅତୁଟ ରଖିବା ଯେ କି କଷ୍ଟସାଧ ଥିଲା, ତାହା ଅନୁଭବୀ ହିଁ ଜାଣିବେ । ଆସ୍ତେ ଆସ୍ତେ ଭୂଦାନ ପ୍ରତି ଲୋକଙ୍କ ବିଶ୍ୱାସ ତୁଟି ତୁଟି ଯାଉଥିଲା । ନ୍ୟସ୍ତ-ସ୍ୱାର୍ଥ ଲୋକେ ତ ମୂଳରୁ ଏହାର ବିରୋଧୀ ଥିଲେ । ୧୯୫୬ରେ ମହତାବ ବାବୁ ମୁଖ୍ୟମନ୍ତ୍ରୀ ହେଲାପରେ ଭୂଦାନ ଆନ୍ଦୋଳନର ଉପକାରିତାକୁ ଅସ୍ୱୀକାର କଲେ । ଏହା ଦାରିଦ୍ର୍ୟ ବଣ୍ଟନ ବୋଲି ଲେଖିଲେ । ସେ ଭୂଦାନକୁ ପସନ୍ଦ କଲେ ନାହିଁ । ଯଥା ରାଜା ତଥା ପ୍ରଜା । ସରକାରୀ ଅମଲାଙ୍କ ଦୃଷ୍ଟିକୋଣ ମଧ ସେମିତି ହୋଇଗଲା । ଭୂଦାନ ବିରୁଦ୍ଧରେ ସରକାରୀ ଓ ବେସରକାରୀ ସ୍ତରରେ ପ୍ରଚାର ଚାଲିଲା ।

ଗ୍ରାମଦାନ-ଗାଁ ୮୧୨ରୁ ୧୫୦ ଟିରେ ନିର୍ମାଣ କାର୍ଯ୍ୟ ଚାଲିଲା, ଉନ୍ନତି ହେଲା ଆଉ ବଳକା ୬୬୨ଟି ଗାଁ ସେମିତି ପଡ଼ି ରହିଲା । ୧୯୫୭ ପରେ ୧୯୬୩ ଯାଏ କୋରାପୁଟ ଜିଲ୍ଲାରେ କର୍ମୀମାନେ ଭୂଦାନ କାର୍ଯ୍ୟ ନିଜ ଶକ୍ତି ଅନୁସାରେ କରୁଥିଲେ । ୧୯୫୬ପରେ କୋରାପୁଟରେ ଭୂଦାନ କାର୍ଯ୍ୟରେ ଶିଥିଳତା ଦେଖି ଗୋପବାବୁ ବିଶ୍ୱନାଥ ଆଞ୍ଚାଙ୍କୁ ଚିଠିରେ ଲେଖିଲେ:

ପୁରୀ, ୨୧-୬-୫୬

> ''କୋରାପୁଟରେ ଭୂଦାନ ସଂଗଠନ ସୁଦୃଢ଼ ହେବା ପରିବର୍ତ୍ତେ ଦୁର୍ବଳ ହୋଇଯାଉଛି । କର୍ମୀମାନେ ସାମୂହିକ ଚେତନା ଘେନି କାମ କରୁନାହାନ୍ତି ।''

ରାମଚନ୍ଦ୍ରପୁର (ବରୀ), ୧-୯-୫୬

ବିଶ୍ୱନାଥ ଆଞ୍ଚାଙ୍କ ଠାରୁ ଚିଠି ପାଇଁ ଗୋପବାବୁ ଚିଠିର ଉତ୍ତରରେ ଲେଖିଲେ, ''ମତେ ଲେଖିଛ ଯେ କୋରାପୁଟରେ ପ୍ରତିମାସରେ କିଛି ସମୟ ଦେବାକୁ । ପ୍ରଥମେତ ସେଇୟା ଭାବିଥିଲି, ମାତ୍ର ଦେଖିଲି, ମୋ ପାଇଁ ସେଠି କାମ ନାହିଁ ।

ନିର୍ମାଣ କାମରେ ଅଣ୍ଣା ସାହେବଙ୍କୁ ଜଣେଇ ଦେବାତକ ମୁଁ ସେ କାମରେ ସାହାଯ୍ୟ କରୁଥିଲି । ମୁଁ ତ ଆଉ ସେ କାମ କରିବି ନାହିଁ ? ସେ କାମ ପାଇଁ ଆଞ୍ଚାଙ୍କ ଶକ୍ତି ଯଥେଷ୍ଟ । ଭୂଦାନ କାମ ଅବଶ୍ୟ ଚାଲିବ-ଅଞ୍ଚାଙ୍କ ପରାମର୍ଶରେ ଚାଲିବ ।

ବର୍ତ୍ତମାନ କୋରାପୁଟରେ ବାହାର ଟଙ୍କାରେ କାମର ହାୱା ଏତେ ବିସ୍ତାରିଛି ଯେ ସ୍ୱାବଲମ୍ବୀ ଉଦ୍ୟମ କିଛି ହେବନାହିଁ, ଏବଂ ମୋରତ କାହିଁକି କେଜାଣି ଧାରଣା ଜନ୍ମିଛି ଯେ, ସ୍ୱାବଲମ୍ବୀ ପଦ୍ଧତିରେ କର୍ମୀ ବାଛିବା ଉଦ୍ୟମ ନହେଲେ ଭୂଦାନ କାମର କିଛି ମହତ୍ତ୍ୱ ରହିବା ନାହିଁ । ତାପରେ ତେମେତ ଦେଖୁଛ ଓ ଜାଣ, ଟଙ୍କାର ମୋହ ଆମର ପ୍ରାଦେଶିକ କାମକୁ କିପରି ଚଳିତଳାନ୍ତ କରି ଦେଉଛି । ବର୍ତ୍ତମାନ ସମ୍ମିଳନୀ ପରେ ଏ ନୂତନ ପଦ୍ଧତି କେତେଦୂର ସଫଳ ହେଉଛି ଦେଖିବାର କଥା, ସମସ୍ତେ ଲାଗିଲେ ବଦଳିପାରେ ।

କୋରାପୁଟରେ ଭୂଦାନକାମ ପାଇଁ ଭାବିବାର କାମ କରିବାର ଲୋକତ କମ୍, ତେମେତ ସେଥିରେ ଅଗ୍ରଣୀ ଥିଲ, ମାତ୍ର ତେମେତ ନବ ଜୀବନ ମଣ୍ଡଳରେ ବାନ୍ଧି ହେଇ ସେ କାମରେ ବହୁତ ସମୟ ଦେଉଛ । ମୁଁ ଗତ ଦୁଇଥର କୋରାପୁଟରେ ଥିଲାବେଳେ ସ୍ୱପ୍ନ ଦେଖିଲି । ବାଜିତ ସେ ପାଖରେ, ଘର ଛାଡ଼ିବ ନାହିଁ । ସେଥିଯୋଗୁଁ ମଧ୍ୟ, କୋରାପୁଟରେ ସମୟ କଟାଇ କାମ କଣ କଣ କରିପାରିବି ବୋଲି ମନରେ ଆଶଙ୍କା ହେଉଛି ।''

ଏହି ଦୁଇଚିଠିରୁ ଗୋପବାବୁ କୋରାପୁଟ ଜିଲ୍ଲାରେ ଚାଲିଥିବା ଭୂଦାନ କାମ ସମ୍ବନ୍ଧରେ ଯାହା ଲେଖିଲେ ତାହା ତାଙ୍କ ନିଜସ୍ୱ ଅନୁଭୂତିର କଥା । ଆଉଥରେ ସେ ଲେଖିଲେ, ''ତମେତ 'ଭୂଦାନ' ଓ 'ନବଜୀବନ ମଣ୍ଡଳ' ଦୁଇ ଡ଼ଙ୍ଗାରେ ଗୋଡ଼ ଦେଇ ଚଳେଇଛ- ତମର ଗୋଡ଼ ଫରକଟା, ସହି ଯାଉଛ । ଆମେ ସଙ୍ଗେ ସଙ୍ଗେ ବୁଡ଼ି ମରିବୁ ।''

ମେ' ୧୯୫୭ରେ କେରଳର କଲାଡ଼ି ଠାରେ ସର୍ବଭାରତୀୟ ସମ୍ମିଳନୀ ହେଲା । ସେଠି ଗୋପବାବୁ କୋରାପୁଟର ଭୂଦାନ ଆନ୍ଦୋଳନ ଓ ଅଣ୍ଣା ସାହେବଙ୍କ ନିର୍ମାଣ କର୍ମ ବିଷୟରେ ଆଲୋଚନା କଲେ । ଅଣ୍ଣା ସାହେବ ଚାହୁଁଥିଲେ ଗ୍ରାମଦାନ ଗ୍ରାମ ନିକଟରେ ଥିବା ଅନ୍ୟଗ୍ରାମ ଗୁଡ଼ିକୁ ଦାନ ସୂତ୍ରରେ ସଂଗ୍ରହ କରାଯାଉ ଫଳରେ ନିର୍ମାଣ କର୍ମ ସହଜ ହେବ । ବିନୋବା ଏହାକୁ ସମର୍ଥନ କଲେ ନାହିଁ ବରଂ ଜିଲ୍ଲା ସାରା ଗ୍ରାମଦାନ ସଂଗ୍ରହ ପାଇଁ ଆନ୍ଦୋଳନ ଚଳାଇ ରଖିବାକୁ ପରାମର୍ଶ ଦେଲେ । ଗୋପବାବୁ ବିନୋବାଙ୍କ କଥା ୭-୬-୫୭ ଚିଠିରେ ବିଶ୍ୱନାଥ ଆଞ୍ଚାଙ୍କୁ ଜଣାଇଦେଲେ । ବିଶ୍ୱନାଥ ଆଞ୍ଚା ପୁଣିଥରେ ଭୂଦାନ କାମରେ ପଦଯାତ୍ରା କରିବାର ସଙ୍କଳ୍ପ ନେଲେ । ୭-୬-୫୭ ଚିଠିରେ ଗୋପବାବୁ ବିଶ୍ୱନାଥଙ୍କୁ ଲେଖିଲେ, ତୁମର ପଦଯାତ୍ରା ସଂକଳ୍ପ ଶୁଣି ବିଶେଷ ଆନନ୍ଦିତ ହେଲି, ୫୭ ଶେଷଯାଏ ପଦଯାତ୍ରା ଚଲାଅ ।.. ବିନୋବା କହନ୍ତି ସବୁଆଡ଼େ ଗ୍ରାମଦାନର ହାୱା ଜୋର

ହେଉ, ବାକି ପଡ଼ିଥିବା ଗାଁ ମାନେ ଡେ଼ରିରେ ହୋଇ ପାରନ୍ତି । ନୂଆ ଅଞ୍ଚଳରେ ଶୀଘ୍ର ହେବ । ଯେ କୌଣସି ବାଧାଯୋଗୁ ଅଟକି ଯାଇଛି ସେ ବାଧା ଡେ଼ରିରେ ଦୂର ହେବ । ତେଣୁ ତା ଯୋଗୁଁ ଅନ୍ୟଆଡ଼େ କାମ ବନ୍ଦ ହେବ କାହିଁକି ? ନିର୍ମାଣ କାର୍ଯ୍ୟର ସୁବିଧାକୁ ଅନାଇଁ ଆମ କାମ ହେବନାହିଁ । ନିର୍ମାଣ କାମ ଏକ ସ୍ୱତନ୍ତ୍ର ପର୍ଯ୍ୟାୟ । ସେଥିପାଇଁ ଅନ୍ୟ ପ୍ରକାର ଉଦ୍ୟମ ଚାଲିଛି ଓ ଚାଲିବ ।''

ଏହି ଚିଠି ବିଶ୍ୱନାଥ ଆଜ୍ଞାଙ୍କୁ ଆହୁରି ଆଗେଇ ଯିବା ପାଇଁ ପ୍ରେରଣା ଦେଲା । ଆଶା ଦେଲା । କର୍ମଠ ବିଶ୍ୱନାଥ ପୁଣିଥରେ ପଦଯାତ୍ରା ଆରମ୍ଭକଲେ ଭୂଦାନ ପାଇଁ, ଗ୍ରାମଦାନ ପାଇଁ ।

## ଗୋପବାବୁଙ୍କ ଶେଷ କୋରାପୁଟ ଯାତ୍ରା :

ଜୁନ୍‌ମାସ ୧୧ ତାରିଖ, ୧୯୫୭ । ଗୋପବାବୁ କୋରାପୁଟ ଆସିଲେ । ୧୧ରୁ ୨୪ଜୁନ୍ ଦୀର୍ଘ ୧୫ଦିନ ବିଶ୍ୱନାଥ ଓ ଅନ୍ୟମାନଙ୍କ ସହିତ ଜିଲ୍ଲାର ଚାରିଆଡ଼େ ବୁଲିଲେ । ଗ୍ରାମଦାନ ସଂଗ୍ରହ, ସମ୍ପତ୍ତିଦାନ ସଂଗ୍ରହ ଚାଲିଲା ।

ସେ ବିଶ୍ୱନାଥଙ୍କୁ ପରାମର୍ଶ ଦେଇ କହିଲେ, ''ତମକୁ ନିବେଦକ ସ୍ୱରୂପ ଏବଂ କୋରାପୁଟର ଅଗ୍ରଦୂତ ସ୍ୱରୂପ 'ଗ୍ରାମଦାନ' କାମରେ ଖୁବ୍ ଲାଗି ପଡ଼ିବାକୁ ହେବ । ନିର୍ମାଣ କାମରୁ ତମର ମନକୁ ଏକ୍‌ଦମ୍ ଅଲଗା କରି ଦେବାର ଦେଖିଲେ ତାର ପ୍ରଭାବ ପଡ଼ିବ ।... ତେମେ ଖୁବ୍ ଜୋରରେ ଲାଗିଲେ ଏବଂ ନିର୍ମାଣ କର୍ମର ଆଧାର ଛାଡ଼ି ଗ୍ରାମଦାନର ମୂଳତତ୍ତ୍ୱ ଉପରେ ନିର୍ଭର କଲେ କୋରାପୁଟର ଇଜ୍ଜତ ରକ୍ଷାହେବ । ଓଡ଼ିଆର ଲବ୍ଧ ଗୌରବ ମଳିନ ହେବନାହିଁ ।'' ଗୋପବାବୁ ୨୪.୬.୫୭ରେ କଟକ ଫେରିଲେ ।

ସବୁକିଛି ଆଉ ଆଗଭଳି ହେଲାନାହିଁ । ଆଉ କର୍ମୀମାନେ ଆଗଭଳି ନିଷ୍ଠା ଦେଖାଇଲେ ନାହିଁ । ଗ୍ରାମଦାନ ପରେ ଗାଁ ଗୁଡ଼ିକରେ ଶିକ୍ଷା, ସ୍ୱାସ୍ଥ୍ୟ, ବାସଗୃହ, ଅଭାବ ଓ ଶୋଷଣରୁ ମୁକ୍ତି ଆଦି ଯେଉଁ କାର୍ଯ୍ୟକ୍ରମମାନ ଲୋକ ସହଯୋଗରେ କରାଯାଉଥିଲା ସେଥିରେ ଶିଥିଳତା ଆସିଗଲା । ଟଙ୍କାର ପ୍ରାଧାନ୍ୟ ଚାଲିଲା । ଫଳରେ ଗ୍ରାମଦାନର ଭାବନା କମ୍‌ଜୋର ହେଲା । କ୍ଷୋଭ ପ୍ରକାଶ କରି ଗୋପବାବୁ ବିଶ୍ୱନାଥ ଆଜ୍ଞାଙ୍କୁ ଚିଠି ଲେଖିଲେ ୧୭-୨-୫୮ରେ । କର୍ମୀମାନଙ୍କ ମତଭେଦ ମନଫଟାଫଟି ଚରମରେ ପହଞ୍ଚିଲା । ମନାନ୍ତର ବଢ଼ିଲା । କର୍ମୀମାନେ ଆଉ କାମକୁ ନଜର ଦେଲେ ନାହିଁ ।

## ସେଇ ଯେ ଶେଷଦେଖା :

୧୭.୨.୫୮ ଚିଠି ଅନୁସାରେ ବିଶ୍ୱନାଥ ଆଞ୍ଚା ୨୪.୪.୫୮ ଦିନ କଟକର ଥୋରିଆ ସାହିରେ ଥିବା ଘରେ ଗୋପବାବୁଙ୍କୁ ସାକ୍ଷାତ କଲେ । ଗୋପବାବୁଙ୍କ ବୟସ ସେତେବେଳକୁ ୬୪ । ରକ୍ତଚାପ, ଦୁର୍ବଳତା ମାଡ଼ି ବସିଲାଣି । ଗୋପବାବୁ ବିଶ୍ୱନାଥ ଆଞ୍ଚାଙ୍କୁ ନିଜ ସ୍ୱଭାବ ସୁଲଭ ମୁରବି ପଣିଆରେ ଉପଦେଶ ଦେଲେ । ''ନିଶା ନିବାରଣ, ଆଦିବାସୀଙ୍କ ଭୟ ଛଡ଼ାଇବା, ଘରେ ଘରେ ସର୍ବୋଦୟ ପାତ୍ର ବସାଇବା, ନିଧିମୁକ୍ତି ଓ ସ୍ୱାବଲମ୍ବୀ ଲାଗିହେବା କର୍ମୀମାନେ ଲୋକଙ୍କ ଠାରୁ ସହଯୋଗ ନିଅନ୍ତୁ, ତାଙ୍କ ସଙ୍ଗେ ମିଶିକାମ କରନ୍ତୁ ।

ଗୋପବାବୁ ଚାହିଁଲେ ବିଶ୍ୱନାଥ ଆଞ୍ଚାଙ୍କୁ । ଗୋପବାବୁଙ୍କ ପାଖରେ ପିଣ୍ଡାରେ ସେ ବସିଥାନ୍ତି । ରମାଦେବୀ ଘର ଭିତରେ । ଗୋପବାବୁ କହିଲେ, ପୁଅକୁ ବାପ ସ୍ନେହରେ ବୁଝାଇଲା ଭଳି, ''ମୁଁ ଯାହା କହିଲି ସବୁ ମନେ ରଖିଲୁଟି ? ନିଜ ଭିତରୁ ଭେଦ ଭୁଲି ଜୋର୍ ଦେଇ କାମରେ ନଲାଗିଲେ କୋରାପୁଟରେ କାମ ସବୁ ଯିବ ।''

ଗୋପବାବୁ ଆଉ କିଛି କହିଲେ ନାହିଁ । ବିଶ୍ୱନାଥ ଆଞ୍ଚା ଭକ୍ତି ଜଣାଇ ପିଣ୍ଡାରୁ ଉଠିଲେ । ଅଗଣାରେ ପାଦ ପକାଇଲେ । ସେ କଣ ଜାଣିଥିଲେ ସେତେବେଳେ ଯେ ସେଇ ହେବ ତାଙ୍କର ଗୋପବାବୁଙ୍କ ସହ ଶେଷଦେଖା, ଶେଷକଥା । ସେଦିନର ସ୍ମୃତିକୁ ମନେ ପକାଇ ବିଶ୍ୱନାଥ ଆଞ୍ଚା ଅଶ୍ରୁ ସଜଳ ହୋଇ ଯାଆନ୍ତି । ମୁହଁରେ କେତେ ପ୍ରକାର ଭାବ ଅଭାବର କଥା ଦିଶିଯାଏ ।

* * *

-କୋଡ଼ିଏ-

# ଲୁଣ ଆଉ ଖାଇବି ନାହିଁ

**ବି**ଶ୍ୱନାଥ ଆଞ୍ଜା ସେଇ କଟକରୁ ଫେରିଲେ ୨୪.୪.୫୮ରେ, ଏଇ ଭିତରେ ୫ ଦିନ ବିତିବା ଉପରେ । ସେ ଭାବୁଥାନ୍ତି ରମାଦେବୀଙ୍କ କଥା । ଟାଏଫଏଡ୍ ଜର, ଏବେ ହେଇ ଟିକିଏ ଛାଡ଼ିଛି । ବାପା ଗୋପବନ୍ଧୁ ବି ବୟସ ଭାରରେ ନଇଁ ପଡ଼ିଲେଣି, ଖାଲି ମନ ବଳରେ ଚାଲିବା କଥା । ମନରେ କେମିତି ବିଷାଦଭାବ । ସୁଖ ଲାଗୁନଥିଲା ।

ସେଦିନ ଥିଲା୨୮ ତାରିଖ ଅପ୍ରେଲ ୧୯୫୮ । ସନ୍ଧ୍ୟାବେଳ । କଟକ ଥୋରିଆ ସାହି ଘରେ ନିତିଦିନ ପରି ପ୍ରାର୍ଥନା ଆରମ୍ଭ ହେଲା । । ଶ୍ରୀ ଈଶ୍ୱରଭାଇ ବ୍ୟାସ ବସିଥିଲେ ଗୋପବାବୁଙ୍କ ଘରେ । ସେ ଦେଖିଲେ ପ୍ରାର୍ଥନା ବୋଲିଲା ବେଳକୁ ଗୋପବାବୁଙ୍କ ଆଖିରୁ ଲୁହ ଝରି ଯାଉଛି । ସତେ ଯେମିତି କରୁଣାମୟଙ୍କ ଅପାର ପ୍ରେମର ସ୍ପର୍ଶରେ ସବୁ ଦୁଃଖ ଲୁହ ପାଲଟି ଯାଉଛି । ସାରା କୋଠରୀରେ ପ୍ରାର୍ଥନାଭାବ । ଗୋପବାବୁ ବୋଲୁଥାନ୍ତି କାନ୍ଦି କାନ୍ଦି :

''ତୁ ଅଗ୍ନି ବାଟ ଯେ ଦେଖାଉ
ତୁ ପ୍ରଭୁ ସୁଗତି ଯେ ଦେଉ ।''

ଭାବ ପ୍ରବଣ ହୋଇ ପଡ଼ିଥାନ୍ତି ଗୋପବାବୁ । ରାତି ପାହିଲା, ହେଲା ୨୯ ଅପ୍ରେଲ ୧୯୫୮ । ସେଦିନ ଗୋପବାବୁଙ୍କ ଅତି ଆଦରର ହରିଭାଇନାଁ (ଆଚାର୍ଯ୍ୟ ହରିହର ଦାସ) ତାଙ୍କ ପାଖରେ ଥାନ୍ତି । ବାଡ଼ରୁ ଲେଉଟିଆ ଶାଗ ତୋଳିଲେ ଗୋପବାବୁ, ତାକୁ ବାଛିଲେ ହାତରେ । ଭାରି ଶରଧା ମନରେ କହିଲେ ''ହରିଭାଇନା ଶାଗ ପଖାଳ ଖାଇବେ । ଓଡ଼ିଆର ଜାତୀୟ ଖାଦ୍ୟ ପଖାଳ, ଶାଗ, ବଡ଼ି ନଡ଼ିଆ ।'' ଏତିକି କହି ଗୁଣୁଗୁଣୁ ହେଲେ :

''ପଖାଳ ଜାତିର ସଞ୍ଜୀବନୀ ସୁଧା
ହରେ ଏକାଧାରେ ଭୋକ ଶୋଷ ବାଧା ।''

ଖାଇ ସାରି ଦୁହେଁ ଗଲେ ଭୁବନେଶ୍ୱର । ସାଧୁ ଚରଣ ମହାନ୍ତିଙ୍କୁ ଭେଟିଲେ । ଇଏ ଜଣେ ଭୂଦାନ ଆନ୍ଦୋଳନର ସଞ୍ଚାଳକ ଥାଆନ୍ତି । ସେଠୁ ଦୁହେଁ ଫେରିଲେ ପୁଣି କଟକ । ଦେଶ ସ୍ୱାଧୀନ ହେବା ପରେ ଦେଶର ଅଧୋଗତି, ନୈତିକ ଅଧୋପତନ, ଆଉ ବିଷୟରେ କଥା ପଡ଼ିଲା ବସ ଭିତରେ । ନେତାଙ୍କ ମଦପିଆ କଥାଟାକୁ ସେ ଭାରି ନାପସନ୍ଦ କରୁଥିଲେ ।

୨୯.୪.୫୮, ସଞ୍ଜ ହେଲା । ପ୍ରାର୍ଥନା ବୋଲା ସରିଲା । ତାଙ୍କୁ ଦେଖା କରିବାକୁ ଆସିଥାନ୍ତି ବିଶିଷ୍ଟ ସୋସାଲିଷ୍ଟ ନେତା ରବିଘୋଷ । ଭୂଦାନକର୍ମୀ ନିଶାକର ସାହୁ ଆସିଥିଲେ, କୋରାପୁଟ ଯିବା କଥା କହିବାକୁ । ତାଙ୍କୁ ବି ଗୋପବାବୁ ଉପଦେଶ ଦେଲେ ଗ୍ରାମଦାନ କାମ ଆଗ କରିବାକୁ । ନିଶା ନିବାରଣ ମୁଖ୍ୟକାମ ।

ଗୋପବାବୁ ଶୋଇପଡ଼ିଲେ । ରମାଦେବୀ ଭାରି ଦୁର୍ବଳ, ଆଖିରେ ନିଦନାଇଁ । ଚେଇଁ ଶୋଇଥାଚି । ଝିଅ ଅନ୍ନପୂର୍ଣ୍ଣା ମହାରଣା (ଚୁନୀ ଦେଈ), କୃଷ୍ଣପ୍ରିୟା ଦାସ, କେତେକ କର୍ମୀ ପାଖରେ ଥାନ୍ତି । ଆଚାର୍ଯ୍ୟ ମହାଶୟ, ଫକୀର ମିଶ୍ର, ଅଲେଖ ପାତ୍ର ଆଶ୍ରମରେ ଥାନ୍ତି । ଗୋପବାବୁଙ୍କ ପୁଅ ମନମୋହନ ଚୌଧୁରୀ ବରୀରେ ଥାନ୍ତି ।

ଗୋପବାବୁ ମସିଣାରୁ ଉଠିଲେ । ପାଇଖାନା ଆଡକୁ ଗଲେ । ସେଠୁ ଫେରି ପିଣ୍ଡାର ତୃତୀୟ ଖମ୍ବ ପାଖରେ ବସିପଡ଼ିଲେ । ଧଇଁପେଲା ଆରମ୍ଭ ହୋଇଗଲା । କେବେ ଏମିତି ହୁଏ ନାହିଁ । ଏହା ଦେଖି ଅନ୍ନପୂର୍ଣ୍ଣା ମହାରଣା ଓ ବିଷ୍ଣୁ ପ୍ରିୟା ଧାଇଁ ଆସିଲେ । ଫକୀର ମିଶ୍ର ଗଲେ ଡ଼ାକ୍ତର ଡ଼ାକିବାକୁ ।

''ପ୍ରାକୃତିକ ଚିକିତ୍ସା କରିବି'' କହି ସେ ପାଣିଟବ୍‌ରେ ବସିବାକୁ କହିଲେ । ସେଠିବି ଭଲ ଲାଗିଲା ନାହିଁ । ପାଣି ଟବ୍ ଭିତରେ ବସିଥାନ୍ତି, ହଠାତ୍ ତାଙ୍କ ବ୍ୟସ୍ତ ହେବା, ଛଟପଟ ହେବା କମିଗଲା । ମୁହଁରେ କେମିତି ଏକ ପ୍ରଶାନ୍ତଭାବ । ହଠାତ୍ ସେ କହିଲେ, ''ଓଃ ! ମୁଁ କ'ଣ ଦେଖୁଛି । କି ସୁନ୍ଦର ଆଲୋକ । କି ଦିବ୍ୟ ଆଲୋକ । ଆସିଛ ଯଦି ପ୍ରଭୁ ମତେ କୋଳକୁ ନିଅ । ପୁଣ୍ୟମୟ, ତୁମରି ଇଛା ପୂର୍ଣ୍ଣ ହେଉ । ଦୟାମୟ, ତୁମରି ଇଛା ପୂର୍ଣ୍ଣ ହେଉ ।''

୨୯ ଏପ୍ରିଲ ୧୯୫୮ ରାତି ୧୧ଟା ୫୫ମିନିଟ୍‌ରେ ଗୋପବାବୁଙ୍କର ଲୀଳାଖେଳା ସରିଗଲା ଏଇ ମାଟି ମର୍ତ୍ତ୍ୟରୁ । ରମାଦେବୀ ମୂର୍ଚ୍ଛା ହୋଇଗଲେ ।

ରାତାରାତି ଏ ଖବର ବ୍ୟାପିଗଲା ଚାରିଆଡ଼େ । ସମସ୍ତେ ଶୁଣି ବିଶ୍ୱାସ କରି ପାରିଲେ ନାହିଁ । ସମସ୍ତଙ୍କ ମୁହଁରେ ସେଇ ଗୋଟାଏ କଥା:

''ଏଁ, ଗୋପବାବୁ ଚାଲିଗଲେ ।''

୩୦.୪.୧୯୫୮ ଅତିକ୍ରାଂତ ସନ୍ଧ୍ୟାରେ କାଠଯୋଡ଼ି ବାଲିରେ ମରାଚଣ୍ଡିଆ ଆଗରେ ତାଙ୍କ ମରଶରୀର ଅଗ୍ନିକୁ ସମର୍ପିତ ହେଲା । ଖାଲି ଶୁଭୁଥିଲା'' ରଘୁପତି ରାଘବ ରାଜାରାମ'' ପ୍ରାର୍ଥନାର ଗମ୍ଭୀର ସ୍ୱର । ଯୁଗଟିଏ ନିର୍ବାପିତ ହୋଇଗଲା ତାଙ୍କର ବିଦାୟରେ ।

୩୦ ଏପ୍ରିଲ ୧୯୫୮ରେ ଆଚାର୍ଯ୍ୟ ମହାଶୟ ଗୋପବାବୁଙ୍କ ଦେହତ୍ୟାଗ ବିଷୟ ବିଶ୍ୱନାଥ ଆଞ୍ଚାଙ୍କୁ ଟେଲିଗ୍ରାମ ଦ୍ୱାରା  ଜଣାଇଲେ ।

ଆଖିରେ ଢକେଇ ଆସିଲା ଲୁହ । କେମିତି ଏକ ଅଭାବ ବୋଧ, ଶୂନ୍ୟବୋଧ ଘେରିଗଲା ତାଙ୍କୁ । ସେ ହରାଇଲେ ନିଜର ପିତୃପ୍ରତିମ ଶିକ୍ଷା ଓ ଦୀକ୍ଷା ଗୁରୁଙ୍କୁ । ସେଇ ବରଦ ହସ୍ତର ଆଶୀର୍ବାଦ ଆଉ ମିଳିବ ନାହିଁ । ଏଇ କାଲି ଭଳି ଲାଗୁଛି । ପାଞ୍ଚଦିନ ତଳେ ତାଙ୍କ ପାଖରେ ବସି ସେ ଶୁଣିଥିଲେ ତାଙ୍କ ମୁହଁରୁ ଶେଷ କେତେପଦ କଥା । କୁଜେନ୍ଦ୍ରୀ ଆଶ୍ରମ ସାରା ସମସ୍ତେ ଶୋକରେ ବୁଡ଼ିଗଲେ । ମିଉଲ୍‌ଜୀଙ୍କ ସହିତ ସେହି ରାତ୍ର କଟକ ବାହାରିଲେ । ତାପର ଦିନ ସକାଳ ୯ଟାରେ କଟକରେ ପହଞ୍ଚିଲେ । ବିଶ୍ୱନାଥ ଆଞ୍ଚା ପ୍ରାଣର ପ୍ରିୟତମ ଗୁରୁ ଓ ପିତାଙ୍କ ତିରୋଧାନରେ, ତାଙ୍କର ସ୍ମୃତିରେ ସେହିଦିନୁ ଲୁଣ ଖାଇବା ଛାଡ଼ିଦେଲେ ।

ଆଗରୁ ଛାଡ଼ିଥିଲେ ଗୁଣୁପୁର, ରାୟଗଡ଼ାରେ ପଡ଼ିଥିବା ଦାରୁଣ ଦୁର୍ଭିକ୍ଷବେଳେ 'ଓଳିଏ ଖାଇବା', ଏବେ ଶପଥନେଲେ ''ଲୁଣ  ଆଉ ଖାଇବି ନାହିଁ'' ।

* * *

# ଗାନ୍ଧୀବାଦୀ ବିଶ୍ୱନାଥ :୧୯୫୮-୧୯୬୧

ଗୋପବାବୁଙ୍କ ବରୀ ଆଶ୍ରମରୁ ତାଲିମ ପାଇ ବିଶ୍ୱନାଥ ଆଞ୍ଚା ଆଦିବାସୀ ସେବା କରିବା ପାଇଁ ୧୯୪୧ରେ ଆସିଲେ ଗୁଣୁପୁର, ସେଠାରୁ କୁଢେନ୍ଦ୍ରୀ । ସଉରା ଓ କନ୍ଧ ତଥା ହରିଜନଙ୍କ ଉନ୍ନତି ପାଇଁ ଦିନରାତି କାମକଲେ । ସେତେବେଳକୁ ସ୍ୱାଧୀନତା ସଂଗ୍ରାମର ଡ଼ାକରା । ଚାରିଆଡ଼େ ସ୍ୱରାଜର କଥା । ବିଶ୍ୱନାଥ ଆଞ୍ଚା ଆଦିବାସୀଙ୍କୁ ସଂଗଠିତ କଲେ । ଶୋଷଣ ବିରୁଦ୍ଧରେ, ସାମାଜିକ ନ୍ୟାୟ ପାଇଁ ଲଢ଼େଇ କଲେ । ସଂଗ୍ରାମ କରି କୋରାପୁଟ ଜେଲରେ ୧୯୪୧-୪୨ରୁ ୪୫ ଯାଏ କଟାଇଲେ । ଜେଲରୁ ଫେରି ଆଦିବାସୀଙ୍କ ଭୂମି ଅଧିକାରକୁ ନେଇ ସଂଘର୍ଷ କଲେ । ଭୂ ସତ୍ୟାଗ୍ରହୀ ସମାଜ ଗଢ଼ିଲେ । ଅନେକ ଘାତ, ପ୍ରତିଘାତ ଭିତରେ ଗାନ୍ଧିଜୀ ଦେଖାଇଥିବା ବାଟରେ ସତ୍ୟ ଓ ଅହିଂସାକୁ ନେଇ ସେ ଆଗେଇ ଚାଲିଲେ । ୧୯୫୫ରେ ବିନୋବାଙ୍କ ଗ୍ରାମଦାନ ଓ ଗ୍ରାମ ସଂଗଠନ ଡ଼ାକରା ଫଳରେ, ବିଶ୍ୱନାଥ ଭୂଦାନରେ ନିଜର ବହୁତ ସମୟ ଦେଲେ । କେବଳ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ରହିବା ତାଙ୍କ ପକ୍ଷେ ସମ୍ଭବ ହେଲାନାହିଁ ।

ଭୂଦାନ-କାମ ପାଇଁ ସେ ନବରଙ୍ଗପୁରର ନିଷ୍ଠାପର ଭୂଦାନକର୍ମୀ, ସ୍ୱାଧୀନତା ସଂଗ୍ରାମୀ ମହମ୍ମଦବାଜୀଙ୍କ ସହ ସାରା କୋରାପୁଟ ଜିଲ୍ଲାର କୋଣେ ଅନୁକୋଣେ ପଦଯାତ୍ରା କଲେ । ଗୁଣୁପୁର, ରାୟଗଡ଼ା, କୋରାପୁଟ, ପଟାଙ୍ଗି, ସେମିଳିଗୁଡ଼ା, ପାଡୁଆ, ସୁନାବେଡ଼ା, ମାଲକାନଗିରି, ମାତିଲି, ବୈପାରୀଗୁଡ଼ା, ଜୟପୁର, ବୋରିଗୁମା, କାମତା, କୁମୁଲି, କୋଟପାଡ଼, ପାପଡ଼ାହାଣ୍ଡି, ମଇଦଲପୁର, ଜଟାବାଲ, ଡ଼ାବୁଗାଁ, ଉମରକୋଟ, ନବରଙ୍ଗପୁର ସବୁଆଡେ ଗଲେ । ଏମିତି କୌଣସି ଗାଁ ରହିଲା ନାହିଁ, ଯେଉଁଠି ସେ ଭୂଦାନ କାମର ପ୍ରଚାର ନକଲେ । ସାରା ଜିଲ୍ଲାରେ ଭୂଦାନ କର୍ମ, ନବଜୀବନ ମଣ୍ଡଳର କାମ ଦେଖିବା ଫଳରେ କେବଳ ରାୟଗଡ଼ା, ଗୁଣୁପୁର ଅଞ୍ଚଳରେ ଆଉ ଆଗପରି ବିଶେଷ ଧ୍ୟାନ ଦେଇପାରିଲେ ନାହିଁ । ୧୯୫୮ ରୁ ୧୯୬୦ ଯାଏ କୋରାପୁଟ ଜିଲ୍ଲାରେ କର୍ମୀମାନେ ନିଷ୍ଠାର ସହ କାମ କରୁଥିଲେ । ସର୍ବ ସେବା ସଂଘ କୋରାପୁଟ ଜିଲ୍ଲାରେ ଖଦୀ କାମର ପ୍ରସାର କରିଥିଲା ।

ନବଜୀବନ ମଣ୍ଡଳ ଆଦିବାସୀଙ୍କ ସାମାଜିକ ପରମ୍ପରାରେ ଥିବା 'କନ୍ୟାଝୋଲା' ବିରୁଦ୍ଧରେ ପ୍ରଚାର କରୁଥିଲା । ଏହି ପ୍ରଥା ଅନୁସାରେ ପୁଅ ଘର ଝିଅ ବାପକୁ ଝୋଲା ବା

ଯୌତୁକ ଦେଇ ଝିଅକୁ ବିବାହ କରୁଥିଲା । ଏହି କନ୍ୟାଝୋଲା ରୂପେ ଗାଈ, ମେଣ୍ଢା, ଛେଳି, ଚାଉଳ, ଲୁଗାପଟା ପୁଅଘର ଦେବାକୁ ପଡୁଥିଲା । ଏହାକୁ  କସ୍ତୁରବା ଗାନ୍ଧୀ ଓ ନବଜୀବନ ମଣ୍ଡଳର କର୍ମୀମାନେ ଖରାପକାର୍ଯ୍ୟ ବୋଲି ପ୍ରଚାର କରୁଥିଲେ ।

ବିଶ୍ୱନାଥ ଆଞ୍ଚା ନବଜୀବନ ମଣ୍ଡଳର ସଭାପତି ହେଲେ । ତାପରେ ନାରାୟଣ ପାଟଣା ଗଲେ । ଦୁର୍ଗମ ବଣ, ପାହାଡ଼, ନଈ ନାଳ ହିଂସ୍ର ଜନ୍ତୁରେ ପୂର୍ଣ୍ଣ କୋରାପୁଟ ମାଳର ଇଏ ଗୋଟେ ଅଞ୍ଚଳ । ଏହି ଅଞ୍ଚଳରେ ଗୋଟିଏ ସ୍ଥାନ ଆଲମଣ୍ଡା । ଏହି ଗାଁରୁ ୩ ମାଇଲ ଗଲେ ପଡ଼େ ବିକ୍ରମପୁର ଗାଁ । ବିକ୍ରମପୁର ଗାଁରେ ଗୋଟିଏ ସେବା କେନ୍ଦ୍ର ଖୋଲାଗଲା । ସେତେବେଳକୁ ଦେଶ ସ୍ୱାଧୀନ ହୋଇ ୬ କି ୭ ବର୍ଷ ହେବ । ସେଠାରେ ସ୍କୁଲ ନଥିଲା । ବିଶ୍ୱନାଥ ଆଞ୍ଚାଙ୍କ ଉଦ୍ୟମରେ ଗାଁର ଅଭିଭାବକ ମାନଙ୍କୁ ବୁଝାଇ ସୁଝାଇ କର୍ମୀମାନଙ୍କ ସହାୟତାରେ ଝିଅ ମାନଙ୍କୁ ପ୍ରାଥମିକ ଶିକ୍ଷା ଦିଆଗଲା ।

ସେତେବେଳକୁ ନବବାବୁ, ମାଳତୀ ଦେବୀ ଅନୁଗୁଳରେ ଆଶ୍ରମ କରିଥାନ୍ତି । ବାଜୀ ରାଉତ ଛାତ୍ରାବାସ ହୋଇଥାଏ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବିଶେଷତଃ ଆଦିବାସୀ ପିଲାମାନଙ୍କୁ ବିଭିନ୍ନ ବୃତ୍ତିରେ ତାଲିମ ଦିଆ ଯାଉଥାଏ । ପୁଅ, ଝିଅ ଉଭୟଙ୍କୁ । କେତେକ ଝିଅଙ୍କୁ ବିଶ୍ୱନାଥ ଆଞ୍ଚା ସାଙ୍ଗରେ ନେଇ ଅନୁଗୁଳ ଆଶ୍ରମକୁ ଗଲେ, ସେମାନଙ୍କ ପାଠର, ଶିକ୍ଷା ଦୀକ୍ଷାର ବ୍ୟବସ୍ଥା କରିବା ପାଇଁ । ତାଙ୍କ ସାଙ୍ଗରେ ଶଶୀ ବୋଲି ଝିଅଟିଏ ଯାଇଥିଲା । ପରବର୍ତ୍ତୀ କାଳରେ ସେଇ କନ୍ଧ ଝିଅଟି ପାଠ ପଢ଼ି ଶିକ୍ଷକତା କଲା । ଏମିତି କେତେ ପିଲା ଶିକ୍ଷା ପାଇଲେ ଆଞ୍ଚାଙ୍କ ଯୋଗୁଁ ।

ସେତେବେଳକୁ ଶ୍ରୀ ଈଶ୍ୱରଲାଲ ବ୍ୟାସ ଭଦ୍ରକ ଗାନ୍ଧୀ ବାଳାଶ୍ରମର ଦାୟିତ୍ୱରେ ଥାଆନ୍ତି । ସେଠିବି ପିଲାମାନଙ୍କୁ ଶିକ୍ଷା ଓ ଅନ୍ୟାନ୍ୟ କାମ ଶିଖା ହେଉଥାଏ । ବହୁକର୍ମୀ ସାହାଯ୍ୟ କରୁଥାନ୍ତି ବ୍ୟାସଜୀଙ୍କୁ । ବିଶ୍ୱନାଥ ଆଞ୍ଚା, ସେହି ଆଶ୍ରମରେ ଶିକ୍ଷା ପାଇବା ପାଇଁ ଲଡୁଗାଁରୁ ଆଦିବାସୀ ପିଲାଙ୍କୁ ନେଇ ଯାଇଥିଲେ ।

ଏଣେ ଭୂଦାନ କର୍ମ, ସମାଜର ଉନ୍ନତିରେ ବ୍ୟସ୍ତତା, ୧୯୫୫ପରେ ଗୋପବାବୁ ଓ ବିନୋବାଙ୍କ ପ୍ରେରଣାରେ ପଦଯାତ୍ରା, ଶିବିର ପରିଚାଳନା, ବିଭିନ୍ନ ସେବାକେନ୍ଦ୍ର ପରିଦର୍ଶନରେ ଏତେ ସମୟଦେଲେ ଯେ ଆଉ କୁଜେନ୍ଦ୍ରୀ ଆଶ୍ରମରେ ରହିବା ତାଙ୍କପକ୍ଷେ ସମ୍ଭବ ହେଲା ନାହିଁ । ବିନୋବାଙ୍କ ପଦଯାତ୍ରାପରେ ସେ କୁଜେନ୍ଦ୍ରୀ ଆଶ୍ରମ ପ୍ରାୟ ଛାଡ଼ି ଦେଇଥିଲେ । ସେହି ଠିକଣାରେ ଯାହା ତାଙ୍କ ଚିଠିପତ୍ର ପହଞ୍ଚୁଥିଲା ।

ସେ କେଉଁଗାଁରେ ଦିନେ ଦି ଦିନରୁ ଅଧିକ ରହନ୍ତି ନାହିଁ । ଓଳିଏ ଖାଇବା କଥା । ଗାଁ ଲୋକେ ଯାହା ଦିଅନ୍ତି ସେତିକିରେ ଚଳିଯାଏ । କେବେ ଶାଗ ସିଝାତ, କେବେ ମାଣ୍ଡିଆ

ଖାଉ । ପେଟ ପୂରିଗଲେ ଗଲା । ଗାଁ ଲୋକେ ଶ୍ରଦ୍ଧାରେ ଦିଅନ୍ତି । କେବେ କେଉଁ ସହରକୁ ଗଲେ ଚୂଡ଼ା, ଛତୁଆ ଅବା ଇଡ଼ଲିରେ ପେଟପୂରେ । ଯଦି କିଛି ନ ମିଳିଲା ଓପାସ ରହି ଯାଆନ୍ତି ।

୧୯୫୧ ରୁ ଓଳିଏ ଖିଆ ଛାଡ଼ିଥିଲେ । ମହାତ୍ମାଜୀଙ୍କ ମୃତ୍ୟୁଦିବସରେ ସମ୍ପୂର୍ଣ୍ଣ ଉପବାସରେ ଦିନ କାଟନ୍ତି । ୧୯୫୯ ପରଠାରୁ ଗୋପବାବୁଙ୍କ ଶ୍ରାଦ୍ଧଦିବସରେ ଉପବାସ କରିବା ତାଙ୍କ ଧାରାରେ ପଡ଼ିଗଲା । ସବୁଠାରୁ ବଡ଼କଥା ସେ ମୋଟେ ରାଗନ୍ତି ନାହିଁ । ଏହି ମଣିଷ ପ୍ରବୃତ୍ତିଟି ତାଙ୍କର ନଥିଲା, ବୋଧହୁଏ ଏହା ତାଙ୍କ ବାକ୍ ସଂଯମ, ଗାନ୍ଧୀ ଗୋପବନ୍ଧୁଙ୍କ ଆଦର୍ଶର ଫଳ । ତାଙ୍କ ବିଚାର ଧାରା ଓ ଜୀବନ ଦର୍ଶନକୁ ଯିଏ ପାଖରୁ ଦେଖିଛି, ଅନୁଭବକୁ ଆଣିଛି, ସେ ଏହାର ପ୍ରକୃତ ମର୍ମ ବୁଝିପାରିବ । ବିଶ୍ୱନାଥ ଆଜ୍ଞା କଥା ପ୍ରସଙ୍ଗରେ କହିଥାନ୍ତି,'' ''ଯାହାକୁ ସଂଶୋଧନ କରିବାକୁ ଥାଏ, ତା ଉପରେ କ୍ରୋଧ ପ୍ରକାଶ କରାଯାଏ । କେତେକ ଲୋକ ପ୍ରେମାସ୍ପଦ ମାନଙ୍କ ଉପରେ ରାଗନ୍ତି, କେତେକ ଲୋକ ଅନ୍ୟମାନଙ୍କୁ ନିମ୍ନ ଶ୍ରେଣୀର ବିଚାରି ରାଗନ୍ତି । କିନ୍ତୁ ମୋର ଅନେକବେଳେ ଧାରଣା ହୁଏ ଆମତଳେ କେହି ନାହାନ୍ତି । ତେଣୁ କାହା ଉପରେ ରାଗିବି ? କ୍ରୋଧକୁ ନିୟନ୍ତ୍ରଣ କରିବାକୁ ହେଲେ ସତ୍ୟକୁ ନିର୍ଭୀକଭାବେ କହିବାକୁ ହୁଏ ।''

ଏଥିରୁ ତାଙ୍କ ବିଚାରଧାରାର ଖିଅଟିକୁ ଧରିହୁଏ । ଲୋକ ଚରିତ୍ରର ଏତେ ସମଝଦାର ମଣିଷ ସେ । ଧୀର, ନମ୍ର, ଉଦାର, ନ ରାଗିବା ଚିତ୍ତବୃତ୍ତି କେତେ ପୁଣ୍ୟର ଫଳ ସତେ ।

ବହୁ ସଂସ୍ଥାର ମୁଣ୍ଡିଆଳ ସେ । କେତେ ସେବା କେନ୍ଦ୍ର, କେତେ କର୍ମକେନ୍ଦ୍ର । ସେଗୁଡ଼ିକୁ ସେ ଦେଖିବାକୁ ଯାଆନ୍ତି । କର୍ମୀମାନଙ୍କ କାମ ତଦାରଖ କରନ୍ତି । ଭୁଲ ଭଟକା ଦେଖିଲେ ସୁଧାରିବାର ବାଟ ବତାଇ ଦିଅନ୍ତି । ଭଲ କାମ କରିବାକୁ ଉତ୍ସାହିତ କରନ୍ତି । ଯେଉଁଠି କି ଗାଡ଼ିରେ ଯିବାର ସୁବିଧା ନାହିଁ ସେଠାକୁ ପାଦରେ ଚାଲି ଚାଲି ଯାଆନ୍ତି । ଗାଡ଼ିଥିଲେ ଗାଡ଼ିବାଲାକୁ କହି ପାସ୍ ଖଣ୍ଡେ ଯୋଗାଡ଼ କରିଥାନ୍ତି ।

ଚାଲି ଚାଲି ଗଲାବେଳେ ବାଟରେ ପାହାଡ଼ ପଡ଼େ ଚଢ଼ନ୍ତି, ଓହ୍ଲାନ୍ତି । ହାତୀ ହାବୁଡ଼େ ପଡ଼ନ୍ତି, ବେଳେବେଳେ ବଣଜନ୍ତୁ ବି । କୋଉଠି ପୁରୁଣା ଗୁମ୍ଫାଟିଏ ଦେଖିଲେ ଅଟକି ଯାଆନ୍ତି । ପଦ୍ମପୁର ପାଖ ଜଗାମଣ୍ଡା ପାହାଡ଼ । ପାହାଡ଼ ତଳେ ଶିବ ମନ୍ଦିର । ପାହାଡ଼ ଉପରେ ତନ୍ତ୍ରପୀଠ । ସେହି ରମଣୀୟ ଜାଗାରେ ଟିକିଏ ବସି ପଡ଼ନ୍ତି । ତାପରେ ପୁଣି ଚାଲିବା ହୁଏ ଗାଁରୁ ଗାଁକୁ ।

୧୯୪୧ରୁ ସେ ନିଜ ଗାଁ ଛାଡ଼ିଲେ ଯେ ଆଉ ଯିବାର ନୋହିଲା । ସବୁ ମଣିଷ ଭିତରେ ବାଣ୍ଟି ହୋଇଗଲା ପରେ ଆଉ ନିଜର ବୋଲି ମୋହ ରହେନାଇ ପରା । ୧୯୫୫ ମସିହାରେ ବିଶ୍ୱନାଥ ଆଞ୍ଚାଙ୍କ ଭାଇ କୁଳେନ୍ଦ୍ରୀ ଆଶ୍ରମ ସ୍କୁଲର ଶିକ୍ଷକ ହୋଇ ଆସିଲେ । ବିଶ୍ୱନାଥ ତାଙ୍କ ଘରକୁ ଯାଆନ୍ତି ନାହିଁ । ଯୋଉ ମାୟା  ଥରେ ତୁଟି ଯାଇଛି ପୁଣି ସେଇ ମାୟାରେ ଛନ୍ଦି ହେବା ଉଚିତ ମଣିଲେ ନାହିଁ ସେ । ଯିଏ ଶିକ୍ଷକ ହୋଇ ଆସିଲେ ସେ ତାଙ୍କ ବଡ଼ଭାଇ । ପୁଣ୍ୟ ପର୍ବରେ ପୂଜା ପାର୍ବଣ ହୁଏ । ଘରେ ପିଠା ପଣା ହୁଏ । ସ୍ନେହରେ ଦୁଇଟି କାକରା କି ପୁଞ୍ଜାଏ ଆରିଷା, ବିରିଲଡ୍ଡୁ କି ଠୋଲା, ଅଟକାଳି କି ଚକୁଳି ପଠାଇଦିଅନ୍ତି ।   ସମ୍ପର୍କ ବୋଇଲେ ଏତିକି । ଦିନ ଗଡ଼ିଚାଲେ ।

ଗୋପବାବୁ ଚାଲିଗଲେ ସତ କିନ୍ତୁ ସେ ଯେଉଁ ରାସ୍ତାଟି ତିଆରି କରି ଦେଇଥିଲେ ସେଥିରେ ଚାଲିବା ପାଇଁ ବହୁ ଲୋକ ଥିଲେ । ମା ରମାଦେବୀ, ମନମୋହନ ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରଣା, ଶରତ ଚନ୍ଦ୍ର ମହାରଣା, ଆଚାର୍ଯ୍ୟ ମହାଶୟ, ନବବାବୁ, ମାଳତୀ ଦେବୀ, ମହମ୍ମଦ ବାଜୀ, ନିଜେ ବିଶ୍ୱନାଥ ବାବୁ ଆଉ କେତେ ନା କେତେ କର୍ମୀ । ବିଶ୍ୱନାଥ ଆଞ୍ଚା ଏମାନଙ୍କ ସହ ସମ୍ପର୍କ ରଖିଲେ । ସେ ଆଦିବାସୀର ଉନ୍ନତି, ଅହିଂସ ମାର୍ଗରେ ଗଠନ ମୂଳକ କାମ, ବୁଢ଼ାବୁଢ଼ୀଙ୍କ ପ୍ରତି ଆଶ୍ୱାସନା, ଛୋଟପିଲା, ବାଳକ ବାଳିକାଙ୍କ ଶିକ୍ଷା, ଆଦିବାସୀଙ୍କ ଅର୍ଥନୈତିକ ଅବସ୍ଥାରେ ଉନ୍ନତି ପାଇଁ ନିଜସାଧନା ଜାରି ରଖିଲେ ।

୧୯୫୯ରେ ମାଲକାନ ଗିରି, କୋରାପୁଟ ଜିଲାର ଗୋଟେ ସବ୍ ଡ଼ିଭିଜନ । ଦୁର୍ଗମ ପାହାଡ଼ ଘଞ୍ଚ ଜଙ୍ଗଲ । ଦୋରା, କୋଣ୍ଡାଦୋରା, କୋୟା, ଡ଼ିଡ଼ାଇ, ବଣ୍ଡା ଆଦିବାସୀଙ୍କ ବାସସ୍ଥଳୀ । କୋୟା, ଡ଼ିଡ଼ାଇ, ବଣ୍ଡା ପ୍ରାଚୀନତମ ଆଦିବାସୀ ଗୋଷ୍ଠୀ ଏଠାର । ଗୋବିନ୍ଦ ପାଲି ଠାରୁ ମୁଦୁଲିପଡ଼ାଗଲେ ଯେଉଁଠୁ ଘାଟି ଆରମ୍ଭ ହୁଏ, ସେଠି ଯେଉଁମାନେ ବଣ, ସଂଫାକରି, ଗା ବାନ୍ଧି ରହିଥିଲେ ସେମାନେ ନିଜକୁ ତଳବଣ୍ଡା ବୋଲି ଚିହ୍ନେଇ ହେଉଥିଲେ । ପର୍ବତ ଉପରେ ଥିବ ବଣ୍ଡା ମାନଙ୍କୁ 'ଉପର ବଣ୍ଡା' କୁହାଯାଉଥିଲା । ଶିକ୍ଷା, ସଭ୍ୟତା ଠାରୁ ଦୂରରେ ନିଜସ୍ୱ ଜୀବନ ଶୈଳୀ ଓ ପରମ୍ପରାକୁ ନେଇ ସେମାନେ ବଞ୍ଚୁଥିଲେ । ବହୁ ଦେବାଦେବୀ ବିଶ୍ୱାସ, ଅନ୍ଧବିଶ୍ୱାସ, କୁସଂସ୍କାର, ନିଶା ଓ ହିଂସ୍ରତାକୁ ନେଇ ତାଙ୍କର ନିତି ଦିନିଆ ଜୀବନ । ସେହି ତଳବଣ୍ଡାରେ ବିଶ୍ୱନାଥ ଆଞ୍ଚା ନବଜୀବନ ମଣ୍ଡଳ ତରଫରୁ କେନ୍ଦ୍ର ଖୋଲାଇଥିଲେ ।

କଦମଗୁଡ଼ା ଗାଁରେ, ସରକାରଙ୍କ ତରଫରୁ ଗୋବିନ୍ଦପାଲି ଆଶ୍ରମ ଖୋଲା ଯାଇ ସାରିଥିଲା ହେଲେ ବଣ୍ଡା ପିଲା ସେଠାକୁ ପଢ଼ିବାକୁ ଆସୁନଥିଲେ । ଡଲବଣ୍ଡା କେନ୍ଦ୍ରରେ ରାଧାମଣି ସାହୁ କର୍ମୀ ହୋଇ ରହିଲେ । ତାପରେ ଅବସ୍ଥା ବଦଳିଗଲା । ଯେଉଁଠି ପାଠ କଣ, ସ୍କୁଲ କଣ କିଏ ଜାଣି ନଥିଲେ, ଧୋବ ଧାଉଳିଆଙ୍କୁ ଦେଖିଲେ ବଣ ଭିତରେ ଲୁଚୁଥିଲେ, ସେଇ ଗାଁର ଝିଅଟିଏ ବୁଦେଇ, ବଣ୍ଡାଝିଅ । ବୁଧବାରରେ ତାର ଜନ୍ମ ଏଣୁ ଏମିତି ନାମ ଦେଇଥିଲେ ତାର ବାପା ମା । ସେହି ଝିଅ ଅନୁଗୁଳ ଗଲା ପାଠ ପଢ଼ିବାକୁ । ଆଉ କେତେ ପିଲା ମଧ ବାଜୀ ରାଉତ ଛାତ୍ରାବାସକୁ ଗଲେ ପାଠ ପଢ଼ିଲେ । ଆଦିବାସୀ ଶିକ୍ଷା ଉପରେ ବିଶ୍ୱନାଥ ଆଞ୍ଚା ବେଶୀ ଜୋର ଦେଉଥିଲେ ।

ଆଣ୍ଣା ସାହେବଙ୍କ ନିର୍ମାଣକର୍ମ ଚାଲିଥିବା ସମୟରେ ବିଶ୍ୱନାଥ ଆଞ୍ଚା ସଂଯୋଜକ ଭାବେ କାମ ତୁଲାଉଥିଲେ । ପରେ ସେ ଏହି ପଦବୀ ଛାଡ଼ିଦେଲେ । ତାଙ୍କ ବଦଳରେ ଶ୍ରୀଯୁକ୍ତ ରତନଦାସ ସଂଯୋଜକ ହେଲେ । ଅଳ୍ପଦିନ ପରେ ଶ୍ରୀ ଈଶ୍ୱରଲାଲ ବ୍ୟାସଙ୍କୁ ଏହି ଦାୟିତ୍ୱ ଦିଆଗଲା ।

ସେତେବେଳକୁ ସରକାର ଗ୍ରାମ ମଙ୍ଗଳ ବିଭାଗ ଓ ଗୋଷ୍ଠୀ ଉନ୍ନୟନ ବିଭାଗ ଜରିଆରେ, ଆଦିବାସୀ, ହରିଜନ ଉନ୍ନତି କାମ ଆରମ୍ଭକଲେ । ଆଣ୍ଣା ସାହେବଙ୍କ ନେତୃତ୍ୱରେ ପରିଚାଳିତ ସର୍ବସେବା ସଂଘର କର୍ମୀମାନେ ଟଙ୍କା ଜରିଆରେ ଆଦିବାସୀ ମାନଙ୍କର ଉନ୍ନତି କଥା ଚିନ୍ତାକଲେ ।

ଲୋକମାନେ ଯେଉଁଠି ଟଙ୍କା ମିଳୁଥିଲା ସେହି ଅନୁଷ୍ଠାନକୁ ଧାଇଁଲେ । ବିଶ୍ୱନାଥ ଆଞ୍ଚା ଆଉ ଆଗଭଳି ପ୍ରଭାବଶାଳୀ କର୍ମୀ ତିଆରି କରି ପାରିଲେ ନାହିଁ । ଏଠି ବୋଧହୁଏ ଆର୍ଥିକ ମୋହର ପ୍ରଭାବ ଏତେ ପଡ଼ିଲା ଯେ ବିଶ୍ୱନାଥ ଆଞ୍ଚାଙ୍କ ନୈତିକତା ଉପରେ ଜୋର ଦେଇ କାମ କରିବାର ଆଦର୍ଶ ଲୋକଙ୍କୁ ବାନ୍ଧି ରଖିବା ସମ୍ଭବ ହେଲା ନାହିଁ । ଏଠି କାହାକୁ ବା ଦୋଷ ଦେଇହେବ । ନା ଲୋକଙ୍କୁ, ନା ଆଞ୍ଚାଙ୍କୁ । ଏକ ବଦଳୁଥିବା ମାନସିକତା, ଏକ ସନ୍ଧିଗଣକୁ ଅନୁଭବ କରି ପାରୁଥିଲେ ସେ । ସାଧାରଣ ମଣିଷ ତାଙ୍କ ନୈତିକ ଉନ୍ନତିକୁ ସମୃଦ୍ଧିର ପରିମାପକ ଭାବେ ଗଣିଲେ ନାହିଁ । ଭୌତିକ ସୁଖକୁ ବେଶୀ ଲୋଡ଼ିଲେ, ତା ପଛରେ ଚାଲିଲେ । ବିଶ୍ୱନାଥ ଆଞ୍ଚାଙ୍କ ଆଦର୍ଶ ଉପରେ ଯେମିତି ଭୌତିକ ମାନସିକତାର କଳାଛାଇ ପଡ଼ିଗଲା ।

ତେଣେ ତାଙ୍କ ଅଞ୍ଚଳରେ ଆଦିବାସୀ ହରିଜନଙ୍କ ଉନ୍ନତି ପାଇଁ କାମ କରୁଥିବା ମାଳତୀ ବିଶ୍ୱାଳ, ଅନ୍ନପୂର୍ଣ୍ଣା ସାମନ୍ତରାୟ, ଗୋବିନ୍ଦ ରେଡ଼ିଙ୍କ ସଂଗଠନ କେନ୍ଦ୍ର ଗୁଡ଼ିକ ପାରସ୍ପରିକ ସହଯୋଗରେ, ଗୁରୁକୂଳ ପରମ୍ପରାରେ ତିଷ୍ଠି ରହିଗଲା । କୌଣସି ମାନସିକ ସଙ୍କଟ ଦେଖାଗଲା ନାହିଁ ସେଗୁଡ଼ିକରେ ।

ଆଣ୍ଣା ସାହେବ ୧୯୫୬ରେ କୋରାପୁଟରେ ଅଖିଳ ଭାରତ ଆଦିମ ଜାତି ସେବକ ସଂଘର ସମ୍ମିଳନୀ କରାଇଲେ । ଦେଶର ସବୁ ଅଞ୍ଚଳରୁ ବହୁ ଲୋକ ଆସିଥିଲେ । ଶ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ, ଜୟପ୍ରକାଶଜୀଙ୍କ ଭଳି ଲୋକ ତାଙ୍କ କାମ ଦେଖିବାକୁ ଦୁଇ ତିନିଥର ଆସିଲେ । ୧୯୫୭ରେ ମହତାବ ସରକାର ଏମାନଙ୍କ କାମକୁ ପସନ୍ଦ କଲେ ନାହିଁ । ଆଣ୍ଣା ସାହେବ କ୍ରମେ ନିର୍ମାଣ କର୍ମ କମେଇ ଦେଲେ । ୧୯୫୯ ବେଳକୁ ସେ କୋରାପୁଟ ଜିଲ୍ଲାର ବାହାରେ ବହୁଦିନ ରହିଲେ । ୧୯୬୦ ରେ ସେ କୋରାପୁଟ ଛାଡ଼ିଦେଲେ । ଓ୍ୱାର୍ଦ୍ଧାକୁ ନିଜର କର୍ମସ୍ଥଳଭାବେ ବାଛି ନେଲେ । ତାପରେ ଧର୍ମପୁରିଆ, ରାମଦାସ ଆଦି କାମ କରିବାକୁ ଆସିଲେ । ଏମାନେ ଆଦିବାସୀ ଜନ-ଜୀବନ ସହ ମିଶି ପାରିଲେ ନାହିଁ ।

ଏଣେ ଯେଉଁ କର୍ମୀମାନେ ଶହେ ଟଙ୍କିଆ କର୍ମୀଭାବେ କାମ କରୁଥିଲେ ଆଉ ସେବାକାମ କଲେ ନାହିଁ । ମଧ୍ୟବିତ୍ତ ହୋଇ ଚଳିବାକୁ ସୁଖ ମଣିଲେ । ନାନା ଉପାୟରେ ସମ୍ପତ୍ତି ଠୁଳକଲେ । ଆଦିବାସୀମାନେ ଏମାନଙ୍କ ରଙ୍ଗଢ଼ଙ୍ଗ ଦେଖି ଏମାନଙ୍କ ନିଷ୍ଠାକୁ ସନ୍ଦେହ କରିବା ଆରମ୍ଭ କଲେ ।

ବିଶ୍ୱନାଥ ଆଞ୍ଚା ଆଉ ଏବେ ସେତେ ସମୟ କୁଜେନ୍ଦ୍ରୀରେ ରହି ପାରନ୍ତି ନାହିଁ । ୧୯୬୭ର କଥା, କନ୍ଧମାଳ, କନ୍ଧମାନଙ୍କର ଆଦିଭୂମି । ଏମାନଙ୍କ ଅବସ୍ଥା ମଧ୍ୟ କୋରାପୁଟ ମାଳ ଲୋକଙ୍କ ଅବସ୍ଥାରୁ ଭିନ୍ନ ନୁହେଁ । ସେଇ ଶୋଷଣ, ଅତ୍ୟାଚାର, ସେଇ ଅଶିକ୍ଷା, କୁସଂସ୍କାର ଓ ଅନ୍ଧବିଶ୍ୱାସ । ମାଳତୀ ଚୌଧୁରୀ ଚିଠି ଲେଖିଲେ ବିଶ୍ୱନାଥ ଆଞ୍ଚାଙ୍କୁ, ସେଠି ବିଶ୍ୱନାଥ ଆଞ୍ଚାଙ୍କର ଲୋଡ଼ା ।

ଏମିତି ସମୟରେ ଗୁଣୁପୁର ଅଞ୍ଚଳରେ ଗାନ୍ଧୀବାଦର ପରୀକ୍ଷା ନିରୀକ୍ଷା, ସଫଳତା, ବିଫଳତାର ବିଚାର ବିଶ୍ଳେଷଣ ଚାଲିଥିଲା ବେଳେ, ଭୂଦାନ କର୍ମୀଙ୍କ ଭୂମି ସଂଗ୍ରହ, ଗ୍ରାମଦାନ, ଭୂମିବଣ୍ଟନରେ ସକ୍ରିୟ ସହଯୋଗ ଚାଲିଥିଲାବେଳେ, ଏହି ଅଞ୍ଚଳରେ ସମାନ୍ତରାଳ ଭାବରେ ମାଓସେତୁଙ୍ଗ୍ ପ୍ରଦର୍ଶିତ ଚୀନଦେଶୀୟ କମ୍ୟୁନିଷ୍ଟ ମତବାଦର ଧାରା ମଧ୍ୟ ଚାଲିଥିଲା ଜମି ସମସ୍ୟାର ସମାଧାନ କରିବା ପାଇଁ । ଏହାର ମୂଳ ଉଦ୍ଦେଶ୍ୟଥିଲା

ଅନ୍ୟାୟ ଉପାୟରେ ଭୂ ଅର୍ଜନ କରି ସ୍ୱଚ୍ଛଳ ଜୀବନ ଯାପନ କରୁଥିବା ଭୂମି ମାଲିକ ମାନଙ୍କ ହାତରୁ ଜମି ଛଡ଼ାଇ ନେଇ ଭୂମିହୀନଙ୍କୁ ବାଣ୍ଟିବା । ଏହି କାମ କରିବା ପାଇଁ ଯେ ଅହିଂସ ଉପାୟ ଫଳପ୍ରଦ ନୁହେଁ ବରଂ ହିଂସାରେ ଏହା ସହଜ ହେବ ଏମିତି ଏକ ଚିନ୍ତାଧାରା ଆଦିବାସୀଙ୍କ ମୁଣ୍ଡରେ ପୂରାଇ ଦିଆ ଯାଉଥିଲା । ଆଦିବାସୀମାନେ ଏହି ମାର୍ଗକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେଉଥିଲେ ।

ଏହି ପରିସ୍ଥିତିରେ ଏଠି ଶ୍ରୀ ଭୁବନମୋହନ ପଟ୍ଟନାୟକଙ୍କ ବିଷୟରେ କହିବା ଉଚିତ ହେବ । ଶ୍ରୀ ଭୂବନମୋହନ ପଟ୍ଟନାୟକଙ୍କ ଘର ଆନ୍ଧ୍ର ପ୍ରଦେଶରେ । ସେ ଯେମିତି ଭଲ ଓଡ଼ିଆ କହି ପାରନ୍ତି ସେମିତି ଭଲ ତେଲୁଗୁ ମଧ୍ୟ କହି ପାରନ୍ତି । ଏହି ଉଭୟ ଭାଷାରେ ସେ ବୁଝାଇ ପାରନ୍ତି । ଅଦ୍ଭୁତ ତାଙ୍କର ଭାଷଣ ଦେବା କ୍ଷମତା । ଜଣେ ଚିନ୍ତାଶୀଳ ମଣିଷ । ପେଶା ଓକିଲାତି । ପ୍ରଥମେ ନବରଙ୍ଗପୁରରେ ରହିଥିଲେ । ୧୯୫୩ରେ ଆଦିବାସୀ ମାନଙ୍କ ଭୂମି ସମ୍ବନ୍ଧୀୟ କେଶ୍ ଲଢ଼ିବା ପାଇଁ ଯେତେବେଳେ ଓକିଲ ନିଯୁକ୍ତି କରାଗଲା ସେଥିରେ ସେ ସ୍ଥାନ ପାଇଲେ । ସେ ଅଣ ଆଦିବାସୀ ମାନଙ୍କ ଦ୍ୱାରା ହେଉଥିବା ଆଦିବାସୀ ମାନଙ୍କ ବିରୋଧରେ ଚକ୍ରାନ୍ତ ବିଷୟରେ ବହୁତ କଥା ଶୁଣିଲେ । ଜଣେ ସାଧାରଣ ଲୋକ ମଧ୍ୟ ଏହା ଶୁଣିଲେ ଏହି ଶୋଷଣର ପ୍ରତିବାଦ କରିବ । ଶ୍ରୀ ଭୁବନ ମୋହନ ପଟ୍ଟନାୟକ ସହଜେ ମାନବିକତାବାଦୀ । ସେ ମଣିଷ ପ୍ରତି ମଣିଷର ଏହି ଅତ୍ୟାଚାରକୁ ସହି ପାରିଲେ ନାହିଁ । ସେ ଭାବର ଆବେଗରେ ଭାସିଗଲେ । ସତ୍ୟ ଓ ଅହିଂସାର ପ୍ରଭାବରୁ ସେ କିଛିଦୂର ଦୂରେଇଗଲେ । ସତ୍ୟ ଓ ଅହିଂସାର ପରୀକ୍ଷାରୁ ସେ ବିଶ୍ୱାସ ହରାଇଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଋଷ ଦେଶର ପ୍ରଭାବ, କାର୍ଲମାର୍କ୍ସଙ୍କ ସାମ୍ୟବାଦର ପ୍ରଭାବରେ ସେ ପ୍ରଭାବିତ ହେଲେ । ଚୀନଦେଶର ଶ୍ରେଣୀ ସଂଘର୍ଷ ଓ ସାମ୍ୟବାଦ ତାଙ୍କର ଚିନ୍ତାଧାରାରେ ଗଭୀର ରେଖାପାତ କଲା । ସେ ସ୍ୱପ୍ନଦେଖିଲେ ଶୋଷଣମୁକ୍ତ, ଶ୍ରେଣୀହୀନ ସମାଜର, ଯେଉଁଠି ନଥିବ ଧନ ଓ ଧନୀର ପ୍ରଭାବ । ସମାଜରେ ବସବାସ କରୁଥିବା ସବୁ ଶ୍ରେଣୀର ଲୋକ ସମାନ ସୁବିଧା ସୁଯୋଗ ଉପଭୋଗ କରିବେ । ଶ୍ରେଣୀ ବୈଷମ୍ୟକୁ ଦୂରେଇ, ଧନ ଓ ସମ୍ବଳର ସୁଷମ ବଣ୍ଟନ, ବ୍ୟକ୍ତିବାଦର ବିଲୋପକରି ସମାନତାର ଆଦର୍ଶରେ ସମାଜଗଠନ ଓ ଏଥିପାଇଁ ଜନଚେତନାରେ ବିପ୍ଳବ ଭାବ ସୃଷ୍ଟିକରି ଆନ୍ଦୋଳନ ଚଲାଇ ରଖିବାକୁ ସେ ନୀତିଗତ ଭାବେ ପ୍ରସ୍ତୁତ ହେଲେ । ତେଲେଙ୍ଗନାର ହିଂସାତ୍ମକ

ଆନ୍ଦୋଳନକୁ ସେ ସମର୍ଥନ କରିବା ସ୍ୱାଭାବିକ ଥିଲା । ସାମ୍ୟବାଦରେ ସତ୍ୟ ଓ ଅହିଂସାର ସ୍ଥାନ ଯେ ଗୌଣ ଓ ଅତ୍ୟାଚାରୀକୁ ଶାସ୍ତିଦେବା, ପ୍ରତିଶୋଧ ନେଇ ନ୍ୟାୟ ହାସଲ କରିବାକୁ ସେ ଠିକ୍ ବୋଲି ମନେକଲେ । ଏଇଠି ଥିଲା ବିଶ୍ୱନାଥ ଆଞ୍ଚା ଓ ଭୁବନମୋହନ ପଟ୍ଟନାୟକଙ୍କ ମଧ୍ୟରେ ବିଚାରଗତ ପାର୍ଥକ୍ୟ, ଆଚରଣଗତ ପାର୍ଥକ୍ୟ । ସେ ସତ୍ୟ ଓ ଅହିଂସାର ପକ୍ଷଧର ଥିଲେ । ଗାନ୍ଧୀଙ୍କ ଆଦର୍ଶରେ ଅଟଳଥିଲେ । ଲୋକଙ୍କୁ, ବୁଝାଇ, ସୁଝାଇ, ଥରକୁ ଥର ନିଜ ମତରେ ପ୍ରବର୍ତ୍ତାଇ, ସେମାନଙ୍କ ହୃଦୟ ପରିବର୍ତ୍ତନ କରାଇ ସତ୍ୟ ଓ ଅହିଂସା ମାର୍ଗରେ କାର୍ଯ୍ୟ ହାସଲ କରିବାରେ ସେ ବିଶ୍ୱାସୀଥିଲେ । ନିଷ୍କାମ କର୍ମ କରି ଫଳଲାଭ ଭଗବାନଙ୍କ ହାତରେ ଛାଡ଼ିଦେବାର ଭାଗବତ ମନୋବୃତ୍ତି ଥିଲା ତାଙ୍କର । ହିଂସା ଯେ ପ୍ରକୃତ ବାଟ ନୁହେଁ, ହିଂସାର ଫଳ ଯେ ହିଂସା ସୃଷ୍ଟି କରିବ, ସମସ୍ୟା ସମାଧାନର ପ୍ରକୃତ ମାର୍ଗ ହୋଇ ପାରିବ ନାହିଁ, ଏହି ଦୃଢ଼ ବିଶ୍ୱାସଥିବାରୁ ସେ ଭୁବନ ମୋହନ ପଟ୍ଟନାୟକଙ୍କ ହିଂସାକୁ ସମର୍ଥନ ନକରି, ତାଙ୍କ ଭିତରେ ସର୍ବହରାଙ୍କ ଉତ୍‌ଥାନ ପାଇଁ ଯେଉଁ ବିଚାରଥିଲା ସେଥିପ୍ରତି ସହାନୁଭୂତି ରଖିଲେ । ତେଣୁ ତାଙ୍କ ସହ ଆଞ୍ଚାଙ୍କ ସୁସମ୍ପର୍କ ଥିଲା ।

ବୁଦ୍ଧ, ଗାନ୍ଧୀ, ମହାବୀରଙ୍କ ପ୍ରଦର୍ଶିତ ଅହିଂସାର ପରୀକ୍ଷା କରିବା ପାଇଁ ଭୁବନ ମୋହନଙ୍କର ନା ଥିଲା ଧୈର୍ଯ୍ୟ, ନା ବିଶ୍ୱାସ : ସେ ଗୋଟିଏ କଥା ଭାବୁଥିଲେ ଯେଉଁ ମଣିଷ ଅନ୍ୟ ମଣିଷକୁ ଯୁଗ ଯୁଗ ଧରି ଅପମାନିତ କରିଛି, ଯିଏ ନିଜର ସ୍ୱାର୍ଥ ପୂରଣ ପାଇଁ, ଭୋଗ ବିଳାସ ପାଇଁ ଲୁଟି ନେଇଛି ଅନ୍ୟର ଜମି, ବାଡ଼ି, ଧନ, ଯୌବନ ଓ ନାରୀଙ୍କୁ,ଯିଏ ସବୁପ୍ରକାର ହିଂସାର ଆଶ୍ରୟ ନେଇ ସଜେଇଛି ନିଜର ମେଢ଼, ମଣ୍ଡପ; ମଣିଷକୁ ଖଟାଇଛି ଗୋତି କରି, ବନ୍ଧାରଖିଛି ମଣିଷକୁ ତାକୁ ଅହିଂସା ଶିଖାଇ ତା ମନ ବଦଳାଇ, ହୃଦୟ ବଦଳାଇ ଠିକ୍ ରାସ୍ତାକୁ ଆଣିବାର ଗାନ୍ଧୀ ଆଦର୍ଶ ଫଳପ୍ରଦ ହେବ ନାହିଁ । ଯେଉଁ ଆଇନର ତର୍ଜମା କରି ଆଦିବାସୀର ସ୍ୱାର୍ଥ ରକ୍ଷା ହୋଇ ପାରୁନାହିଁ । ସେ ଆଇନକୁ ମାନିବାକୁ ସେ ଚାହିଁଲେ ନାହିଁ । ତାଙ୍କ ପାଖକୁ ଯେଉଁ ଆଦିବାସୀମାନେ ଆସୁଥିଲେ, ସେଇ ଏକା ପ୍ରକାର ପ୍ରଶ୍ନ ସେ ପଚାରିଲେ ତାଙ୍କୁ । ଏମିତି ଏକ ହିଂସାର ବାତାବରଣ ଧୀରେ ଧୀରେ ଗଢ଼ି ଉଠିଲା ଆଦିବାସୀଙ୍କ ମନରେ । ଭୁବନମୋହନ ନବରଙ୍ଗପୁରରୁ ଗୁଣୁପୁର ଆସି, ସେଠି ସ୍ଥାୟୀଭାବେ ରହି ଓକିଲାତି କଲେ । ଗୁଣୁପୁର, ରାୟଗଡ଼ାର ବହୁ ଲୋକଙ୍କ ସହ ସେ ମିଶିଲେ । ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ । ଯେଉଁମାନେ ଦେଖିଥିଲେ ଧୀର ସ୍ଥିର, ସତ୍ୟ ଅହିଂସାର ପୂଜାରୀ ଏକ ନିଷ୍ଠ ଗାନ୍ଧୀବାଦୀ, ନିର୍ଭୀକ

ବିଶ୍ୱନାଥ ପଟ୍ଟନାୟକଙ୍କୁ, ତାଙ୍କ କାର୍ଯ୍ୟପ୍ରଣାଳୀକୁ, ସେମାନେ ପୁଣି ଦେଖିଲେ ଶୋଷଣକୁ ଲୋପକରି ସମାଜରେ ସାମ୍ୟବାଦ ଆଣିବାର ନୂତନ ଲକ୍ଷ୍ୟକୁ କେମିତି କାର୍ଯ୍ୟରେ ପରିଣତ କରିହେବ ହିଂସା ଓ ପ୍ରତିଶୋଧ ମାଧ୍ୟମରେ, ତା'ର ଅର୍ଥ ବଖାଣୁଥିବା ଆଇନ୍‌ଜୀବୀ ଭୁବନ ମୋହନଙ୍କୁ । ଏହି ଆଦର୍ଶର ଦ୍ୱନ୍ଦ ଭିତରେ ବିଶ୍ୱନାଥ ଆଞ୍ଚାଙ୍କ ଦୀର୍ଘଦିନର ତପସ୍ୟା ଯେମିତି ମଳିନ ପଡ଼ିଗଲା । ଲୋକେ ହିଂସାର ମାର୍ଗକୁ ସହଜ, ସରଳ ମଣିଲେ । ଯଦିଓ ଦୁହିଁଙ୍କର ଲକ୍ଷ୍ୟଥିଲା ଏକ, ଶୋଷଣର ଲୋପ, ତଥାପି ପନ୍ଥା ଅଲଗା ଅଲଗା ଥିଲା ।

ଏଠି ଆଉ ଜଣେ କର୍ମୀଙ୍କ ଭୂଦାନକର୍ମରୁ ସାମ୍ୟବାଦ ନୀତିକୁ ଆସିବା କଥା ଆଲୋଚନାର ପରିସରକୁ ଆସେ । ସେ ହେଉଛନ୍ତି ପୂର୍ଣ୍ଣ ଗମାଙ୍ଗୋ । ଗୁମୁଡ଼ା ଡେଇଁଲା ପରେ ପଡ଼େ ପଦ୍ମପୁର । ପଦ୍ମପୁର ପାଖରେ ଗୋଟିଏ ଆଦିବାସୀ ସମ୍ପ୍ରଦାୟକୁ ନେଇ ଗାଁଟିଏ, ନାମ ତା'ର ଖମାପଦର । ପୂର୍ଣ୍ଣଗମାଙ୍ଗୋ ନିଜ ଯୁବକ ବୟସରେ ବିଶ୍ୱନାଥ ଆଞ୍ଚାଙ୍କ ସମ୍ପର୍କରେ ଆସିଲେ । ପାଠ ପଢ଼ିଥିଲେ ୫ମ ଶ୍ରେଣୀ । ୧୯୫୭ରେ ଭୂ ସତ୍ୟାଗ୍ରହରେ ଯୋଗଦେଲେ କର୍ମୀଭାବେ । ଗୟା ସର୍ବୋଦୟ ସମ୍ମିଳନୀରେ ଘୋଷଣା କରାଗଲା ଯେ ଯେଉଁମାନେ ଜନସେବା ପାଇଁ ସାରା ଜୀବନ କାମ କରିବେ ସେମାନେ ନିଜକୁ ଜୀବନ ଦାନୀ ବୋଲି ଘୋଷଣା କରିପାରିବେ । ପୂର୍ଣ୍ଣ ଗମାଙ୍ଗୋ ନିଜକୁ ଜୀବନଦାନୀ ବୋଲି ଘୋଷଣା କଲେ । ୧୯୫୨ ରୁ ୧୯୫୫ ଯାଏ ବିଶ୍ୱନାଥ ଆଞ୍ଚାଙ୍କ ସହ କାମକଲେ, ବହୁ ଅଞ୍ଚଳ ବୁଲିଲେ । ସେବା ଭାବରେ ଉଦ୍‌ବୁଦ୍ଧ ହେଲେ । ତିନିବର୍ଷ ବିତିଗଲା । ୧୯୫୫ରେ ସେ ଭୁବନ ମୋହନ ପଟ୍ଟନାୟକଙ୍କ ସମ୍ପର୍କରେ ଆସିଲେ । ଭୁବନମୋହନଙ୍କ କଥା ଓ ପ୍ରଶ୍ନ ଶୁଣିଲାପରେ ସେ ମଧ୍ୟ ସତ୍ୟ, ଅହିଂସାର ସମ୍ପର୍କ ତୁଟାଇ ସାମ୍ୟବାଦର କଥା କହିଲେ । କମ୍ୟୁନିଷ୍ଟ ହେଲେ । ଭୁବନ ମୋହନ ହେଲେ ତାଙ୍କ ଦ୍ୱିତୀୟ ଦୀକ୍ଷାଗୁରୁ ।

ବିନୋବାଙ୍କ ନିର୍ମାଣ କାର୍ଯ୍ୟ ଦ୍ୱାରା ଗୁଣୁପୁର, ରାୟଗଡ଼ା ଅଞ୍ଚଳର ଅନେକ ଉପକୃତ ହୋଇଛନ୍ତି । ଆଦିବାସୀ ମାନେ ବିଶ୍ୱନାଥ ଆଞ୍ଚା, ମାଳତୀ ଦେବୀଙ୍କୁ ଯଦିଓ ଯଥେଷ୍ଟ ସମ୍ମାନ ଦେଖାଉଥିଲେ, ବେଳେ ବେଳେ ତାଙ୍କର ଅନେକ ଉପାୟକୁ କମ୍ୟୁନିଷ୍ଟ ହେବାପରେ ମଧ୍ୟ ପ୍ରୟୋଗ କରୁଥିଲେ, କିନ୍ତୁ ଏହି କମ୍ୟୁନିଷ୍ଟ ନେତାମାନେ ଆଦିବାସୀଙ୍କୁ ନିଜ ମତ ବାଦରେ ପ୍ରଭାବିତ କରିବାରେ ସଫଳ ହେଲେ । ଯେଉଁମାନେ ଏତେଦିନ ଧରି ସତ୍ୟ ଓ ଅହିଂସାର କଥା ଅନୁସାରେ ଚଳୁଥିଲେ, ଗାନ୍ଧିବାଦୀ ଥିଲେ, ପୂର୍ଣ୍ଣ ଗମାଙ୍ଗୋ ଓ ତାଙ୍କ ସାଥୀଙ୍କ କଥାକୁ ମଧ୍ୟ ସମର୍ଥନ କଲେ । ଅହିଂସା ହିଁ ଏକମାତ୍ର ରାସ୍ତାବୋଲି ଆଉ ବିଶ୍ୱାସକଲେ ନାହିଁ ।

ଏମିତି ଏହି ଅଞ୍ଚଳରେ ଗାନ୍ଧୀବାଦ ବିରୋଧରେ କମ୍ୟୁନିଷ୍ଟମାନଙ୍କ ସାମ୍ୟବାଦ ଯେମିତି ଗୋଟାଏ ଆହ୍ୱାନ ହୋଇ ଛିଡ଼ାହେଲା । ଆତଙ୍କବାଦକୁ ନେଇ ଏକ ନୂତନ ସାମାଜିକ ବ୍ୟବସ୍ଥାର ସୂତ୍ରପାତ ହେଲା । ଏହାର ନେତୃତ୍ୱ ନେଲେ ଭୁବନମୋହନ ପଟ୍ଟନାୟକ, ପୂର୍ଣ୍ଣ ଗମାଙ୍ଗୋ, ନାଗଭୂଷଣ ପଟ୍ଟନାୟକ ଓ ତାଙ୍କ ଅନୁଯାୟୀମାନେ । ଏମାନଙ୍କ କାର୍ଯ୍ୟକଳାପରେ ଧାରାରେ ଗାନ୍ଧୀବାଦୀଙ୍କ ପରି ଆତ୍ମପରୀକ୍ଷଣ, ଆତ୍ମ ବିଶ୍ଳେଷଣର ସ୍ଥାନ ନଥିଲା । ତତ୍‌କାଳିକ ହିତ ସାଧନର ବିଚାରରେ ଏମାନେ ଅହିଂସା ଓ ହିଂସା ସମ୍ପର୍କରେ ବିଚାର କରିବା ଉଚିତ ମଣିଲେ ନାହିଁ । କମ୍ୟୁନିଷ୍ଟ ମାନେ ଭୂ-ସଂଘର୍ଷ ଉପରେ ଜୋର ଦେଲେ । ଏମାନେ ଭୂମି ଅଧିକାରୀଙ୍କ ବିରୋଧରେ ଲଢ଼ି, ସେମାନଙ୍କ ହାତରୁ ଭୂମି ମୁକ୍ତକରି, ସେଇ ଜମି ଉପରେ ଶ୍ରମିକ, ଭୂମିହୀନଙ୍କ ସ୍ୱାମିତ୍ୱ ସ୍ଥାପନ କରିବେ । କମ୍ୟୁନିଷ୍ଟରେ ମୂଳନୀତି ବିଶେଷତଃ ଶ୍ରେଣୀ ସଂଘର୍ଷକୁ ନେଇ ସୃଷ୍ଟି ହୋଇଥିଲା ।

ଫଳରେ ଦୁଇଟି ସମାନ୍ତରାଳ ବିଚାରଧାରା ଭିତରେ ଆଦିବାସୀ ଜୀବନ ଗତିଗଲା । ଗୋଟିଏ ପଟେ ଗାନ୍ଧୀବାଦୀ ବିଶ୍ୱନାଥ ଆଞ୍ଚାଙ୍କ କର୍ମଧାରା, ଅନ୍ୟପଟେ କମ୍ୟୁନିଷ୍ଟଙ୍କ ସାମ୍ୟବାଦୀ କର୍ମଧାରା । ବିଶ୍ୱନାଥ ଆଞ୍ଚା ଏହି ନୂତନ କର୍ମଧାରା ଭିତରେ ହଜି ଯାଉଥିବା ଆଦିବାସୀ ମାନଙ୍କୁ ନିଜ କର୍ମଧାରାକୁ ଆଣିବାରେ ସଫଳ ହେଲେ ନାହିଁ ।

ଏଣେ ବିଶ୍ୱନାଥ ଆଞ୍ଚାଙ୍କ ପରି ଆଉଜଣେ ସର୍ବୋଦୟ କର୍ମୀଥିଲେ ନଗିନ୍ ପାରିଖ । ଘର ଗୁଜରାଟରେ । ଉଚ୍ଚଶିକ୍ଷା ପାଇଥିଲେ । ସମ୍ଭ୍ରାନ୍ତ ଓ ଧନୀଘର । ସେ ସବୁକୁ ଛାଡ଼ି ସେ ଚାଲିଆସିଲେ ଓଡ଼ିଶା । ସେଠୁ କୋରାପୁଟ ଜିଲ୍ଲାର ବୈପାରୀଗୁଡ଼ା । ସେଠି କେନ୍ଦ୍ରକରି ଆଦିବାସୀଙ୍କ ପାଇଁ ନିର୍ମାଣକର୍ମ କଲେ । ସେ ଲୋକଙ୍କୁ ଦେଖୁଥିଲେ । ତଉଲୁ ଥିଲେ । ପରୀକ୍ଷାକରି ଭଲ କର୍ମୀ ବାଛୁଥିଲେ । ନିଜ ବ୍ୟବସାୟରୁ ପଇସା ଆଣି ଖର୍ଚ୍ଚ କରୁଥିଲେ । ସେ ସମବାୟରେ ବିଶ୍ୱାସ କରୁଥିଲେ । ସର୍ବୋଦୟ ପ୍ରତି ତାଙ୍କର ଶ୍ରଦ୍ଧା ଓ ବିଶ୍ୱାସଥିଲା । ସେ ସର୍ବ ସେବା ସଂଘ, ନବ ଜୀବନ ମଣ୍ଡଳ, କସ୍ତୁରବା ସ୍ମାରକୀ ନିଧିରୁ ଗୋଟିଏ ପଇସା ନେଉ ନଥିଲେ ।

ଓଡ଼ିଶା ସରକାର ବୈପାରୀଗୁଡ଼ାକୁ ଏକ ବେସରକାରୀ ବ୍ଲକଭାବେ ଘୋଷଣା କଲେ । ଏହି ବ୍ଲକରେ ଯେଉଁମାନେ କର୍ମକର୍ତ୍ତା ରହିଲେ ସେମାନଙ୍କ ସହିତ ନଗିନ୍ ପାରିଖ ସମ୍ପର୍କ ରଖିଲେ । ସର୍ବାଙ୍ଗୀନ ଉନ୍ନତି ପାଇଁ ଓଡ଼ିଶା ସରକାରଙ୍କ ଠାରୁ ଏହି ସଂଘ ୭ ଲକ୍ଷ ୮୧ ହଜାର ଟଙ୍କା ଅନୁଦାନ ଆଣିଲେ । ଏହା ୧୯୫୯ର କଥା ।

ନଗିନ୍ ପାରିଖ ବୈପାରୀଗୁଡ଼ାରେ ଥିଲାବେଳେ ଶ୍ରୀ ଜୟପ୍ରକାଶ ନାରାୟଣ ନବରଙ୍ଗପୁର, ବୈପାରୀଗୁଡ଼ା, ଜୟପୁର ରାୟଗଡ଼ା ଆଦି ଅଞ୍ଚଳ ପରିଦର୍ଶନ କରି ଲୋକମାନେ କିପରି ସ୍ୱାବଲମ୍ବୀ ହେବେ ତାହା ବୁଝାଇଥିଲେ ।

୧୯୬୧ ମସିହା ନଭେମ୍ବର ମାସରେ ଏକ ମର୍ମନ୍ତୁଦ ପରିସ୍ଥିତିରେ ନଗିନ ପାରିଖଙ୍କର ଅକାଳ ମୃତ୍ୟୁ ଘଟିଲା ।

ବୈପାରୀଗୁଡ଼ା ବେସରକାରୀ ବ୍ଲକ ଭଲ କାମ କରୁନାହିଁ ବୋଲି ଓଡ଼ିଶା ସରକାର ଦୋଷାରୋପ କଲେ ବ୍ଲକ ହାତକୁ ନେବା ପାଇଁ । କିନ୍ତୁ ସରକାରୀ କାମଠାରୁ ବେସରକାରୀ କାମ ଭଲ ହେଉଥିଲା ବୋଲି ପରିଦର୍ଶକମାନେ ମତପୋଷଣ କରୁଥିଲେ । ଏହା ସରକାରଙ୍କ ସହଯୋଗ ଅଭାବରୁ ଭାଙ୍ଗିଲା ।

ସମାଜରେ ୧୯୫୫ରୁ ୧୯୬୦ ଭିତରେ ଏମିତି ନାନା ପରିବର୍ତ୍ତନ ଘଟୁଥିବା ସମୟରେ ମଧ ବିଶ୍ୱନାଥ ଆଞ୍ଚା ତାଙ୍କ ମୌଳିକ କର୍ତ୍ତବ୍ୟରେ କେବେ ଅବହେଳା କରିନଥିଲେ । ସେ ସବୁବେଳେ ଆଦିବାସୀ ପିଲାଙ୍କ ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ । ସେମାନଙ୍କ ମନୋବୃତ୍ତିକୁ ଲକ୍ଷ୍ୟ କରି ବିଶ୍ୱନାଥ ଆଞ୍ଚା କହନ୍ତି । ''ଆଦିବାସୀ ପିଲାମାନେ ଅଳ୍ପ ପାଠ ପଢ଼ି ଚାକିରି କରିବାକୁ ଆଗ୍ରହୀ, କାରଣ ବସ୍ତୁବାଦୀ ସଭ୍ୟତାରେ ସେମାନଙ୍କର ଅଧିକ ଆବଶ୍ୟକତାବୋଧ ନାହିଁ ।''

ଏମାନଙ୍କ ଶିକ୍ଷା ସମ୍ବନ୍ଧରେ ନିଜର ମତାମତ ଦେଇ ସେ କହନ୍ତି: ''ମୁଁ ବହୁଦିନରୁ ଛାତ୍ରଛାତ୍ରୀ ମାନଙ୍କୁ ନେଇ ଆଦିବାସୀ ଆଶ୍ରମ ସ୍କୁଲରେ ଭର୍ତ୍ତି କରାଏ । ଆଶ୍ରମ ସ୍କୁଲକୁ ଯଥେଷ୍ଟ ଛାତ୍ର ଯାଆନ୍ତି ନାହିଁ । ସେମାନଙ୍କର ସ୍କୁଲ ଯିବା ଅଭ୍ୟାସ ନଥିଲା । ଏବେ ମଧ ଗରିବ ଆଦିବାସୀ ଲୋକର ପିଲା ପାଠ ପଢ଼ିବାକୁ ଯାଉଛି କି ?'' ବିଶ୍ୱନାଥ ଆଞ୍ଚା କିଛି ସମୟ ନୀରବ ରହିଯାନ୍ତି, କିଛି ସମୟ ଚିନ୍ତାରେ ବୁଡ଼ି ଯାଆନ୍ତି । ତାପରେ କହନ୍ତି, ''ଭଦ୍ରକ ବାଳାଶ୍ରମ, ଦିଲ୍ଲୀ ହରିଜନ ଉଦ୍ୟୋଗ ଶାଳା, ଅନୁଗୁଳ, ରମ୍ଭା, ବ୍ରହ୍ମପୁରର ବେସରକାରୀ ଅନୁଷ୍ଠାନକୁ, ଛାତ୍ରଛାତ୍ରୀ ପଠାଏ । ପିତୃ-ମାତୃହୀନ ଆଦିବାସୀ ପିଲାଏ ସାଧାରଣତଃ ମାଟ୍ରିକ ପର୍ଯ୍ୟନ୍ତ ପଢ଼ି ଚାକିରି କରନ୍ତି ।''

ତାପରେ କିଏ କିଏ ପାଠ ପଢ଼ି କଣ ହୋଇଛନ୍ତି ତା'ର ତାଲିକା ଦିଅନ୍ତି । ଏହା ତାଙ୍କ ଚେଷ୍ଟାର ଫଳଶ୍ରୁତି ପରା । ପିତୃ ସ୍_ଲଭ ଖୁସି ଆଖିରେ ପହଁରିଯାଏ ଯେମିତି । ସେ

ମାପିଚୁପି କହନ୍ତି, ''କୁଜେନ୍ଦ୍ରୀ ଗାଁର ମାଧବ ଏବେ ଭୁବନେଶ୍ୱର ଆକାଉଣ୍ଟେଣ୍ଟ ଜେନେରାଲ ଅଫିସରେ ଚାକିରି କରୁଛନ୍ତି । ସାଣ୍ଟୁ ଶବର ପୋଷ୍ଟାଲ ଡ଼ିପାର୍ଟମେଣ୍ଟରେ ଅଫିସର ହେଇଛନ୍ତି । ସୁଦାମ ଗମାଙ୍ଗୋ ବିଏ ବି.ଏଡ୍ ପାଶ୍ କରି ଶିକ୍ଷକତା କରୁଛନ୍ତି । ଆଉ ଦୁଇ ତିନି ଜଣ ବି.ଏ. ପାଶ୍ କରି ଶିକ୍ଷକତା କରୁଛନ୍ତି । ମାଟ୍ରିକ ପାଶ କରି କେତେଜଣ ଶିକ୍ଷକତା କଲେଣି । ସେମାନେ ସର୍ବୋଦୟ କର୍ମୀଙ୍କ ସଂସ୍ପର୍ଶରେ ଆସି ଶିକ୍ଷାପ୍ରତି ଆଗ୍ରହୀ ହୋଇଛନ୍ତି ।''

ଯେତେବେଳେ କଥାପଡ଼େ କେହି କେହି ଆଗ୍ରହୀ ବନ୍ଧୁ ତାଙ୍କୁ ପଚାରି ଦିଅନ୍ତି, ''ଆଦିବାସୀଙ୍କ ସାମଗ୍ରିକ ଉନ୍ନତି ଦୃଷ୍ଟିରୁ ସେ ଯାହା କରିଛନ୍ତି ସେଥିରେ ସେ ସନ୍ତୁଷ୍ଟ କି ?'' କିଛି ସମୟ ଚିନ୍ତାକରି ବିଶ୍ୱନାଥ ଆଞ୍ଜା କହନ୍ତି, ''ଆଦିବାସୀ ମାନଙ୍କ ସାମୂହିକ ଉନ୍ନତି ଦୃଷ୍ଟିରୁ ବିଚାର କଲେ ଏହା ଅଧିକ ମନେ ହୋଇ ନ ପାରେ କିନ୍ତୁ ମୋ ପାଇଁତ ଗୋଟିଏ ପାଦ ଆଗକୁ ଯିବା ଯଥେଷ୍ଟ ବୋଲି ମୁଁ ବିଚାରୁଥିଲି । ଶିକ୍ଷା ଦିଗରେ ଅଧିକା କିଛି କରି ପାରିଲି ନାହିଁ ।''

ଏହି କିଛି କରି ନପାରିବାର ନ୍ୟୂନଭାବ ହିଁ ତାଙ୍କର ବଡ଼ ଗୁଣ । ଯିଏ କରେ ସିଏ କହେ ନାଇଁ, ଏହା ଆମ ସଭ୍ୟତା, ସଂସ୍କୃତି, ପରମ୍ପରା । କେଉଁମାନେ ଯଶ ଲୋଡ଼ନ୍ତି, ଶାସ୍ତ୍ର କହିଛି, 'ମନ୍ଦକବି ଯଶଃ ପ୍ରାର୍ଥୀ' ।

ନିଜ କାର୍ଯ୍ୟକାଳ ଓ ତାହାର ପ୍ରଭାବ ତଥା ଫଳାଫଳକୁ ବିଶ୍ଳେଷଣ କରି ବିଶ୍ୱନାଥ ଆଞ୍ଜା ଯେଉଁ ସିଦ୍ଧାନ୍ତରେ ପହଞ୍ଚିଲେ, ତାହା ସତ୍ୟ, ସିଦ୍ଧ ଓ ଅନୁଭୂତି ଆଧାରିତ ଥିଲା । ନିଜର ମନରେ ଉଙ୍କି ମାରୁଥିବା କେତେକ ପ୍ରଶ୍ନର ସମାଧାନ ସ୍ୱରୂପ ସେ ସ୍ୱୀକାର କଲେ, ''କେବଳ ଶିକ୍ଷା ଦିଗରେ ନୁହେଁ ଆଦିବାସୀମାନଙ୍କୁ ମହାଭାରତୀୟ ସ୍ରୋତରେ ସମତାଳରେ ନେବାପାଇଁ ଆମେ ଯଥେଷ୍ଟ କିଛି କରି ପାରିଲୁ ନାହିଁ ।''

ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁପରେ କର୍ମୀମାନଙ୍କ ମନରେ ଯେଉଁ ପରିବର୍ତ୍ତନ ଦେଖାଗଲା ତାହା ନିଶ୍ଚିତ ଭାବେ ତାଙ୍କୁ ବ୍ୟଥିତ କରିଥିଲା । ଅଣ୍ଣା ସାହେବଙ୍କ ନିର୍ମାଣ କାର୍ଯ୍ୟରେ ଯୋଗଦେବା ପରେ କର୍ମୀମାନେ ଆଉ ଆଗଭଳି ତ୍ୟାଗ, ନିଷ୍ଠା, ଆଦର୍ଶ ଦେଖାଇଲେ ନାହିଁ । ତାହା ଦେଖି ସେ ମତ ପ୍ରକାଶ କଲେ, ''କର୍ମୀମାନେ ନିଜେ ଭଲରେ ଚଳିବା ସାଙ୍ଗେ ସାଙ୍ଗେ ସମାଜସେବା କରିବା ଉଚିତ ବୋଲି ଅନ୍ନାଙ୍କ ଠାରୁ ଶିଖିଥିଲେ । ଅନ୍ନା ଗଲାପରେ ଅଧିକାଂଶ ସମାଜ ସେବାକୁ ମୁଖ୍ୟ କାର୍ଯ୍ୟ ବୋଲି ବିଚାରିଲେ ନାହିଁ ।

ଆଦିବାସୀଙ୍କ ନେତୃତ୍ୱ ନେବାକୁ ଚେଷ୍ଟାକଲେ । ତେଣୁ ସେମାନେ ଆଦିବାସୀଙ୍କୁ ଯଥେଷ୍ଟ ସମ୍ମାନ ଦେଇ ଉପରସ୍ତରକୁ ଆଣିଲେ ନାହିଁ । ନେତୃତ୍ୱ ନିଜଠାରେ ରଖିବାକୁ ଚେଷ୍ଟାକଲେ ।''

ପୁନଶ୍ଚ ୧୯୫୬ ପରେ ଯେତେବେଳେ ଓଡ଼ିଶାରେ ବ୍ଲକ ଜରିଆରେ ଗାଁ ଲୋକଙ୍କ ଉନ୍ନତି ପାଇଁ ସରକାର ପଦକ୍ଷେପ ନେଲେ, ବଳବନ୍ତ ରାୟ ମେହେଟାଙ୍କ ସୁପାରିଶ କ୍ରମେ ୧୯୫୭ ପରେ ପଞ୍ଚାୟତରାଜର ବ୍ୟବସ୍ଥା ହୋଇ ତ୍ରିସ୍ତରୀୟ ପଞ୍ଚାୟତ ଶାସନର ନିୟମମାନ ପ୍ରଣୟନ ହୋଇ ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି, ଜିଲ୍ଲା ପରିଷଦ ମାଧ୍ୟମରେ ବେତନଭୋଗୀ ସରକାରୀ କର୍ମଚାରୀମାନେ କାମ ଆରମ୍ଭ କଲେ । ଏହାକୁ ଲକ୍ଷ୍ୟକରି ବିଶ୍ୱନାଥ ଆଜ୍ଞା କହିଲେ, ''ସରକାର ବ୍ଲକ ଜରିଆରେ ଲୋକମାନଙ୍କ ମଧ୍ୟରେ ଉନ୍ନୟନ କାର୍ଯ୍ୟ ଆରମ୍ଭ କରିବା ଫଳରେ ଭୂଦାନ କର୍ମୀଙ୍କ ଗୁରୁତ୍ୱ ଲୋକ ଚକ୍ଷୁରେ ନ୍ୟୁନ ହୋଇ ଗଲା । ଭୂଦାନକର୍ମୀ ମାନେ ଅତ୍ୟାଚାରର ବିରୋଧ ନ କରି ସମୟ ସମୟରେ ସରକାରୀ କଳ ଉପରେ ନିର୍ଭର କଲେ ।''

୧୯୬୦ ମସିହା ସମୟକୁ ଗୁଣୁପୁର, ରାୟଗଡ଼ା, ପାରଳାଖେମୁଣ୍ଡି ଅଞ୍ଚଳରେ କମ୍ୟୁନିଷ୍ଟ ମାନଙ୍କ ପ୍ରଭାବ ବଢ଼ିଲା । ବହୁ ଆଦିବାସୀ ଭୁଦାନ କର୍ମୀ, କମ୍ୟୁନିଷ୍ଟ ପ୍ରଚାରରେ ପ୍ରଭାବିତ ହୋଇ ଗାନ୍ଧୀମାର୍ଗ ଛାଡ଼ି ହିଂସାମାର୍ଗୀ ହୋଇଗଲେ । ଭୂଦାନ କର୍ମୀମାନେ ହିଂସାର ମାର୍ଗ ଯେ ଧ୍ୱଂସ ଓ ଅନିଷ୍ଟର ମାର୍ଗ ଏହା ବୁଝାଇବାରେ ସଫଳ ହୋଇପାରିଲେ ନାହିଁ । ଭୁବନମୋହନ ପଟ୍ଟନାୟକ, ପୂର୍ଣ୍ଣ ଗମାଙ୍ଗୋ, ନାଗଭୂଷଣ ପଟ୍ଟନାୟକ ଓ ଅନ୍ୟମାନଙ୍କ ଭୂମିଗତ ସଂଗଠନ ଏତେ ସଫଳ ହେଲାଯେ ଏକରକମ ଗାନ୍ଧୀବାଦ ଓ ସାମ୍ୟବାଦର ସଂଘର୍ଷ ଦେଖାଗଲା ।

କେତେକ ଜାଗାରେ ଆଦିବାସୀମାନେ ଯୁଗ ଯୁଗର ଅତ୍ୟାଚାରରୁ ରକ୍ଷା ପାଇବାପାଇଁ ସ୍ୱତଃସ୍ଫୁର୍ତ୍ତ ଭାବେ ହିଂସାକାଣ୍ଡମାନ ଭିଆଇଲେ । ଏମିତି ଗୋଟାଏ ହିଂସାକାଣ୍ଡ ଘଟିଗଲା ୧୯୬୧ ମସିହାରୁ ୧୯୬୩ ମସିହା ଭିତରେ । ମୂଳରେ ଥିଲା ବହୁବର୍ଷର ଆଦିବାସୀଙ୍କ ଅସନ୍ତୋଷ ଓ ଧନୀ ଜମିମାଲିକଙ୍କ ଚଞ୍ଚକତା । ବିଶ୍ୱନାଥ ଆଜ୍ଞା ଏ ସମ୍ବନ୍ଧରେ କହନ୍ତି, ନିଜର ଅନୁଭୂତିର ପ୍ରତ୍ୟକ୍ଷ ଦେଖାରୁ ହରିମିଶ୍ର ନାମକ ଜଣେ ବ୍ୟକ୍ତିଙ୍କର କଥା ।

## ବାଲିଖମାର ହରିମିଶ୍ର :

କୋରାପୁଟ ଜିଲ୍ଲାର ଯେଉଁ ସ୍ଥାନ ଗୁଡ଼ିକରେ ହିଂସାକାଣ୍ଡ ଘଟିଥିଲା ତାହା ସେତେବେଳେ କମ୍ୟୁନିଷ୍ଟମାନେ କରି ନଥିଲେ, ଅବଶ୍ୟ ସାମ୍ୟବାଦୀ ଚିନ୍ତାଧାରା କଥା

ପ୍ରଚାର ହେଉଥିଲା । କମ୍ୟୁନିଷ୍ଟଙ୍କ ପ୍ରଭାବ ତେଲଙ୍ଗାନାରେ ଯେତେଥିଲା, କୋରାପୁଟ ଜିଲ୍ଲାରେ ସେତେନଥିଲା । ତା ଆଗରୁ ଭୂଦାନ କର୍ମୀଙ୍କ ପ୍ରଭାବ କୋରାପୁଟ ଆଦିବାସୀଙ୍କ ଉପରେ ପଡ଼ିଥିବାରୁ ସତ୍ୟ ଓ ଅହିଂସାର ଆଦର୍ଶ କିଛିକାଂଶରେ କାମ କରିଥିଲା, ତଥାପି ହିଂସାକାଣ୍ଡ ଘଟିଲା, ଏହା ହିଁ ବାସ୍ତବିକ କଥା । ଏଠି ହିଂସାକାଣ୍ଡର ଗୋଟିଏ ଉଦାହରଣ ଦେବା ଉଚିତ ହେବ ।

କୋରାପୁଟ ଜିଲ୍ଲାର ରାୟଗଡ଼ା ସବ୍‌ଡ଼ିଭିଜନ, ମାଳ ମାଳ ପାହାଡ଼, ଘଞ୍ଚବଣ, ପାହାଡ଼ୀ ନଈ, ବାଘଭାଲୁଙ୍କ ବାସସ୍ଥାନ । ଏହି ସବ୍ ଡ଼ିଭିଜନର ସହର ରାୟଗଡ଼ା, ରାୟଗଡ଼ାରୁ ଗଲେ ଥେରୁବାଲି ବୋଲି ଗାଁଟିଏ ପଡ଼େ । ୧୯୫୨-୫୫ ବେଳକୁ ଏହା ଗୋଟିଏ ଆଦିବାସୀ ଗାଁ । ଏବେ ଏଠି ଇଣ୍ଡିଆନ୍ ମେଟାଲ୍‌ସର ବଡ଼ କାରଖାନା । ଘର ଦୁଆର କୋଠା ବାଡ଼ି, ଲୋକ ହାଉଜାଉ । ଗାଡ଼ିଘୋଡ଼ା, କେତେକଣ ?

ଥେରୁବାଲି ପାଖରେ ଗୋଟିଏ ଐତିହାସିକ ଗାଁ ପାଇକପଡ଼ା । ବୋଧହୁଏ ଗୁଣୁପୁରର ରାଜା ଯଶୋବନ୍ତ ଦେଓଙ୍କ ନାତି ଶଙ୍କର ଦଶମନ୍ତ କିମ୍ୱା ରାୟଗଡ଼ା ଅଞ୍ଚଳକୁ ଶାସନ କରୁଥିବା ମୁକୁନ୍ଦ ଦେଓଙ୍କ ସମୟରେ କେତୋଟି ପାଇକ ବା ସିପାହୀ ଏହି ଗାଁରେ ବାସ କରୁଥିବାରୁ ଏହାର ନାମହେଲା ପାଇକ ପଡ଼ା । ପାଇକପଡ଼ା ଗାଁରୁ ଅଳ୍ପଦୂରରେ ଅଛି ବାଲିଖମାର ଗାଁ । ଛୋଟିଆ ଗାଁଟିଏ । ସେହି ଗାଁର ଯେତେ ଜମିଥିଲା ତାହା ହରିମିଶ୍ର ନାମକ ଜଣେ ପ୍ରଭାବଶାଳୀ ଲୋକଙ୍କର ମାଲିକାନା ସ୍ୱତ୍ୱଭାବେ ରହିଥିଲା । ହରିମିଶ୍ରଙ୍କ ଏହି ଜମି ଅଧିକାରକୁ ନେଇ ୧୯୫୦ରୁ ୧୯୬୧ ଭିତରେ ଆଦିବାସୀଙ୍କ ଦ୍ୱାରା ବାରମ୍ବାର ଆପତ୍ତି, ଅଭିଯୋଗ କରା ଯାଉଥିଲା । କେଶ୍ ଦରବାର ହେଉଥିଲା ।

ହରିମିଶ୍ର ଥିଲେ କାଶୀପୁର ରାଜାଙ୍କର ଦେଓ୍ୱାନ । ତାଙ୍କ ଜମିଦାରୀର ଜମିବାଡ଼ି ଦେଖାଶୁଣା କରିବା ପାଇଁ ରାଜା ତାଙ୍କୁ ନିଯୁକ୍ତି ଦେଇଥିଲେ । ରାଜ ଅନୁଗ୍ରହରେ ତାଙ୍କ ଭୋଗଭାଗ୍ୟ, ସୁଖ ସୁବିଧା ବଢ଼ିଲା; ତା ସହିତ ବଢ଼ିଲା ନିଜକୁ ସମ୍ଭ୍ରାନ୍ତ ବୋଲାଇବାର ନିଶା । ସେତେବେଳେ ସମ୍ଭ୍ରାନ୍ତ ବୋଇଲେ ବହୁତ ଜମିବାଡ଼ି ଥିବା ଲୋକ । କ୍ଷମତା ଥିବା ଲୋକ । ପୁଞ୍ଜେ ପାଞ୍ଚୁଟା ଆଗରେ ପଛରେ ଟହଲିଆ । ଘରେ ବାହାରେ ଦଶ ବାରଟା ଗୋତି ଖଟୁଥିବେ । ଘରେ ବି ଦି ଚାରିଟା କାମ କରିବା ସ୍ତ୍ରୀ ଲୋକ କଂସାଗିନା ମଜା ଘର ଧୁଆରୁ, ଛୁଆକନା ସଫାକରିବା ପାଇଁ ଥିବେ । ଘରେ ଗାଈ, ଗୋରୁ, ସୁନା, ରୁପା, ଆୟ, ଅଳଙ୍କାର ଯାହାକୁ ଯେତେ ଥିବେ ଆଉ ହରିମିଶ୍ର ଯେହେତୁ କାଶୀପୁର ରଜାଙ୍କ ପାଖ ଲୋକ, ଏ ସବୁ ତାଙ୍କ ହାତକୁ ଆସିବା ସ୍ୱାଭାବିକ ଥିଲା । ସେ ନିଜକୁ ଉଚ୍ଚ ମଧ୍ୟବିତ୍ତ ପରିବାରରେ ସାମିଲ କରିବାକୁ ଯତ୍ନ କରିଥିଲେ ।

ହରିମିଶ୍ରଙ୍କ ପିତୃ ପିତାମହ କୋରାପୁଟ ଜିଲ୍ଲାବାହାରୁ ଆସି ପାଇକପଡ଼ାରେ ବସାବାନ୍ଧି ରହିଲେ । ଜମିବାଡ଼ି ସମ୍ପାଦିଲେ । ହରିମିଶ୍ର ରାୟଗଡ଼ା ସହରର ବସ୍‌ଷ୍ଟାଣ୍ଡ ପାଖରେ ଲମ୍ବା ପକ୍‌କାଘର ତିଆରିକଲେ । ସେ ସବୁଘର ଦୋକାନ ପାଇଁ ଭଡ଼ା ଦେଲେ । ଭଲ ଦି ପଇସା ପାଇଲେ । ତେଣେ ପାଇକପଡ଼ା ପାଖରେ ଥିବା ବାଲିଖମାରରେ ଥିବା ଆଦିବାସୀ ମାନେ ଉଠିଆ କରିଥିବା ସବୁତକ ଜମି ହରିମିଶ୍ର ନାନା ଫନ୍ଦିଫିକର କରି, ଶାଗ ମାଛ ମୂଲରେ କିଣି ନେଲେ । କନ୍ଧମାନେ, ନିଜର ଅଭାବ ଓ ଅଜ୍ଞତା ଯୋଗୁଁ ସବୁ ଜମି ହରାଇଲେ, ଯାହା ଦିନେ ସେମାନଙ୍କର ନିଜସ୍ୱ ଥିଲା ।

ଥରେ ଦୁଇଥର ଆଦିବାସୀ ମାନେ ହରିମିଶ୍ରଙ୍କୁ ଜମି ଫେରାଇ ଦେବାକୁ କହିଲେ । ଅନୁରୋଧ କଲେ, ଫଳ କିଛି ହେଲା ନାହିଁ ବରଂ ହରିମିଶ୍ରଙ୍କ ଲୋକେ ଠେଙ୍ଗା ବଳରେ, ପୋଲିସ ବଳରେ ନିଜ କର୍ତ୍ତୃତ୍ୱ ଜାହିର କଲେ । ଏହା ୧୯୫୫ ପୂର୍ବର କଥା ।

୧୯୫୦ ବେଳକୁ କୁଜେନ୍ଦ୍ରୀ ଅଞ୍ଚଳରେ ବିଶ୍ୱନାଥ ଆଞ୍ଚାଙ୍କ ନେତୃତ୍ୱରେ ଭୂ-ସତ୍ୟାଗ୍ରହୀ ସମାଜ ଗଢ଼ାଗଲା । ୧୯୫୧-୫୨ ବେଳକୁ ପାଇକପଡ଼ା ଅଞ୍ଚଳରେ ଭୂଦାନକର୍ମୀମାନେ କାମ ଆରମ୍ଭ କଲେ । ଗାଁ ଗାଁ ବୁଲି ଅହିଂସାର ବାର୍ତ୍ତା ପ୍ରଚାରକଲେ । ଲୋକମାନଙ୍କୁ ନିଜର ସମସ୍ୟା ଆଲୋଚନା କରି ସମାଧାନ କରିବାପାଇଁ ବୁଝାଇଲେ ।

ସେତେବେଳେ ବିଶ୍ୱନାଥ ଆଞ୍ଚା ନବଜୀବନ ମଣ୍ଡଳର ସଭାପତି ଥାନ୍ତି । ତାଙ୍କ ଚେଷ୍ଟା ଫଳରେ ସଂଖଳପଦର ଗାଁରେ ନବଜୀବନ ମଣ୍ଡଳର କେନ୍ଦ୍ରଥିଲା । ସଂଖଳପଦରରୁ ବାଲିଖମାର ଏକ କିଲୋମିଟରରୁ କମ ବାଟ ହେବ । ଆଗରୁ ଭୂ-ସତ୍ୟାଗ୍ରହୀ-ସମାଜ ଗଢ଼ା ହୋଇ ଜମି ଯେଉଁ ଲୋକ ଚାଷ କରୁଛି ଓ ଯାହାର ଜମି ଅନ୍ୟାୟ ମାର୍ଗରେ ଅପହରଣ କରା ହୋଇଛି, ସେ ଜମି ତା'ର ହେଉ ବୋଲି ଆନ୍ଦୋଳନ ଆରମ୍ଭ କରା ଯାଇଥିଲା ।

୧୯୫୨ ମସିହାର ଶୀତଦିନ । ଦିନେ ବିଶ୍ୱନାଥ ଆଞ୍ଚା, ଈଶ୍ୱରଲାଲ ବ୍ୟାସ, ରତନଦାସ ଓ ଅନ୍ୟ କେତେକ କର୍ମୀ ହରିମିଶ୍ରଙ୍କୁ ଭେଟିଲେ । ବିଶ୍ୱନାଥ ଆଞ୍ଚା ନିଜ ସ୍ୱଭାବ ସୁଲଭ ଢଙ୍ଗରେ ହରିମିଶ୍ରଙ୍କୁ ସେ ଅନ୍ୟାୟରେ ବାଲିଖମାର ଜମି ଅଧିକାର କରିଥିବାରୁ ସେଥିରୁ କିଛି କନ୍ଧ ଆଦିବାସୀଙ୍କୁ ଦେଇଦେବା ପାଇଁ ଅନୁରୋଧ କଲେ । ସେ ହରିମିଶ୍ରଙ୍କୁ କହିଲେ ''ପରିବେଶ ବଦଳିଗଲାଣି । ପରିବର୍ତ୍ତିତ ପରିସ୍ଥିତି ସହ ଚଳିବା ଭଲ । ଆଦିବାସୀମାନେ ତ ଆପଣଙ୍କ ନାମରେ ମୋକଦ୍ଦମା କରୁଛନ୍ତି । ଆପଣ ତାଙ୍କୁ କିଛି ଜମି ଛାଡ଼ି ଦିଅନ୍ତୁ । ବାଲିଖମାର କନ୍ଧମାନେ ଜମି ବାବଦରେ କିଛି ପଇସା ଦେବା ପାଇଁ ପ୍ରସ୍ତୁତ ଅଛନ୍ତି । ଆପଣଙ୍କ ତରଫରୁ ସହୃଦୟତା ପ୍ରଥମେ ପ୍ରକାଶ ପାଇବା ଉଚିତ ।''

ହରିମିଶ୍ରେ ବୁଝି ବି ବୁଝିଲେ ନାହିଁ । ଏମିତି କିଏ ଜମି ଛାଡ଼ି ଦେଲାଣି ଯେ ସେ ଛାଡ଼ିଦେବେ । ସହୃଦୟତା ପ୍ରକାଶର କଥା ତ ଦୂରର କଥା, ବରଂ ଏହା ଅନ୍ୟମାନଙ୍କର ତାଙ୍କ ଅଧିକାର ଉପରେ ଅଯଥା ହସ୍ତକ୍ଷେପ ସିନା । ଯଦିଓ ସେ ଏକଥା ମୁହଁ ଖୋଲି କହିଲେ ନାହିଁ, ପରବର୍ତ୍ତୀ କାର୍ଯ୍ୟକଳାପରେ ତାଙ୍କର ଏହି ମନୋଭାବ ପ୍ରତିଫଳିତ ହେଲା । ସେ ବିଶ୍ୱନାଥ ଆଜ୍ଞାଙ୍କ କଥାକୁ ଗୁରୁତ୍ୱ ଦେଲେ ନାହିଁ ।

୧୯୫୨ ରୁ ୧୯୬୦ ଯାଏ ଦୀର୍ଘ ଆଠ ବର୍ଷକାଳ ଆଦିବାସୀ ଓ ହରିମିଶ୍ରଙ୍କର ଜମି ଅଧିକାରକୁ ନେଇ କେସ୍ ଚାଲିଲା । ଆଦିବାସୀ ଖର୍ଚ୍ଚାନ୍ତ ହେଲେ । ତଳିତଳାନ୍ତ ହେଲେ । କୋର୍ଟରେ ବାୟଦା ବଢ଼ି ବଢ଼ି ଗଲା । ସବୁବେଳେ ଚିତାପଟ ହେଲା ହରିମିଶ୍ରଙ୍କର । ଆଦିବାସୀଙ୍କ ଅସନ୍ତୋଷ ବଢ଼ିଲା । ସେମାନେ ବଳ ପୂର୍ବକ ନୋଟିସ୍ ଦେଇ ହରିମିଶ୍ରଙ୍କ ଜମିରେ ହଳ ପୂରାଇଲେ । ଜମି ଚଷିଲେ । ମାଡ଼ ଖାଇଲେ । ପୋଲିସର ଧମକ, ନାଲିଆଖି ଦେଖିଲେ । ଏମିତି ବର୍ଷକୁ ବର୍ଷ । ଏହା ତାଙ୍କ ପିତୃପୁରୁଷଙ୍କ ଜମି । ହରିମିଶ୍ରେ ମାଡ଼ି ବସିଛନ୍ତି । ଯାହାପଛେ ହେଉ ସେମାନେ ଜମି ନିଜ ହାତକୁ ନେବେ । ଏମିତି ଏକ ଦୃଢ଼ ନିଶ୍ଚୟ କଲେ ସେମାନେ ।

ବିଶ୍ୱନାଥ ଆଜ୍ଞା, ଭୂଦାନକର୍ମୀଙ୍କ ପରାମର୍ଶ ହରିମିଶ୍ରଙ୍କ ପାଇଁ ପାଣିର ଗାର ହୋଇଗଲା । ଅର୍ଥ, କ୍ଷମତା, ପ୍ରତିପତ୍ତି ହେଇଗଲା ପରେ ମଣିଷ ଅନ୍ଧ ହୋଇଯାଏ । ଏହା ହିଁ ସାଧାରଣ ସତ୍ୟ । ବହୁ କମ୍ ଲୋକ ଅର୍ଥ, କ୍ଷମତା, ପ୍ରତିପତ୍ତି ଥିବା ସତ୍ତ୍ୱେ ଏହାର ମୋହରେ ପଡ଼ି ନଥାନ୍ତି । ନିରୀହ ଆଦିବାସୀଙ୍କ ଜମିକୁ ହାତେଇ, ମୋକଦ୍ଦମାରେ ବାଲିଖମାର କନ୍ଧଙ୍କୁ ନାକବାଳ କରାଇ ନିଜ ପ୍ରଭୁସତ୍ତାର ଟେକ ରଖିବା ମନୋବୃତ୍ତି ହିଁ ହରିମିଶ୍ରଙ୍କୁ ସର୍ବନାଶ ଆଡକୁ ବାଟ କଢ଼ାଇ ନେଲା ।

୧୯୬୧ ମସିହା । ବର୍ଷା ଆରମ୍ଭ ହେଇଛି । ଜମି ଚାଷକରିବା ସମୟ । ବାଲିଖମାରର କନ୍ଧମାନେ ହରିମିଶ୍ରଙ୍କ ଜମିଚଷିବେ ଏବର୍ଷ । ସେତେବେଳକୁ ଜ୍ୟେଷ୍ଠ ମାସ । କୋରାପୁଟ ଜିଲ୍ଲାରେ ଏଇ ମାସରୁ ବର୍ଷା ଆରମ୍ଭ ହୋଇଯାଏ । ହରିମିଶ୍ରେ ସକାଳୁ ରାୟଗଡ଼ାରୁ ବାହାରିଲେ । ଜମିବାଡ଼ି ଦେଖିଲେ । କେତେଜଣ କନ୍ଧଙ୍କୁ ଡ଼ରା ଧମକା କଲେ । ପୋଲିସର ଭୟ ଦେଖାଇଲେ । ରଜାଘର ଲୋକ । ଡ଼ର କାହାକୁ ନା ଭୟ କାହାକୁ । କାଶୀପୁର ରଜା ମରିଗଲା ପରେ ରାଣୀ ତାଙ୍କୁ ଭାର ଦେଇଛନ୍ତି ନିଜ ଜମିବାଡ଼ ରକ୍ଷଣା ବେକ୍ଷଣର । ବେଳ ଗଡ଼ିଲା । ଆକାଶରେ ମେଘ । ହରିମିଶ୍ରେ ବାଲିଖମାର ଛାଡ଼ିଲେ ।

ବାଲିଖମାର ଗାଁରୁ ଅଳ୍ପଦୂରରେ ଠିଆ ହୋଇଛି ଛୋଟିଆ ପାହାଡ଼ । ଦେହସାରା ବାଉଁଶ ଓ ଅନ୍ୟଗଛକୁ ଲଦି । ମହୁଲ, ସର୍ଗି ବଣ ଭିତର ଦେଇ ପାହାଡ଼ କଡ଼ ଦେଇ ପାଦ ଚଲା ରାସ୍ତା । ହରିମିଶ୍ରେ ଛତା ମୁଣ୍ଡେଇ, ବାଡ଼ିଧରି ପାହାଡ଼ତଳେ ପହଞ୍ଚିଲେ । ସାଙ୍ଗରେ ଜଣେ ଦିଜଣ ଗୋତି, କବାଡ଼ି । ସୂର୍ଯ୍ୟ ଦିଶୁ ନାହାନ୍ତି ଅନ୍ଧାର ହେବାକୁ ବେଳ ଅଛି ହଠାତ୍ ପାହାଡ଼ ପାଖରୁ ଧାଇଁ ଆସିଲେ ଚାରି ଛ ଜଣ କନ୍ଧ ଯୁବକ, ଯାହାର ପୂର୍ବପୁରୁଷଙ୍କ ଜମି ମାଡ଼ି ବସିଛନ୍ତି ହରିମିଶ୍ରେ । ସେମାନଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଗଲା ଯେମିତି । ଅତର୍କିତ ଭାବେ ସେମାନେ ଆକ୍ରମଣ କଲେ ହରିମିଶ୍ରଙ୍କୁ । ଫାର୍ସାର ଧାରରେ ମୁଣ୍ଡ ଗଣ୍ଡିରୁ ଅଲଗା ହୋଇଗଲା ତାଙ୍କର । ଗଛ କାଟିଲା ପରି ସେ ତଳେ ପଡ଼ିଗଲେ । ମାଟି ସାରା ରକ୍ତ ବୋହିଗଲା । କଟାଦେହଟା ଛଟପଟ ହୋଇ ସ୍ଥିର ହୋଇଗଲା । ପଛରେ ପଡ଼ି ରହିଲା ସମସ୍ତ ଅର୍ଜିତ ସମ୍ପତ୍ତି । ସାରାରାତି ସେଇ ମଲାଦେହ ପାହାଡ଼ ପାଖରେ ପଡ଼ି ରହିଲା ଅର୍ଖିତ ହୋଇ । ସକାଳ ହେଲା ।

ଖବର ବ୍ୟାପିଗଲା ବାଲିଖମାର ର କନ୍ଧମାନେ ସେଠାରେ ଲୁଚିରହି ହରିମିଶ୍ରଙ୍କୁ ହାଣିଦେଲେ । ତା ଆରଦିନ ସକାଳେ ତାଙ୍କ ଶବକୁ ରାୟଗଡ଼ା ଅଣାଗଲା । ପୋଲିସ ରାୟଗଡ଼ାରୁ ଘଟଣା ଅନୁସନ୍ଧାନ ପାଇଁ ରେଳରେ ବସି ଗଲେ ଥେରୁବାଲି ।

ଏହି ମର୍ମନ୍ତୁଦ ଘଟଣା ଶୁଣି ସ୍ତବ୍ଧ ହୋଇଗଲେ ବିଶ୍ୱନାଥ ଆଞ୍ଚା । ଆଦିବାସୀମାନେ ଯେ ଏମିତି ଏକ ଚରମ ପଦକ୍ଷେପ ନେବେ ଏହା ତାଙ୍କ କଳ୍ପନାରେ ସୁଦ୍ଧା ନଥିଲା । ହିଂସା ଓ ରକ୍ତପାତର ଘୋର ବିରୋଧି ବିଶ୍ୱନାଥ ଆଞ୍ଚା କିଛିକ୍ଷଣ ପାଇଁ ନୀରବ ରହିଗଲେ ରାୟଗଡ଼ାର ଠକ୍‌କର ବାପା ଆଶ୍ରମରେ ରହୁଥିବା ତାଙ୍କ କୋଠରୀରେ । ହଠାତ୍ ତାଙ୍କ ମନକୁ ଚିନ୍ତା ଘାରିଲା । ବାଲିଖମାର ପାଖ ସଙ୍ଖଳ-ପଦର ଗାଆଁରେ ନବଜୀବନ ମଣ୍ଡଳ କର୍ମୀମାନେ ରହୁଛନ୍ତି । ସେମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ, ପ୍ରଚାର ସମ୍ବନ୍ଧରେ ପୋଲିସ ଜାଣନ୍ତି । କାଳେ ପୋଲିସ ସେମାନଙ୍କୁ ସନ୍ଦେହ କରି ଦମନ ମୂଳକ କାର୍ଯ୍ୟ କରିବସିବେ ତାହେଲେ କର୍ମୀମାନଙ୍କ ମନୋବଳ ଭାଙ୍ଗି ପଡ଼ିବ । ସେମାନଙ୍କ ଅହିଂସ କାର୍ଯ୍ୟକଳାପକୁ ଯେ ସମସ୍ତେ ବିଶ୍ୱାସ କରିବେ ଏହାବି କହିହେବ ନାହିଁ । ହରିମିଶ୍ରଙ୍କ ହତ୍ୟାଫଳରେ ସେ ଅଞ୍ଚଳର ପରିସ୍ଥିତି ଯେ ଅସାମାନ୍ୟ ହୋଇ ଉଠିବ ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ସଙ୍ଖଳପଦରର କର୍ମୀମାନଙ୍କୁ ନୈତିକ ବଳଦେବା ପାଇଁ ସେ ରେଳରେ ଯାଇ ଥେରୁବାଲି ଷ୍ଟେସନରେ ଓହ୍ଲାଇଲେ ।

ସେତେବେଳକୁ ଥେରୁବାଲି ରେଳଷ୍ଟେସନରେ ପୋଲିସ ଜମିଗଲେଣି । ବିଶ୍ୱନାଥ ଆଞ୍ଚାଙ୍କ କୃଷ୍ଣବର୍ଣ୍ଣ ଚେହେରା, ଝୁଲାମୁଣି, ଆଣ୍ଠୁ ଲୁଚୁନଥିବା ଖଦଡ଼ ଲୁଗାକୁ ଦେଖି ପୋଲିସ ସନ୍ଦେହ କଲେ ନାହିଁ, ଥେରୁବାଲିରୁ ଚାଲି ଚାଲି ଯାଇ ସେ ପହଞ୍ଚିଲେ ବାଲିଖମାରରେ । ସେ ଦେଖିଲେ ଗାଁଟା ଯାକର ଲୋକ ହରିମିଶ୍ରଙ୍କ ଘର ପାଖ ବାଡ଼ିଖଲା ଚାଷ କରି ଯାଉଛନ୍ତି । ହଳ ଚାଲିଛନ୍ତି । ଲଙ୍ଗଳ ବୁଲୁଛି । ନା ସେମାନଙ୍କ ମନରେ ହରିମିଶ୍ର ହଣା ହେବାର କୌଣସି ପ୍ରତିକ୍ରିୟା ଥିଲା ନା ଭୟ । ସେମାନେ ବିଶ୍ୱନାଥ ଆଞ୍ଚାଙ୍କୁ ଜୁହାର ହୋଇ କହିଲେ, ‘‘ଆଞ୍ଚା, ମିଶ୍ର ଆମ ଜମି ମଧ୍ୟ ଜବରଦସ୍ତ ଚାଷ କରିଦେବାରୁ ଆମେ ତାଙ୍କୁ ହାଣିଦେଲୁ ବୋଲି କହିବୁ ।’’

ସେ ଶୁଣିଲେ ସେମାନଙ୍କ କଥା । ତାଙ୍କ ସହିତ କିଛି ସମୟ କଟାଇଲେ ବୁଝାଇବାକୁ ଚେଷ୍ଟାକଲେ, ମଣିଷ ମାରିବା ଠିକ ହେଲା ନାହିଁ । ତାପରେ ବାଲିଖମାରରୁ ସଙ୍ଖଳ-ପଦର ଓ ଡୁମୁରିଗେଡ଼ା ଗଲେ । ସଞ୍ଜବେଳେ ଫେରିଲେ ସଙ୍ଖଳ ପଦର । ପୋଲିସ ଲୋକଙ୍କୁ ମତାଇବା ସନ୍ଦେହରେ ଜଣେ ଭୂଦାନ କର୍ମୀ ବାବାଜୀ ସାହୁଙ୍କୁ ଗିରଫ୍ କଲେ । ନବଜୀବନ ମଣ୍ଡଳର ନାରୀକର୍ମୀ ଅପନ୍ନା ମହାପାତ୍ର ଓ ଅନ୍ୟଜଣେ ନାରୀ କର୍ମୀଙ୍କୁ ସାହସ ଦେଇ ବିଶ୍ୱନାଥ ଆଞ୍ଚା ଫେରିଲେ ରାୟଗଡ଼ା । ପୋଲିସ୍ ଅନେକ ଲୋକଙ୍କୁ ଧରିନେଲେ । ବହୁଦିନ ଯାଏ ଅନୁସନ୍ଧାନ ଚାଲିଲା ।

ଏହି ଘଟଣାର ବିଶ୍ଳେଷଣ କରି ବିଶ୍ୱନାଥ ଆଞ୍ଚା କହିଲେ, ‘‘ମାରିବାତ ନିଶ୍ଚିତଭାବେ ଠିକ୍ ନୁହେଁ, କିନ୍ତୁ ମିଶ୍ରଙ୍କୁ ଯେତିକି ବୁଝାଇଲୁ ସେତିକିରୁ ସେ କିଛି ଗ୍ରହଣ କରିବା ଉଚିତ ଥିଲା । ଲୋକମାନେ ବହୁଦିନରୁ ଉତ୍ୟକ୍ତ ହୋଇ ରହିଥିଲେ । ହରିମିଶ୍ରେ ବା ତାଙ୍କର ପୂର୍ବପୁରୁଷ ନାଯ୍ୟ ମୂଲ୍ୟରେ ଜମି କିଣି ଥିବାର ସନ୍ଦେହ ହେଉଛି । ଲୋକମାନଙ୍କ ଉତ୍ତେଜନାକୁ ଚରମ ସ୍ତରକୁ ନେବା କୌଣସି ବିଚାରବନ୍ତ ଲୋକର କାମନୁହେଁ ।’’

୧୯୫୯ରୁ ୧୯୬୧ ଯାଏ ବିଶ୍ୱନାଥ ଆଞ୍ଚା ରାୟଗଡ଼ା ଛାଡ଼ିଦେଇ କୋରାପୁଟରେ ରହିଲେ । କୋରାପୁଟ ବୋରିଗୁମା ପୁରୁଣା ରାସ୍ତାରେ ଥିବା ନବଜୀବନ ମଣ୍ଡଳର ‘ପ୍ରକୃତି ନିବାସ’ରେ ସେ ରହିଲେ । କୋରାପୁଟ ସବ୍ ଡ଼ିଭିଜନରେ ଭୂଦାନ ଓ ଗ୍ରାମଦାନ କାର୍ଯ୍ୟରେ ଅଧିକ ସମୟଦେଲେ । ୧୯୬୧ରେ ଶେଷ ଆଡକୁ ସେ ଫେରିଲେ ରାୟଗଡ଼ାକୁ ପୁଣିଥରେ ।

***

# ପୁନଶ୍ଚ ଭୂଦାନ କାର୍ଯ୍ୟକ୍ରମ

ଗୋପବାବୁଙ୍କ ମୃତ୍ୟୁପରେ ଓଡ଼ିଶାରେ ଭୂଦାନ ଓ ସର୍ବୋଦୟ କର୍ମରେ କିଛିଦିନ ପାଇଁ ଶିଥିଳତା ଆସିଗଲା । ମୁରବୀ ନଥିଲେ ଘରର ଅବସ୍ଥା ଯାହା ହୁଏ ସେମିତି । ଧୀରେ ଧୀରେ ସବୁ ବାଟରେ ପଡ଼ିଯାଏ । ଜୀବନ ପୁଣି ସହଜ ହୋଇଯାଏ । ଯେଉଁମାନେ ସର୍ବୋଦୟରେ ଥିଲେ ପୁଣି ଧୀରେ ଧୀରେ ସର୍ବୋଦୟ କାମକୁ ଆରମ୍ଭ କଲେ ।

କୋରାପୁଟ, ଗଞ୍ଜାମ, ମୟୂରଭଞ୍ଜ ଓ ବାଲେଶ୍ୱରରେ ଗ୍ରାମଦାନ ସଂଗ୍ରହ କାମ ଆଗେଇବାରେ ଲାଗିଲା । କମ୍ୟୁନିଷ୍ଟମାନେ ଭୂଦାନ ବିରୋଧରେ ପ୍ରଚାର କରୁଥାନ୍ତି । ହେଲେବି ମିଳିଥିବା ଜମି ବଣ୍ଟାକାମ ଚାଲିଲା । କାହାକୁ କେତେ ଜମି ମିଳିବ ହିସାବ ହେଲା ।

ସେତେବେଳକୁ ଶ୍ରୀ ସଦାଶିବ ତ୍ରିପାଠୀ, ଓଡ଼ିଶା ମନ୍ତ୍ରୀ ମଣ୍ଡଳରେ ଥାଆନ୍ତି । ସେ ନବବାବୁଙ୍କର କାର୍ଯ୍ୟପ୍ରଣାଳୀ ସହିତ ବେଶ ପରିଚିତ । ଭୂସଂସ୍କାର ଆଇନ ଯେତେବେଳେ ଓଡ଼ିଶାରେ ହେଲା, ସେ ନିଜର ଶହେରୁ ଅଧିକ ଏକର ଜମି ଭୂମିହୀନଙ୍କୁ ବାଣ୍ଟିଦେଇଥିଲେ । ୧୯୬୦ ବେଳକୁ ସେ ଏହି ସର୍ବୋଦୟ କର୍ମରେ ବିଶେଷ ରଚି ନେଲେ, ଫଳରେ ସରକାରୀ ସହଯୋଗ ମଧ ଭଲ ମିଳିଲା । ସେହି ବର୍ଷ ଜିଲ୍ଲା ଓ ସ୍ଥାନୀୟ ସ୍ତରରେ ସବୁ କର୍ମୀମାନଙ୍କୁ ନେଇ ଶିବିର ଆୟୋଜନ କରିବାର ଯୋଜନା କରାଗଲା ।

ପ୍ରଥମେ କଟକ ଟାଉନ ହଲରେ ଏକ ସାତଦିନିଆ ଶିବିର ହେଲା । ବିଶ୍ୱନାଥ ଆଞ୍ଚାଙ୍କ ଚେଷ୍ଟାରେ ବହୁକର୍ମୀ କୋରାପୁଟ ଜିଲ୍ଲାରୁ ହାତରୁ ଖାଇ ବାଟଖର୍ଚ୍ଚ ଦେଇ ସେହି ଶିବିରରେ ଯୋଗ ଦେଇଥିଲେ । ଏ କଥାକୁ ମନେପକାଇ ସର୍ବୋଦୟ ନେତା ଶ୍ରୀ ମନମୋହନ ଚୌଧୁରୀ ମତ ଦିଅନ୍ତି, ''ଯେଉଁଥର ଶିବିରରେ ଉତ୍କଳ ବିଶ୍ୱବିଦ୍ୟାଳୟର ଅର୍ଥନୀତି ଅଧାପକଙ୍କ ବକ୍ତବ୍ୟ ଉପରେ କୋରାପୁଟର ଜଣେ ଗାଉଁଲୀ କର୍ମୀ ଉଠି ଯୁକ୍ତିତର୍କ କଲେ ସେ ଦିନ ଆମେ ବୁଝିଲୁ ଯେ ଶିବିରର ଉଦ୍ଦେଶ୍ୟ ସଫଳ ହୋଇଛି ।'' ବର୍ଷ ସାରା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କର୍ମୀମାନଙ୍କୁ ନେଇ ଏପରି ଶିବିରମାନ ଅନୁଷ୍ଠିତ ହେଲା ।

ଏଭିତରେ ଶେଷଥର ପାଇଁ ୧୯୬୦ରେ ଆଚାର୍ଯ୍ୟ ହରିହର ଦାସ ଅନ୍ୟ ଭୂଦାନ କର୍ମୀଙ୍କ ସହିତ ପଦଯାତ୍ରା କଲେ । ସେ ବିଶ୍ୱନାଥ ଆଞ୍ଚା, ମହମ୍ମଦ ବାଜୀ, ରତନ ଦାସ,

ମାଳତୀ ବିଶ୍ୱାଳ, ଅନ୍ନପୂର୍ଣ୍ଣା ସାମନ୍ତରା, ଶାନ୍ତି ଦେବୀ, ଗୋଲକ ଚନ୍ଦ୍ର ମହାନ୍ତି, ଅଲେଖ ପାତ୍ର, ବୃନ୍ଦାବନ ଚନ୍ଦ୍ର ଜେନା, କୃଷ୍ଣ ସିଂହଙ୍କ ସହ କୋରାପୁଟ, ନବରଙ୍ଗପୁର, ଡ଼ାବୁଗାଁ, ବୈପାରୀଗୁଡ଼ା, ବିଜାପୁର ଆଦି ଅଞ୍ଚଳ ଗସ୍ତକଲେ । ତାପରେ ୧୯୬୪ ଯାଏ ଭାରତ ଓ ଓଡ଼ିଶା ସ୍ତରର କୌଣସି ନେତା କୋରାପୁଟ ଜିଲ୍ଲାରେ ଆଉ ପଦଯାତ୍ରା କରି ନାହାନ୍ତି । ସ୍ଥାନୀୟ ନେତାମାନେ ଯାହାକିଛି କର୍ମ ନିଜ ସ୍ତରରେ କଲେ । ବିଶ୍ୱନାଥ ଆଜ୍ଞା ଆଉ ଗୋଟିଏ ସ୍ଥାନରେ ରହିଲେ ନାହିଁ । ଗୋଟିଏ ଗାଁରେ ଦିନେ ଦୁଇଦିନ ରହନ୍ତି । ସେ ଏ ଭିତରେ ଭୂଦାନ ଓ ସର୍ବୋଦୟ କାମରେ ବହୁତ ଦିନ ଫୁଲବାଣୀ ଓ ବିଶେଷତଃ ବାଲିଗୁଡ଼ା ସବ୍ ଡ଼ିଭିଜନରେ କଟାଇଲେ । କୁଟିଆ କନ୍ଧଙ୍କ ସାମାଜିକ ଉତ୍‌ଥାନରେ ମନଦେଲେ ।

୨୦.୨.୧୯୬୪ ରୁ ୧.୩.୧୯୬୪ ଦୀର୍ଘ ୧୦ ଦିନ କାଳ ମା ରମାଦେବୀ କୋରାପୁଟ ଜିଲ୍ଲା ବୁଲିଲେ । ତାଙ୍କ ସାଙ୍ଗରେ ବିଶ୍ୱନାଥ ଆଜ୍ଞା ଥାନ୍ତି ଅନ୍ୟମାନଙ୍କ ସହିତ, ସରକାରୀ ଲୋକ ମଧ୍ୟ ସାହାଯ୍ୟ କରୁଥାନ୍ତି ନିଜ ସାଧ୍ୟ ମତେ ।

ସେ କୋରାପୁଟ ଜିଲ୍ଲାର ନବରଙ୍ଗପୁର, ରାୟଗଡ଼ା, ନାରାୟଣ ପାଟଣା, କୋଡେସୁ, ଲଟାପୁଟ, ଶିଉନାଗୁଡ଼ା, ତରାଗାଁ, ପାଡୁଆ, ପଟାଙ୍ଗୀରେ ବୁଲିଲେ । ଏହି ୧୦ ଦିନ ଭିତରେ ସେ ଛଅଟି ଗ୍ରାମଦାନ ସମ୍ମିଳନୀରେ ଯୋଗଦେଇଥିଲେ । ମହମ୍ମଦ ବାଜୀଙ୍କ ପ୍ରଚେଷ୍ଟାରେ ନବରଙ୍ଗପୁର ଠାରେ ଏକ ବଡ଼ ଧରଣର ସାଧାରଣ ସଭା ହୋଇଥିଲା । ଜୟପୁରରେ ସହରର ବହୁ ବିଶିଷ୍ଟ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ନେଇ ଏକ ବନ୍ଧୁମିଳନର ଆୟୋଜନ ହେଲା । ବିଶ୍ୱନାଥ ଆଜ୍ଞା ନୀରବ କର୍ମୀ । ସବୁ କରିବେ । ସଂଗଠନ, ଶୃଙ୍ଖଳା, ସଂଯୋଜନା ସବୁ, ହେଲେ ସଭାରେ ବସିବେ ନାହିଁ କି ଆଗଧାଡ଼ିରେ ନଥିବେ । ଭାରି ଅର୍ନ୍ତମୁଖୀ ମଣିଷ । ଯାହା କରାଯିବାକୁ କୁହାଯିବ କରିବେ । ସେ କେବେବି ଚାହାନ୍ତି ନାହିଁ, କେହି ତାଙ୍କ ପ୍ରତି ନଜର ଦେଉ, ଗୁରୁତ୍ୱ ଦେଉ, ସେଇ ଅଜଣା, ଅଶୁଣା, ପରୋକ୍ଷରେ ରହିବା ତାଙ୍କର ସହଜାତ ପ୍ରବୃତ୍ତି । ଏ ସବୁ ସତ୍ତ୍ୱେ ସେ ସମସ୍ତଙ୍କର ପ୍ରିୟ, ଅତି ଆପଣାର ମଣିଷ । ମା ରମାଦେବୀଙ୍କ ମୁହଁରେ ତାଙ୍କର ପ୍ରଶଂସା । ବିଶ୍ୱନାଥ ଆଜ୍ଞା ଏହି କେତେଦିନ ରମାଦେବୀଙ୍କ ପାଖେ ପାଖେ ରହିଲେ ।

କୋଡେସୁ ଗ୍ରାମ । ସେଠି ଗ୍ରାମଦାନ ସମ୍ମିଳନୀ ବସିଲା । ଏହି ସମ୍ମିଳନୀର ଆୟୋଜନ ପାଇଁ ରତନ ଦାସ ମଧ୍ୟ ଉଦ୍ୟମ କରିଥିଲେ । ନଅଟି ଗ୍ରାମଦାନୀ ଗାଁର ଶହେଜଣ ଜମିଲେ । ଅନେକ ଆଲୋଚନା ହେଲା । ଏଇ ନଅଟା ଗାଁରେ ପାଣିର ଘୋର ଅଭାବ । ଭୂଦାନ

ତରଫରୁ ଗାଁ ଗୁଡ଼ିକରେ କୂଅ ଖୋଳିବା ସ୍ଥିର ହେଲା । ଗାଁ ଲୋକେ ଯେ ନିଶାପାଣି କରିବେ ନାହିଁ ସେ ବିଷୟରେ ବି ଆଲୋଚନା କରାଗଲା । ବିବାହ ବେଳେ କନ୍ୟାଖୋଲା ଦେବାପାଇଁ ବରଘର ଧାର କରଜ କରିବାକୁ ପଡୁଥିବାରୁ ତାହା ଉଠାଇଦେବା କଥା ପଡ଼ିଲା । ଏହି ଅଞ୍ଚଳର ନବଜୀବନ ମଣ୍ଡଳର କର୍ମୀ ଶ୍ରୀ ଗୋଲକ ଚନ୍ଦ୍ର ମହାନ୍ତି, ବିଶ୍ୱନାଥ ଆଙ୍ଗାଙ୍କ ସହ ପରାମର୍ଶ କରି ଏଠା ସମ୍ମିଳନୀର ଆୟୋଜନ କରିଥିଲେ । ମା ରମାଦେବୀ ଅନ୍ୟ ମହିଳାକର୍ମୀ ମାନଙ୍କ ସହ ଗ୍ରାମର ସ୍ତ୍ରୀ ଲୋକମାନଙ୍କ ସୁବିଧା ଅସୁବିଧା କଥା ବୁଝିଲେ ।

ନାରାୟଣପାଟଣାର ଡୁମସୁଲି ଗାଁରେ ଗ୍ରାମଦାନୀ ସମ୍ମିଳନୀ ହେଲା । ହଜାରେ ଖଣ୍ଡେ ଲୋକ ଆସିଲେ । ଶ୍ରୀ ରତନ ସାଓଁତା ସଭାପତି ହେଲେ । ଏଠା ଅଞ୍ଚଳରୁ ୧୬୦ଟି ଗ୍ରାମଦାନ ମିଳିଛି । ଦୁଇତିନୋଟି ଗାଁର ଲୋକେ କହିଲେ- ''ଆମକୁ ଅନ୍ୟମାନେ କହୁଚନ୍ତି ଯେ ଭୂଦାନବାଲାମାନେ ଗ୍ରାମଦାନ ଦେଲାପରେ ଆମକୁ ବେଶି ଖଟାଇବେ । ଆମର ଖାଦି ନେଇ ଗୋଟେ ଜାଗାରେ ରଖି ଆମକୁ ଭାତିଆ ଦେବେ । ଏଣୁ ଆମେ ଗ୍ରାମଦାନ ଦେବାକୁ ଚାହୁଁନୁ ।'' ରତନ ସାଓଁତା ଯଦିଓ ପାଠ ପଢ଼ି ନାହାନ୍ତି, ନିଜ ଅନୁଭୂତିରୁ ସାହୁକାର ମାନଙ୍କ ଅତ୍ୟାଚାର କଥା କହିଲେ । ବିନୋବାଙ୍କୁ ଗ୍ରାମଦାନ କରି ସେମାନେ କେମିତି ସାହୁକାର ହାତରୁ ମୁକୁଳିଲେ ତାହା ବୁଝାଇଲେ ।

ଲଡାପୁଟ ଗାଁରେ ବି ସମ୍ମିଳନୀ ହେଲା । ପନ୍ଦର ଖଣ୍ଡ ଗାଁର ଲୋକ ଗ୍ରାମପାଣ୍ଠି କରି ସେଇ ପାଣ୍ଠିରୁ ନିଜ ଅସୁବିଧା ମେଣ୍ଟାଇ ପାରୁଛନ୍ତି । ଏବେ ସାହୁକାରଙ୍କ ଦାଉରୁ ଟିକିଏ ମୁକ୍ତି ମିଳିଛି । ଏହି ଲଡାପୁଟ ଗାଁରେ ଉତ୍କଳ ନବ ଜୀବନ ମଣ୍ଡଳ ତରଫରୁ ଶୀମତୀ ସୁଷମା ପାତ୍ର ଦାୟିତ୍ୱ ନେଇଛନ୍ତି । ଏଠା ସରପଞ୍ଚ, ମହିଳା ସମିତି ସଦସ୍ୟ, ପଞ୍ଚାୟତ ସମିତି ଚେୟାରମ୍ୟାନ ସହିତ ମିଶି ମା ରମାଦେବୀ ଗ୍ରାମ ଗୁଡ଼ିକର ଉନ୍ନତି ସମ୍ବନ୍ଧରେ ଆଲୋଚନା କଲେ ।

ଜୟପୁରରେ ମା ରମାଦେବୀ ପହଞ୍ଚିଲେ । ସହରର ମାନ୍ୟଗଣ୍ୟ ବ୍ୟକ୍ତି, ଓକିଲ, ସାମ୍ବାଦିକ ଓ ନବରଙ୍ଗପୁର, ବୋରିଗୁମା, ବୈପାରୀଗୁଡ଼ା, କୋଟପାଡ଼ ଆଦିର କର୍ମୀମାନେ ମା ରମାଦେବୀଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ମା ରମାଦେବୀ ଗାନ୍ଧୀ ଶତବାର୍ଷିକୀ ସମ୍ବନ୍ଧରେ ଏମାନଙ୍କ ସହ କଥାବାର୍ତ୍ତା କଲେ । ହନୁମନ୍ତ ରାଓ ଓ ଓକିଲ ରାମଚନ୍ଦ୍ର ସାହୁ ସବୁ ପ୍ରକାର ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲେ । ସର୍ବଭାରତୀୟ ସ୍ତରର ନେତା ଶ୍ରୀ ମିତ୍ତଲଜୀ ଜୟପୁରରେ ଏ କାମର ତତ୍ତ୍ୱାବଧାନ ନେବାପାଇଁ ରାଜିହେଲେ ।

ପଟାଙ୍ଗୀ ଥାନାର ସିପାହୀପୁଟ, ପାଡୁଆ ଥାନାର ଚମ୍ପାପୁଟ ଗ୍ରାମରେ ମଧ୍ୟ ସମ୍ମିଳନୀ ହୋଇ ଗ୍ରାମଦାନୀ ସଂଘ ଗଠନ କରାଗଲା । ଏଠି ଶ୍ୟାମ ଗାଣ୍ଡା ସଭାପତି ହେଲେ । ଏଠା ଲୋକଙ୍କ ସମସ୍ୟା ବହୁତ । ମାଛକୁଣ୍ଡ ଯୋଜନା ହେତୁ ଚାଷ ଜମି ହରାଇଥିବା ଲୋକମାନେ ପୋଡୁଚାଷ କରୁଥିଲେ । ଜଙ୍ଗଲ ବୃଦ୍ଧି ଯୋଜନା ଫଳରେ ତାହା ବି ବନ୍ଦ ହୋଇଗଲା । ସରକାରଙ୍କ ସହିତ ଏ ସମସ୍ୟା ସମ୍ବନ୍ଧରେ କଥାବାର୍ତ୍ତା ହେବା ପାଇଁ ମା ରମାଦେବୀଙ୍କ ପରାମର୍ଶରେ ପ୍ରସ୍ତାବ ନିଆହେଲା ।

ସେତେବେଳକୁ ୧୯୬୪ ମାର୍ଚ୍ଚ ମାସ । କୋରାପୁଟ କଲେକ୍ଟର ଥିଲେ ଶ୍ରୀ ଜଗନ୍ନାଥ ଦାସ । ଲୋକ ଉପକାରୀ ବୋଲି ନାମଥିଲା । ମା ରମାଦେବୀ ତାଙ୍କୁ ଭେଟି ପାଡୁଆ ଲୋକଙ୍କ ସମସ୍ୟା ସମ୍ବନ୍ଧରେ ଆଲୋଚନା କଲେ । କଲେକ୍ଟର ପାଡୁଆ ଲୋକଙ୍କୁ ପାହାଡ଼ରେ ଚାଷ କରିବା ପାଇଁ ଅନୁମତି ଦେବା ପାଇଁ ପ୍ରତିଶ୍ରୁତି ଦେଲେ ।

ମା ରମାଦେବୀଙ୍କ ସହ ବିଶ୍ୱନାଥ ଆଞ୍ଚା ନବରଙ୍ଗପୁର ଆସିଲେ । ଏଠି ମହମ୍ମଦବାଜୀ ଓ ଏ ଅଞ୍ଚଳର ବହୁ ଭୂଦାନକର୍ମୀଙ୍କ ଉଦ୍ୟମରେ ଗୋଟିଏ ବଡ଼ ଧରଣର ସଭା ହୋଇଥିଲା । ସେତେବେଳକୁ ନବରଙ୍ଗପୁରର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଜନସଖା ସାପ୍ତାହିକର ସମ୍ପାଦକ ଶ୍ରୀ ଲକ୍ଷ୍ମୀଚନ୍ଦ୍ର ଦାସ ଭୂଦାନ ପ୍ରତି ପ୍ରତିକୂଳ ମତ ଦେଇଥିବାର ଜାଣି ମା ରମାଦେବୀ, ବିଶ୍ୱନାଥ ଆଞ୍ଚା ତାଙ୍କୁ ଭୂଦାନ ଆନ୍ଦୋଳନ ବିଷୟରେ ବୁଝାଇଲେ । ଫଳରେ ସେ ନିଜ ସାପ୍ତାହିକୀରେ ବିନୋବାଙ୍କ ପ୍ରବଚନ ସରଳଭାଷାରେ ଅନୁବାଦ କରି ଛାପିବା ପାଇଁ ରାଜିହେଲେ ।

ବୈପାରୀଗୁଡ଼ାରେ ମା ରମାଦେବୀ ୧୯୬୪-୬୯ ଯାଏ ନିର୍ମାଣ କର୍ମୀ ଓ କ୍ଷେତ୍ରକର୍ମୀମାନଙ୍କୁ ନୂଆଗ୍ରାମଦାନ ସଂଗ୍ରହ କରିବାକୁ ଶାନ୍ତିସେନା ସଂଗ୍ରହ କରିବା ପାଇଁ କହିଲେ ଏବଂ ଏହି ମର୍ମରେ ବୈପାରୀଗୁଡ଼ା ସମିତି ଏକ ପ୍ରସ୍ତାବ ଗ୍ରହଣ କଲେ ।

ଏହାପରେ ନବରଙ୍ଗପୁର ସବଡ଼ିଭିଜନର ଡ଼ାବୁଗାଁ, କୋଡ଼ିଗାଁ, ଉମରକୋଟ, ଝରିଗାଁର ସବୁଗ୍ରାମକୁ ୧୯୬୯ ସୁଦ୍ଧା ଗ୍ରାମଦାନ କରିବାକୁ ସେ ପ୍ରସ୍ତାବ ଦେଲେ । ନବରଙ୍ଗପୁର ସବ୍‌ଡ଼ିଭିଜନରେ ୧୯୬୪ ବେଳକୁ ୩୫୦ ଗ୍ରାମଦାନ ହୋଇଥିଲା । ୧୫୦ ଗ୍ରାମକୁ ସରକାର ସ୍ୱୀକୃତି ଦେଇଥିଲେ । ୧୨୦ ଶାନ୍ତିସେନାରେ ଯୋଗଦେଇଥିଲେ । ଡ଼ାବୁଗାଁ ସଭାରେ ୬୦୦ ଲୋକ ଜମା ହୋଇଥିଲେ । ତତ୍‌କାଳୀନ ଏମ୍.ଏଲ୍.ଏ. ଶ୍ରୀ ଜଗନ୍ନାଥ ତ୍ରିପାଠୀ ସଭାରେ ସଭାପତିତ୍ୱ କରିଥିଲେ ।

ମାର୍ଚ୍ଚ ୧୯୬୪ ଦିନ ମା ରମାଦେବୀ କୋରାପୁଟ ଜିଲ୍ଲା ଛାଡ଼ିଲେ । ବିଶ୍ୱନାଥ ଆଞ୍ଚା ରାୟଗଡ଼ା ଫେରିଲେ । ଅନେକ ଅନୁଭୂତି ନେଇ, ଲୋକଙ୍କ ସମସ୍ୟାକୁ ଦେଖି । ବହୁତ କାମ କରିବାକୁ ବାକିଥିଲା ତାଙ୍କର । ସେତେବେଳକୁ ଶାନ୍ତିସୈନିକ ସଂଗ୍ରହ କରିବା କାମ ଆରମ୍ଭ ହୋଇ ଯାଇଥିଲା । ଦରକାର ସମୟରେ ଏମାନେ ଶାନ୍ତି ପ୍ରତିଷ୍ଠାରେ ସହାୟକ ହେବା ଲକ୍ଷ୍ୟ ରଖା ଯାଇଥିଲା ।

## ରାଉଲକେଲାରେ ସାମ୍ପ୍ରଦାୟିକ ଦଙ୍ଗା ଓ ବିଶ୍ୱନାଥ ଆଞ୍ଚା :

ମାର୍ଚ୍ଚ ମାସ ୯, ୧୦ ତାରିଖ । ପୂର୍ବବଙ୍ଗର ହିନ୍ଦୁ ଶରଣାର୍ଥୀ ମାନଙ୍କୁ ନେଇ ପ୍ରତିଦିନ ଗୋଟିଏ ଲେଖାଏଁ ଟ୍ରେନ କଲିକତାରୁ ରାୟଗଡ଼ା ବାଟେ ଆସେ । ସେଠାରୁ ଟ୍ରକରେ ଶରଣାର୍ଥୀ ମାନଙ୍କୁ ଦଣ୍ଡକାରଣ୍ୟ ନିଆଯାଏ । ସେହିଦିନ ଗୋଟିଏ ସ୍ପେଶାଲ ଟ୍ରେନ୍ ରାୟଗଡ଼ା ଯିବାପାଇଁ କଲିକତାରୁ ଆସି ରାଉରକେଲାରେ ପହଞ୍ଚିଲା । ଶରଣାର୍ଥୀ ଟ୍ରେନ୍ ଆସିଥିବା ଶୁଣି ରାଉରକେଲା ସହରବାସୀ ସେମାନଙ୍କୁ ଖାଇବାକୁ ଦେବା ପାଇଁ ଷ୍ଟେସନକୁ ଗଲେ । ସେଠି ଶରଣାର୍ଥୀଙ୍କ ମୁହଁରୁ ଶୁଣିଲେ ପୂର୍ବବଙ୍ଗରେ ତାଙ୍କୁ କରାଯାଇଥିବା ଅତ୍ୟାଚାର, ହିଂସା, ଧର୍ଷଣ ଆଦି ବିଭୀଷିକାକୁ । ସେଠୁ ତୁଣ୍ଡରୁ ତୁଣ୍ଡ ହେଇ ଅତ୍ୟାଚାରର ମର୍ମନ୍ତୁଦ କାହାଣୀ ପ୍ରଚାର ହେଲା ଲୋକଙ୍କ ଭିତରେ । କିଛି ସତ୍ୟ, କିଛି କଳ୍ପନା, କିଛି ଗୁଜବ, କିଛି ଅତିରଞ୍ଜନ । ପରିସ୍ଥିତି ବିସ୍ଫୋରକ ହୋଇ ଉଠିଲା । ରାଉରକେଲାରେ ବସବାସ କରୁଥିବା ମୁସଲମାନମାନଙ୍କ ପ୍ରତି ଅତ୍ୟାଚାର ଆରମ୍ଭ କରିବା ପାଇଁ ପ୍ରସ୍ତୁତ ଚାଲିଲା । ସମ୍ବାଦପତ୍ରମାନେ ମଧ୍ୟ ଉତ୍ତେଜକ ଖବରମାନ ଛାପିଲେ । ସହରରେ ଉତ୍ତେଜନା ଦେଖାଗଲା । ଏ ଭିତରେ ୧୦ ଦିନ ବିତିଗଲା । ଘଟଣା ଗୁରୁତର ହେବାର ସୂଚନାମାନ ମିଳିଲା । ସେତେବେଳକୁ ରାଉରକେଲାର ଶାନ୍ତିକେନ୍ଦ୍ରର କର୍ମୀଥିଲେ ଶ୍ରୀ କ୍ଷେତ୍ରବାସୀ ପତି । ରମାଦେବୀ ଓଡ଼ିଶା ପ୍ରଦେଶ ଶାନ୍ତିସେନା ମଣ୍ଡଳର ସଂଯୋଜିକା ଥିଲେ । ଘଟଣାର ଗୁରୁତ୍ୱ ଦୃଷ୍ଟିରୁ ଶ୍ରୀ କ୍ଷେତ୍ରବାସୀ ପତି ମା ରମାଦେବୀଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କୁ ଜଣାଇ ବିହିତ ପଦକ୍ଷେପ ନେବାପାଇଁ ତାରକଲେ ୧୯-୩.୧୯୬୪ ଦିନ । ସେ ପର୍ଯ୍ୟାପ୍ତ ପୋଲିସ ବନ୍ଦୋବସ୍ତ ପାଇଁ ଅନୁରୋଧ କଲେ । ତା ଆରଦିନ ୨୦.୩.୧୯୬୪ରେ ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣାଙ୍କୁ ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ପଠାଇଲେ ଏବଂ ପରେ ପରେ ନବବାବୁଙ୍କୁ ରାଉରକେଲା ଯିବା ପାଇଁ ଅନୁଗୁଳକୁ ଟେଲିଫୋନ୍ କଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍‌ମିତ୍ର, ଚୁନୀଙ୍କୁ ରାଉରକେଲାରେ ଯେପରି ଗଣ୍ଡଗୋଳ ନହେବ ସେଥିପ୍ରତି ଯଥା ସମ୍ଭବ ଦୃଷ୍ଟିଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

୨୦-୩-୧୯୬୪ ରାଉରକେଲାରେ ଦଙ୍ଗା ଆରମ୍ଭ ହୋଇଗଲା । ହଣାକଟା ହେଲା । ଖବର ଶୁଣି ନବବାବୁ ରାଉରକେଲା ବାହାରିଲେ । ନିର୍ମଳ ଚନ୍ଦ୍ର ରାୟ ସମ୍ବଲପୁର, ଅନାଦି ନାୟକ ଓ ହରମୋହନ ପଟ୍ଟନାୟକ ଝାରସୁଗୁଡ଼ା ଓ ଧନେଶ୍ୱର ଦେହୁରୀ, ଶରତ ଚନ୍ଦ୍ର ମହାରଣା ରାଉରକେଲାକୁ ଗଲେ ।

ଶ୍ରୀ କ୍ଷେତ୍ରବାସୀ ପତି ଓ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣା ଦେବୀ ପାରୁପର୍ଯ୍ୟନ୍ତ ଆଖପାଖ ଅଞ୍ଚଳ ବୁଲି ମୁସଲମାନ ପରିବାରଙ୍କୁ ବାହାରକୁ ପଠାଇଦେଲେ । ବିନୋବାଜୀଙ୍କ ୧୯୬୩ ଗସ୍ତ ସମୟରେ ଦେଇଥିବା ମତାମତ ଅନୁସାରେ ରାଉରକେଲାରେ ୩୦୦ ଶାନ୍ତିସେବକ ହେବା ପାଇଁ ଯେଉଁ ପଦକ୍ଷେପ ନିଆ ଯାଇଥିଲା ଏହି ମୂହୂର୍ତ୍ତରେ ତାହା କାମଦେଲା । ଶ୍ରୀ ଦୈତାରୀ ଦାଶ ନିଜ ସେକ୍ଟରରେ ବହୁତ କାମ କଲେ । ସେ କେତେକ ମୁସଲମାନ ପରିବାରକୁ ରକ୍ଷାକଲେ । ସାରା ରାଉରକେଲାରେ କର୍ଫ୍ୟୁ ଜାରି ହେଲା । ଲୋକେ ହିଂସ୍ର, ପଶୁସ୍ତରକୁ ଓହ୍ଲାଇ ପଡ଼ି ୨୦.୩.୧୯୬୪ରୁ ୨୨.୩.୧୯୬୪ ଭିତରେ ପ୍ରାୟ ତିନିହଜାର ମୁସଲମାନଙ୍କୁ ହତ୍ୟାକଲେ । ପୋଲିସ ନୀରବ ଦ୍ରଷ୍ଟା ହୋଇ ରହିଗଲା । ମିଲିଟାରୀ ପୋଲିସ୍‌କୁ ଶାନ୍ତିରକ୍ଷା କରିବା ପାଇଁ କ୍ଷମତା ଦେବାରେ ଅହେତୁକ ଆଠଘଣ୍ଟା ବିଳମ୍ବ କରିବା ଫଳରେ ଦଙ୍ଗା ଘଟାଇବା ଲୋକଙ୍କୁ ସୁବିଧା ମିଳିଗଲା । କର୍ଫ୍ୟୁ ଓ ମିଲିଟାରୀ ଉପସ୍ଥିତିରେ ପରିସ୍ଥିତି ରାଉରକେଲାରେ ସମ୍ଭଳା ପଡ଼ିଲା ବେଳକୁ ଆଖ ପାଖ ଶହେ ଖଣ୍ଡ ଗାଁକୁ ଦଙ୍ଗା ବ୍ୟାପିଗଲା । ଭାରତ ବିଭାଜନ ପରେ ରାଉରକେଲା ଦଙ୍ଗା ସବୁଠାରୁ ଭୟଙ୍କର ହୋଇଥିଲା ।

୨୩.୩.୧୯୬୪ ଦିନ ଶ୍ରୀ ମନମୋହନ ଚୌଧୁରୀ, ଏହା ଖବର କାଗଜରୁ ପଢ଼ି ଦିଲ୍ଲୀରୁ ରାଉରକେଲା ଆସିଲେ । ନବକୃଷ୍ଣ ଚୌଧୁରୀ ଶାନ୍ତି ପ୍ରତିଷ୍ଠା ପାଇଁ ସାରା ସହର ପଦଯାତ୍ରା କଲେ । ଆନ୍ନାସାହେବ, ମାଳତୀଦେବୀ, ନବଜୀବନ ମଣ୍ଡଳର ଆଦିବାସୀ ଭାଇ ଭଉଣୀ ଚାରିଜଣ, ଅନ୍ନପୂର୍ଣ୍ଣା ମହାରଣା, ରତନ ଦାସ ଆଦି ପହଞ୍ଚିଲେ । ଏମାନେ ପ୍ରତି ଅଞ୍ଚଳରେ ବୁଲି ଲୋକଙ୍କୁ ବୁଝାଇବା, ମରି ଯାଇଥିବା ଲୋକଙ୍କ ଆତ୍ମୀୟଙ୍କ ପାଇଁ ଟଙ୍କା ପଇସାର ବ୍ୟବସ୍ଥା କରିବା କାମକଲେ । ଆଶ୍ରୟ କେନ୍ଦ୍ରରେ ଶରଣ ନେଇଥିବା ଶରଣାର୍ଥୀ ମାନଙ୍କୁ ଭେଟିଲେ । ଏମାନଙ୍କ ମନରେ ସାହସ ଆଣିବା ଓ ସେବାକରିବା ପାଇଁ ବହୁ ଶାନ୍ତି ସୈନିକଙ୍କ ଆବଶ୍ୟକତା ଅନୁଭବ କରାଗଲା । ଶ୍ରୀ ମନମୋହନ ଚୌଧୁରୀ ସାରା ଓଡ଼ିଶାରେ

ଥିବା କର୍ମୀମାନଙ୍କୁ ଚିଠି ଲେଖିଲେ ୦୯.୪.୧୯୬୪ରେ । ଏହି ଚିଠି ରାୟଗଡ଼ାରେ ୧୫.୪.୧୯୬୪ଦିନ ବିଶ୍ୱନାଥ ଆଜ୍ଞା ପାଇଲେ । ଚିଠିରେ ଲେଖାଥିଲା-

ଉତ୍କଳ ପ୍ରାନ୍ତିୟ ଶାନ୍ତି ସେନା କାର୍ଯ୍ୟାଳୟ

ମାର୍ଫତ ଉତ୍କଳ ସର୍ବୋଦୟ ମଣ୍ଡଳ, ଥୋରିଆ ସାହି, କଟକ-୧, (ଓଡ଼ିଶା)

ଫୋନ ନମ୍ବର ୩୨୭-କଟକ

ନଂ ୭୨୨ ତାରିଖ ୧୧-୪-୧୯୬୪

*ବିଷୟ : ପଶ୍ଚିମ ଓଡ଼ିଶା ତଥା ରାଉରକେଲାରେ ଘଟିଥିବା ସାଂପ୍ରଦାୟିକ ଗଣ୍ଡଗୋଳ; ଶାନ୍ତିସୈନିକ ମାନଙ୍କ ପ୍ରତି-*

*ମହାଶୟ,*

*ରାଉରକେଲା ଓ ସୁନ୍ଦରଗଡ଼ ଜିଲ୍ଲାରେ ଯେଉଁ ହତ୍ୟାକାଣ୍ଡ ଏବେ ଘଟିଲା, ତାହାର ପ୍ରକୃତ ଧାରଣା ଆପଣ ଖବରକାଗଜ ସମ୍ବାଦରୁ ଆଦୌ ପାଇପାରି ନଥିବେ । ଏଠି ଯେଉଁ ଭୟାବହ କାଣ୍ଡ ଘଟିଛି ତାହା ତୁଳନା କେବଳ ୧୯୪୬-୪୭ରେ ଦେଶ ବିଭାଗ ବେଳେ ହେଇଥିବା ହାଂଗାମା ସହିତ ହୋଇପାରେ ।*

*ଏ ଜିଲ୍ଲାରେ କମପକ୍ଷେ ତିନିହଜାର ସମ୍ଭବତଃ ଚାରିହଜାର ଅଧିକ ମୁସଲମାନଙ୍କୁ ହତ୍ୟା କରାଯାଇଛି । ଦଶବାର ହଜାର ଲୋକ ଶରଣାର୍ଥୀ ଶିବିରରେ ଆଶ୍ରୟ ନେଇଥିଲେ । ଏବେ ସେଥିରୁ ଅଳ୍ପକିଛି ଘରକୁ ଫେରିଲେଣି, ମାତ୍ର ଅଧିକାଂଶ ଶିବିରରେ ରହିଛନ୍ତି ।*

*କେତେଶହ ଗାଁକୁ ଗଣ୍ଡଗୋଳ ବ୍ୟାପିଛି ତାର ହିସାବ ପାଇବା ଦୁଷ୍କର । ଏବେ ପ୍ରତ୍ୟକ୍ଷ ଗଣ୍ଡଗୋଳ ବନ୍ଦ ଅଛି । ମାତ୍ର ଲୋକଙ୍କ ମନରୁ ବିଦ୍ୱେଷ ବହ୍ନି ଏବେ ବି ପୂରା ଲିଭିନାହିଁ ।*

*ଏ ପରିସ୍ଥିତିରେ ଏ ଜିଲ୍ଲାରେ ପୁଣି ଶାନ୍ତି ଫେରାଇ ଆଣିବା ଓ ମୁସଲମାନ ମାନଙ୍କୁ ପୁଣି ଥଇଥାନ କରିବା ଏକ ମସ୍ତବଡ଼ କାମ ଓ ଏ କାମରେ ଆସନ୍ତା କେତେମାସ ପାଇଁ ଆମକୁ ଓଡ଼ିଶାର ସର୍ବୋଦୟ ଆନ୍ଦୋଳନର ଅଧିକରୁ ଅଧିକ ଶକ୍ତି ଲଗାଇବାକୁ ହେବ ।*

*ଏ ଜିଲ୍ଲା ପାଇଁ ବର୍ତ୍ତମାନ ତୁରନ୍ତ ୩୦ ଜଣ ଶାନ୍ତି ସୈନିକ ବା ଅନ୍ୟସେବକ ଲୋଡ଼ା । ଏହାପରେ ଆହୁରି ଅଧିକା ଲୋଡ଼ା ହୋଇପାରେ ।*

*ଆପଣ କେତେଶୀଘ୍ର ରାଉରକେଲା ଯାଇପାରିବେ ତାହା ତୁରନ୍ତ ଜଣାଇବାକୁ ଅନୁରୋଧ ।*

*ରହଣି, ରାଉରକେଲା* — *ଇତି, ଆପଣଙ୍କର*

*୯-୪-୬୪* — *ମନମୋହନ ଚୌଧୁରୀ*

ଚିଠି ପାଇବା ମାତ୍ରେ ବିଶ୍ୱନାଥ ଆଞ୍ଚା କେତେଜଣ ଶାନ୍ତିସୈନିକ ସଂଗ୍ରହ କରି ରାଉରକେଲା ଯିବା ପାଇଁ ପ୍ରସ୍ତୁତ ହେଲେ । ରାଉରକେଲାରେ ଦଙ୍ଗାଗ୍ରସ୍ତ ଅଞ୍ଚଳରେ ଶାନ୍ତି ସୈନିକ ସହ ମୁସଲମାନଙ୍କ ଥଇଥାନ ନିମନ୍ତେ ବିଶ୍ୱନାଥ ଆଞ୍ଚା, ଅନ୍ୟମାନଙ୍କ ସହ ଦୀର୍ଘଦିନ ଧରି କାମ କରିଥିଲେ ।

ଏହାପରେ ରାଉରକେଲା ହତ୍ୟାକାଣ୍ଡକୁ ନେଇ ଖଣ୍ଡେ ପୁସ୍ତିକା ପ୍ରକାଶ ପାଇଲା । ପୁସ୍ତିକାର ନାମଥିଲା, ''ଏ ଟାଇମ୍ ଟୁ ହିଲ୍'' । ଏହି ପୁସ୍ତିକାରେ ରାଉରକେଲା ଗଣ୍ଡଗୋଳ ସମ୍ବନ୍ଧରେ ଅନେକ ତଥ୍ୟ ଦିଆଯାଇଥିଲା । ସରକାରଙ୍କ ଦୃଷ୍ଟିରୁ ଏ ବହିରେ ବହୁ ଅପ୍ରିୟ ସତ୍ୟ ଲେଖା ହୋଇଥିବାରୁ ଓଡ଼ିଶା ତଥା କେନ୍ଦ୍ରସରକାର ଏହା ପସନ୍ଦ କରିନଥିଲେ କିନ୍ତୁ ସର୍ବ ସେବା ସଂଘର ସମ୍ମାନ ଏହା ଫଳରେ ବହୁତ ବଢ଼ିଯାଇଥିଲା ।

୧୯୬୫ରେ ବିନୋବାଜୀ ସୁଲଭ ଗ୍ରାମଦାନ ଆନ୍ଦୋଳନ ଆରମ୍ଭ କଲେ । ଜୟପ୍ରକାଶ ନାରାୟଣ ଏହାକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ ଏବଂ ସହଯୋଗ ଦେଲେ । ବିହାରରେ ବର୍ଷକ ଭିତରେ ବହୁଗ୍ରାମଦାନ ସଂଗ୍ରହ କରିବାପାଇଁ ଚେଷ୍ଟା କରାଗଲା । ସେହି ବର୍ଷ ଓଡ଼ିଶାର କୋରାପୁଟ ଦାନ ଓ ମୟୂରଭଞ୍ଜ ଜିଲ୍ଲା-ଦାନ ଘୋଷଣା କରାଗଲା ।

କୋରାପୁଟ ଜିଲ୍ଲାଦାନର ଘୋଷଣା ପାଇଁ ଏକ ସାଧାରଣ ସଭାହେଲା । ଏହି ସଭାରେ ବିଶିଷ୍ଟ ସର୍ବୋଦୟ ନେତା ଶ୍ରୀ ଶଙ୍କର ରାଓ ଦେଓଙ୍କୁ ଜିଲ୍ଲା ଦାନପତ୍ର, ଶ୍ରୀ ବୃନ୍ଦାବନ ଜେନା ଅର୍ପଣ କରିଥିଲେ । ଆନନ୍ଦ, ଉତ୍ସାହ, ହୁଳହୁଳି ଓ ଫୁଲବୃଷ୍ଟି ମଧ୍ୟରେ ଜିଲ୍ଲାପାଳ ଏହା ଘୋଷଣା କରିଥିଲେ । ସେଦିନର ଉଲ୍ଲାସ କଳ୍ପନାତୀତ ଥିଲା ।

୧୯୬୫ରେ ସର୍ବୋଦୟ ସମ୍ମିଳନୀ ଉତ୍ତରପ୍ରଦେଶର ବାଲିଆ ଜିଲ୍ଲାରେ ହେଲା । ବିଶ୍ୱନାଥ ଆଞ୍ଚା ଏହି ସମ୍ମିଳନୀରେ ଯୋଗଦେଲେ । ସେଠି ଓଡ଼ିଶା ସର୍ବୋଦୟ ମଣ୍ଡଳଦ୍ୱାରା ଓଡ଼ିଶା ରାଜ୍ୟଦାନର ସଂକଳ୍ପ କରାଗଲା ।

* * *

-ତେଇଶି-

# ହିଂସାର ବାତାବରଣ

**ନୀ**ତି, ନିୟମ ଆଦର୍ଶର କଷଟି ଭିତର ଦେଇ ବହୁ ପରୀକ୍ଷା ନିରୀକ୍ଷା ଭିତରେ ଭୂଦାନ, ଗ୍ରାମଦାନ, ସର୍ବୋଦୟ, ନବ ଜୀବନ ମଣ୍ଡଳ, କସ୍ତୁରବା ସ୍ମାରକ ନିଧିର କାର୍ଯ୍ୟ ୧୯୫୨ରୁ କାର୍ଯ୍ୟ କରୁଥିଲା । ବହୁକର୍ମୀ ନିଷ୍ଠାପର ଭାବରେ କାମକଲେ । ବହୁକାମ ହେଲା । ଦଳିତଙ୍କ ଉତ୍‌ଥାନରେ ଏହି ସଂସ୍ଥାମାନଙ୍କର ନିରବଚ୍ଛିନ୍ନ ଉଦ୍ୟମ ନିଶ୍ଚିତ ଭାବରେ ସଫଳ ହେଲା । କିନ୍ତୁ ଯେଉଁଠି ଭୀଷଣ ଦାରିଦ୍ର୍ୟ, ଅଶିକ୍ଷା, ଅନ୍ଧବିଶ୍ୱାସ, କୁସଂସ୍କାର, ରକ୍ଷଣଶୀଳତା ଆଦିଥିଲା, ସେହି ସ୍ଥାନ ଓ ସେହି ସମାଜରୁ ଏ ସବୁ ଦୂରକରି ଉନ୍ନତି ପଥରେ ଆଗେଇ ନେବା ସମୟ ସାପେକ୍ଷ ହେଲା ।

ସେତେବେଳକୁ ହିଂସାବାଦୀମାନେ ମଧ କମ ସକ୍ରିୟ ନଥିଲେ । ସାମ୍ୟବାଦୀ ମାନେ ଋଷିଆ ଓ ଚୀନକୁ ନିଜର ଆଦର୍ଶ ମାନି ହିଂସା ମାଧମରେ ସମାଜରେ ଥିବା ବୈଷମ୍ୟକୁ ଦୂର କରି ଶ୍ରେଣୀହୀନ ଓ ଶୋଷଣ ହୀନ ସମାଜ ଗଠନର ଧାରାରେ ବିଶ୍ୱାସୀ ଥିଲେ । ଲକ୍ଷ୍ୟପୂରଣ ପାଇଁ ସେମାନେ ଯେ କୌଣସି ପଦକ୍ଷେପ ନେବାପାଇଁ ପଛଉ ନଥିଲେ । ଏଣୁ ଏହା ସ୍ୱାଭାବିକ ଥିଲା ସେମାନେ କ୍ଷିପ୍ରଗତିରେ ପରିବର୍ତ୍ତନ ଚାହୁଁଥିଲେ । ସୁବିଧାଭୋଗୀ ଗୋଷ୍ଠୀକୁ ସମୂଳେ ନଷ୍ଟକରି ସମାଜର ନିମ୍ନସ୍ତରରେ ସମସ୍ତ ସୁବିଧା ସୁଯୋଗରୁ ବଞ୍ଚିତ ଥିବା ଗୋଷ୍ଠୀଙ୍କୁ ଏକ ମର୍ଯ୍ୟାଦାଜନକ ସ୍ତରକୁ ଆଣିବାକୁ ସେମାନେ ଯେଉଁ ଆଦର୍ଶର ପ୍ରଚାର କଲେ ତାହା ହିଂସାଯୁକ୍ତ ଥିଲା । କାଳକ୍ରମେ ସାମ୍ୟବାଦୀମାନେ ଭୂଦାନ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମର ଅସାରତା କଥା ବେଶୀ ପ୍ରଚାର କଲେ । ସେମାନଙ୍କ ରକ୍ଷଣଶୀଳତାର ସମାଲୋଚନା କଲେ । ସାମ୍ୟବାଦୀଙ୍କ ବାକ୍‌ଚାତୁରୀ ସମାଜର ନିମ୍ନସ୍ତରର ବହୁଲୋକଙ୍କୁ ଆକର୍ଷଣ କଲା, ଯାହା ଫଳରେ ହିଂସାର ବାତାବରଣ ଦେଖାଗଲା ।

ଏହି ସାମ୍ୟବାଦୀମାନେ ଭୂଦାନ, ଗ୍ରାମଦାନ, ସର୍ବୋଦୟ, ନବଜୀବନ ମଣ୍ଡଳ, କସ୍ତୁରବା ସ୍ମାରକ ନିଧି ଓ ସର୍ବସେବା ସଂଘ କାର୍ଯ୍ୟର କଚ୍ଛପଗତିକୁ ତୀବ୍ରଭାବେ ନାପସନ୍ଦ କରୁଥିଲେ । ଏହି କାର୍ଯ୍ୟକ୍ରମରେ ଯେଉଁ କର୍ମୀମାନେ କାମ କରୁଥିଲେ ସେମାନଙ୍କୁ ପ୍ରତିବିପ୍ଲବୀ କହୁଥିଲେ । ସାମ୍ୟବାଦୀ ମାନେ, ସର୍ବୋଦୟ ବାଲା ଯେ ଶୋଷଣର ଦ୍ରୁତତର ବିଲୋପରେ ସହାୟକ ନୁହଁନ୍ତି, ଏହା ସମୀକ୍ଷା କରି ଦେଖାଇ ଦେଉଥିଲେ ।

୧୯୬୦ ମସିହା ପରେ ସର୍ବୋଦୟ କର୍ମୀମାନେ ଏଣେତେଣେ ହୋଇଗଲେ କିନ୍ତୁ ଯେଉଁମାନେ କାମ କରୁଥିଲେ ନିଷ୍ଠାର ସହିତ କରୁଥିଲେ । ଗୋପବାବୁଙ୍କ ଦେହାନ୍ତ ପରେ ବୟସର ଚାପଯୋଗୁଁ ଆଚାର୍ଯ୍ୟ ହରିହର ଦାସ ଓ ମା' ରମାଦେବୀ ଆଉ ବ୍ୟାପକ ଗସ୍ତରେ ଆସିଲେ ନାହିଁ । ମାଳତୀ ଚୌଧୁରୀ ନବବାବୁ ନିଜ ସ୍ତରରେ ସଂଗ୍ରାମ ଚାଲୁ ରଖି ସମସ୍ତଙ୍କୁ ବିଭିନ୍ନ ସମୟରେ ଉତ୍ସାହ ଦେଉଥିଲେ । ଚୁପ ହୋଇ ବସିବା ଏମାନଙ୍କ ସ୍ୱଭାବ ବିରୋଧଥିଲା । ରମାଦେବୀ ମଧ୍ୟ ଆବଶ୍ୟକ ଅନୁଯାୟୀ, କ୍ଷେତ୍ର ଉପରେ ପହଞ୍ଚି କର୍ମୀମାନଙ୍କୁ ଉତ୍ସାହ, ସାହସ ଦେଉଥିଲେ । କୋରାପୁଟ ଜିଲ୍ଲାରେ ବିଶ୍ୱନାଥ ଆଞ୍ଜା ନବଜୀବନ ମଣ୍ଡଳ ଜରିଆରେ ଏହି ଶୋଷଣ ବିରୋଧୀ ସଂଗ୍ରାମ ଚାଲୁରଖିଥିଲେ । କୋରାପୁଟ ଜିଲ୍ଲାର ବିଭିନ୍ନ ଜାଗାରେ ଏହାର କେତୋଟି ଶାଖାଥିଲା । ସର୍ବୋଦୟ ମତବାଦରେ ଏବେବି ବିଶ୍ୱାସ ରଖିଥିବା କେତେ ଜଣ ନିଷ୍ଠାପର କର୍ମୀ ଏ ସବୁକୁ ଚଳାଉଥିଲେ । ଯେଉଁକର୍ମୀମାନେ ରହିଲେ ସେମାନେ ବିଭିନ୍ନ କ୍ଷେତ୍ର ସମିତିର ନିର୍ମାଣ କର୍ମର ହିସାବ ନିକାଶ ପାଇଁ କେବଳ ରହିଥିଲେ ।

କୋରାପୁଟ ଜିଲ୍ଲାଦାନ ହେଲାପରେ ବିଶ୍ୱନାଥ ଆଞ୍ଜା ତାଙ୍କର ବହୁ ସମୟ ଫୁଲବାଣୀ ଜିଲ୍ଲାରେ କଟାଇଲେ । ତାଙ୍କର ଚିଠିପତ୍ର ସବୁ ବାଲିଗୁଡ଼ା ଠିକଣାରେ ଗଲା ୧୯୬୭ ବେଳକୁ । ଏହି ସମ୍ବନ୍ଧରେ ବିଶ୍ୱନାଥ ଆଞ୍ଜା କହନ୍ତି ।

''ଭୂଦାନ କାମ ଆରମ୍ଭ ହେବାପରେ ସନ୍ଥ ବିନୋବାଜୀ କ୍ଷେତ୍ରମୁକ୍ତି, ନିଧିମୁକ୍ତି ବିଚାରଦେଲେ । ତେଣୁ କ୍ଷେତ୍ରମୁକ୍ତି ହେଲି । ଆଗରୁ ତ ନିଧିମୁକ୍ତି ହୋଇଥିଲି । କିନ୍ତୁ କୁଜେନ୍ଦ୍ରୀ ଗ୍ରାମର ମୋହ ମୋତେ ଛାଡ଼ି ନଥିଲା । ଆଜିଯାଏ ମଧ୍ୟ ସେଇ ଗାଁ ସହିତ ପରିଚିତ ସମ୍ପର୍କଭଳି ରହିଛି, କୁଜେନ୍ଦ୍ରୀ ଗାଁରେ ସନ୍ଥ ବିନୋବାଜୀ କୋରାପୁଟରେ ଚାରିମାସ ପଦଯାତ୍ରା କରିବା ମଧ୍ୟରେ ପ୍ରଥମ ଥର ଦୁଇଦିନ, ଦ୍ୱିତୀୟ ଥର ସାତଦିନ, ମୋଟରେ ନଅଦିନ କଟାଇଥିଲେ । କୁଜେନ୍ଦ୍ରୀର ପ୍ରଭାବ କୋରାପୁଟ ଜିଲ୍ଲା ବାହାରେ ବି ଥିଲା, ତେଣୁ କୁଜେନ୍ଦ୍ରୀକୁ ଦେଖିବା ପାଇଁ ବହୁତ ଗଣ୍ୟମାଣ୍ୟ ବ୍ୟକ୍ତି ମଧ୍ୟ ଆସୁଥିଲେ ।''

୧୯୬୭ ମସିହାରେ ସନ୍ଥ ବିନୋବାଙ୍କର ଫୁଲବାଣୀ ଜିଲ୍ଲାରେ ବୁଲିବା ପ୍ରୋଗ୍ରାମ ଠିକ୍ ହେଲା । ତେଣୁ ମୋତେ ମା ରମାଦେବୀ ତା'ର ବ୍ୟବସ୍ଥା କରିବା ପାଇଁ ପଠାଇଲେ । ମୁଁ କୋରାପୁଟ ଛାଡ଼ି ଫୁଲବାଣୀ କୁ ଭୂଦାନ ଉଦ୍ଦେଶ୍ୟରେ ବାଲିଗୁଡ଼ା ଆସିଲି । କୋରାପୁଟ ଜିଲ୍ଲା ସେତେବେଳେ ଜିଲ୍ଲାଦାନ ଘୋଷଣା ହୋଇ ସାରିଥିଲା । ଗ୍ରାମ ପୁର୍ନଗଠନ କାମ ଅଣ୍ଣା ସାହେବ ସହସ୍ରବୁଦ୍ଧେ ଯାହା ଆରମ୍ଭ କରିଥିଲେ ସେଇ କାମ ମଧ୍ୟ କ୍ଷେତ୍ରନୀଷ୍ଠ ହେବାକୁ ଆରମ୍ଭ ହୋଇ ଯାଇଥିଲା ।''

୧୯୬୭ରେ ଓଡ଼ିଶାର ଉପାନ୍ତ ଅଞ୍ଚଳ ପାରଳାଖେମୁଣ୍ଡି, ରାୟଗଡ଼ା, ଗୁଣୁପୁରୁ, ସେପଟେ ପାଡୁଆ, ନନ୍ଦପୁର, ମାଲକାନଗିରିରେ ସାମ୍ୟବାଦୀ କମ୍ୟୁନିଷ୍ଟ ଦଳର ବିରୋଧୀ ଗୋଷ୍ଠୀ ନକ୍ସାଲବାଦୀ ବୋଲାଇ କାମ ଆରମ୍ଭ କଲେ । ୧୯୬୭ରେ ନକ୍ସାଲବାଡ଼ି ଠାରେ କମୁନିଷ୍ଟ ପାର୍ଟି ଅଫ ଇଣ୍ଡିଆ (ମାର୍କ୍ସ)ର ଚରମପନ୍ଥୀ ଗୋଷ୍ଠୀ ଚାରୁ ମଜୁମଦାର, କାନୁ ସାନ୍ୟାଲ, ସରୋଜ ଦତ୍ତଙ୍କ ନେତୃତ୍ୱରେ ମାଓବାଦୀ ଧାରାରେ ଏକ ଦଳ ଗଠନ କରାଗଲା । ଏହି ଦଳ ନିଜକୁ ମାର୍କ୍ସବାଦୀ-ଲେନିନବାଦୀ-କମ୍ୟୁନିଷ୍ଟ ପାର୍ଟି ନାମରେ ଚିହ୍ନାଇ ହେଲେ । ଗ୍ରାମାଞ୍ଚଳରେ ଗଣବିପ୍ଳବ ଜରିଆରେ ସାମନ୍ତବାଦର ମୂଳ ଉଖାଡ଼ି ଫିଙ୍ଗିବା ପାଇଁ ଯୋଜନା ମାନ କରାଗଲା । ଏହି ଲକ୍ଷ୍ୟ ହାସଲ ପାଇଁ ରକ୍ତପାତ, ହିଂସା, ହତ୍ୟାକୁ ଏକ ମାଧ୍ୟମ କରାଗଲା । ଏହିଦଳ ୧୯୬୭ରେ ଭୂ-ସଂସ୍କାର ତଥା ଶାସନତନ୍ତ୍ରରେ ପରିବର୍ତ୍ତନ ଆଣିବା ପାଇଁ ପଶ୍ଚିମ ବଙ୍ଗର ଦାର୍ଜିଲିଂ ଜିଲ୍ଲାର ନକ୍ସଲବାଡ଼ିର କୃଷକ ମାନଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଇ ତାଲିମ ଦେବା ଆରମ୍ଭ କଲେ । ଗାଁ ଗାଁରେ କୃଷକ ସମିତି ଗଠନ କରାଗଲା । ଏହି ସମିତିର ସଭ୍ୟମାନେ ହିଂସା, ଅସ୍ତ୍ର ଶସ୍ତ୍ରର ପ୍ରୟୋଗ ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହେଲେ । ଏମାନେ ଭୂମି ମାଲିକମାନଙ୍କ ଭୂ-ଅଧିକାର ରେକର୍ଡ଼ ଜାଳିଦେଲେ । ଜବରଦସ୍ତ ଜମି ମାଡ଼ିବସିଲେ ଏବଂ ଜମିର ଫସଲକୁ ନିଜ ଅଧିକାରକୁ ନେଇଗଲେ । ଏମିତି ଏକ ହିଂସାଯୁକ୍ତ ଗଣ ବିପ୍ଳବ ମୁଣ୍ଡ ଟେକିଲା ଏବଂ ୨୨-୪-୧୯୬୭ରେ ପ୍ରଥମକରି ପଶ୍ଚିମବଙ୍ଗର ପ୍ରଶାସନ ପୋଲିସ୍ ସାହାଯ୍ୟରେ ନକ୍ସଲ ଆତଙ୍କବାଦୀଙ୍କୁ ନିଯନ୍ତ୍ରଣ କରିବା ପାଇଁ ପଦକ୍ଷେପ ନେଲେ । ୧୯୬୭ରୁ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ ୧୯୭୦-୭୧ ବେଳକୁ ଚରମରେ ପହଞ୍ଚିଲା । ସହରାଞ୍ଚଳରେ ଏହା ପ୍ରସାର ହୋଇପାରିଲା ନାହିଁ । ୧୯୭୧ରେ ସରୋଜ ଦତ୍ତ ପୋଲିସ ହାତରେ ଗୁଳିର ଶିକାର ହୋଇ ମୃତ୍ୟୁବରଣ କଲେ । ୧୯୭୨ ଜୁଲାଇ ମାସରେ ଚାରୁ ମଜୁମଦାର ଗିରଫ ହେଲେ । ୧୯୭୨ର ଶେଷବେଳକୁ ଏହି ଆନ୍ଦୋଳନର ଶୀର୍ଷ ସ୍ଥାନୀୟ ନେତାମାନେ ଗିରିଫ ହେଲେ ଏବଂ କେତେକ ମଲେ । ପରେ ପରେ ସି.ପି.ଆଇ (ଏମ୍.ଏଲ୍) ବହୁ ଛୋଟ ଛୋଟ ଗୋଷ୍ଠୀରେ ବିଭକ୍ତ ହୋଇଗଲେ ।

ଆନ୍ଧ୍ର ପ୍ରଦେଶରେ ବିଶେଷତଃ ତେଲେଙ୍ଗାନା ଅଞ୍ଚଳରେ ଏହି ନକ୍ସଲବାଦୀଙ୍କ ପ୍ରଭାବ ବହୁତ ବଢ଼ିଲା ଏବଂ ଶ୍ରୀକାକୁଲମ୍ ଦେଇ ଗୁଣୁପୁର, ରାୟଗଡ଼ା, ପାରଳାଖେମୁଣ୍ଡିରେ ପ୍ରବେଶ କଲା । ଏମାନଙ୍କ ବଢୁଥିବା ପ୍ରଭାବକୁ ସର୍ବୋଦୟ କର୍ମୀମାନେ ପ୍ରତିହତ କରିବାରେ ସକ୍ଷମ ହେଲେ ନାହିଁ । ୧୯୬୧ରୁ ୧୯୭୩ ମଧ୍ୟରେ ନକ୍ସଲବାଦୀମାନେ ବିହାରରେ ପ୍ରଚଳିତ ସାମନ୍ତ ପ୍ରଥା, କୃଷିଶ୍ରମିକମାନଙ୍କୁ ନାମମାତ୍ରମଜୁରୀ, ଭୂମି ହୀନତା, ଗୋତିପ୍ରଥା ଓ

ଋଣଦେଇ ବହୁସୁଧ ନେଉଥିବା ମହାଜନଙ୍କ ବିରୋଧରେ ଜନସଂଗଠନ ଆରମ୍ଭକଲେ । ଫଳରେ ଉଗ୍ରୟକ୍ତ ଜନତା ୧୯୬୩ରେ ମୁଜାଫରନଗରର ମୁଁସହରୀ ଗ୍ରାମର ଏକ ଜମିଦାର ପରିବାରର ୧୮ ଜଣଙ୍କୁ ହତ୍ୟାକଲେ ଏବଂ ୧୯୭୩ ମଧ୍ୟରେ ବିହାରର ବିଭିନ୍ନ ଅଞ୍ଚଳରେ ୨୨ ଜଣ ଜମିଦାରଙ୍କୁ ହତ୍ୟା କଲେ । ଜନ ଅଦାଲତ ନାମରେ ଏମାନେ ନିଜର ବିରୋଧୀ, ଭୂମିକୁ ନେଇ ଗଣ୍ଡଗୋଳ କରୁଥିବା, ଲାଞ୍ଚ ନେଉଥିବା ଅଭିଯୁକ୍ତ ମାନଙ୍କୁ ଲୋକଙ୍କ ଉପସ୍ଥିତିରେ ବିଚାର କରି ଦଣ୍ଡଦେବା ଆରମ୍ଭ କଲେ, ଏମାନଙ୍କର ପ୍ରଚଳିତ ଶାସନ ଓ ନ୍ୟାୟ ବ୍ୟବସ୍ଥା ଉପରେ ଆସ୍ଥା ନଥିଲା । ଫଳରେ ଯୁଗ ଯୁଗ ଧରି ପୁଞ୍ଜିପତି ଓ ସାମନ୍ତଙ୍କ ଦ୍ୱାରା ଅତ୍ୟାଚାରିତ, ନିଷ୍ପେଷିତ ଗ୍ରାମାଞ୍ଚଳର ଲୋକମାନେ ଏମାନଙ୍କୁ ସମର୍ଥନ କଲେ, ଫଳରେ ଏହି ଆନ୍ଦୋଳନ କର୍ତ୍ତାମାନେ ହୋଇଗଲେ ଆଦିବାସୀଙ୍କ ମୁକ୍ତିଦାତା । One man's terrorist is another man's martyr. ଏମାନଙ୍କ ଆନ୍ଦୋଳନର ମୂଳମନ୍ତ୍ର ହେଲା ହିଂସା ଓ ଆତଙ୍କ । ଗାନ୍ଧୀବାଦ, ଆଦର୍ଶ, ସତ୍ୟ, ଅହିଂସା ସହିତ ଏମାନଙ୍କର କୌଣସି ସମ୍ପର୍କ ନଥିଲା । ଅତଏବ ଭୂଦାନକର୍ମୀ ମାନେ ଏ ଆନ୍ଦୋଳନକୁ ନିଜସ୍ୱ ମାର୍ଗରେ ପ୍ରତିରୋଧ କରିବା ସମ୍ଭବ ହେଲା ନାହିଁ ।

୧୯୬୧ରୁ ୧୯୭୦ ଭିତରେ କୋରାପୁଟ ଜିଲ୍ଲାର ବହୁ ଅଞ୍ଚଳରେ ହିଂସାର ବାତାବରଣ ସୃଷ୍ଟି ହୋଇଥିଲା । ହରିମିଶ୍ରଙ୍କ ହତ୍ୟାକାଣ୍ଡରୁ କେହି କିଛି ଶିଖିଲେ ନାହିଁ,ନା ସରକାର, ନା ସମାଜସେବୀ, ନା ବାମପନ୍ଥୀ ଦଳ । ଅହିଂସାବାଦୀ ମାନେ ଯେତିକି ସକ୍ରିୟ ହେବା କଥା ହୋଇ ପାରିଲେ ନାହିଁ, ସରକାର ନିଜର ମୌଳିକ ଦାୟିତ୍ୱ ଭୁଲି ପଞ୍ଚାୟତ, ପଞ୍ଚାୟତ  ସମିତି, ଜିଲ୍ଲା ପରିଷଦ ଜରିଆରେ ଗ୍ରାମାଞ୍ଚଳର ବିକାଶ ପାଇଁ ଦୃଷ୍ଟିଦେଲେ । ବିଜୟନଗର ରାୟଗଡ଼ା ରେଳପଥ ହେବାରୁ ୪୦ ବର୍ଷ ଭିତରେ ରାୟଗଡ଼ା ଅଞ୍ଚଳରେ ଚିନି କାରଖାନା, ଫେରୋମାଙ୍ଗାନିଜ, କାଗଜ, ଫେରୋସିଲିକନ କାରଖାନା, କରତକଳ ଆଦି ବସିଲା ।

ଶିଳ୍ପି କରଣ ଫଳରେ ବାହାରର ବହୁଲୋକ ଉପକୃତ ହେଲେ କିନ୍ତୁ ଏହା ଆଦିବାସୀଙ୍କ ମୌଳିକ ବିକାଶରେ କୌଣସିମତେ ସହାୟକ ହେଲା ନାହିଁ । ଏ ସବୁ କାରଖାନାରେ ଯେଉଁ ଆଦିବାସୀ ମାନେ କାମକଲେ ଛୋଟ ଛୋଟ ପଦବୀରେ, ସେମାନେ ଲୁଗା ପିନ୍ଧିଲେ, ସ୍ନୋ, ପାଉଡ଼ର, ଅତରର ବ୍ୟବହାର ଜାଣିଲେ, କିନ୍ତୁ ସେମାନଙ୍କ ଭିତରେ ଥିବା ଭଲଗୁଣ, ସଂସ୍କୃତିକୁ ଭୁଲିଗଲେ । ଓଠରେ ଗୀତ, ପାଦରେ ନାଚଥାଇ, ଜୀବନକୁ ଜୀବନ ଭଳି ବଞ୍ଚି ଦିନେ ମହାକାଳରେ ନିଜକୁ ମିଶାଇଦେବାର ମହନୀୟ ଭାବ ଆସ୍ତେ ଆସ୍ତେ ସେମାନଙ୍କ

ଭିତରୁ ଯନ୍ତ୍ର ସଭ୍ୟତା ଯୋଗୁଁ ମରି ମରି ଗଲା । ନିଜ ପଡ଼ୋଶୀମାନଙ୍କ ସହ ସେମାନଙ୍କ ସମ୍ପର୍କ କମ ରହିଲା । ଏହି ପରିବର୍ତ୍ତନ, ପ୍ରକ୍ରିୟାକୁ ଦେଖି ପୂଜ୍ୟ ଗୋପୀନାଥ ମହାନ୍ତି ଦାଦିବୁଢ଼ା, ଅମୃତର ସନ୍ତାନ, ପରଜାର ପୃଷ୍ଠଭୂମିରେ ବିଶ୍ୱନାଥ ଆଞ୍ଚାଙ୍କୁ ଆଖି ଆଗରେ ରଖି ସୃଷ୍ଟି କରିଗଲେ ଏକ ଗାନ୍ଧୀବାଦୀ ଚରିତ୍ର ଜଗନ୍ନାଥ ଭାଇ ।

୧୯୬୬ରେ ବିଶ୍ୱନାଥ ଆଞ୍ଚା କ୍ଷେତ୍ରମୁକ୍ତ ହୋଇ ବିନୋବାଜୀଙ୍କ ଫୁଲବାଣୀ ଗସ୍ତକୁ ସାକାର କରିବା ପାଇଁ ଯାଇ ପହଞ୍ଚିଲେ ବାଲିଗୁଡ଼ାରେ । ୧୯୬୭ରେ ଫୁଲବାଣୀ ଜିଲ୍ଲାରେ ଭୂଦାନ କାମ ଆରମ୍ଭ ହେଲା ଆଉ ଆରମ୍ଭହେଲା ବିଶ୍ୱନାଥ ଆଞ୍ଚାଙ୍କ ଜୀବନ ଅପରାହ୍ନର ଦ୍ୱିତୀୟ ପର୍ବ ।

* * *

-ଚବିଶି-

# ବିଶ୍ୱନାଥ ଆଞ୍ଚାଙ୍କ କେତେକ ଅନୁଭବ

୧୯୩୭ରେ ଗୋପବାବୁଙ୍କ ସମ୍ପର୍କରେ ଆସିଥିବା ଓ ୧୯୩୮ ମସିହାରେ ବରୀ ଆଶ୍ରମରେ ତାଲିମ ନେବାବେଳେ ବିଶ୍ୱନାଥ ଆଞ୍ଚା ଗୋପବନ୍ଧୁ ଚୌଧୁରୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ । ତାଙ୍କର ଲକ୍ଷ୍ୟ ଥିଲା ଯାହା ଅନ୍ୟାୟ ନ୍ୟାୟୋଚିତ ବାଟରେ ତା'ର ବିରୋଧ କରାଯିବ । ନ୍ୟାୟ ମିଳିବା ଯାଏ ସଂଗ୍ରାମ ଚାଲୁରହିବ । ସଂଗ୍ରାମ ସତ୍ୟ ଓ ଅହିଂସା ମାର୍ଗରେ ହେବ ।

୧୯୪୧ରେ ସେ କୁଢେନ୍ଦ୍ରୀ ଆସି ସଂଗଠନ କଲେ । ସ୍ୱାଧୀନତା ସଂଗ୍ରାମ ଓ ସମାଜ ସେବାରେ ମନଦେଲେ । ଆଦିବାସୀଙ୍କ ଜୀବନରେ ପରିବର୍ତ୍ତନ ଆଣିବା ପାଇଁ ବହୁ ରଚନାତ୍ମକ କାମ ହାତକୁ ନେଲେ । ଆଦିବାସୀଙ୍କ ସହ ଏକପ୍ରାଣ ହୋଇଗଲେ । ସେ ଦେଖିଲେ ଆଦିବାସୀ ହେଉଛନ୍ତି ଏକ ସୁନ୍ଦର ସଂସ୍କୃତିର ବାହକ ଓ ଧାରକ । କେବଳ ଆର୍ଥିକ ଦୁରବସ୍ଥା  ଓ ଉତ୍କଟ ଦାରିଦ୍ର୍ୟ ତଥା ଶିକ୍ଷାର ଅଭାବ ଯୋଗୁଁ ସେମାନେ ଦୁସ୍ଥ ଜୀବନ ଯାପନ କରୁଛନ୍ତି । ଶୋଷଣର ଶିକାର ହେଉଛନ୍ତି । ଆଦିବାସୀଙ୍କ ଭଳି ହରିଜନ ମାନେ ମଧ ଅସ୍ପୃଶ୍ୟ, ଅବହେଳିତ ହୋଇ ନିମ୍ନତର ଜୀବନ ବଞ୍ଚୁଛନ୍ତି । ସେମାନଙ୍କ ପାଇଁ, ସେମାନଙ୍କ ସାମାଜିକ ଜୀବନର ଉତ୍ଥାନ ପାଇଁ ସେ କାମ ଆରମ୍ଭକଲେ ବହୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ । କୁଢେନ୍ଦ୍ରୀରେ ଛୁଆଁ ଅଛୁଆଁ ଭେଦ ଦୂର କରିବା, ଏକ କୂଅରୁ ପାଣି ବ୍ୟବାହାର କରିବା, ସବର୍ଣ୍ଣ ମାନଙ୍କ ସହ ହରିଜନ ମାନଙ୍କୁ ନେଇ ରାଧାକୃଷ୍ଣ ମନ୍ଦିରରେ ପ୍ରବେଶ କରାଇବା କାମ କରାଗଲା ଓଡ଼ିଶାର ବିଶିଷ୍ଟ ସର୍ବୋଦୟ ନେତା କୃପାସିନ୍ଧୁ ହୋତା ଏବଂ ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ପୌରୋହିତ୍ୟରେ ହରିଜନମାନେ ମନ୍ଦିର ପ୍ରବେଶ କରିଥିଲେ ।

ଆଞ୍ଚା ଅନୁଭବ କଲେ, ଆଦିବାସୀ ସହଜରେ ଧୋବ ଧାଉଳିଆ ମାନଙ୍କୁ ବିଶ୍ୱାସ କରନ୍ତି ନାହିଁ । ସେମାନଙ୍କ ସହିତ ସେମାନଙ୍କ ପରି ଚଳିଲେ ଯାଇ ସେମାନେ ଅନ୍ତରଙ୍ଗତା ସ୍ଥାପନ କରିଥାନ୍ତି । ଆଦିବାସୀମାନଙ୍କ ସୁବିଧା ଅସୁବିଧା ଜାଣିବା ପାଇଁ ସେମାନଙ୍କ ଭାଷା ଶିକ୍ଷା କରିବା ପ୍ରଥମେ ଆବଶ୍ୟକ । ଭାଷା ପରସ୍ପରକୁ ନିକଟତର କରିଥାଏ । ଏଣୁ ବିଶ୍ୱନାଥ ଆଞ୍ଚା ୧୯୪୧ରେ କୁଢେନ୍ଦ୍ରୀକୁ ଆସିଲାପରେ ସଉରା ଓ କନ୍ଧମାନଙ୍କର ଭାଷା ଶିଖି ସେମାନଙ୍କ   ସହିତ ମିଶିପାରିଲେ, ସେମାନଙ୍କର ଦୁଃଖ ସୁଖରେ ସମଭାଗୀ ହୋଇ

ପାରିଲେ । ଏହା ତାଙ୍କ ପାଇଁ ନିଶ୍ଚିତଭାବେ ବଡ଼ ଉପଲବ୍ଧିଥିଲା । ସ୍ତ୍ରୀ ପୁରୁଷ ସମସ୍ତଙ୍କ ସହ ସେ ସମାନ ଭାବରେ ମିଶି ପାରୁଥିଲେ ।

ସେ ଅନୁଭବ କରିଥିଲେ ଉପଦେଶ ଦେଇ, ବଡ଼ ବଡ଼ କଥା କହି କିଛି କରିହୁଏ ନାହିଁ । ନିଜେ ଅନ୍ୟ ପାଇଁ ଉଦାହରଣ ହେବାକୁ ହେବ, ନିଜ ହାତରେ ନିଜ କାମକରି ସ୍ୱାବଲମ୍ବୀ ହେଲେ ଯାଇ ଅନ୍ୟମାନେ ତାହା କରିବେ । ଡ଼େଲାଙ୍ଗ ସମ୍ମିଳନୀ, ବରୀ ଆଶ୍ରମ ଓ କୁଜେନ୍ଦ୍ରୀ ଆଶ୍ରମରୁ ସେ ଏଇ କଥାହିଁ ଅନୁଭବ କରିଥିଲେ ଏବଂ ତାହା ତାଙ୍କ ପାଇଁ ବହୁ ପ୍ରେରଣା ପ୍ରଦ ହୋଇଥିଲା । ପରବର୍ତ୍ତୀ କାଳରେ ଏହି ଆଦର୍ଶର ଅନୁବର୍ତ୍ତୀ ହେବା ତାଙ୍କ ପକ୍ଷେ ସହଜ ହୋଇଗଲା ।

ବିଶ୍ୱନାଥ ଆଜ୍ଞା ଅନୁଭବ କରିଥିଲେ ଶିକ୍ଷାର ଅଭାବ ଯୋଗୁଁ ଆଦିବାସୀ ପିଲାମାନେ ଉନ୍ନତି କରି ପାରୁନାହାନ୍ତି, ଏଣୁ ସର୍ବ ପ୍ରଥମେ କୁଜେନ୍ଦ୍ରୀର ପିଲାମାନଙ୍କୁ ଏକାଠି କରି ପାଠ ପଢ଼ାଇବା ଆରମ୍ଭ କରିଥିଲେ । ବାଇରୁ ଗମାଙ୍ଗୋଙ୍କ ଝିଅ ସାଣ୍ଡିକୁ ତାଲିମ ପାଇଁ ବରୀ ପଠାଇ ତାକୁ ଜଣେ କୁଶଳୀ ସେବିକାରେ ପରିଣତ କରିବା ବିଶ୍ୱନାଥ ଆଜ୍ଞାଙ୍କ ପାଇଁ ଏକ ସୁଖଦ ଅନୁଭବ ଥିଲା ।

ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ କରି, ଆଦିବାସୀମାନଙ୍କୁ ଶୋଷଣରୁ ମୁକ୍ତି ପାଇବାର ବାଟ ଦେଖାଇବା, କପାଚାଷ, ସୂତାକଟା ଓ ଲୁଗାବୁଣା ଶିଖାଇ ସେମାନଙ୍କୁ ସ୍ୱାବଲମ୍ବୀ କରାଇବା, ସେମାନଙ୍କ ପୂର୍ବପୁରୁଷଙ୍କ କଷ୍ଟାର୍ଜିତ ଭୂମି ଅଧିକାର ପାଇଁ ଅହିଂସଭାବେ ସଂଘର୍ଷ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାରେ ବିଶ୍ୱନାଥ ଆଜ୍ଞା ଯେଉଁ ଧୈର୍ଯ୍ୟ, ତ୍ୟାଗ, ଏକାଗ୍ରତା ଓ ଲକ୍ଷ୍ୟ ପୂରଣ ପାଇଁ ସାଲିସ  ବିହୀନ ମନୋଭାବ ଦେଖାଇଲେ ତାହାର ତୁଳନା ସେ ନିଜେ । ଭୂ-ସତ୍ୟାଗ୍ରହୀ ସମାଜ ଗଢ଼ି ଗାନ୍ଧୀମାର୍ଗରେ ଲଢ଼େଇ କରିବାର ମନୋଭାବ ସେ ଆଦିବାସୀ ମାନଙ୍କଠାରେ ଜାଗ୍ରତ କରି ପାରିଥିଲେ ।

ସ୍ୱରାଜ ସଂଗ୍ରାମରେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଜେଲ ବରଣ କରି, କଷ୍ଟ ସହି । ସତ୍ୟାଗ୍ରହରେ ଯୋଗଦେବାର ଯେଉଁ ଅନୁଭବ, ବିଶ୍ୱନାଥ ଆଜ୍ଞାଙ୍କ ପାଇଁ ତାହା ଅନନ୍ୟଥିଲା ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନ, ଭାରତ ପାଇଁ ଘଡ଼ି ସନ୍ଧିର ମୁହୂର୍ତ୍ତ । ଗାନ୍ଧୀଜୀଙ୍କ ଡ଼ାକରାରେ ସେ ସ୍ଥିର କଲେ, କେହି ସାଙ୍ଗରେ ଯାଆନ୍ତୁ ବା ନ ଯାଆନ୍ତୁ, ସାହାଯ୍ୟ ସହଯୋଗ ଦିଅନ୍ତୁ ବା ନ ଦିଅନ୍ତୁ, ସେ ଯାହା କରୁଛନ୍ତି ବିବେକର ଅନୁମୋଦନରେ କରୁଛନ୍ତି, ତେଣୁ

ତାହା ହିଁ ଠିକ୍ । ସେତେବେଳକୁ ବୟସ ୨୪ । ଯୌବନର ତେଜ ଓ ଓଜ । ଆଗେଇ ଯିବାର ଧୈର୍ଯ୍ୟ ବେଶୀ । ବାଧା ଆସିଲେ ବି ସାମନା କରିବାର ସାହସ ଥିଲା ୧୯୪୨ ବେଳକୁ । ଏଣୁ କୋରାପୁଟ ଜେଲର ପାଣି ପବନ ଝଡ଼ ବତାସରୁ ସେ ବହୁତ କଥା ଶିଖିଲେ । ବହୁତ କଥା ଜାଣିଲେ । ଜେଲର ଅନୁଭବ ତାଙ୍କ ପାଇଁ ନିଜକୁ ତିଆରି କରବାର ସମୟ ଥିଲା, ପରବର୍ତ୍ତୀ କାଳରେ ଦୁନିଆକୁ ସାମନା କରିବାକୁ । ସାଧାରଣ ମଣିଷ ନଥିଲେ ସେ । ଧୈର୍ଯ୍ୟହରା ହେବାର ଲକ୍ଷଣ ତାଙ୍କଠାରେ ନଥିଲା ।

୧୯୫୫ପରେ ସେ ନିଜକୁ ଅନ୍ୟଙ୍କୁ ଦେଖି, ପରଖି, ତାଙ୍କ କାର୍ଯ୍ୟ ପଦ୍ଧତିରେ ବହୁ ପରିବର୍ତ୍ତନ ଆଣିଲେ । ସେ ହୋଇଗଲେ ସମସ୍ତଙ୍କର ବନ୍ଧୁ । କାହାକୁ ଶତ୍ରୁ ଭାବେ ଦେଖିବା ତାଙ୍କ ମାନସିକତାରେ ନଥିଲା । ସେ ଆସିଥିଲେ ଗାଆଁ ଗଢ଼ିବାକୁ ରଚନାତ୍ମକ କର୍ମୀଭାବେ । ଭଲ ମନ୍ଦ ମିଶେଇ ସେ ଗଢ଼ିବେ ଗାଆଁ । ସେ ଜାଣନ୍ତି ରାତିକ ଭିତରେ ଆଗର ରୀତି ସବୁ ବଦଳିଯିବ ନାହିଁ । ହଠାତ୍ ବେଠି, ବେଗାରୀର ଲୋପ ହେବ ନାହିଁ । କ୍ଷେତ୍ର ପ୍ରସ୍ତୁତ କରିବାକୁ ହେବ । ୧୯୪୨ରେ ସେ ଅନ୍ୟାୟ ବିରୋଧରେ ସଂଘର୍ଷ କରିଥିଲେ । ୧୯୫୩ ରୁ ୫୫ ଭିତରେ ସେଇ ସଂଘର୍ଷ ଜାରିରଖିଲେ କିନ୍ତୁ ତାହା ଅନ୍ୟ ପ୍ରକାର ଥିଲା । ସେ ଶୋଷଣ ମୁକ୍ତି ପାଇଁ ଯେତିକି ସମୟ ଦେଲେ ତାଠୁ ଅଧିକ ସମୟ ଦେଲେ ଖଦୀ ସଂଗଠନରେ, ଗ୍ରାମଦାନ, ଭୂଦାନ, ଆଦିବାସୀ ପିଲାଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟପାଇଁ । ଆଦିବାସୀ ତାଙ୍କୁ ନିଜଲୋକ ମନେକଲା । ସମ୍ମାନଦେଲା । ଆଞ୍ଚା ବୋଲି ଡ଼ାକିଲା । ସେ କେବଳ ସଂଗ୍ରାମୀ ଭାବେ ପରିଚିତ ହେଲେ ନାହିଁ । ନିଖିଳ ପୀଡ଼ିତ ଆତ୍ମା ଓ ସାଧାରଣ ମଣିଷର ଦୁଃଖ ସୁଖର ସାଥୀ ହୋଇଗଲେ ।

୧୯୬୦ ମସିହା ବେଳକୁ ବିଶ୍ୱନାଥ ଆଞ୍ଚା ଦେଖିଲେ ଭୂଦାନ କର୍ମୀ ମାନଙ୍କ ପରିବର୍ତ୍ତିତ ରୂପ । ନିର୍ମାଣ କର୍ମୀଙ୍କ ମାନସିକତା । କେହି ଆଉ ପୂର୍ବପରି ଦୁଃଖ କଷ୍ଟ ସହି ଆଦିବାସୀ ଅଞ୍ଚଳରେ କାମ କରିବା ପାଇଁ ପସନ୍ଦ କଲେ ନାହିଁ । ଓଡ଼ିଶା ସରକାରଙ୍କ ଭୂଦାନ କର୍ମ ପ୍ରତି ଅସୂୟାଭାବ, କର୍ମୀଙ୍କ ଅଭାବ । କମ୍ୟୁନିଷ୍ଟଙ୍କ ଅପପ୍ରଚାର ବଢୁଥିଲା ଏଣୁ, ସେ ସର୍ବୋପରି ପ୍ରଚଳିତ ଶୋଷଣର ବିଲୋପ ପାଇଁ, ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ଉଚିତ ମନେକଲେ । କିନ୍ତୁ ବାରମ୍ୱାର ଦୃଷ୍ଟି ଆକର୍ଷଣ କଲାପରେ ମଧ ଯେତେବେଳେ କୌଣସି ସୁଫଳ ମିଳିଲା ନାହିଁ, ସେ ଆଉ ସେଥିରେ ସମୟ ନଷ୍ଟ କରିବା ଉଚିତ ମନେକଲେ ନାହିଁ ।

୧୯୬୦ ପରେ ବିଶ୍ୱନାଥ ଆଞ୍ଚାଙ୍କ ଦ୍ୱାରା ଶୋଷଣର ବିଲୋପ ପାଇଁ ପୂର୍ବପରି ସାମୂହିକ ଆନ୍ଦୋଳନ କରିବା ସମ୍ଭବ ହେଲା ନାହିଁ । ତାଙ୍କର ସଂସ୍କାରମୂଳକ କାର୍ଯ୍ୟ ସେମିତି ଚାଲିଲା ।

୧୯୬୩ ରେ ଖଦୀମଣ୍ଡଳ ସଭାପତି ଭାବେ ଖଦୀ କାର୍ଯ୍ୟକ୍ରମର ପ୍ରସାର ପାଇଁ ଚେଷ୍ଟା କଲେ । ଖଦୀର ବ୍ୟବସାୟୀକରଣ ହେଲା । ସ୍ୱାଧୀନତା ସଂଗ୍ରାମ କାଳରେ ବିଶ୍ୱନାଥ ଆଞ୍ଚା ଖଦୀଉତ୍ପାଦନରେ ଆଦିବାସୀ ମାନଙ୍କୁ ସ୍ୱାବଲମ୍ବୀ କରାଇ ପାରିଥିଲେ । ସେ ସ୍ୱାଧୀନତା ପରେ ଖଦୀ ବ୍ୟବସାୟକୁ ନେଇ ଆଦିବାସୀଙ୍କ ଜୀବନକୁ ଛୁଇଁ ପାରିଲେ ନାହିଁ । ଶେଷରେ ଅନୁଷ୍ଠାନ ଗୁଡ଼ିକର ପରିଚାଳନାରେ ବହୁ ବିଶୃଙ୍ଖଳା ଦେଖାଗଲା । ଖଦୀ ମଣ୍ଡଳର ପ୍ରସାର ହେଲା ନାହିଁ । ୧୯୬୩ରୁ ବିଶ୍ୱନାଥ ଆଞ୍ଚା ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହିଲେ । ୧୯୬୪ରେ ରାଉରକେଲାରେ ଯେଉଁ ସାଂପ୍ରଦାୟିକ ଦଙ୍ଗା ହେଲା, ସେଠାକୁ ଯାଇ ଶାନ୍ତି ସୈନିକ ଭାବେ ମୁସଲମାନ ମାନଙ୍କ  ଥଇଥାନ କାମରେ ବ୍ୟସ୍ତ ରହିଲେ । ୧୯୬୭ ପାରାଦ୍ୱୀପ ବନ୍ୟାରେ ରିଲିଫ ସଂଗ୍ରହ କରି ବାଣ୍ଟିବାରେ ସମୟ ଦେଲେ, ଫଳରେ କୋରାପୁଟରେ ସେ ଆଉ ରହି ପାରିଲେ ନାହିଁ ।

୧୯୬୬ରେ ବିନୋବାଜୀଙ୍କ ଫୁଲବାଣୀ ଗସ୍ତ କାର୍ଯ୍ୟକ୍ରମ ପାଇଁ ସେ କୋରାପୁଟ ଛାଡ଼ିଲେ ।

ସେ ଦେଖିଲେ କୋରାପୁଟ ଜିଲ୍ଲାରେ ଯେଉଁ ଗ୍ରାମଗୁଡ଼ିକ  ଦାନ ହୋଇଥିଲା ସେହି ଗ୍ରାମଦାନୀ ଗ୍ରାମରେ ଗ୍ରାମପାଣ୍ଠି ଗଠନ କରି ସାହୁକାରମାନଙ୍କଶୋଷଣରୁ ରକ୍ଷାପାଇବା ପାଇଁ ଯେଉଁ ପଦକ୍ଷେପ ନେଉଥିଲେ ତାହା ମଧ କାଳକ୍ରମେ ଆଉ କାମକଲା ନାହିଁ । କ୍ରମେ ଗ୍ରାମଦାନୀ ଗ୍ରାମ ଲୋକଙ୍କର ଏକତା କମିଗଲା । ଗାଁ ଲୋକେ ନିଜ ପାଇଁ ଯେଉଁ ବିଶ୍ୱାସର ମୂଳଦୁଆ ଗଢ଼ିଥିଲେ ତାହା ଭୁଷୁଡ଼ି ପଡ଼ିଲା ।

ଏସବୁ ସତ୍ତ୍ୱେ ବିଶ୍ୱନାଥ ଆଞ୍ଚା ତାଙ୍କ ନୀତିରୁ କେବେ ବିଚ୍ୟୁତ ହୋଇ ନଥିଲେ । ସେ ବିଭିନ୍ନ ଗ୍ରାମରୁ ପାଠ ପଢ଼ିବାକୁ ସୁଯୋଗ ପାଉନଥିବା ଆଦିବାସୀ ପିଲାଙ୍କୁ ନେଇ ଓଡ଼ିଶାରେ ପ୍ରତିଷ୍ଠିତ ବହୁ ବାଳାଶ୍ରମ ଓ ଶିକ୍ଷାନୁଷ୍ଠାନରେ ଭର୍ତ୍ତି କରାଇଲେ । ସେ କୋରାପୁଟରେ ଥିବା 'ବନଭାରତୀ' ଓ ରାୟଗଡ଼ାରେ ଥିବା 'ସେବା ସମାଜ' ନାମକୁ ଦୁଇଟି ଅନୁଷ୍ଠାନ ସହିତ ସମ୍ପର୍କ ରଖିଲେ ।

ସବୁଠୁ ବଡ଼କଥା ହେଲା ସେ ନିଜ ମତରେ ଅଟଳ ରହୁଥିଲେ ବି ଅନ୍ୟ ମତବାଦୀ ମାନଙ୍କ ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ରଖୁଥିଲେ । ସାମ୍ୟବାଦୀ ନେତା ଭୁବନମୋହନ ପଟ୍ଟନାୟକ, ନାଗଭୂଷଣ ପଟ୍ଟନାୟକ, ହରିଶ୍ଚନ୍ଦ୍ର, ଜଗନ୍ନାଥ ମିଶ୍ର, ପୂର୍ଣ୍ଣ ଗମାଙ୍ଗୋ, ସ୍ୱରାଜ ଖେମୁଣ୍ଡୁ, ପୁରୁଷୋତ୍ତମ ପାଲି ଆଦିଙ୍କ ସହ ସେ ବିଭିନ୍ନ ସମସ୍ୟା ସମ୍ବନ୍ଧରେ ଆଲୋଚନା କରୁଥିଲେ । କମ୍ୟୁନିଷ୍ଟ ମାନେ ଭଲଭାବରେ ତାଙ୍କ ନୀତି ଓ ଆଦର୍ଶକୁ ଚିହ୍ନିଥିଲେ । ସେମାନେ ଜାଣିଥିଲେ ବିଶ୍ୱନାଥ ଆଜ୍ଞା ହେଉଛନ୍ତି ବିଶୁଦ୍ଧ ଅହିଂସାବାଦୀ । ସେ ହିଂସାକାଣ୍ଡ ସହିତ ନିଜକୁ କେବେ ସଂପୃକ୍ତ କରିବେ ନାହିଁ । ସେମାନେ ଏହାବି ଜାଣିଥିଲେ ୧୯୪୧ ପରେ ବିଶ୍ୱନାଥ ଆଜ୍ଞାଙ୍କ ଆଦିବାସୀ ଅଞ୍ଚଳରେ ନିରବଚ୍ଛିନ୍ନ କାମ ଯୋଗୁଁ ଆଦିବାସୀମାନେ ଶୋଷଣର ସ୍ୱରୂପକୁ ଚିହ୍ନି ପାରିଛନ୍ତି, ଶୋଷକ ଗୋଷ୍ଠୀଙ୍କୁ ମଧ୍ୟ ଚିହ୍ନି ପାରିଛନ୍ତି, ଏହି ଅନୁଭବ କମ ନଥିଲା ତାଙ୍କ ପାଇଁ, ଏଣୁ ସେ ଆଦିବାସୀଙ୍କର ଏତେ ନିଜଲୋକ ହୋଇ ପାରିଥିଲେ ।

ଏ ଭିତରେ ଓଡ଼ିଶା ଶାସନ କ୍ଷେତ୍ରରେ ବହୁ ପରିବର୍ତ୍ତନ ହେଲା । ମହତାବଙ୍କ ମୁଖ୍ୟ ମନ୍ତ୍ରୀତ୍ୱ ସମୟରେ ବ୍ଲକ ଗୁଡ଼ିକ କାର୍ଯ୍ୟକରିବା ଆରମ୍ଭ କଲା । ସେ ଅନୁଭବ କଲେ ବ୍ଲକ ଓ ଜିଲ୍ଲା ଶାସନ ଦାୟିତ୍ୱରେ ଯେଉଁମାନେ ରହିଲେ ସେମାନେ ନାଲିଫିତା ସର୍ବସ୍ୱ ହେଲେ । କେବଳ ଫାଇଲ, ଅର୍ଡର, ନିୟମକୁ ଚିହ୍ନିଲେ କିନ୍ତୁ ଯେଉଁମାନଙ୍କ ଉନ୍ନତି ପାଇଁ ନିୟମ ହୋଇଥିଲା ସେମାନଙ୍କୁ ଚିହ୍ନିଲେ ନାହିଁ । ମାନବୀୟ ସଂବେଦନ ସରକାରୀ ଚାକିରିଆଙ୍କର ରହିଲା ନାହିଁ । ହୁକୁମ୍‌କା ତାବେଦାର ସାଜିଲେ । ତାଙ୍କୁ ସୁହାଇଲା ଭଳି ଆଇନର ତର୍ଜମା କଲେ । ବେଳ ପଡ଼ିଲେ ଶୋଷଣକାରୀଙ୍କ ସଖା ସୋଦର ପାଲଟିଲେ, ତାଙ୍କୁ ସଂଖୋଳିଲେ, ଜୀ ହଜୁର କଲେ । ସାଧାରଣ ମଣିଷ ଯାଙ୍କ ସ୍ୱାର୍ଥତଳେ ବଳି ପଡ଼ିଲେ । ଲାଞ୍ଚ ମିଛର ସୁଅରେ ଆଦିବାସୀ ବୁଡ଼ିଲେ । ଅଣ-ଆଦିବାସୀ ଡ଼ଙ୍ଗାରେ ବସି ନଈ ପାରହେଲେ । ଶୋଷଣର ରାକ୍ଷସ ଦିନକୁ ଦିନ ତାର କାୟା ବିସ୍ତାରିଲା । ୱାର୍ଡ଼ମେମ୍ବର, ସରପଞ୍ଚ, ପଞ୍ଚାୟତ ସମିତି ବାଲା, ଜିଲ୍ଲା ପରିଷଦ ବାଲା ପଇସାରେ କ୍ଷମତାରେ ଖେଳିଲେ । ଭୋଟ ହୋଇ ମହା ପ୍ରପଞ୍ଚମାନ ହେଲା । ଉନ୍ନତି ନାମରେ ଫାଇଲ ପତ୍ର ମୋଟା ହେଲେ । ଲୋକେ ଯେଉଁଠି ଥିଲେ ସେଇଠି ରହିଲେ । ବିଶ୍ୱନାଥ ଆଜ୍ଞା ଏ ପ୍ରକାର ପ୍ରଚଳିତ ଶାସନତନ୍ତ୍ରର ବିରୋଧ କରିବା ସମ୍ଭବ ନଥିଲା । ଯେଉଁଠି ସମ୍ଭବ ସେଠି କିଛି କଲେ, ନହେଲେ ନିରବ ରହିଲେ । ଲୋକ ଚରିତ୍ରରେ କଳଙ୍କି ଧରିବା ଆରମ୍ଭ ହୋଇ ଯାଇଥିଲା ଭାରତ ସ୍ୱାଧୀନ ହେବାପରେ ।

ଶୋଷଣ କାୟା ବିସ୍ତାରୁଥିଲା । ଶୋଷଣ ବନ୍ଦ କରିବା ପାଇଁ ଯେଉଁ ଆଇନମାନ ଥିଲା, ତାର ଫାଙ୍କ ଦେଇ ଶୋଷଣକାରୀମାନେ ଖସିଯିବାର ବହୁତ ସୂତ୍ର ଥିଲା । ଏହା ଆଇନ ବ୍ୟବସାୟ କରୁଥିବା ଲୋକମାନେ ପଇସା ନେଇ ବାଟ ଗୁଡ଼ାକୁ ଦେଖାଇ ଦଉଥିଲେ । କେମିତି ଖସି ଯାଇ ହେବ ତା ବତେଇ ଦଉଥିଲେ । ଆଇନ ଡ଼ାଳେ ଡ଼ାଳେ ଗଲେ ଏମାନେ ପତ୍ରେ ପତ୍ରେ ଯାଉଥିଲେ । ଏ ଲୁଚକାଳି ଖେଳରେ ଶୋଷିତ ମାନେ ସବୁବେଳେ ହାରୁଥିଲେ । ଗୋଟିଏ ଉଦାହରଣ ଦିଆଯାଉ ୧୯୫୮ରେ ସରକାର ମାଣ, ଅଡ଼ା, ସୋଲା, ପଇଲିର ବ୍ୟବହାର ନିଷିଦ୍ଧ କଲେ । ଦଣ୍ଡିମାପ ଉଠେଇ ଦେଲେ । ଖାରାମାଣ, ପିତ୍ତଳମାଣ, କାଠମାଣର ମାପ ମନାହେଲା । ଆଗରୁ ଚଳୁଥିବା ଅଣି, ଦିଅଣି, ଦି ପଇସା, ପଇସା, କଣା ପଇସା ବଦଳରେ ନୂଆ ପଇସା ଚଳେଇଲେ; ହେଲେ ୧୯୬୦ ୬୨ ବେଳକୁ ବି କୋରାପୁଟ ଜିଲ୍ଲାରେ ଅଡ଼ା, ମାଣ, ତାମ୍ବିରେ ଜିନିଷ କିଣା ହେଉଥିଲା । ବିଶ୍ୱନାଥ ଆଜ୍ଞାଙ୍କ ଅଙ୍ଗେ ନିଭେଇଥିବା କଥା ଇଏ । ସେତେବେଳେ କିଲୋଗ୍ରାମର ପ୍ରଚଳନ ହୋଇ ଦୁଇ ତିନି ବର୍ଷ ହେଇଗଲାଣି । ଯଦି କଟକ ବଜାରରେ ମାଣ୍ଡିଆ କିଲୋ ଟଙ୍କାଏ ଦରରେ ବିକ୍ରି ହେଉଥିଲା କାକରିଗୁମ୍ମା, ଲକ୍ଷ୍ମୀପୁର, କୁନ୍ଦିଲି, ନନ୍ଦପୁର ହାଟରେ କୁମୁଟୀ ବେପାରୀ ଟଙ୍କାରେ ଚାରି କିଲୋ ମାଣ୍ଡିଆ କିଣୁଥିଲେ । ହାଟରେ କିଲୋଗ୍ରାମର ପ୍ରଚଳନ ନଥିଲା । ବେପାରୀ ନାମକୁ ମାତ୍ର କିଲୋଛାଞ୍ଚ ରଖିଥାନ୍ତି ଧର୍ମକୁ ଆଖିଠାର ଭଳି, ମାତ୍ର ଜିନିଷ କିଣନ୍ତି ବଡ଼ (ଖାର) ମାଣରେ । ସେତେବେଳକୁ ମାପରେ, ଓଜନରେ ଠକେଇ କଲେ, ଠକିଲାବାଲାକୁ ଧରି ମାପ ଓଜନ ବିଭାଗ ଦଣ୍ଡଦେବା ନିୟମ ନଥିଲା, ଧରି କେସ୍ କରିବାର ବ୍ୟବସ୍ଥାରେ ଏତେ ତ୍ରୁଟି ଥିଲା ଯେ ବେପାରୀ ଦଣ୍ଡ ପାଇବେ କଣ, ସହଜରେ ଖଲାସ ହେଇ ଯାଉଥିଲେ । ଆଦିବାସୀଙ୍କ ଉତ୍ପାଦିତ ଫସଲର ପାଞ୍ଚ ଭାଗରୁ ଭାଗେ ଏମିତି ଠକାମିରେ ଯାଉଥିଲା । କେହିହେଲେ ନୈତିକ ଦାୟିତ୍ୱ ନେବା ପାଇଁ ପ୍ରସ୍ତୁତ ନଥିଲେ । ସାଧାରଣ ମଣିଷର ଦୁଃଖ, ଦୁର୍ଦ୍ଦଶା, ଇଚ୍ଛା ବୁଝିବା ଯେମିତି ତଳସ୍ତରର କର୍ମଚାରୀଙ୍କର ଦାୟିତ୍ୱ ନଥିଲା । ଏମିତି ଏକ ଅନାତ୍ମୀୟ, ସ୍ୱାର୍ଥପ୍ରବଣ ଶାସନତନ୍ତ୍ରରେ ଗାନ୍ଧୀଙ୍କ ରାମରାଜ୍ୟ କଳ୍ପନା ଯେ ଏକ ଉଟୋପିଆ 'ଆକାଶ କୁସୁମ' , ଏହାହିଁ ବିଶ୍ୱନାଥ ଆଜ୍ଞାଙ୍କ ମର୍ମବେଦନା ଥିଲା, ଏକ ଦୁଃଖଦ ଅନୁଭବ ଥିଲା ।

ଏଣେ ରାଜନୀତି ନେତାଙ୍କ କଥା ମଧ୍ୟ ନିଆରା । ୧୯୬୧ରେ ବିଜୟାନନ୍ଦ ପଟ୍ଟନାୟକ (ବିଜୁବାବୁ) ଓଡ଼ିଶାରେ ସରକାର ଗଢ଼ିଲେ । କେତେକାମ କଲେ । ନେହେରୁଙ୍କ ଦୟାରୁ କାମରାଜ ନାଦର ଯୋଜନାରେ ସେ ଗାଦିରୁ ଗଲେ ୧୯୬୩ରେ । ବୀରେନ୍ ମିତ୍ର

ଆସିଲେ । କଟକ ବସ୍ତିଦାଦାଙ୍କ ପରି ଶାସନ କରି ସେ ବି ଗଲେ ୧୯୬୫ରେ । ଆସିଲେ ସଦାଶିବ ବାବୁ(ତ୍ରିପାଠୀ) ମୁଖ୍ୟମନ୍ତ୍ରୀ ହୋଇ । ମୂଳରୁ ଓଡ଼ିଶା ଶାସନରେ ଥିବାରୁ ଭୂ-ସଂସ୍କାର ବିଲ୍, ଭାଗଚାଷୀ ବିଲ ଆଦି ବହୁ କାମରେ ସେ ଯୋଗଦେଇ ଲୋକପ୍ରିୟଥିଲେ । ୧୯୬୭ ଯାଏ ସେ ରହିଲେ । ସେ ରମାଦେବୀ, ନବବାବୁଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । କିନ୍ତୁ ଆଦିବାସୀ ମାନଙ୍କ ସମସ୍ୟାର ସମାଧାନ ପାଇଁ ସେ ସର୍ବୋଦୟ ନୀତି ଗ୍ରହଣ କରି ନଥିଲେ । ଫଳରେ ସର୍ବୋଦୟ ନୀତି ଓଡ଼ିଶା ସରକାରଙ୍କ ପ୍ରତ୍ୟକ୍ଷ ପ୍ରୋତ୍ସାହନ ପାଇଲା ନାହିଁ ।

ସେତେବେଳକୁ ଟି. ସାଙ୍ଗନା ଓଡ଼ିଶା ମନ୍ତ୍ରୀ ମଣ୍ଡଳରେ ଉପମନ୍ତ୍ରୀ । ହାତରେ ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗ । ପରେ ସେହି ବିଭାଗର ମନ୍ତ୍ରୀହେଲେ । ଆଦିବାସୀ ଲୋକ । ଆଦିବାସୀ ସମସ୍ୟାକୁ ଭଲଭାବରେ ଜାଣିବା ଲୋକ । ସେ ସଦାଶିବ ବାବୁଙ୍କ ଯୋଗୁଁ ମନ୍ତ୍ରୀ ହୋଇଥିଲେ ।୧୯୫୨ରେ ଯେତେବେଳେ ଭୂ-ସତ୍ୟାଗ୍ରହୀ ସମାଜ ଗଠନ କଲେ ବିଶ୍ୱନାଥ ଆଙ୍କା ଆଉ ଆଦିବାସୀମାନେ ତାଙ୍କ ପିତୃପୁରୁଷଙ୍କ ଜମିକୁ ଶାଗ ମାଛ ମୂଲରେ କିଣି ନେଇଥିବା ଲୋକଙ୍କ ଠାରୁ ଫେରି ପାଇବା ପାଇଁ ଅହିଂସ ଉପାୟରେ ଦାବିକଲେ, ସେ ବିଭିନ୍ନ ଖବର କାଗଜରେ ଲେଖା ପ୍ରକାଶ କରି ଘୋର ବିରୋଧ କଲେ । ଦୁଇ ଥର ଲୋକସଭା ସଦସ୍ୟଥିଲେ । ସେ ନିଜେ ଆଦିବାସୀ, କିନ୍ତୁ ଆଦିବାସୀମାନଙ୍କର ନେତୃତ୍ୱ ନେବା ତାଙ୍କଦ୍ୱାରା ସମ୍ଭବ ହୋଇ ପାରିଲା ନାହିଁ । ସେ ଚାହିଁଥିଲେ ଗଣନେତା ହୋଇ ପାରିଥାନ୍ତେ, ସେ ସମସ୍ତ ସମ୍ଭାବନା ତାଙ୍କ ଠାରେ ଥିଲେ ମଧ୍ୟ ଦଳପ୍ରତି (କଂଗ୍ରେସ) ଏକାନ୍ତ ଆନୁଗତ୍ୟ ତାଙ୍କୁ ଏହା କରାଇଦେଲା ନାହିଁ ।

ଏହା ନୁହେଁ ଯେ ଆଦିବାସୀଙ୍କ ସମସ୍ୟା ସମ୍ପର୍କରେ ସେ ଅଜ୍ଞ ଥିଲେ, ସେ ଅନୁଭବ କରୁଥିଲେ ନିଜ ସଂପ୍ରଦାୟର ଦୁଃଖ, କଷ୍ଟ । ଏଣୁ ପାର୍ଲିଆମେଣ୍ଟ ସଭ୍ୟଥିଲା ବେଳେ ନିଜ ଆୟର ଅଧିକାଂଶ, ଆଦିବାସୀମାନଙ୍କୁ, ସ୍ୱେଚ୍ଛାସେବୀମାନଙ୍କୁ ଦାନ କରି ଦେଉଥିଲେ । ସେ ଯେହେତୁ ଗରିବ ପରିବାରରେ ଜନ୍ମ ହୋଇଥିଲେ, ସେ ଜାଣିଥିଲେ ଦାରିଦ୍ର୍ୟର ଦୁଃଖ, କଷଣ । ସେ ଅନ୍ତରର ସହ ଚାହୁଁଥିଲେ ଆଦିବାସୀଙ୍କର ଉନ୍ନତି ହେଉବୋଲି । ଏହି ଆନ୍ତରିକ ଇଚ୍ଛାକୁ ସେ ଜୋରଦାର ଭାବେ ଜନ ସାଧାରଣଙ୍କ ପାଖରେ ରଖି ପାରିଲେ ନାହିଁ କିମ୍ବା ଶୋଷଣକାରୀମାନଙ୍କୁ ଦୃଢ଼ଭାବରେ ଚେତାଇ ପାରିଲେ ନାହିଁ । ଯେତେବେଳେ ସେ ମନ୍ତ୍ରୀ ଥିଲେ ବିଷମକଟକ, ମୁନିଗୁଡ଼ା ଅଞ୍ଚଳର ଡୋଙ୍ଗରିଆ କନ୍ଧ ମାନଙ୍କ ପାଇଁ ତଥା ମାଲକାନ ଗିରି ଅଞ୍ଚଳର ମୁଦୁଲିପଡ଼ାକୁ କେନ୍ଦ୍ର

କରି ବସବାସ କରୁଥିବା ବଣ୍ଡାମାନଙ୍କର ଉନ୍ନତି ପାଇଁ ବିଶେଷ ଯୋଜନା କରିଥିଲେ । ସେତେବେଳେ ଫୁଲବାଣୀ ଜିଲ୍ଲା ବେଲଘର ଅଞ୍ଚଳର କୁଟିଆକନ୍ଧ ମାନଙ୍କ ବିକାଶ ପାଇଁ ମଧ୍ୟ ସ୍ୱତନ୍ତ୍ର, ବିକାଶ ଯୋଜନା ଆରମ୍ଭ କରା ଯାଇଥିଲା ।

ଆଦିବାସୀ ମାନଙ୍କୁ ଶୋଷଣରୁ ରକ୍ଷା କରିବା ପାଇଁ ଟି.ସାଙ୍ଗନ୍ନା ସୁଲଭ-ମୂଲ୍ୟ କ୍ରୟ ବିକ୍ରୟ ଦୋକାନର ପ୍ରଚଳନ କରାଇଥିଲେ । ସରକାରଙ୍କ ଦ୍ୱାରା କେବଳ ସେତିକି ନୁହେଁ ଯେତେବେଳେ ପୋଡୁଚାଷ କରୁଥିବା ଆଦିବାସୀଙ୍କୁ ପୋଡୁଚାଷ ନକରିବା ପାଇଁ ସରକାର ଆଇନ କଲେ, ସେମାନଙ୍କ ପୁନର୍ବାସ ଓ ଥଇଥାନ ପାଇଁ ଯଥେଷ୍ଟ ଅର୍ଥବ୍ୟବସ୍ଥା କରାଇଥିଲେ । ଆଦିବାସୀ ପିଲାଙ୍କ ପାଇଁ ଅନେକ ଆଶ୍ରମ ଓ ସେବାଶ୍ରମ ସ୍କୁଲ ଖୋଲାଇଥିଲେ । ଏ ସମସ୍ତ ମଙ୍ଗଳକର କାମ କରିବା ସତ୍ତ୍ୱେ ସେ ଆଦିବାସୀଙ୍କର ନେତୃତ୍ୱ ନେଇ ପାରିଲେ ନାହିଁ । ସରକାରୀ ସ୍ତରରେ ସେ ରହିଗଲେ, ଜନ ସାଧାରଣଙ୍କର ହୋଇ ପାରିଲେ ନାହିଁ । ସରକାରୀ କଳର ଦୋଷ ତ୍ରୁଟିକୁ ଦୂର କରି ଆଦିବାସୀ ମାନଙ୍କୁ ଶୋଷଣ ମୁକ୍ତ କରିବା ଯେ ଜଣେ ମନ୍ତ୍ରୀ ପକ୍ଷରେ ସମ୍ଭବ ନୁହଁ, ଏହା ହିଁ ତାଙ୍କ କ୍ଷେତ୍ରରେ ହୋଇଥିଲା । ତାଙ୍କ ଯୋଜନା ଗୁଡ଼ିକ ଯେଉଁ ଲକ୍ଷ୍ୟ ରଖି ଆରମ୍ଭ କରାଗଲା ଅମଲାତନ୍ତ୍ରର ଚକ୍ରବ୍ୟୁହରେ ତାହା ପଣ୍ଡ ହୋଇଗଲା । ଆଶାନୁରୂପ ଫଳ ଦେଲା ନାହିଁ । ବିଶ୍ୱନାଥ ଆଞ୍ଚାଙ୍କର ଏହି ଅନୁଭବ ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆଦିବାସୀ ମାନଙ୍କ ପାଇଁ ଏକ ନେତୃତ୍ୱଦେବା ବ୍ୟକ୍ତିର ଅଭାବ ବୋଧରେ ପର୍ଯ୍ୟବସିତ ହୋଇଥିଲା ।

ସ୍ୱାଧୀନତା ପରେ ବିଶ୍ୱନାଥ ଆଞ୍ଚା ଦେଖିଲେ କୋରାପୁଟ ଜିଲ୍ଲାରେ ଅନେକ କଳ କାରଖାନା ବସିଲା । ମାଛକୁଣ୍ଡ ଜଳ ବିଦ୍ୟୁତ ଯୋଜନା, ବାଲିମେଳା ଜଳ ବିଦ୍ୟୁତ ଯୋଜନା, ସୁନାବେଡ଼ା ଉଡ଼ା ଜାହାଜ କାରଖାନା, କୋରାପୁଟ, ଜୟପୁର, କୋଟପାଡ଼ ଦେଇ ରେଳପଥ ନିର୍ମାଣ ଆଦି ହେଲା । ନୂଆ ନୂଆ ବସତି ସବୁ ଗଢ଼ି ଉଠିଲା । ହେଲେ ସ୍ଥାନୀୟ ଆଦିବାସୀ ଏହାଦ୍ୱାରା କୌଣସି ପ୍ରକାରେ ଉପକୃତ ହେଲେ ନାହିଁ । ଏହି ସବୁ ଯୋଜନାରେ ନିଯୁକ୍ତି ପାଇଁ ପାଠ ପଢ଼ିଥିବା ମାଟ୍ରିକ ପାସ କରିଥିବା କିମ୍ବା ଆଇ.ଆଇ.ଟି କରିଥିବା ଆଦିବାସୀ ପିଲା ମିଳିଲେ ନାହିଁ ।

କେବଳ ଏତିକି ହେଲା କାଁ ଭାଁ କେତେଜଣଙ୍କୁ ଛାଡ଼ିଦେଲେ ଏହି ସବୁ ଶିଳ୍ପାଞ୍ଚଳରେ କାମ କରୁଥିବା ଲୋକଙ୍କ ସେବାରେ ଆଖ ପାଖର ଆଦିବାସୀ ମାନେ କୁଲି, ମୂଲିଆ,

ଘରର ଚାକର, ଚାକରାଣୀ ହେଲେ । କିଏ ବାଡ଼ି ବଗିଚାରେ କାମକଲା ତ କିଏ କଂସା ବାସନ ମାଜିଲା, ଲୁଗା କାଚିଲା । ଯାହା ରୋଜଗାର କଲା ମାସକରେ, ତାହା ତାର ଚାରିଦିନ ଖାଦିକୁ ନିଅଣ୍ଟ ହେଲା ।

ଜଳ ବିଦ୍ୟୁତ ଯୋଜନା କାର୍ଯ୍ୟକାରୀ ହେବା ଫଳରେ ବହୁ ଆଦିବାସୀ ବାସଚ୍ୟୁତ ହେଲେ । ପିତୃ ପୁରୁଷରୁ ରହି ଆସୁଥିବା ଭିଟାମାଟି ଗଲା, ଜମି ପାଣିରେ ବୁଡ଼ିଲା, ସରକାର ସେମାନଙ୍କ ଥଇଥାନ ପାଇଁ ଯାହା ସାହାଯ୍ୟ ଦେଲେ ତହିଁରେ ଶହେରୁ ଅଶିଏ ଭାଗ ଶାସନ ତନ୍ତ୍ରରେ ଥିବା ବାବୁମାନଙ୍କ ଦ୍ୱାରା ବାଟମାରଣା ହେଲା ।

କୋରାପୁଟ ଜିଲ୍ଲାରେ ଶିଳ୍ପ ବିପ୍ଳବର ଫଳାଫଳକୁ ସମାଜସେବୀମାନେ ସ୍ୱାଗତ କରିପାରିଲେ ନାହିଁ । ଅବଶ୍ୟ ପୂର୍ବ ଅପେକ୍ଷା ଶୋଷଣର ପରିମାଣ କିଛି କମିଲା, କିନ୍ତୁ ଶାସନର ତଳସ୍ତରରେ କାମ କରୁଥିବା ଲୋକେ ଶୋଷକ ଗୋଷ୍ଠୀର ହାତ-ବାରିସୀ ହେଲେ । ସେମାନଙ୍କ ସହ ରାଜା-ରାଜୁଡ଼ା, ସ୍ୱାଧୀନତା ପୂର୍ବ ସମୟ ପରି ଭଲ ସମ୍ପର୍କ ରଖିଲେ । ଯେଉଁମାନେ ମଦଭାଟି ନିଲାମ ଧରିଲେ ସରକାରୀ କର୍ମଚାରୀ ମାନଙ୍କୁ ଫଳେପୁଷ୍ପେ ସନ୍ତୋଷ କଲେ । ଯେଉଁ ନିଶା ନିବାରଣ ପାଇଁ ମହାତ୍ମାଗାନ୍ଧୀଙ୍କ ଠାରୁ ଦେଶର ହଜାର ହଜାର ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ ବହୁ ସଂଗ୍ରାମ କରିଥିଲେ, ସେହି ନିଶାପାଣି ଆଦିବାସୀଙ୍କୁ ସର୍ବସ୍ୱାନ୍ତ କରିବା ଆରମ୍ଭ କଲା । ଗାଁରେ ଗାଁରେ ମଦର ବନ୍ୟା ହେଲା ।

ଆହୁରି ମଧ୍ୟ ଆଦିବାସୀମାନେ ଯେଉଁ ଜମି ଆବାଦ କଲେ, ତାହା ସେମାନଙ୍କ ନାମରେ ପଟ୍ଟା କରିଦେବା ବଦଳରେ ରେଭେନ୍ୟୁବାଲେ, ଆଦିବାସୀମାନେ ବେ-ଆଇନ ଜମି ଦଖଲ କରିଥିବା ଅଭିଯୋଗରେ ତାଙ୍କଠାରୁ ପଇସା ଆଦାୟ କଲେ । ଜଙ୍ଗଲ ବିଭାଗ ଲୋକେ ବଣ ଭିତରେ ଖଣ୍ଡେ ଗଛ କାଟିଲେ କି ଦାନ୍ତକାଠି ଭାଙ୍ଗିଲେ ଆଦିବାସୀଙ୍କ ନାମରେ କେସ୍ କଲେ । ପୋଡୁଚାଷ ନାମରେ କେତେ ଯେ ଆଦିବାସୀ କୋର୍ଟପିଣ୍ଡା ଚଢୁଥିଲେ ତା'ର ହିସାବ ନଥିଲା । ସମବାୟ ବିଭାଗ କୋଅପରେଟିଭ ସୋସାଇଟି ମାଧ୍ୟମରେ ଆଦିବାସୀଙ୍କୁ ଯେଉଁ ଋଣ ଦେଉଥିଲେ ଟିପ ଚିହ୍ନ ଦେଇ, ତହିଁରେ କେତେ ଯେ ଏପଟ ସେପଟ ହେଉ ଥିଲା କହିବାର ନାହିଁ । ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗ ଆଦିବାସୀଙ୍କୁ ବାଛୁରୀ ଦେଇ ବଳଦ ଦରକୁ ବିଲ୍ କରୁଥିଲେ । ଶିକ୍ଷା ଓ ଆଦିବାସୀ ମଙ୍ଗଳ ବିଭାଗ ସ୍କୁଲରେ ଯେଉଁମାନେ ଶିକ୍ଷକ ହେଲେ ସେମାନଙ୍କ ମାନସିକତା

ବଡ଼ ବିଚିତ୍ର ହେଲା । ଉପର ହାକିମଙ୍କ ହାତ ଚିକ୍କଣ କରି ସ୍କୁଲକୁ ନ ଯାଇ, ବେପାର କରି ଦି ପଇସା ଅର୍ଜିଲେ । ଏଥିରେ ପୁଣି ଆଦିବାସୀ ଆଶ୍ରମ ସ୍କୁଲରେ ହଷ୍ଟେଲ ବାବଦରେ ପିଲାଙ୍କ ପୋଷାକ, ଖାଇବାପାଇଁ ଓ ଅନ୍ୟ ସୁବିଧା ପାଇଁ ଯେଉଁ ସରକାରୀ ପଇସା ଆସୁଥିଲା ତାହା ଚାରିବାଣ୍ଟ ହେଉଥିଲା ।

ଏମିତି କୌଣସି ବିଭାଗ ରହିଲା ନାହିଁ ଯାହା ଆଦିବାସୀ ଶୋଷଣର ଗୋଟିଏ ଗୋଟିଏ ମାଧ୍ୟମ ନହେଲା । ସ୍ୱାଧୀନତା ପୂର୍ବରୁ ଶାସନତନ୍ତ୍ରରେ ଲୋକେ ପେଷି ହେଉଥିଲେ, ଶୋଷିତ ହେଉଥିଲେ । ପରାଧୀନତା ନାମରେ ଲୋକେ ତାହା ସହୁଥିଲେ କିନ୍ତୁ ସ୍ୱାଧୀନତା ପରେ ଶାସନତନ୍ତ୍ରର କୌଣସି ପରିବର୍ତ୍ତନ ଘଟିଲା ନାହିଁ । ସେଇ ଶୋଷଣ ମନୋବୃତ୍ତି, ସେଇ ଅତ୍ୟାଚାର ରହିଲା । ଖାଲି ରୂପଟିକିଏ ବଦଳିଗଲା । ଏ ସବୁସତ୍ତ୍ୱେ ଆଦିବାସୀ ବି କିଛି ଶିଖିଲେ ନାହିଁ । ସେମାନେ କେବଳ ଅଭିଯୋଗ କଲେ । ଅଧିକାଂଶ ସରକାରୀ ବିଭାଗ ଲୋକଙ୍କ ଅସୁବିଧାକୁ ବୁଝି ବି ବୁଝିଲେ ନାହିଁ । କଷ୍ଟକୁ ଦେଖିବି ଦେଖିଲେ ନାହିଁ । ଏହି ସରକାରୀ ଲୋକଙ୍କ ନିଷ୍କ୍ରିୟତା ତଥା ଶୋଷଣକୁ ସମର୍ଥନ କରୁଥିବା ମନୋବୃତ୍ତିକୁ ବିଶ୍ୱନାଥ ଆଖ୍ୟା ଅନୁଭବ କଲେ କିନ୍ତୁ ଏପରି ଏକ ଶାସନତନ୍ତ୍ରକୁ (ସିଷ୍ଟମ)କୁ ପ୍ରତିରୋଧ କରିବା ଯେ ଆଉ ସମ୍ଭବ ହେବ ନାହିଁ ଏହା ମଧ ତାଙ୍କର ହୃଦବୋଧ ହେଲା ।

ଲୋକେ ମଧ ଆଉ ରାଜନୈତିକ କର୍ମୀମାନଙ୍କୁ ପୂର୍ବପରି ବିଶ୍ୱାସକଲେ ନାହିଁ । ସ୍ୱାଧୀନତା ସଂଗ୍ରାମ ବେଳେ ଏହି ରାଜନୈତିକ କର୍ମୀମାନଙ୍କ ତ୍ୟାଗ, ନିଷ୍ଠା, ନିଃସ୍ୱାର୍ଥପରତା, ଆଦର୍ଶ ସମସ୍ତଙ୍କ ପାଇଁ ପ୍ରେରଣା ଥିଲା । ଲୋକେ ଯାଙ୍କ କଥା ଶୁଣି ନିଜର ସବୁ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଭାଗନେଇ ଜେଲ ଯାଇଥିଲେ, କେତେ ଜେଲ ଭିତରେ ମରିଥିଲେ, ଥାନା ଘେରାଉ କରି ଗୁଳିଖାଇ ଶହିଦ ହୋଇଗଲେ । କିଏ କିଏ ଫାଶୀ ଖୁଣ୍ଟରେ ବି ଝୁଲିଥିଲେ । କିନ୍ତୁ ସ୍ୱାଧୀନତା ପରେ ଭୋଟ ଓ ନୋଟ ରାଜନୀତିରେ ସେ କାଳର, ତ୍ୟାଗ, ନିଷ୍ଠା, ପରୋପକାରଭାବ ଏବଂ ସର୍ବୋପରି ଆଦର୍ଶର ମୃତ୍ୟୁହେଲା । ୧୯୬୦ ପୂର୍ବରୁ କୋରାପୁଟ ଜିଲ୍ଲାରେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ, ଶ୍ରୀ ରାଧାମୋହନ ସାହୁ, ଶ୍ରୀ ସଦାଶିବ ତ୍ରିପାଠୀଙ୍କୁ ଛାଡ଼ିଦେଲେ ଆଉ କେହି ନିଜ ପ୍ରଭାବ ବଳରେ ଲୋକମାନଙ୍କ ଠାରେ ପ୍ରିୟ ଓ ପ୍ରତିଷ୍ଠିତ ହୋଇ ପାରି ନଥିଲେ । ଡ଼ଃ ମହତାବଙ୍କ ରାଜନୀତିର ବୁଢ଼ିଆଣୀ ଜାଲରେ ଛଟପଟ ହୋଇ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ୧୯୫୮ରେ ରାଜନୀତି ଛାଡ଼ିଦେଲେ । ୧୯୬୫ରେ ଶ୍ରୀ ରାଧାମୋହନ ସାହୁ ମୃତ୍ୟୁ ବରଣ କଲେ । ସଦାଶିବ

ତ୍ରିପାଠୀଙ୍କ ଜନ-ସମ୍ପର୍କ ରହିଲା ନାହିଁ । ଶ୍ରୀ ଲକ୍ଷ୍ମୀଚନ୍ଦ୍ର ଦାସ ଜନସେବା ପ୍ରେସ କରି ଜନସେବା ସାପ୍ତାହିକ ପ୍ରକାଶ କଲେ । ସାମ୍ବାଦିକତାରେ ସେ ବିଶେଷ ମନ ଦେଲେ । ଲୋକଙ୍କ ସୁଖ ସୁବିଧା ନାମରେ ପଞ୍ଚାଏ ରାଜନୀତି ବାଲାଏ ଯେଉଁ ହଟ ଚମଟ ସୃଷ୍ଟି କଲେ, ତାହା ଦେଖି ବିଶ୍ୱନାଥ ଆଜ୍ଞାଙ୍କ ଭଳି ରଚନାତ୍ମକ କର୍ମୀମାନେ ସ୍ୱାଧୀନତା ପରେ ଏ ଦେଶର ଅବସ୍ଥା ଦେଖି ଦୁଃଖ, ଅନୁଶୋଚନା କରୁଥିଲେ ମଧ୍ୟ ସେମାନଙ୍କର ସଂଗ୍ରାମ ମନୋବୃତ୍ତି ରକ୍ଷା କରିବାରେ ସମର୍ଥ ହୋଇଥିଲେ । ବିଶ୍ୱନାଥ ଆଜ୍ଞା ଅନୁଭବ କଲେ ଭୂଦାନକର୍ମୀ, ଗ୍ରାମଦାନ ହୋଇଥିବା ଗ୍ରାମଗୁଡ଼ିକରେ କାମ କରୁଥିବା କର୍ମୀ, ଖଦୀ କମିଶନ, ଖଦୀ ମଣ୍ଡଳ, ସର୍ବସେବା ସଂଘ ଓ ଅନ୍ୟକେତେକ ଅନୁଷ୍ଠାନର କର୍ମୀ ଯେଉମାନେ କି କୋରାପୁଟ ଜିଲ୍ଲାରେ ସମାଜସେବୀ ଭାବେ ରହିଥିଲେ, ସେମାନେ ଆଉ ଆଦିବାସୀ ଓ ହରିଜନମାନଙ୍କ ନିକଟତର ହୋଇ ପାରୁ ନାହାନ୍ତି । ଆଦିବାସୀମାନଙ୍କର ଏମାନଙ୍କ ପ୍ରତି ପୂର୍ବର ସେଇ ଆସ୍ଥା ଓ ବିଶ୍ୱାସ ରହିଲା ନାହିଁ । ସେହି କର୍ମୀମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତିଗତ ସମ୍ପତ୍ତି ଠୁଳ କଲେ । କେତେକ ବନ ବାଣିଜ୍ୟ ସମବାୟ ସମିତି କରି ଲାଭ ଜନକ ବ୍ୟବସାୟ କଲେ । ଏମାନେ ବି ଲୋକଙ୍କୁ ଶୋଷଣ କରିବା ଆରମ୍ଭ କଲେ, ଅବଶ୍ୟ କମ୍ ଶୋଷଣ କରୁଥିଲେ କିନ୍ତୁ ଶୋଷଣ ଯେ ମୋଟେ କରୁନଥିଲେ ଏହା ସତ୍ୟ ନଥିଲା । ଉଚ୍ଚସ୍ତରର ସର୍ବୋଦୟ କର୍ମୀମାନେ ଏମାନଙ୍କୁ ସୁଧାରିବାରେ ସଫଳ ହୋଇ ପାରିଲେ ନାହିଁ ।

ଏହି କର୍ମୀମାନେ ବିଶୁଦ୍ଧ ସର୍ବୋଦୟ କର୍ମୀ ହେବା ପସନ୍ଦ କଲେ ନାହିଁ । ତ୍ୟାଗ, ଆଦର୍ଶରେ ପେଟପୂରେ ନାହିଁ । ଯେତିକି ଦିନ ସେବା କରାଗଲା ଯଥେଷ୍ଟ ହେଲା, ଆଉ ସେ ପନ୍ଥରେ ଗୋଡ଼ାଇବାର କିଛି ମାନେ ନାହିଁ । ଏମିତିକି କେତେକର୍ମୀ ବିଶ୍ୱନାଥ ଆଜ୍ଞାଙ୍କୁ ପରୋକ୍ଷରେ ଆକ୍ଷେପ କରି ନିଜ ପକ୍ଷ ସମର୍ଥନ କରି କହିଲେ, ''ଆମେତ ବିଶ୍ୱନାଥ ଆଜ୍ଞାଙ୍କ ଜରିଆରେ ସାହାଯ୍ୟ ବା ଅନୁଦାନ ଇତ୍ୟାଦି ଆଣୁ ନାହୁଁ । ଆମେ ସଂଘ, ସମିତି, ସମବାୟ ଆଦି କରି ଟଙ୍କା ଆଣୁଛୁ । ଆଦିବାସୀଙ୍କ ପାଇଁ କାମ କରୁଛୁ । ଆମକୁ ଯଦି ଏପରି ସମାଲୋଚନା ହେଲା ଭଲ ହେଲା । ଆମେ ଆଉ ଏଥର ସେହି ବିଶୁଦ୍ଧ ସର୍ବୋଦୟ କର୍ମୀଙ୍କ ସହ କୌଣସି ସମ୍ପର୍କ ରଖିବୁ ନାହିଁ ।''

ଏହି ଭିତରେ କୋରାପୁଟ ଓ ଗଞ୍ଜାମ ଜିଲ୍ଲାର ଉପାନ୍ତ ଅଞ୍ଚଳରେ ଯଥା ଗୁଣୁପୁର ପାରଳାଖେମୁଣ୍ଡିରେ କମ୍ୟୁନିଷ୍ଟ ମାନଙ୍କ ପ୍ରଭାବ ବୃଦ୍ଧି ପାଇଲା । ୧୯୬୨ରେ ଚୀନ ଭାରତ

ଆକ୍ରମଣ କଲାପରେ କମ୍ୟୁନିଷ୍ଟ ଦଳ ଦୁଇଭାଗ ହୋଇଗଲେ । ମାର୍କସିଷ୍ଟ ମାନେ ନିଜକୁ ଏକାଠି କରି ସଂଗଠନ ମଜବୁତ୍ କଲେ । ଧନୀ, ସାହୁକାର ଓ ସରକାରୀ କର୍ମଚାରୀଙ୍କ ଅତ୍ୟାଚାର ଓ ଶୋଷଣ ବିରୋଧ, ବିଭିନ୍ନ ସଂସ୍ଥାର ଅନ୍ୟାୟ ବିଚାର ଓ ଜୁଲମ ବିରୋଧରେ ଏମାନେ ଆଦିବାସୀ, ଦଳିତ ନିଷ୍ପେଷିତଙ୍କୁ ଏକାଠି କରାଇ ଏକ ହିଂସାର ବାତାବରଣ ସୃଷ୍ଟିକଲେ ।

ରାଜନୀତି, ପଞ୍ଚାୟତ ନିର୍ବାଚନ ଓ ଭୋଟ ରାଜନୀତି ଫଳରେ ଦୁର୍ନୀତି, ଭ୍ରଷ୍ଟାଚାର, ଅସାଧୁତା, ସ୍ୱାର୍ଥପରତା ଓ ହିଂସା ସମାଜକୁ କବଳିତ କଲା । ଗାଆଁ ଗାଆଁରେ ବିଭେଦ ପଶିଲା । ଟାଉଟରମାନଙ୍କ ପ୍ରଭାବ ବଢ଼ିଲା । କାଳକ୍ରମେ ଟାଉଟର ମାନେ ଅତି ପ୍ରଭାବଶାଳୀ ହେଲେ । ଏମାନେ ଚିଙ୍ଗୁଡ଼ି ଗୁଣ୍ଠି ଶେଉଳ ଧରିବା ଲୋକ । ନବଜୀବନ ମଣ୍ଡଳର ଦୁଇଜଣ ତୁଙ୍ଗ ବ୍ୟକ୍ତିତ୍ୱ ଶ୍ରୀମତୀ ମାଳତୀ ଚୌଧୁରୀ ଓ ବିଶ୍ୱନାଥ ଆଞ୍ଚା ଲୋକଙ୍କୁ ଏହାର ଫଳ ଓ ପରିଣାମ ବିଷୟରେ ବୁଝାଇ ପାରିଲେ ନାହିଁ । ଲୋକେ ହିଂସାର ଅଧୀନ ହୋଇ ପଡ଼ିଲେ ।

ଏ ସମସ୍ତ ବଦଳୁଥିବା ପରିସ୍ଥିତିକୁ ଅନୁଭବ କରି ଜୀବନର ଦୀର୍ଘ ୨୦ ବର୍ଷ କାଳ ନିରବଚ୍ଛିନ୍ନ ଭାବେ କୋରାପୁଟରେ କାମକରି ୫୧ ବର୍ଷ ବୟସରେ ବିଶ୍ୱନାଥ ଆଞ୍ଚା ଆଉ ଗୋଟିଏ ଅବହେଳିତ କର୍ମଭୂମିକୁ ବାଛିନେଲେ । ସେଇ ନୂତନ କର୍ମଭୂମି ହେଲା କନ୍ଧମାଳ ଫୁଲବାଣୀ । ତାପରେ ତାଙ୍କର କୋରାପୁଟ ଜିଲ୍ଲା ସହିତ ଆଉ ଆଗପରି ପ୍ରତ୍ୟକ୍ଷ ସମ୍ପର୍କ ରହିଲା ନାହିଁ । କେବଳ ଭାବଗତ ସମ୍ପର୍କ ରହିଲା ।

୧୯୬୬ରେ ବିଶ୍ୱନାଥ ଆଞ୍ଚା ବସଧରି ରାୟଗଡ଼ା, ମୁନିଗୁଡ଼ା, ବିଷମ କଟକ, ତୁମୁଡ଼ିବନ୍ଧ ଦେଇ ପହଞ୍ଚିଲେ ବାଲିଗୁଡ଼ାରେ.... ।

* * *

# ନକ୍ସାଲବାଦର ହିଂସା ଓ ବିଶ୍ୱନାଥ ଆଞ୍ଜା

ଭାରତର ବିଶିଷ୍ଟ ଅର୍ଥନୀତିଜ୍ଞ ମହାଜ୍ଞାନୀ କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରର ୧.୯.୧୪ ନିୟମରେ ବିଦ୍ରୋହର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଛନ୍ତି ଯେ ବିଦ୍ରୋହ ହେଉଛି ଜନସାଧାରଣଙ୍କ କୋପର ବାହ୍ୟିକ ପରିପ୍ରକାଶ । ଏହି କୋପ ଦୁଇ ଶ୍ରେଣୀର (୧) ଅର୍ନ୍ତବିପ୍ଳବ, (୨) ବର୍ହିବିପ୍ଳବ । ବିଦ୍ରୋହ ନିଶ୍ଚିତଭାବେ ଲୋକଙ୍କ କ୍ରୋଧ ଓ ପ୍ରାକୃତିକ କୋପକୁ ବିଝାଏ । ନିଜ ଲୋକଙ୍କ ଭିତରେ ପରିବର୍ତ୍ତନ ହିଁ ବିଦ୍ରୋହ ହୁଏ । ଏହାର ଅର୍ଥ ଲୋକମାନେ ଯେତେବେଳେ ସେମାନଙ୍କୁ ଶାସନ କରୁଥିବା ଶାସକମାନଙ୍କ କାର୍ଯ୍ୟ କଳାପକୁ ନେଇ ମତ ପରିବର୍ତ୍ତନ କରନ୍ତି, ତାହା ହିଁ ବିଦ୍ରୋହ । ଯଦିଓ ବିଦ୍ରୋହର ଅନେକ କାରଣ ଥାଇପାରେ କିନ୍ତୁ ବିଶେଷତଃ ଲୋକ ମନୋବୃତ୍ତିରେ ପରିବର୍ତ୍ତନ ହିଁ ଏହାର ମୁଖ୍ୟ କାରଣ ହୋଇଯାଏ । ଏହି ପରିବର୍ତ୍ତନ ଓ ମତ ଶାସକଙ୍କ ତ୍ରୁଟିପୂର୍ଣ୍ଣ ଶାସନ ପ୍ରଣାଳୀ ଯୋଗୁଁ ଆରମ୍ଭ ହୋଇଥାଏ ।

ବୋଧହୁଏ ଶାସନତନ୍ତ୍ରର ବିଷମତା, ତ୍ରୁଟି, ଶୋଷଣର ସ୍ୱରୂପ, ଶୋଷକଙ୍କ ସାଧାରଣ ଜନତା ପ୍ରତି ଅତ୍ୟାଚାର, ନକ୍ସାଲବାଦୀଙ୍କ ଉତ୍‌ଥାନର କାରଣ ହୋଇଥିଲା ଏବଂ ହିଂସା ଏମାନଙ୍କ ପାଇଁ ସମସ୍ୟା ସମାଧାନର ଏକମାତ୍ର ଉଚିତ ପନ୍ଥାବୋଲି ମନେ ହୋଇଥିଲା ।

୧୬୬୫ରୁ ୧୯୭୦ ଦୀର୍ଘ ୫ ବର୍ଷଯାଏ କୋରାପୁଟ ଜିଲ୍ଲାର ଚିତ୍ରକୋଣ୍ଡା ନନ୍ଦପୁର, ନାରାୟଣ ପାଟଣା, ରାୟଗଡ଼ା, ବିଷମ କଟକ, ରାମନାଗୁଡ଼ା, ଗୁଣପୁର, ଗୁଡ଼ାରୀରେ ନକ୍ସାଲସବାଦୀଙ୍କ ହିଂସା ପ୍ରବଳ ଆକାର ଧାରଣ କଲା । ବହୁ ଶୋଷକ ଏମାନଙ୍କ କ୍ରୋଧର ଶିକାର ହେଲେ । କେତେ ଲୋକଙ୍କ ଖମାର, ଖଳା, ଲୁଟ ହେଲା । କେତେ ଲୋକ ହାଣ ମୁହଁରେ ଗଲେ । ହିଂସାବାଦୀଙ୍କ ଜୟଯାତ୍ରାର ଘୋଷ ଶୁଭିଲା ଏଠି ସେଠି ସବୁଠି । ସେ କାଳର ଖବର କାଗଜରେ ଏହି ହିଂସାର ଖବର ବେଶୀ ଛପାହେଲା । ପ୍ରଥମେ ଗାଆଁର ଛୋଟ ଛୋଟ ବ୍ୟବସାୟୀମାନେ ଶିକାର ହେଲେ ।

ଏ ସବୁ ଦେଖି ବିଶ୍ୱନାଥ ଆଞ୍ଜା ମତ ଦେଲେ, ''ଆମେ ନକ୍‌ସଲପନ୍ଥୀ ଓ ଅନ୍ୟ ଶୋଷଣ ବିରୋଧୀ ହିଂସାବାଦୀଙ୍କର ଲକ୍ଷ୍ୟ ସମ୍ପର୍କରେ ସହାନୁଭୂତିଶୀଳ ଥିଲୁ । ନକ୍‌ସାଲପନ୍ଥୀମାନେ ଭ୍ରମାତ୍ମକ ହିଂସା ପନ୍ଥା ଅବଲମ୍ବନ କରୁଥିଲେ ମଧ ଗରିବ ଲୋକଙ୍କ ପାଇଁ ସେମାନଙ୍କ ହୃଦୟରେ ଅନୁକମ୍ପା ଥିଲା । ଦାୟିତ୍ୱବୋଧ ଥିଲା । ସେମାନେ ଦସ୍ୟୁ ପର୍ଯ୍ୟାୟଭୁକ୍ତ ନୁହଁନ୍ତି ।''

ସେ ନୈତିକ ସ୍ତରରେ ହିଂସାକାଣ୍ଡକୁ ମୋଟେ ସମର୍ଥନ କରି ପାରୁନଥିଲେ । ହିଂସା ଯେ ସମସ୍ତ ସମସ୍ୟାର ଏକମାତ୍ର ସମାଧାନର ଉପାୟ ଏହି ବିଶ୍ୱାସ ତାଙ୍କର ନଥିଲା । ହତ୍ୟା, ରକ୍ତପାତର ସେ ସମ୍ପୂର୍ଣ୍ଣ ବିରୋଧୀ ଥିଲେ । ସେ କହନ୍ତି, ''ହିଂସାକାଣ୍ଡ ଭିଆଇବା ଅତ୍ୟନ୍ତ ନିନ୍ଦନୀୟ ଓ କ୍ଷତିକାରକ । ହିଂସାରୁ କେବେ ନ୍ୟାୟ କିମ୍ବା ଶାନ୍ତି ଜନ୍ମ ହେବକି ? ଶୋଷଣକାରୀମାନେ ହିଂସାକୁ ନିମନ୍ତ୍ରଣ କରୁଥିଲେ, କିନ୍ତୁ କୌଣସି ବିବେକବାନ ଲୋକ ଓ ନ୍ୟାୟ ଶାସ୍ତ୍ରରେ ବିଶ୍ୱାସ କରୁଥିବା ଲୋକ ହିଂସାକୁ ପନ୍ଥାରୂପେ ଗ୍ରହଣ କରି ପାରେକି ?''

ହିଂସାକୁ ଏକ ପ୍ରକାର ରଣନୀତି ବା ଷ୍ଟ୍ରାଟେଜୀ ହିସାବରେ ଯେ ଗ୍ରହଣ କରିବା ଉଚିତ ହେବ ନାହିଁ ବରଂ ଏଥିରେ କ୍ଷତି ହିଁ ବେଶୀ ହେବ, ଏ ସମ୍ବନ୍ଧରେ ବିଶ୍ୱନାଥ ଆଞ୍ଚା ବହୁ ବିଚାର କରି ନିମ୍ନ ମତ ଦେଇଥିଲେ, ''ଯୁଦ୍ଧ କୌଶଳ ବା ଷ୍ଟ୍ରାଟେଜୀ ଦୃଷ୍ଟିରୁ ମଧ ହିଂସାକୁ ଗ୍ରହଣ କରା ଯାଇନପାରେ । ରାଷ୍ଟ୍ର, ସରକାର, ରାଜା, ଶାସନ ଇତ୍ୟାଦି ଯେତେ ଅନୁଷ୍ଠାନ ପୃଥିବୀରେ ଯେଉଁ ସମୟରେ ଗଠିତ ହୋଇଛି, ତାର ମୁଖ୍ୟ ଅସ୍ତ୍ର ହେଉଛି ହିଂସା । ଦୁର୍ବଳ ଉପରେ ସବଳର ହିଂସାତ୍ମକ ଅତ୍ୟାଚାରକୁ ପ୍ରତିରୋଧ କରିବା ପାଇଁ ରାଷ୍ଟ୍ର ହିଂସାତ୍ମକ ଉପାୟ ଗ୍ରହଣ କରେ । ସେଥିପାଇଁ ଖଣ୍ଡା ତରବାରୀ, ତୋପ କମାଣ ବନ୍ଧୁକ ପରମାଣୁ ଅସ୍ତ୍ର ଆଦି ସୃଷ୍ଟି ହୋଇଛି । କିନ୍ତୁ ରାଷ୍ଟ୍ରଶକ୍ତି ଜାଣିପାରେ ନାହିଁ କେତେବେଳେ କେଉଁ ଦୁର୍ବଳ ଲୋକ ଅତ୍ୟାଚାରିତ ହେଉଛି । ତେଣୁ ବିଚାର ବିଭାଗ, ନ୍ୟାୟାଧୀଶ ପଦବୀ ସୃଷ୍ଟି ହୋଇଛି । ସେ ବିଚାର ବିଭାଗ ମାନବିକ ଦୃଷ୍ଟି କୋଣରୁ ସର୍ବଦା ନ୍ୟାୟ ଦେବେ ନାହିଁ । କାରଣ ଆଇନର ଶାସନ ଚାଲୁଥିବା ବେଳେ ଆଇନ ଅନୁଯାୟୀ କାମ ହୋଇଛି କି ନାହିଁ ତାହା ଦେଖିବା ବିଚାରପତିଙ୍କ କର୍ତ୍ତବ୍ୟ । ସେ ଦୃଷ୍ଟିରୁ ହିଂସାବାଦୀ ମାନେ ଦୋଷୀ ବୋଲି ବିବେଚିତ ହେବେ । ସେମାନଙ୍କର ମାନବିକତା ବୋଧ ସମ୍ପର୍କରେ ବିଚାରପତି କହିବେ ଯେ ଆଇନକୁ ନିଜ ହାତକୁ ନେଇଯିବା ଉଚିତ ନୁହେଁ । ଶାସନ କଳର ଦୃଷ୍ଟିଭଙ୍ଗୀ ମଧ ସେପରି ହେବ । ତେଣୁ ପୋଲିସ ହିଂସାର ମୁକାବିଲା କରିବାକୁ ଆସିବେ ।''

ନିଜ ଅନୁଭବ, ରାଷ୍ଟ୍ରର ପରିବେଶ ଓ ସମାଜର ଶ୍ରେଣୀ ସଂରଚନାକୁ ବିଚାରକୁ ନେଇ ସେ ମତବ୍ୟକ୍ତ କଲେ, ''ରାଷ୍ଟ୍ରର ଶକ୍ତି ବିରୁଦ୍ଧରେ ସଫଳତାର ସହ ହିଂସାତ୍ମକ, ଆନ୍ଦୋଳନ କରିବା ପାଇଁ ଯେଉଁ ପରିବେଶ ଆବଶ୍ୟକ ତାହା ଭାରତବର୍ଷରେ ସୃଷ୍ଟି ହୋଇ ପାରିବା ଅତ୍ୟନ୍ତ କଷ୍ଟକର । ପୋଲିସ୍ ହିଂସାକାଣ୍ଡ କରୁଥିବା ଲୋକଙ୍କୁ ନିଶ୍ଚିହ୍ନ କରିବାକୁ କିମ୍ବା ବିଚାରକ ହାତରେ ସମର୍ପି ଦେବାକୁ ଚେଷ୍ଟା କରିବ ।''

ରଣନୀତି ଦୃଷ୍ଟିରୁ କାହିଁକି ହିଂସାକୁ ଆମେ ଗ୍ରହଣ କରି ପାରିବା ନାହିଁ ତାହାର ଯୁକ୍ତି ଯୁକ୍ତ କାରଣ ଦେଇ ସେ କହନ୍ତି, ''ଯଦି ହିଂସାକାଣ୍ଡ କରୁଥିବା ଲୋକ ସହଜରେ ଧରା ନ ପଡ଼ନ୍ତି, ସେମାନେ ଯେଉଁ ଅଞ୍ଚଳରେ କାର୍ଯ୍ୟକଳାପ ଚାଲୁ ରଖିଥିବେ କିମ୍ବା ରହିଥିବେ ବୋଲି ପୋଲିସ୍ ସନ୍ଦେହ କରିବ ସେ ଅଞ୍ଚଳର ସାଧାରଣ ଲୋକ ପୋଲିସ୍ ଶକ୍ତିର ସନ୍ଦେହ ଚକ୍ଷୁରେ ରହିବା ସ୍ୱାଭାବିକ । ସାଧାରଣ ଲୋକେ ପୋଲିସର କୋପ ଦୃଷ୍ଟିରେ ପଡ଼ିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ହିଂସାବାଦୀଙ୍କ ଠାରୁ ଅଲଗା ରହିବେ । ଯେଉଁ ବିଶ୍ୱାସୀ ଲୋକ ହିଂସାବାଦୀ ମାନଙ୍କ ସହିତ ରହିବେ ସେମାନଙ୍କୁ ଦମନ କରିବା ପୋଲିସ ପକ୍ଷେ ସହଜ ହବ ।'' ବିଶ୍ୱନାଥ ଆଞ୍ଚାଙ୍କ ଉପର ମତାମତରୁ ହିଂସା ପ୍ରତି ଥିବା ତାଙ୍କର ଦୃଷ୍ଟିକୋଣ ତଥା ବିଚାରବୋଧ ସହଜରେ ଜାଣିହୁଏ । ଯେ ହେତୁ ସେ ନିରବ କର୍ମୀ, କଥା କମ , କାମ ବେଶୀରେ ବିଶ୍ୱାସୀ, ଲୋକନେତା ହୋଇ ମଧ୍ୟ ତାଙ୍କ ଲେଖା କି ଚିନ୍ତାଧାରା କେଉଁଠି କେହି ଲେଖିଲେ ନାହିଁ, ସେ ସବୁବେଳେ ପଛ ଧାଡ଼ିର କର୍ମୀ ହେବାକୁ ପସନ୍ଦ କଲେ ସିନା, ନିଜ ବିଷୟରେ କାହାକୁ କହିବା ସେ ଉଚିତ ମନେକଲେ ନାହିଁ । ସେ ସମସ୍ତଙ୍କର ଅନୁଗାମୀ ହେଲେ: ଗାନ୍ଧୀଜି, ଗୋପବନ୍ଧୁ ଚୌଧୁରୀ, ମା ରମାଦେବୀ, ବିନୋବା, ଜୟପ୍ରକାଶଙ୍କର । କେଉଁଠି କେତେବେଳେ ଏହିମାନେ କଥା ପ୍ରସଙ୍ଗରେ ବିଶ୍ୱନାଥ ଆଞ୍ଚାଙ୍କ ବିଷୟରେ ଯେଉଁ ମତାମତ ଦେଇଛନ୍ତି ସେଥିରୁ ତାଙ୍କ ଜୀବନ ଦର୍ଶନ, ଚିନ୍ତାଧାରା, ସ୍ୱାଧୀନ ବିଚାରକୁ ଜାଣି ତାଙ୍କ ବ୍ୟକ୍ତିତ୍ୱର ଆକଳନ କରି ହେବ ନାହିଁ । ସେ ପ୍ରଚାର ଧର୍ମୀ ନଥିଲେ, ଏହା ହିଁ ତାଙ୍କ ବ୍ୟକ୍ତିତ୍ୱର ଉଜ୍ଜ୍ୱଳତମ ଦିଗ ।

ଯେତେବେଳେ ଗୁଣୁପୁର ଓ ଗୁଡ଼ାରୀ ଅଞ୍ଚଳରେ ନକ୍ସାଲପନ୍ଥୀମାନେ ହିଂସାକାଣ୍ଡ ମାନ କଲେ, ସେହି ହିଂସାକାଣ୍ଡକୁ ରୋକିବା ପାଇଁ ଓ ଅହିଂସାର କଥା ବୁଝାଇବା ପାଇଁ ବିଶ୍ୱନାଥ ଆଞ୍ଚା ଅନ୍ୟକର୍ମୀମାନଙ୍କ ସହିତ ବିଭିନ୍ନ ଗାଁକୁ ଯାଇ ବୁଝାଇଥିଲେ । ହିଂସା ଯେ ଠିକ୍ ନୁହେଁ ଓ ତାର ଫଳ ମଧ୍ୟ ଠିକ୍ ମିଳିବ ନାହିଁ ବୋଲି କହି ସେମାନଙ୍କ ବିଶ୍ୱାସ ଭାଜନ ହେବାର ଦୃଷ୍ଟାନ୍ତ ସେ ଦେଖାଇ ପାରିଥିଲେ । ନକ୍ସାଲବାଦର ଚେର ଯେତେ ଭିତରକୁ ଯାଇଛି ବୋଲି ପୋଲିସ ବିଶ୍ୱାସ କରୁଥିଲା ତାହା ପ୍ରକୃତରେ ସେତେ ଭିତରକୁ ଯାଇ ନଥିଲା । ଏବେବି କେତେକ ଅଞ୍ଚଳର ଲୋକେ ଗାନ୍ଧୀଙ୍କ ଅହିଂସାକୁ ମାନୁଥିଲେ ।

ରାମନାଗୁଡ଼ା ବ୍ଲକର ବଡ଼ମୂଲ ଗାଁ । ସେ ଗାଁର ଲୋକମାନଙ୍କ ଭିତରେ ଟିକିଏ ଅଧିକ ସ୍ୱଚ୍ଛଳ ଜୀବନ କଟଉଥିଲା ଦୀନବନ୍ଧୁ ଶୁଣ୍ଡି । ନା ସେ ବଡ଼ ଧନୀ ଥିଲା ନା ମଧ୍ୟବିତ୍ତରୁ

ଅଧିକ ଥିଲା । ଅବଶ୍ୟ ତାର ଶୋଷଣ ମନୋବୃତ୍ତି ଥିଲା । ତାର ସର୍ବମୋଟ ସମ୍ପତ୍ତି ହଜାରେ ଟଙ୍କାରୁ ଅଧିକ ହେବ ନାହିଁ । ହିଂସାବାଦୀ ମାନେ ତାକୁ ଶୋଷଣକାରୀ ବୋଲି ହତ୍ୟା କରିଦେଲେ । ହିଂସାବାଦୀ ମାନେ ଆଦିବାସୀ ମାନଙ୍କୁ ନିଜ ପକ୍ଷକୁ ନେବାକୁ ଓ ଶୋଷକ ମାନଙ୍କୁ ଆତଙ୍କିତ କରିବା ପାଇଁ ଯେ ଏହି କାଣ୍ଡ କରିଥିଲେ ତାହା ହିଁ ସ୍ପଷ୍ଟ ହେଲା । ଏହି ଘଟଣା ଘଟିବା ପରେ ବିଶ୍ୱନାଥ ଆଞ୍ଚା, ମାଳତୀ ଚୌଧୁରୀଙ୍କ ସହ ସେ ଗାଆଁକୁ ଯାଇଥିଲେ । ଏ ସମ୍ବନ୍ଧରେ ସେ କହନ୍ତି, ''ତାଙ୍କୁ ହତ୍ୟାକରାଯିବା ଠିକ୍ ହେଲା ନାହିଁ । ମୋର ମତ ଶୋଷଣ କାରୀ ଶକ୍ତିକୁ ଲୋପ କରାଯିବା ଉଚିତ । ଏହା କଷ୍ଟ ସାଧ, ନିଜ ଜୀବନରେ ଏହା କେତେଦୂର ମୁଁ ଅଭ୍ୟାସ କରିଛି, ତାର ସମୀକ୍ଷା କରି ପାଇନାହିଁ, ଭୟର ଶାସନ ସ୍ଥାୟୀ ନାହିଁ ।'' ବିଶ୍ୱନାଥ ଆଞ୍ଚାଙ୍କର ଏହି ଘଟଣା ପ୍ରବାହର ବିବେଚନା ତାଙ୍କ ଗଭୀର ଅର୍ନ୍ତଦୃଷ୍ଟିର ପରିଚୟ ଦିଏ ।

ବିଶ୍ୱନାଥ ଆଞ୍ଚା, ମାଳତୀ ଦେବୀ ଓ ଅନ୍ୟାନ୍ୟ କର୍ମୀ ମାନେ ହିଂସାବାଦର ବିରୋଧ କଲେ, କେବଳ ସେତିକି ନୁହେଁ ପୋଲିସ ଯେତେବେଳେ ହିଂସାବାଦୀ ମାନଙ୍କ ସମ୍ବନ୍ଧରେ ଖବର ସଂଗ୍ରହ କରିବା ପାଇଁ ଆଦିବାସୀ ଗ୍ରାମବାସୀଙ୍କ ଉପରେ ଚଢ଼ଉ କରି ଶାରୀରିକ ଯାତନାମାନ ଦେଲେ, ତାହାର ମଧ ବିରୋଧ କରିଥିଲେ । ଏମିତି ଏକ ଆତଙ୍କମୟ ପରିବେଶ ଭିତରେ ଆଦିବାସୀ ମାନଙ୍କ ମନକୁ ସ୍ଥିର ରଖିବା ଓ ମନୋବଳ ଯେମିତି ନ ତୁଟିଯିବ ସେଥିପାଇଁ ମାଳତୀଦେବୀ ଗୁଣୁପୁରର ବହୁଗାଁକୁ ଆଞ୍ଚାଙ୍କ ସହ ଗସ୍ତକଲେ ।

ଯେତେବେଳେ ବିଶ୍ୱନାଥ ଆଞ୍ଚା ହିଂସାବାଦୀ ମାନଙ୍କର ହିଂସାକାଣ୍ଡ ଘଟାଇବା ଦେଖିଲେ ଏବଂ ସରକାରଙ୍କର ଏ ଘଟଣାର ପ୍ରତିକ୍ରିୟା ଦେଖିଲେ ତାଙ୍କ ମନରେ ଅନେକ ବିଚାର ଆସିଲା । ସେ ପୂର୍ବରୁ ହିଂସାବାଦୀଙ୍କ ସହ ଶୋଷଣର ସ୍ୱରୂପ ସମ୍ବନ୍ଧରେ ଆଲୋଚନା କରିଥିଲେ କିନ୍ତୁ କେବେହେଲେ ସେମାନଙ୍କୁ ହିଂସା ବିରୁଦ୍ଧରେ କହି ନଥିଲେ, ଏହା ତାଙ୍କ ପାଇଁ ଅନୁଶୋଚନାର କଥା ହେଲା । ସେ ସ୍ୱୀକାର କରି କହନ୍ତି, ''ସିଧାସଳଖ ସେମାନଙ୍କୁ ମୋର ମତ ଜଣାଇବା ଉଚିତଥିଲା । କିନ୍ତୁ ସେମାନେ ମାର୍କ୍ସବାଦର ଏପରି ଅର୍ଥକଲେ ଓ ନିଜ ବିଚାର ହିଁ ଠିକ୍ ବୋଲି ଏତେ ଦୃଢ଼ ଥିଲେ ଯେ ତାଙ୍କୁ ଅହିଂସା ସମ୍ପର୍କରେ କହିଥିଲେ କୌଣସି ପରିବର୍ତ୍ତନ ହୋଇ ନଥାନ୍ତା । ପବନ ସେତେବେଳେ କମ୍ୟୁନିଷ୍ଟଙ୍କ ପକ୍ଷରେ ବହୁଥିଲା । ପ୍ରଥମେ ସରକାରୀ ପ୍ରତିକ୍ରିୟା ଜନ ସାଧାରଣଙ୍କ ପକ୍ଷରେ ସ୍ୱାଗତ ଯୋଗ୍ୟ ହେଲା ନାହିଁ । ଲୋକେ କାହିଁକି ହିଂସାକୁ ସମର୍ଥନ କରୁଛନ୍ତି ଏହା କେହି ବୁଝିବାକୁ ଚେଷ୍ଟା କଲେ ନାହିଁ ।

ଶେଷରେ ସେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ଯଦି ସରକାର ଶୋଷଣ ବିରୁଦ୍ଧରେ ଠିକ୍ ସମୟରେ ଦୃଢ଼ ପଦ କ୍ଷେପ ନେଇଥାନ୍ତେ ହିଂସାକାଣ୍ଡ ହୋଇ ପାରି ନଥାନ୍ତା । ସେ କେବଳ ଏତିକି କହିଲେ, ''ମାଳତୀ ଦେବୀଙ୍କୁ ଓ ଆମ୍ଭମାନଙ୍କୁ (ସମସ୍ତ ନବଜୀବନ ମଣ୍ଡଳ ଓ ସର୍ବୋଦୟ କର୍ମୀ) ସରକାର, ଜନସାଧାରଣ ଓ କମ୍ୟୁନିଷ୍ଟମାନେ ନୈତିକତାର କାଠଗଡ଼ାରେ ଛିଡ଼ା କରାଇଦେଲେ ।''

ଏହି ନୈତିକତାର ସପକ୍ଷବାଦୀ ବିଶ୍ୱନାଥ ଆଞ୍ଚା ନିଜ ଦୋଷ ଦୁର୍ବଳତାକୁ ଅନୁଭବ କରି ନିମ୍ନ ସତ୍ୟକଥାଟିକୁ ସ୍ୱୀକାର କଲେ । ସତ୍ୟ ହିଁ ସତ୍ୟ, ତାକୁ ମିଛର ପୁଟଦେଇ ସୁନ୍ଦରଭାବ ଦେଖାଇବା ମଣିଷ ନଥିବାରୁ ନିଃସଙ୍କୋଚରେ ସେ କହି ପାରିଲେ, ''ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାରେ କମ୍ୟୁନିଷ୍ଟ ମାନେ କେତେକାଂଶରେ ସଫଳ ହେଲେ । ମୁଁ ଠିକ୍ ସମୟରେ ନିଜ ମତ ସରକାର, ଜନ ସାଧାରଣ କିମ୍ବା କମ୍ୟୁନିଷ୍ଟଙ୍କ ସମକ୍ଷରେ ଉପସ୍ଥାପିତ କରି ପାରିଲି ନାହିଁ ।''

ଏହାର ଅନେକ ଦିନ ପରେ ଆଦିବାସୀଙ୍କ ଉନ୍ନତି ପାଇଁ ଓଡ଼ିଶା ସରକାର କିଛି ଦୃଢ଼ ପଦକ୍ଷେପ ନେଲେ । ଭୂମିହୀନମାନଙ୍କୁ ଜମିଦେବା କାମ ଆରମ୍ଭ ହେଲା । ଯେଉଁମାନେ ଶୋଷକଙ୍କ ଚକ୍ରାନ୍ତରେ ନିଜ ନିଜର ଜମି ହରାଇଥିଲେ ତାହା ଫେରାଇବାର ବ୍ୟବସ୍ଥା ସରକାରଙ୍କ ତରଫରୁ ତ୍ୱରାନ୍ୱିତ କରାଗଲା । ଆଦିବାସୀ ମାନଙ୍କୁ ସମବାୟ ସମିତି ଜରିଆରେ କୃଷିଋଣ ଓ ସରକାରୀ ଋଣ ଦେବାର ବ୍ୟବସ୍ଥା ହେଲା । ପାରଳାଖେମୁଣ୍ଡି ଓ ଗୁଣୁପୁର ଅଞ୍ଚଳରୁ ଆଦିବାସୀଙ୍କ ଉନ୍ନୟନ ପାଇଁ ଆଦିବାସୀ ଉନ୍ନୟନ ସଂସ୍ଥା ଗଠନ କରାଯାଇ ଅନେକ କାର୍ଯ୍ୟକ୍ରମ ସରକାର ହାତକୁ ନେଲେ ।

ଯା ପଛରେ ଭୂଦାନକର୍ମୀ, ସର୍ବୋଦୟ କର୍ମୀ, ସର୍ବସେବା ସଂଘ, ନବଜୀବନ ମଣ୍ଡଳ, ଖଦୀ ମଣ୍ଡଳର ଅବଦାନ ଏବଂ ସର୍ବୋପରି ବିଶ୍ୱନାଥ ଆଞ୍ଚାଙ୍କ ଏକ ନିଷ୍ଠ ଉଦ୍ୟମକୁ ବିଚାରକୁ ନେବାକୁ ହେବ । ଦୀର୍ଘ ୨୦ ବର୍ଷର ଅଥକ ପରିଶ୍ରମ, ଗୋଟିଏ ଲକ୍ଷ୍ୟ ଓ ଆଦର୍ଶ, ଦଳିତଙ୍କ ଉତ୍‌ଥାନ ଓ ଉନ୍ନୟନ ପାଇଁ ସେବାର ସରଣୀରେ ବିଶ୍ୱନାଥ ଆଞ୍ଚା ଜଣେ ଅବିଶ୍ରାନ୍ତ ପଥିକ ଭାବେ ସବୁ ବାଧା ବିଘ୍ନକୁ ସହି ମାନବବାଦର ମହା ମନ୍ତ୍ରରେ ଦୀକ୍ଷିତ ହୋଇ ପାଲଟିଗଲେ କର୍ମଯୋଗୀ । କୋରାପୁଟର ୨୦ ବର୍ଷ ରହଣି ଭିତରେ ଯେଉଁମାନେ ତାଙ୍କ ସହିତ ନିବିଡ଼ ସମ୍ପର୍କରେ ଆସିଥିଲେ ସେମାନେ ହେଲେ ରତନ ଦାସ, ଶାନ୍ତିଦେବୀ, ଅନ୍ନପୂର୍ଣ୍ଣା ସାମନ୍ତରାୟ, ଗୋପୀନାଥ ମହାନ୍ତି, ଗୋବିନ୍ଦ ରେଡୀ, ଜଗନ୍ନାଥ ମିଶ୍ର, ନାଗଭୂଷଣ

ପଟ୍ଟନାୟକ, ବୃନ୍ଦାବନଜେନା, ମାଳତୀ ଦେବୀ, ମହମ୍ମଦ ବାଜୀ ସାହେବ । ଏହି ସାଧୁ ପୁରୁଷ ଓ ସ୍ତ୍ରୀ ମାନଙ୍କ ତ୍ୟାଗ, ନିଷ୍ଠା, ଆଦର୍ଶ ବିଶ୍ୱନାଥ ଆଞ୍ଚାଙ୍କୁ ପାଦେ ପାଦେ ସାହାଯ୍ୟ କରିଛନ୍ତି । ଏମାନଙ୍କୁ ଛାଡ଼ି ବିଶ୍ୱନାଥ ଆଞ୍ଚାଙ୍କ କୋରାପୁଟର ଜୀବନ କଥା କୁହାଯାଇ ପାରିବ ନାହିଁ । ଏମାନେ ନିଜ ନିଜ କ୍ଷେତ୍ରରେ ସ୍ୱତନ୍ତ୍ର କିନ୍ତୁ ସମସ୍ତଙ୍କ ଲକ୍ଷ୍ୟ ଏକ, ଆଦିବାସୀ, ହରିଜନଙ୍କର ସେବା, ସେମାନଙ୍କ ଉନ୍ନତିରେ ସହାୟକ ହେବା । ଆଗରୁ ଗୋପୀନାଥ ମହାନ୍ତି, ମହମ୍ମଦ ବାଜୀଙ୍କ କଥା କୁହାଯାଇଛି, ଏଠି କେବଳ ସେମାନଙ୍କ ସମ୍ବନ୍ଧରେ ସମ୍ୟକ ସୂଚନା ଦେବା ଉଚିତ ହେବ, ଯେଉଁମାନେ ସାରାଜୀବନ ଦଳିତ, ନିଷ୍ପେଷିତମାନଙ୍କ ପାଇଁ କାମ କରିଛନ୍ତି ।

## ଅନ୍ନପୂର୍ଣ୍ଣା ସାମନ୍ତରାୟ :

୧୯୪୮ ମସିହାରେ ୰ଗୋପବନ୍ଧୁ ଚୌଧୁରୀଙ୍କ ବରୀ ଆଶ୍ରମରେ ତାଲିମ ପାଇ ଲୋକସେବାକୁ ନିଜ ଜୀବନର ବ୍ରତ ଭାବେ ଆଦରି ନେଲେ । ବିନୋବାଙ୍କ ଓଡ଼ିଶା ଗସ୍ତ ବର୍ଷ ୧୯୫୫ରେ ଅନ୍ନପୂର୍ଣ୍ଣା ସାମନ୍ତରାୟ କୋରାପୁଟ ମାଳକୁ ଆସିଲେ । ଏହି ଜିଲ୍ଲା ହୋଇଗଲା ତାଙ୍କ ପାଇଁ ଜୀବନ ତୀର୍ଥ । ରୁଗୁଡ଼ିବାଇ ଗ୍ରାମରେ ରହିଗଲେ ନିଃସ୍ୱ ଆଦିବାସୀ-ହରିଜନଙ୍କ ସେବାରେ ନିଜକୁ ନିୟୋଜିତ କରି । ରାୟଗଡ଼ାରୁ ଗୁଣୁପୁର ଯିବା ବାଟରେ ରାମନାଗୁଡ଼ା ପଡ଼ିବା ଆଗରୁ ଛକଟିଏ ପଡ଼େ, ତାଣ୍ଡିକଣା ଛକ । ସେଠୁ ୪ କିଲୋମିଟର ପାହାଡ଼ ପର୍ବତ ଡେ଼ଇଁ ପହଞ୍ଚି ହୁଏ ରୁଗୁଡ଼ିବାଇ ଗାଁରେ । ଚାରିଆଡ଼େ ସାନବଡ଼ ପାହାଡ଼ । ମଝିରେ ପର୍ବତ ଖୋଲ ଭିତରେ ଗାଆଁ । ଏହି ଅଞ୍ଚଳରେ ଅନେକ କୁଷ୍ଠରୋଗୀ ଥାଆନ୍ତି । ସେମାନଙ୍କ ସେବାପାଇଁ ବିଶ୍ୱନାଥ ଆଞ୍ଚା ଚିନ୍ତାକଲେ । ତାଙ୍କ ଉଦ୍ୟମରେ କସ୍ତୁରବା ନିଧି ତରଫରୁ ଏହି ଗାଁରେ କୁଷ୍ଠରୋଗୀ କେନ୍ଦ୍ରଟିଏ ଖୋଲିଲା । ଅନ୍ନପୂର୍ଣ୍ଣା ସାମନ୍ତରାୟ ଏହି କେନ୍ଦ୍ରର ଦାୟିତ୍ୱ ନେଲେ । ଏହା ତାଙ୍କର ଜୀବନ ପାଲଟି ଗଲା । ଗାଁ ଲୋକଙ୍କ ସୁଖ ଦୁଃଖରେ ଭାଗିହୋଇ ସେ ରହିଗଲେ ସେହି ଗାଁରେ । ତାଙ୍କ ଆଶ୍ରମ ମାନବିକତାର ଏକ ପ୍ରତୀକ । ମାଳତୀ ବିଶ୍ୱାଳ ମଧ୍ୟ କସ୍ତୁରବା କର୍ମୀ ହିସାବରେ କୋରାପୁଟରେ ରହି ଗାଁ କାମ କରି ଆସୁଛନ୍ତି ଏବଂ ଏଠି ବାସିନ୍ଦାଭାବେ ଆଜିଯାଏ ଜୀବନ କଟାଉଛନ୍ତି ।

## ଗୋବିନ୍ଦ ରେଡ୍ଡି :

ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ କର୍ଣ୍ଣାଟକର ଲୋକ । ପରିବାର, କୁଟୁମ୍ବଙ୍କୁ ଛାଡ଼ି ସେ ଆସି ଗାନ୍ଧୀଙ୍କ ସାବରମତୀ ଆଶ୍ରମରେ ରହିଥିଲେ । ବିନୋବାଜୀଙ୍କ ସମ୍ପର୍କରେ ଆସିଲା

ପରେ ତାଙ୍କ କଥା ମାନି କୋରାପୁଟ ଜିଲ୍ଲାକୁ ଆସିଲେ ସମାଜ ସେବକ ହୋଇ । ଗରଣ୍ଡା ଗ୍ରାମରେ ରହିଲେ । ଗରଣ୍ଡା, ଗୁଣୁପୁର ସବ୍ ଡ଼ିଭିଜନର ଗୋଟିଏ ଭାରି ଅନୁନ୍ନତ ଗାଁ । ଆନ୍ଧ୍ର ପ୍ରଦେଶ ସୀମାରେ ଅଛି । ଏହି ଗ୍ରାମରେ ଗୋବିନ୍ଦ ରେଡ଼ି କୃଷିର ଉନ୍ନତି ପାଇଁ କେତେ ପରୀକ୍ଷା ନିରୀକ୍ଷା କଲେ । ୧୯୫୫ରୁ ୧୯୬୮ ମସିହା ଯାଏ, ଦୀର୍ଘ ୧୩ ବର୍ଷ କାଳ ଲୋକଙ୍କ ଉନ୍ନତି ପାଇଁ ଅଣ୍ଣା ସାହେବ, ନବଜୀବନ ମଣ୍ଡଳ, ସର୍ବସେବା ସଂଘରୁ ସହାୟତା ନେଇ ଗରଣ୍ଡା ଓ ଆଖ ପାଖ ଗାଁର ଜମିଜମା ସମ୍ବନ୍ଧୀୟ କାମ କଲେ । ଗୋବିନ୍ଦ ରେଡ୍ଡି ଯେଉଁ ନିର୍ମାଣ କାମ ନିଷ୍ଠାର ସହ କରୁଥିଲେ ସେଥିରେ ସେ ସଫଳ ହୋଇଥିଲେ ତାଙ୍କ କାମଦେଖିବା ପାଇଁ ତାଙ୍କ ବନ୍ଧୁ ଓଡ଼ିଶାର ତତ୍‌କାଳୀନ ଗଭର୍ଣ୍ଣର ସୁକ୍‌ଠଣ କର ଘଟଲ ପଦରରୁ ଚାଲିକରି ଗରଣ୍ଡାରେ ଥିବା ରେଡ୍ଡିଙ୍କ ନିକଟକୁ ଯାଇଥିଲେ । ତାଙ୍କ ଜୀବନ ହେଉଛି ଏକ ତ୍ୟାଗପୁତ ଜୀବନ । ସେ ଯେଉଁଠି ରହିବେ ସେ ଗାଁ, ସେ ଲୋକ ହିଁ ତାଙ୍କ ପରିବାର । ଗରଣ୍ଡାରେ ଥିବା ସମୟରେ ସେ କେବଳ କୃଷି କାମ ହିଁ କରୁନଥିଲେ । ଅନ୍ୟାୟର ବିରୋଧ ପାଇଁ ଲୋକଙ୍କୁ ସଚେତନ ମଧ କରୁଥିଲେ । ପାହାଡ ଆରପଟେ ଆନ୍ଧ୍ର ପ୍ରଦେଶ ଗାଁ ମାନଙ୍କରେ ପୋଲିସ୍ ଜୁଲମ୍ ଦ୍ୱାରା ଲୋକେ କଷ୍ଟ ପାଉଥିବା ଜାଣି ସେ ତା ବିରୋଧରେ ସେହି ଅଞ୍ଚଳ୍‌ରେ କାମ କରୁଥିବା ସମୟରେ ଲକ୍ଷ୍ମୀପୁର ଥାନା ପୋଲିସ୍ ଦ୍ୱାରା ଗିରଫ ମଧ ହୋଇଥିଲେ । ନକ୍‌ସଲାଇଟ ନାମରେ ଆଦିବାସୀଙ୍କୁ ସରକାର ଦଣ୍ଡଦେବା ଶୁଣିଲେ ସେ ବିବ୍ରତ ହୋଇ ତାଙ୍କ ପାଖରେ ପହଞ୍ଚି ତାହା ଦୂର କରୁଥିଲେ । ସେ ଯେତେ ସମୟ ଓଡ଼ିଶାରେ ରହି କାମ କରିବାକୁ ଚାହୁଁଥିଲେ ସେ ସମୟ ଶେଷ ହେବାରୁ ୧୯୬୮ ମସିହାରେ ସେ ମହାରାଷ୍ଟ୍ର ଯାଇ ସେବା ଗ୍ରାମରେ କୃଷି ଦାୟିତ୍ୱରେ ରହିଲେ । ରେଡ୍ଡିଜୀଙ୍କ ପରେ ଆଉଜଣେ କର୍ମୀ ଗରଣ୍ଡାରେ ରହିଲେ । ନକ୍‌ସଲାଇଟ ନାମରେ ଆଦିବାସୀଙ୍କୁ ଦମନ କରିବା ପାଇଁ ଘଟଲ ପଦର ଗ୍ରାମରେ ଯେଉଁ ପୋଲିସ ଛାଉଣୀ ଥିଲା ସେଥିରେ ବିଭୁତି ଭୂଷଣ ନନ୍ଦି ଏସ୍.ପି ଓ ଆଜିର ସାଂସଦ (୧୯୯୯) ଅନାଦି ଚରଣ ସାହୁ (ଡ଼ି.ଏସ୍.ପି) ମଧ ସେଠାରେ ଥାଇ ଲୋକଙ୍କୁ ଦବାଇବା ପାଇଁ କାମ କରୁଥିଲେ । ସେ ପୋଲିସ୍‌ମାନେ ଗରଣ୍ଡାରେ ଉକ୍ତ କର୍ମୀଙ୍କୁ ମାଡ଼ ଦେଇ ହଇରାଣ କରିବାରୁ ପୂଜ୍ୟା ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀ, ଆଦିବାସୀଙ୍କ ଉପରେ ହେଉଥିବା ଅନ୍ୟାୟର ବିରୋଧକରି ଗରଣ୍ଡା ଗ୍ରାମରେ ୪ ମାସ ରହି ଆଦିବାସୀଙ୍କୁ ଜୁଲମରୁ ରକ୍ଷା କରିଥିଲେ । ବିଶ୍ୱନାଥ ଆଞ୍ଚା ସେମାନଙ୍କ ସହ ରହିଥିଲେ । ଗୌରୀ ଆମ୍ମା, ଗୋବିନ୍ଦ ପାଢ଼ୀ, ତଥା କର୍ମୀମାନେ ଆସି ତାଙ୍କ ସହ ସେ ଅଞ୍ଚଳ ବୁଲି କାମ କରୁଥିଲେ ।

**ଜଗନ୍ନାଥ ମିଶ୍ରଃ**

ଜଣେ ସଂଗ୍ରାମୀ ମଣିଷ । ଅନ୍ୟାୟ, ଅତ୍ୟାଚାର ବିରୋଧରେ ସ୍ୱର ଉଠାଇବା ଲୋକ । ଘର ଗଞ୍ଜାମଜିଲ୍ଲା (ଏବେ ଗଜପତି) ପାରଳାଖେମୁଣ୍ଡିରେ । ସେହି ସମୟରେ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀର କମ୍ୟୁନିଷ୍ଟମାନଙ୍କ ସହ ସମ୍ପର୍କ ରଖିଥିଲେ ଓ ଓଡ଼ିଶାର ସର୍ବୋଦୟ ନେତା ମାନଙ୍କ ସହ କାମ କରୁଥିଲେ । ପାରଳାଖେମୁଣ୍ଡିଠୁ ଗୁଣୁପୁର ବେଶୀ ଦୂର ବି ନୁହେଁ । ସେତେବେଳର ସେ ବି.ଏ. ପାଶ୍ ଲୋକ ।

୧୯୫୩ ମସିହାରେ ଜଗନ୍ନାଥ ମିଶ୍ରେ, ବିଶ୍ୱନାଥ ଆଞ୍ଚାଙ୍କ ସମ୍ପର୍କରେ ଆସିଲେ । କୁଜେନ୍ଦ୍ରୀ ପାଖରେ ସେରେମା ଗାଁ । ସେ ଗାଁରେ ଜଗନ୍ନାଥ ମିଶ୍ରଙ୍କ ଶ୍ୱଶୁର ଘର । ସେଠାକୁ ସେ ଆସନ୍ତି । ମାନ୍ଦ୍ରାଜ କମ୍ୟୁନିଷ୍ଟଙ୍କ ପ୍ରେରଣାରେ ସେ ଏହି ଅଞ୍ଚଳରେ ସାମ୍ୟବାଦର ପ୍ରଚାରକଲେ । ତାଙ୍କ ସାମ୍ୟବାଦରେ ଥିଲା ମାନବିକତା, ଅହିଂସା, ସାମାଜିକ ନ୍ୟାୟ । ସେ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଇଥିଲେ । ଜଗନ୍ନାଥ ମିଶ୍ର ଆଦିବାସୀମାନଙ୍କ ପ୍ରତି ନ୍ୟାୟ, ସର୍ବୋଦୟର ମାନବିକତା ଓ ସାମ୍ୟବାଦର ଦୃଢ଼ କାର୍ଯ୍ୟାନୁଷ୍ଠାନ ପନ୍ଥାରେ ବିଶ୍ୱାସ କରୁଥିଲେ ଏବଂ ସେହିଅନୁସାରେ କାମ କରୁଥିଲେ । ପରବର୍ତ୍ତୀ କାଳରେ ୧୯୫୭ ମସିହା ନିର୍ବାଚନରେ କମ୍ୟୁନିଷ୍ଟ ଦଳ ପକ୍ଷରୁ ଏମ୍.ଏଲ.ଏ ନିର୍ବାଚିତ ହେଲେ । ଖଦଡ଼ ପ୍ରତି ତାଙ୍କର ବିଶ୍ୱାସ ଥିଲା । କେତେକ କାରଣରୁ ୧୯୬୦ ବେଳକୁ ବାମପନ୍ଥୀ କମ୍ୟୁନିଷ୍ଟ ଦଳରେ ରହିଲେ । ୧୯୬୮ ବେଳକୁ ନକ୍ସାଲବାଦୀ ଅଭିଯୋଗରେ ଗିରଫ ହୋଇ ଜେଲ ଗଲେ । ପରେ ପରେ ତାଙ୍କ ଦେହାନ୍ତ ହୋଇଗଲା । ବିଶ୍ୱନାଥ ଆଞ୍ଚା ତାଙ୍କୁ ବିଶେଷ ସମ୍ମାନ ଦେଉଥିଲେ ତାଙ୍କ ନିଷ୍ଠାପରତା ଓ ଲୋକସେବା ପାଇଁ ।

**ନାଗଭୂଷଣ ପଟ୍ଟନାୟକ :**

ବୃତ୍ତିରେ ଓକିଲ । ଗୁଣୁପୁରରେ ବସତି । ୧୯୪୧ ଠାରୁ ବିଶ୍ୱନାଥ ଆଞ୍ଚାଙ୍କ କାର୍ଯ୍ୟ ପ୍ରଣାଳୀ ସହିତ ପରିଚିତ ଥିଲେ । କ୍ରମେ ବିଶ୍ୱନାଥ ଆଞ୍ଚାଙ୍କ ନୀତି, ଆଦର୍ଶ ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ ଜୀବନର ମଧାହ୍ନରେ ଅହିଂସା ନୀତି ଉପରେ ବିଶ୍ୱାସ ରଖିପାରିଲେ ନାହିଁ । ୧୯୬୨ରେ ଭାରତକୁ ଚୀନ ଆକ୍ରମଣ କରିବା ପରେ ଯେତେବେଳେ କମ୍ୟୁନିଷ୍ଟ ଦଳ ଦୁଇ ଭାଗରେ ବିଭକ୍ତ ହୋଇ ଗଲା, ସେ ସି.ପି.ଆଇ (ଏମ୍)ର ଆଦର୍ଶ ଓ ବିଚାରଧାରାକୁ ଗ୍ରହଣ କରିନେଲେ । ସେ ଚାହୁଁଥିଲେ ଆଦିବାସୀ, ହରିଜନ, ସମାଜରେ

ଅତ୍ୟାଚାରିତ ହେଉଥିବା ଗୋଷ୍ଠୀ, ଶୋଷଣ ଜାଲରେ ଛନ୍ଦି ହୋଇ ବଞ୍ଚି ପାରୁନଥିବା ଗୋଷ୍ଠୀଙ୍କ ପ୍ରତି ଯେଉଁ ଅନ୍ୟାୟ, ଅତ୍ୟାଚାର ଧନୀ, ବ୍ୟବସାୟୀ, ମହାଜନ ଏବଂ ସରକାରୀ କର୍ମଚାରୀଙ୍କ ଦ୍ୱାରା କରାଯାଉଛି ତା'ର ଅନ୍ତହେଉ । ଏହାର ଏକମାତ୍ର ପ୍ରତିକାର ପନ୍ଥା ହେଲା ଦଳିତଙ୍କୁ ସଂଗଠିତ କରି ହିଂସା ମାଧ୍ୟମରେ ହିଁ ଏହାର ସମାଧାନ । ଶ୍ରେଣୀହୀନ, ଶୋଷଣହୀନ ସମାଜର ପ୍ରତିଷ୍ଠା, ବୁର୍ଜୁଆ ମାନଙ୍କର ଲୋପ ସାଧନ କେବଳ କମ୍ୟୁନିଷ୍ଟ ଚିନ୍ତାଧାରାଦ୍ୱାରା ହୋଇ ପାରିବ ଏଥିରେ ତାଙ୍କର ଗଭୀର ବିଶ୍ୱାସ ଆସିଲା । ମାର୍କ୍ସ, ଲେନିନ୍, ମାଓଙ୍କ ପ୍ରେରଣାର ଅନୁବର୍ତ୍ତୀ ହୋଇ ସେ ୧୯୬୫-୬୮ ମଧ୍ୟରେ ଚାରୁମଜୁମଦାର, କାନୁ ସାନ୍ୟାଲ, ସରୋଜ ଦତ୍ତଙ୍କ ନକ୍ସାଲପନ୍ଥୀ ଆନ୍ଦୋଳନରେ ଯୋଗ ଦେଇ ଭୂମିଗତ ଆନ୍ଦୋଳନ ଚଳାଇଲେ । ତାଙ୍କୁ ବହୁ ଆଦିବାସୀ ଲୋକ ମଧ୍ୟ ସମର୍ଥନ କରିଥିଲେ । ଯଦିଓ ବିଶ୍ୱନାଥ ଆଞ୍ଚାଙ୍କ ପ୍ରତି ନାଗଭୂଷଣଙ୍କ ଯଥେଷ୍ଟ ସମ୍ମାନଥିଲା, ତାଙ୍କ ତ୍ୟାଗ, ନିଷ୍ଠା, ଆଦର୍ଶକୁ ସେ ସ୍ୱୀକାର କରୁଥିଲେ ତଥାପି ତାଙ୍କ କାର୍ଯ୍ୟପନ୍ଥାକୁ ସେ ସମର୍ଥନ କରି ପାରୁନଥିଲେ । କିନ୍ତୁ ବିଶ୍ୱନାଥ ଆଞ୍ଚା ତାଙ୍କ ସହ ସମ୍ପର୍କ ରଖିଥିଲେ । ଦରକାର ବେଳେ ସମସ୍ୟା ଓ ସମାଧାନକୁ ନେଇ ଆଲୋଚନା ମଧ୍ୟ କରୁଥିଲେ । ପରବର୍ତ୍ତୀ କାଳରେ ହିଂସାବାଦର ସମର୍ଥନ, କେତେକ ହିଂସାକାଣ୍ଡ ସହିତ ଜଡ଼ିତଥିବା ଅଭିଯୋଗରେ ତାଙ୍କୁ ଗିରଫ କରାଗଲା । ବହୁଦିନ ବିଭିନ୍ନ ଜେଲରେ ରହି ସେ ରୋଗାକ୍ରାନ୍ତ ହୋଇ ପଡ଼ିଲେ । ତାଙ୍କ ସଂଗ୍ରାମୀ ମନୋବୃତ୍ତିକୁ ବିଶ୍ୱନାଥ ଆଞ୍ଚା ଏବେ ମଧ୍ୟ ସମ୍ମାନ ଦିଅନ୍ତି ।

ବିଶ୍ୱନାଥ ଆଞ୍ଚା, ମାଳତୀ ବିଶ୍ୱାଳ, ଅନ୍ନପୂର୍ଣ୍ଣା ସାମନ୍ତରାୟ, କେତକୀ ଦେବୀ, ଡ଼ଃ ତୁଙ୍ଗଭଦ୍ରା ଦେବୀ, ଗୋପୀନାଥ ମହାନ୍ତି, ଗୋବିନ୍ଦ ରେଡି, ମହମ୍ମଦ ବାଜୀ, ଜଗନ୍ନାଥ ମିଶ୍ର, ନାଗ ଭୂଷଣ ପଟ୍ଟନାୟକ ସମସ୍ତେ ନିଜ ନିଜ ଗୁଣରେ, କାର୍ଯ୍ୟକଳାପରେ, ଆଚରଣରେ ପରସ୍ପର ଠାରୁ ଅଲଗା ଥିଲେ । ଶହ ଶହ ସମର୍ପିତ ଲୋକ କୋରାପୁଟ କନ୍ଧମାଳ ଓ ଗଞ୍ଜାମର ଦଳିତ ବର୍ଗଙ୍କ ପାଇଁ କାମ କରୁଥିଲେ ସତ କିନ୍ତୁ ଏମାନେ ଥିଲେ ନେତୃ ସ୍ଥାନୀୟ ବ୍ୟକ୍ତି । ଏମାନଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଅନସ୍ୱୀକାର୍ଯ୍ୟ । ଏମାନେ ନିଜ ନିଜ ସ୍ତରରେ ଯାହା ସବୁ କାମ କରୁଥିଲେ ଏହାର ଏକ ଅନ୍ତଃ ସାମଞ୍ଜସ୍ୟ ଦେଖିହୁଏ । ଏମାନଙ୍କ କାର୍ଯ୍ୟପଦ୍ଧତି ଭିନ୍ନ ହେଲେ ମଧ୍ୟ ଏମାନଙ୍କ ଜୀବନର ସାରକଥା ହେଲା, ''ଯାହାର କେହି ନାହିଁ, ତାଙ୍କରି କଥା ଚିନ୍ତା କରିବା, ସେମାନଙ୍କ ସାମଗ୍ରିକ ଉନ୍ନତି ପାଇଁ ନିଃସ୍ୱାର୍ଥପର

ଭାବେ କାମକରିବା । ସେବା କରିବା, ଏମାନଙ୍କର ମୂଳ ଲକ୍ଷ୍ୟ ଥିଲା ।'' ତ୍ୟାଗ, ସେବା, ନିଷ୍ଠା ସବୁ ଗୁଣରେ ଏମାନେ ଥିଲେ ନିଜେ ନିଜର ଉଦାହରଣ ।

ଏମାନଙ୍କ ସାହଚର୍ଯ୍ୟ, ସହଯୋଗ, ସ୍ନେହ, ଶ୍ରଦ୍ଧା, ପ୍ରେରଣାକୁ ପାଥେୟକରି ନିଜ ଜୀବନରେ ୫୧ ବର୍ଷରେ ପହଞ୍ଚିଲା ଯାଏ ବିଶ୍ୱନାଥ ଆଞ୍ଚା କୋରାପୁଟ ଜିଲ୍ଲାରେ କଟାଇ ଦେଲେ ସାଧାରଣ ମଣିଷର ଦୁଃଖ ସୁଖ, ହସ କାନ୍ଦ, ଜାନି ଯାତ୍ରା, ପର୍ବପର୍ବାଣୀ, ବିଦ୍ରୋହ ବିପ୍ଳବ ଓ ସଂଗ୍ରାମ ଭିତରେ ଆଉ ହୋଇଗଲେ ସମସ୍ତଙ୍କ ସ୍ନେହର ଆଦରର ''ଆଞ୍ଚା'' ।

ତାପରେ ତାଙ୍କର ଯାତ୍ରା ଆରମ୍ଭ ହେଲା କୋରାପୁଟରୁ କନ୍ଧମାଳ ।

* * *

# କୋରାପୁଟରୁ କନ୍ଧମାଳ

**କୋ**ରାପୁଟର ସେବାକାମ ଦୀର୍ଘ ୨୭ ବର୍ଷ କଲାପରେ ବିଶ୍ୱନାଥ ଆଞ୍ଚା ତାଙ୍କ କାର୍ଯ୍ୟକ୍ଷେତ୍ର ବଦଳାଇ ଦେଲେ ୧୯୬୭ରେ ।

ସର୍ବତ୍ର ବଣ ଓ ପାହାଡ଼ । ବର୍ଷାଦିନେ ଭୀଷଣ ବର୍ଷା ଓ ଶୀତଦିନେ ହାଡ଼ଭଙ୍ଗା ଶୀତ ଭିତରେ ଫୁଲବାଣୀର ଆଦିବାସୀ ମଣିଷ ଶୋଷଣର ଶିକାର ହୋଇ କଷ୍ଟପୂର୍ଣ୍ଣ ଜୀବନ କାଟନ୍ତି । ବୋଧହୁଏ ଆଦିବାସୀଙ୍କ ଜୀବନ ଗୋଟିଏ ସୂତାରେ ବନ୍ଧା । କୋରାପୁଟରେ ଆଦିବାସୀ ଜନଜୀବନ ଓ ଫୁଲବାଣୀ ଆଦିବାସୀ ଜନଜୀବନ ସମାନ୍ତରାଳ ଥିଲା ।

୧୯୬୬ ମସିହାରେ ସନ୍ଥ ବିନୋବାଜୀଙ୍କ ଫୁଲବାଣୀ ଜିଲ୍ଲାଗସ୍ତ କରିବା ସ୍ଥିରହେଲା । ତାଙ୍କ ଏହି ଗସ୍ତର ସୁବ୍ୟବସ୍ଥା କରିବା ପାଇଁ ବହୁଦିନରୁ ଅଭିଜ୍ଞତା ଥିବା ବିଶ୍ୱନାଥ ଆଞ୍ଚାଙ୍କୁ ମା ରମା ଦେବୀ ଚିଠି ଲେଖି ଜଣାଇଲେ ।

ଯେହେତୁ ଫୁଲବାଣୀ ଜିଲ୍ଲାରେ ସର୍ବୋଦୟ ଭାବନାରେ ଲୋକମାନଙ୍କ ନେତୃତ୍ୱ ନେବାପାଇଁ ବହୁତ କମ କର୍ମୀଥିଲେ ଏଣୁ ବିଶ୍ୱନାଥ ଆଞ୍ଚାଙ୍କ ଉପରେ ଏହି ଦାୟିତ୍ୱ ନ୍ୟସ୍ତ ହେଲା । ସେ ସମଧର୍ମୀ କର୍ମୀଙ୍କୁ ଏକାଠି କରିବେ ଏବଂ ଶୋଷଣ ବିରୋଧୀ ସଂଗ୍ରାମ ଚାଲୁ ରଖିବେ । ତା ସହିତ ସମାଜସେବା ଓ ସଂଗଠନ ମୂଳକ କାର୍ଯ୍ୟ କରିବେ ।

କୋରାପୁଟ ଜିଲ୍ଲାର ରାୟଗଡ଼ା, ଗୁଣପୁର, ଗୁଡ଼ାରୀ, ବିଷମ କଟକ, ନାରାୟଣ ପାଟଣା ଆଦି ଅଞ୍ଚଳରେ ୧୯୬୫-୬୮ ମଧ୍ୟରେ ହିଂସା ସପକ୍ଷରେ ଲୋକମତ ଯିବା ଦେଖି ବିଶ୍ୱନାଥ ଆଞ୍ଚା ଅହିଂସା, ସତ୍ୟ ଓ ଆଦର୍ଶର ପୃଷ୍ଠଭୂମିରେ ଧୈର୍ଯ୍ୟଧରି କାମ କରିବାପାଇଁ ଲୋକମତ ଆଉ ରାଜି ନହେବା ଅନୁଭବ କଲେ ଏଣୁ ସେ କୋରାପୁଟରେ କାମ କମେଇ ଦେଲେ । ଫୁଲବାଣୀ ଜିଲ୍ଲା ହେଲା ତାଙ୍କର ନୂଆ କର୍ମକ୍ଷେତ୍ର ।

ବୟସ ବଢୁଥିଲା ଧୀରେ ଧୀରେ । ଆଉ ୧୯୪୦-୪୧ର ଉଦ୍ଦୀପନା ନଥିଲା । ୫୦ବର୍ଷ ପାର ହୋଇଗଲେ ସେ ୧୯୬୬ରେ । ଜୀବନର ବହୁଘାତ, ପ୍ରତିଘାତ, ଅନୁଭବକୁ ନେଇ ସେ ଏବେ ଧୀର, ସ୍ଥିର, ସ୍ଥିତପ୍ରଜ୍ଞ । ଆଉ ସଂଗ୍ରାମୀ ନେତୃତ୍ୱ ନେବା ବଦଳରେ ସେ ସଂସ୍କାର ମୂଳକ କାମରେ ବହୁତ ସମୟ ଦେଲେ । ସେତେବେଳକୁ କୋରାପୁଟ ଜିଲ୍ଲାର ବହୁ ଯୁବକ, ବହୁ ସମାଜ ସେବୀ ସଂସ୍ଥା ଆଦିବାସୀଙ୍କ ପାଇଁ କାମ କରିବାକୁ ବାହାରି

ସାରିଥିଲେ । ବିଶ୍ୱନାଥ ଆଜ୍ଞା ଯୁବନେତୃତ୍ୱକୁ ରାସ୍ତା ଛାଡ଼ିଦେଲେ । ଠକ୍କର ବାପା ଆଶ୍ରମ, ଡେନିସ୍ ମିଶନ, ଜର୍ମାନ ମିଶନ ଆଦିବାସୀ ସେବାକାମ କରୁଥାନ୍ତି । ସର୍ବୋଦୟ କର୍ମୀ, ଯେଉଁମାନେ ପଛଧାଡ଼ିରେ ଥିଲେ ଆଗକୁ ଆସି ଯାଇଥାନ୍ତି । ସେମାନଙ୍କ ଭିତରେ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଥାନ୍ତି । ନାଗଭୂଷଣ ପଟ୍ଟନାୟକ ମଧ୍ୟ ଆଦିବାସୀଙ୍କ ଭିତରେ ରହି କାମ କରୁଥାନ୍ତି । ସେମାନେ କେମିତି କାମ କରୁଛନ୍ତି ତାହା ଦୂରରୁ ରହି ବିଶ୍ୱନାଥ ଆଜ୍ଞା ଦେଖିବା ଉଚିତ ମଣିଲେ ।

ଫୁଲବାଣୀରେ ଶୋଷଣ କୋରାପୁଟରୁ ବଳି । ଲୋକେ ସମ୍ପୂର୍ଣ୍ଣ ଅବହେଳିତ । ଏମାନଙ୍କ ଭିତରେ ଚେତନା ଜାଗ୍ରତ କରିବା ପାଇଁ ନିଷ୍ଠାପର କର୍ମୀ ବିଶେଷ ନାହାନ୍ତି । ଏଣୁ ସେ ନିଜ କର୍ମକ୍ଷେତ୍ର ବଦଳାଇ ଦେଲେ ।

ସେ କାହିଁକି କୋରାପୁଟ ଛାଡ଼ି ଫୁଲବାଣୀ (କନ୍ଧମାଳ)କୁ କାର୍ଯ୍ୟକ୍ଷେତ୍ରକଲେ ବୋଲି ପଚାରିଲେ ନିଜ ସ୍ୱଭାବ ସୁଲଭ ଧୀର ସ୍ୱରରେ ସଂକ୍ଷେପରେ କହନ୍ତି,''୧୯୫୫ ମସିହା ପର୍ଯ୍ୟନ୍ତ କାମରୁ ଯେତେ ଶାନ୍ତି ମିଳୁଥିଲା ତାହା କ୍ରମେ କମିଗଲା । ମୁଁ କେବେ ଜାଣିଶୁଣି ଅବହେଳା କରିନାହିଁ । ସ୍ୱାଧୀନତା ଆନ୍ଦୋଳନ ଓ ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କେତେବର୍ଷରେ ଜନ ସାଧାରଣଙ୍କ ଆଗ୍ରହ ସଂଗ୍ରାମରେ ବିଜୟ ହାସଲ କରିବା ପାଇଁ ମୋତେ ଖୁବ୍ ସାହାଯ୍ୟ କରିଥିଲା । ପରେ ଅନେକକଥା ଭୁଲ ବୋଲି ଜାଣିସୁଦ୍ଧା ସେଥିରୁ ନିବୃତ୍ତ ରହିବାକୁ ଲୋକଙ୍କୁ କହି ପାରିନାହିଁ ।''

ସବୁବେଳେ ସେ ଲୋକଧର୍ମୀ । ସତ୍ୟର ଦାଢ଼ରେ ଚାଲିବା ମଣିଷ । କର୍ମଯୋଗୀ ।

## କନ୍ଧମାଳରେ ଶୋଷଣର ସ୍ୱରୂପ :

ଦୁର୍ବଳ ସବୁବେଳେ ସବଳର ଅତ୍ୟାଚାର ସହେ । ସରଳ ମଣିଷ ଚାଲାକ ମଣିଷର ଖାପଚ଼ରେ ପଡ଼ି ଶୋଷିତ ହୁଏ । କନ୍ଧମାଳରେ ପୁରାତନ ମଣିଷ କୋଟିଆ କନ୍ଧ । ମାଟିତାଡ଼ି ଦେହର ଝାଳଦେଇ, ରକ୍ତ ଦୁହିଁ ଜମି ଉଠିଆ କରେ । ଫସଲ କରେ । ଅମଳ ବେଳକୁ ତା'ର ଅଭାବର ସୁଯୋଗ ନେଇ ଅଣ ଆଦିବାସୀଙ୍କ ଶୋଷଣର ଶିକାର ହୁଏ । କନ୍ଧମାଳର କୋଟଗଡ଼, ବେଲଘର ଥାନା ଅଞ୍ଚଳ ସବୁଠାରୁ ବେଶୀ ଅବହେଳିତ । ୧୯୬୬-୬୭ ବେଳକୁ ଏ ଅଞ୍ଚଳରେ ଗାଡ଼ି ଦେଖିବା ସୁଯୋଗ ନଥିଲା । ବିଜୁଳି ଆଲୁଅ କଥା ନକହିବା ଭଲ । ଏଠା ପୋଲିସ ବିଭାଗ ଓ ରାଜସ୍ୱ ବିଭାଗ କର୍ମଚାରୀ ସାଧାରଣ ଲୋକଙ୍କ କଥା ବୁଝି ପାରନ୍ତି ନାହିଁ । ସୁବିଧା ଅସୁବିଧା ବୁଝିବା ତ ଦୂରର କଥା ।

ଏଠା ଲୋକେ ଚଳିବା ପାଇଁ ଜଙ୍ଗଲ ଉପରେ ନିର୍ଭର କରନ୍ତି । ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହକରି ବିକି ବଞ୍ଚନ୍ତି । ସେମାନଙ୍କ ବିଚାରଧାରା ସଭ୍ୟ ଶିକ୍ଷିତଙ୍କ ବିଚାରଧାରା ଠାରୁ ଅଲଗା । ଜମି, ଜଳ, ଜଙ୍ଗଲ, ଏହା ପ୍ରକୃତିର ଅବଦାନ । ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରିବା ଆଦିବାସୀଙ୍କ ଜନ୍ମଗତ ଅଧିକାର । ହେଲେ ଜଙ୍ଗଲ ଆଇନର ଅଧିକାରୀ, ଜଙ୍ଗଲ ରକ୍ଷକ ମାନେ ଏହା ସ୍ୱୀକାର କରନ୍ତି ନାହିଁ । ଏମାନେ ଆଦିବାସୀଙ୍କ ଉପରେ କେସ୍ କରନ୍ତି । ଆଇନ କାନୁନର ଜାଲ ଭିତରେ ଆଦିବାସୀ ସର୍ବସ୍ୱାନ୍ତ ହୁଏ । ପୋଲିସ୍ ଓ ଜଙ୍ଗଲ ବିଭାଗ ଲୋକଙ୍କୁ ଦେଖିଲେ ସେମାନେ ଭୟକରନ୍ତି । ବଣରେ ଲୁଚନ୍ତି ।

ଶୋଷକର ଜାତି ନାହିଁ । ତାର ଏକମାତ୍ର ଧର୍ମ ହେଲା ଶୋଷଣ କରିବା । ଏମାନଙ୍କ ବର୍ଣ୍ଣ ନାହିଁ କି ଲିଙ୍ଗ ନାହିଁ । ବଡ଼ ବିଚିତ୍ର ଏ ଶୋଷକ, ଶୋଷିତର ସମ୍ପର୍କ । ଧନୀ ଆଦିବାସୀଙ୍କୁ ଡମ୍ବ ଓ ପାଣ ଜାତିର ଲୋକେ ଠକନ୍ତି । ଶାସନ ତନ୍ତ୍ରର ହାତବାରିସୀ ହୋଇ ଏହି ଚାଲାକ ଗୋଷ୍ଠୀ ଶୋଷକ ଓ ଶୋଷିତ ମଧ୍ୟରେ ଯୋଗସୂତ୍ର ରଖନ୍ତି । ଏହି ଆଦିବାସୀ ହରିଜନଙ୍କୁ କୁମୁଟି ଓ ଶୁଣ୍ଢୀ ଠକନ୍ତି । ଶୋଷଣର ଏକ ଧାରା ଉପରୁ ତଳ ଆଡକୁ ଲମ୍ବି ଯାଇଥାଏ ।

ସାହୁକାରମାନେ ଧନୀ । ଗରିବ ଆଦିବାସୀଙ୍କୁ ଫସଲ ଅମଳ ପରେ କିଣିବା ପାଇଁ ଆଗରୁ ପଇସା ଦେଇଥାନ୍ତି । ମୁଣ୍ଡ ଝାଳ ତୁଣ୍ଡରେ ମାରି ଆଦିବାସୀ ଫସଲ ଉଭାରେ । ଆଗରୁ ପଇସା ଦେଇଥିବା ଆଳରେ ସୁଧମୂଳ ହିସାବ କରି ଗୁଣେ ପଇସା ଦେଇ ପାଞ୍ଚଗୁଣ ଫସଲ ଏମାନେ ଆଦାୟ କରି ନିଅନ୍ତି । ହଳଦୀ, କାନ୍ଦୁଲ, ଫୁଲ ଓ ଖଜୁରୀ ଝାଡୁ, ଅଳସୀ, ମାଣ୍ଡିଆ, ଜହ୍ନା, ଜନ୍ଦରି, ମକା, ଧାନ, ଧୂଆପତ୍ର, ମହୁଲ ଆଦି । ସରକାରୀ ଲୋକେ ଏ ସବୁ ଦେଖି ଚୁପ ରହନ୍ତି ନାହିଁ । ଆଇନି ଥାଉ ଥାଉ ଏମାନେ ସବୁ ଖାଇଯିବେ ବା କେମିତି ଏଣୁ ଆଇନର ଅନ୍ଧି ସନ୍ଧି ମାଜି ମୁଜି, ଆଇନିର ଡ଼ର ଦେଖାଇ ଏହି ସାହୁକାରମାନଙ୍କ ଠାରୁ ପୋଲିସ୍, ସପ୍ଲାଇ ବାଲା, ବଣବାଲା, ଅବକାରୀବାଲା ହାତଚିକ୍କଣ କରନ୍ତି । ଶୋଷିତର ସମ୍ପତ୍ତି ଶୋଷକ ମାନଙ୍କର କୋଠ ସମ୍ପତ୍ତି ପାଲଟି ଯାଏ ।

## ଆଦିବାସୀ ସମସ୍ୟା :

ଫୁଲବାଣୀ (କନ୍ଧମାଳ) ଆଦିବାସୀଙ୍କ ବହୁ ସମସ୍ୟା ପ୍ରତ୍ୟକ୍ଷ କଲେ ବିଶ୍ୱନାଥ ଆଙ୍ଗା ଏଠାକୁ ଆସି । ସେ ଦେଖିଲେ ସ୍ୱାଧୀନତା ପରେ ଆଦିବାସୀ ବିକାଶ ନାମରେ ଯାହା ସବୁ ହେଉଛି ତାହା ଆଦିବାସୀଙ୍କ ବିକାଶରେ ବିଶେଷ ସହାୟକ ହୋଇପାରୁ ନାହିଁ । ଏବେ ଆଦିବାସୀଙ୍କ ଭିତରେ ଲୋଭୀ ବ୍ୟବସାୟୀ, ସାହୁକାର, ଜଙ୍ଗଲ

ଠିକାଦାର, ଆଦିବାସୀଙ୍କ ଠାରୁ ଜମି ଅକ୍ତିୟାର କରିବା ଦଲାଲ ଗୋଷ୍ଠୀ ତଥା ବ୍ୟୁରୋକ୍ରେଟ୍‌ସ (ସରକାରୀ କର୍ମଚାରୀ)ଙ୍କ ଦଲାଲମାନେ ବିଶେଷ ସକ୍ରିୟ ହୋଇ ପଡ଼ିବା ଫଳରେ ନାନା ବିଭ୍ରାଟ ସୃଷ୍ଟି ହେଉଛି ।

ଆଉ ଗୋଟିଏ ବଡ଼ କଥା ସେ ଅନୁଭବ କଲେ, ଏମାନେ ହେଉଛନ୍ତି ଏପରି ଏକ ଶ୍ରେଣୀର ଲୋକ, ଯେଉଁମାନେ ଆଦିବାସୀଙ୍କ ଉନ୍ନତି କରିବା ଚାହାନ୍ତି କିନ୍ତୁ ଆଦିବାସୀଙ୍କ ଭାଷା ଜାଣନ୍ତି ନାହିଁ । ବିଶ୍ୱନାଥ ଆଞ୍ଚା କନ୍ଧମାଳରେ ଦେଖିଲେ ଆଦିବାସୀଙ୍କ ଭୂମି ସତ୍ତ୍ୱକୁ ନେଇ ସମସ୍ୟା । କେବଳ ଜମି ନୁହେଁ, ଜଙ୍ଗଲ ଉପରେ ମଧ ଆଦିବାସୀମାନେ ଅତିକ୍ରମଣ କରିଛନ୍ତି ବୋଲି ସରକାର ଭାବିଲେ, ଫଳରେ ଆଦିବାସୀମାନେ ବହୁ ଅସୁବିଧାର ସମ୍ମୁଖୀନ ହେଲେ ।

ସେ ଦେଖିଲେ କନ୍ଧମାଳର ଆଦିବାସୀଙ୍କ ଆୟର ମୁଖ୍ୟସ୍ରୋତ ହେଉଛି ଜଙ୍ଗଲଜାତ ପଦାର୍ଥର ସଂଗ୍ରହ ଓ ବିକ୍ରୟ, ଚାଷ କରିବା, ଶିକାର କରି ପଶୁ ମାଂସ ବିକ୍ରି କରିବା ତଥା ଜଙ୍ଗଲରେ କୁଲି ମଜୁରି କରିବା । ଅନାଦି କାଳରୁ ଏହି ଅଞ୍ଚଳର ଆଦିବାସୀ ନିଜ ଜୀବନ ଓ ଜୀବିକା ପାଇଁ ଜଙ୍ଗଲ ଉପରେ ନିର୍ଭର କରି ଆସୁଛନ୍ତି । ଜଙ୍ଗଲରୁ ଜାଳକାଠ ସଂଗ୍ରହ କରିଥାନ୍ତି । ଘରୋଇ ଉପକରଣ ପାଇଁ ମଧ ସେମାନେ କାଠ ଆଣିଥାନ୍ତି । ଲାଖ, ଝୁଣା, କେନ୍ଦୁ, ଶାଳପତ୍ର, ଶିଆଳୀପତ୍ର, ମହୁଲ, ତେନ୍ତୁଳି, ଅଁଳା ଆଦି ଜଙ୍ଗଲରୁ ସଂଗ୍ରହ କରି ପାଖ ହାଟ, ବଜାରରେ ବିକ୍ରି କରିବାକୁ ଆସନ୍ତି ଏବଂ ସେମାନଙ୍କର ଅଜ୍ଞତାର ଲାଭ ଉଠାଇ ସାହୁକାରମାନେ କମ ଦାମରେ ସେମାନଙ୍କ ଠାରୁ ଜିନିଷ କିଣି ନିଅନ୍ତି ଯାହା ଫଳରେ ଆଦିବାସୀ ତା ପରିଶ୍ରମର ମୂଲ୍ୟ ପାଏ ନାହିଁ । ବିକେ କମ ଦାମରେ କିଣେ ନିଜର ଲୋଡା ହେବା ଜିନିଷ ବେଶୀ ପଇସାରେ, ଏମିତି ଉଭୟ ଦିଗରୁ ସେ କ୍ଷତିରେ ପଡ଼େ ।

ବିଶ୍ୱନାଥ ଆଞ୍ଚା କନ୍ଧମାଳର ବାଲିଗୁଡ଼ା ସବ୍‌ଡ଼ିଭିଜନର ବହୁ ଅଞ୍ଚଳ ବୁଲି ଅନୁଭବ କଲେ ଆଦିବାସୀ ମାନେ ନିଜ ପୁଅ ଝିଅଙ୍କ ବିବାହ କାର୍ଯ୍ୟ ପାଇଁ ଓ କେତେକ ଧାର୍ମିକ ଅନୁଷ୍ଠାନ ପାଇଁ ଆବଶ୍ୟକ ଖର୍ଚ୍ଚ ତୁଲାଇବାକୁ ସାହୁକାର, ମହାଜନମାନଙ୍କ ଠାରୁ ଚଢ଼ା ସୁଧଦେଇ ଋଣ କରୁଛନ୍ତି ଏବଂ ଋଣ ସୁଝି ନପାରି ଜମିବାଡ଼ି ଘରଦ୍ୱାର ଦେଇ ସର୍ବସ୍ୱାନ୍ତ ହେଉଛନ୍ତି ।

ଏହା ତାଙ୍କର ନିଜସ୍ୱ ଅନୁଭବ ଥିଲା ଯେ ଆଦିବାସୀ ସ୍ୱଭାବତଃ ଭବିଷ୍ୟତ ପାଇଁ ସଞ୍ଚୟ କରିବା ମନୋବୃତ୍ତି ରଖି ନଥାଏ । ସେ ଆଜିର କଥା ଚିନ୍ତାକରେ । ଆସନ୍ତାକାଲି

କଣ ହେବ ସେଥିପାଇଁ ମୁଣ୍ଡ ଖେଳାଇବା ତାର ଲୋଡ଼ାପଡ଼େ ନାହିଁ, ଫଳରେ ବହୁଦିନ ସେ ନିର୍ଦ୍ଧନତାର ଶିକାର ହୁଏ। ଏ ଅଞ୍ଚଳ ଗୁଡ଼ିକ ବ୍ରିଟିଶ ସରକାରଙ୍କ ଦ୍ୱାରା, ପାର୍ସିଆଲ ଏକ୍‌ସକ୍ଲୁଡେଡ୍ ଟେରିଟୋରୀଜ୍'' ବା ଅନଗ୍ରସର ଅଞ୍ଚଳ ଭାବେ ଘୋଷଣା କରାଯାଇଥିବା ଫଳରେ ଏଠାରେ ରାସ୍ତାଘାଟର ଉନ୍ନତି ପାଇଁ କୌଣସି ବ୍ୟବସ୍ଥା କରାଗଲା ନାହିଁ। ସ୍ୱାଧୀନତା ପରେ ମଧ୍ୟ ବହୁ ଅଞ୍ଚଳ ସହ ରାସ୍ତା ସମ୍ପର୍କ ନାହିଁ। ୧୯୮୨ ବେଳକୁ ବେଲଘର ଥାନା ଅଞ୍ଚଳକୁ ବସ ଯାଉ ନଥିଲା। ରାସ୍ତା, ଘାଟ, ପରିବହନ ଓ ସଞ୍ଚାର ବ୍ୟବସ୍ଥାର ଅଭାବ ଫଳରେ, ବାହାର ସମ୍ପର୍କରେ ଆସି ନପାରି ଏଠା ଆଦିବାସୀ କୃଷି ଉତ୍ପାଦନ ଓ ଅନ୍ୟ ସବୁଦୃଷ୍ଟିରୁ ପଛୁଆ ହୋଇ ରହିଯାଇଛନ୍ତି।

ସେ ଦେଖିଲେ କନ୍ଧମାଳ ଆଦିବାସୀ ସ୍ୱାସ୍ଥ୍ୟସେବା ପାଇ ପାରୁନାହିଁ। କୁଷ୍ଠ, ମ୍ୟାଲେରିଆ, କଳାଜ୍ୱର, ଡେଙ୍ଗୁ, ନାଳରକ୍ତଝାଡାରେ ବହୁଲୋକେ ଆକ୍ରାନ୍ତ ହେଉଛନ୍ତି। ମରୁଛନ୍ତି। ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର କାଁ ଭାଁ କେଉଁଠି ଅଛି। ଅନ୍ଧବିଶ୍ୱାସ, କୁ ସଂସ୍କାର ଫଳରେ ଲୋକେ ଗୁଣି, ଗାରେଡିରେ ବିଶ୍ୱାସ କରୁଛନ୍ତି।

ତାଛଡ଼ା ଶିକ୍ଷା ଓ ପେୟଜଳର ଅଭାବ। ଆଦିବାସୀ ନେତୃତ୍ୱର ଅଭାବ ଫଳରେ ଆଦିବାସୀ ମାନେ ବହୁ ସମସ୍ୟାର ସମ୍ମୁଖୀନ ହେଉଛନ୍ତି। ଏହି ସମସ୍ୟାଗୁଡ଼ିକର ସମାଧାନରେ ସହାୟକ ହେବା ପାଇଁ ବିଶ୍ୱନାଥ ଆଞ୍ଚା ୧୯୬୭ ମସିହାର ଦ୍ୱିତୀୟାର୍ଦ୍ଧରେ କୋଟଗଡ଼, ବେଲଘର, ବାଲିଗୁଡ଼ା, ଜି.ଉଦୟଗିରି ଓ ଫୁଲବାଣୀରେ ଥିବା ବିଭିନ୍ନ ଗ୍ରାମକୁ ଗଲେ।

ଏହି ପରି ଏକ ସାଂସ୍କୃତିକ ବାତାବରଣ ତଥା ଆର୍ଥିକ ଦୁରବସ୍ଥା ଭିତରେ ବଞ୍ଚୁଥିବା କନ୍ଧମାଳ ଆଦିବାସୀଙ୍କ ସେବା ସମ୍ବନ୍ଧରେ ବିଶ୍ୱନାଥ ଆଞ୍ଚା କହନ୍ତି, ''ଫୁଲବାଣୀ ଜିଲ୍ଲାରେ ୧୯୬୭ରୁ ଭୂଦାନ କାର୍ଯ୍ୟ ଆରମ୍ଭ ହେଲା। ମୁଁ ଫୁଲବାଣୀ ଜିଲ୍ଲାର ବାଲିଗୁଡ଼ାକୁ କେନ୍ଦ୍ରକରି ଏକଲା ରହିଲି। କୋରାପୁଟ ସହ ମଧ୍ୟ ସମ୍ପର୍କ ରଖିଲି। ଫୁଲବାଣୀ ଜିଲ୍ଲାରେ ଗଠନମୂଳକ କାମ ଆଗେଇ ନେବା ପାଇଁ ବିଭିନ୍ନ ସଂସ୍ଥା ସହ ସମ୍ପର୍କ ରଖିଲି।''

## କନ୍ଧମାଳ ଅଞ୍ଚଳରେ କେତେକ ରଚନାତ୍ମକ କର୍ମର ବିବରଣୀ:

ବିଶ୍ୱନାଥ ଆଞ୍ଚାଙ୍କ ନିଜଭାଷାରେ ସେ କହନ୍ତି, ''ପୂଜ୍ୟା ମାଳତୀଦେବୀ (ଚୌଧୁରୀ) ଯେକି ଆଦିବାସୀଙ୍କ ସହ ଓତୋପ୍ରୋତଃ ଭାବେ ଜଡ଼ିତ, ତାଙ୍କ ଦୁଃଖକୁ ଦୂର କରିବା ପାଇଁ

ଜୀବନସାରା କାମ କରୁଥିଲେ, ସେ ଆଦିବାସୀଙ୍କ ମଧ୍ୟରେ କାମ କରିବା ପାଇଁ ବାଲିଗୁଡ଼ାକୁ ନେଇ ଗୋଟିଏ କେନ୍ଦ୍ର ଖୋଲିଲେ । ଗାନ୍ଧୀ ସ୍ମାରକ ନିଧି, ଉତ୍କଳ ଖଦୀମଣ୍ଡଳ ମଧ୍ୟ ଦୁଇଟି ସ୍ଥାନରେ ଖଦୀ ୟୁନିଟ୍ କାମ ଆରମ୍ଭ କଲେ । ଫୁଲବାଣୀରେ ଖଦୀ ଭଣ୍ଡାର ଖୋଲିଲେ ।'' ଏହି ସଂସ୍ଥା ଗୁଡ଼ିକ କନ୍ଧମାଳର ବିଭିନ୍ନ ଅନଗ୍ରସର ଅଞ୍ଚଳ ଗୁଡ଼ିକରେ କେନ୍ଦ୍ରମାନ ଖୋଲିଲେ ।

କାନ୍ଧରେ ଝୁଲାମୁଣିଟିଏ ଓହଳାଇ ଖାଲିପାଦରେ ଦିନକୁ ୧୫ କି ୨୦ ମାଇଲ ଚାଲିବା ତାଙ୍କ ନିତିଦିନିଆ କାମ । ବଣ ପାରହୋଇ ଡ଼ଙ୍ଗର ପାହାଡ ଚଢ଼ି ଓହ୍ଲାଇ ସେ ପହଞ୍ଚି ଯାଆନ୍ତି ଆଦିବାସୀ ଗାଁରେ । ସବୁ ଗାଁରେ ସେଇ ଗୋଟିଏ ଦୃଶ୍ୟ । ଅନ୍ନ, ବସ୍ତ୍ର ସବୁଥିରେ ଅଭାବୀ ଏମାନେ । ଉପରେ ଶୋଷଣ ଓ ଅତ୍ୟାଚାର । ଏମାନଙ୍କ ଆର୍ଥିକ ଅବସ୍ଥା ଅତି ଶୋଚନୀୟ । ସ୍ୱାଧୀନତାର ୨୦ ବର୍ଷ ପରେ ବି ଏହି ଅଞ୍ଚଳ ସେମିତି ଅନୁନ୍ନତ, ଅବିକଶିତ । ସେମାନଙ୍କର ଅଭାବ ପୂରଣ ପାଇଁ ବିଶ୍ୱନାଥ ଆଞ୍ଚାଙ୍କ ଚେଷ୍ଟା ନିରବଚ୍ଛିନ୍ନ ଭାବେ ଚାଲିଥାଏ ।

ପ୍ରଥମେ ବେଲଘର ଅଞ୍ଚଳର ବୁଲୁବାରୁ ଗ୍ରାମରେ କେନ୍ଦ୍ର ଆରମ୍ଭ ହେଲା । ସେଠାରେ ରାଧାମଣି ସାହୁ, ସାରିଆ ଗମାଙ୍ଗ ରହିଥିଲେ । ତାପରେ ରାଙ୍ଗାପାରୁ ଗ୍ରାମରେ ରହି କାମ କରିବା ପାଇଁ ସୂର୍ଯ୍ୟମଣି ଦେବୀ ଏବଂ ବାସନ୍ତି ଦେବୀ ଆସି ପହଞ୍ଚିଥିଲେ । ତାପରେ ତୁପି କେନ୍ଦ୍ର ଓ ମାଟ୍ରୁଗାଁ କେନ୍ଦ୍ର ଆରମ୍ଭ ହୋଇଥିଲା । ମାଟ୍ରୁ ଗାଁ କେନ୍ଦ୍ର ୬ ମାସ ପରେ ବନ୍ଦ ହୋଇଗଲା ।

୧୯୬୭ ରୁ ୭୦ ଯାଏ ଭୂଦାନ କାମ ଚାଲିଲା । ଉତ୍କଳ ଖଦୀ ମଣ୍ଡଳର ଦୁଇଜଣ ଉତ୍ସାହୀ କର୍ମୀ ବହୁତ କାମ କଲେ । ସାରଙ୍ଗଗଡ଼ ଅଞ୍ଚଳରେ ଖଦୀକାମର ପ୍ରସାର ଦାୟିତ୍ୱରେ ରହିଲେ ଶ୍ରୀ ମୃତ୍ୟୁଞ୍ଜୟ ପ୍ରଧାନ । ବାଲିଗୁଡ଼ା ଅଞ୍ଚଳରେ କାମ କଲେଶ୍ରୀ ଉତ୍ସବ ଚନ୍ଦ୍ର ଜେନା । ଏଠି ଶ୍ରୀ ଉତ୍ସବ ଚନ୍ଦ୍ର ଜେନାଙ୍କ ସମ୍ବନ୍ଧରେ କିଛି ସୂଚନା ଦେବା ଉଚିତ ହେବ । ଶ୍ରୀ ଜେନା କହନ୍ତି, ''ମୁଁ ଯେତେବେଳ ରାମଚନ୍ଦ୍ରପୁର ପୋଷ୍ଟ ବେସିକ ସ୍କୁଲରେ ପାଠ ପଢୁଥିଲି, ସେ ସମୟରୁ ଆଞ୍ଚାଙ୍କୁ ଦେଖିଥିଲି । କିନ୍ତୁ ତାଙ୍କ ସହିତ ସମ୍ପର୍କ ନଥିଲା । ୧୯୬୩ ମସିହାରୁ ଓଡ଼ିଶା ଖଦୀ ଗ୍ରାମଦ୍ୟୋଗ ଅଧୀନରେ ଗ୍ରାମ ସହାୟକ ଭାବେ ବନ୍ଧୁଗାଁ (କୋରାପୁଟ ଜିଲ୍ଲା) ଠାରେ କାର୍ଯ୍ୟରତ ଥିଲାବେଳେ ବହୁବାର ଆଞ୍ଚାଙ୍କ ସାନିଧ ଲାଭ କରିଛି । ଗ୍ରାମ ସହାୟକ ତାଲିମ ଗୋପାଳବାଡ଼ିର ଗ୍ରାମ ସ୍ୱରାଜ୍ୟ ବିଦ୍ୟାଳୟରେ ଦୁଇ ବର୍ଷ ନେବା ସମୟରେ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଛି । ବନ୍ଧୁଗାଁରେ ସେତେବେଳେ ଯେଉଁ ପ୍ରକାର ଅଭାବ ଅସୁବିଧା ମୁଁ ଅନୁଭବ କରୁଥିଲି, ସେ ସବୁ ସମସ୍ୟାର ସମାଧାନର ବାଟ ଥିଲେ

ଆଞ୍ଜା । ବାସ୍ତବିକ ସେ ସମୟରେ ବହୁତ କମ ବୟସରେ କୋରାପୁଟ ଜିଲ୍ଲାର ବନ୍ଧୁଗାଁ ଠାରେ ମୁଁ କାମ କରୁଥିଲି । ପରିବାରର ସ୍ନେହଶ୍ରଦ୍ଧା, ସାଙ୍ଗସାଥୀ ମାନଙ୍କର କେତେକ ସ୍ୱପ୍ନିଳ ମୁହୂର୍ତ୍ତକୁ ମୁଁ ପରିତ୍ୟାଗ କରି ସେଠାରେ ପଡ଼ିଥିଲି, ମୋର କେବଳ ସାହାଭରସା ଓ ମନୋବଳ ବଢ଼ାଇବାରେ ଏକମାତ୍ର ବ୍ୟକ୍ତିଥିଲେ ଆଞ୍ଜା । ଦୁଃଖ, ସୁଖ, ସାନ୍ତ୍ୱନା, ଦିଗ୍‌ଦର୍ଶନ ଓ ସାଂଗଠନିକ କାର୍ଯ୍ୟ ସମ୍ପର୍କରେ ସବୁ ପ୍ରକାର ଉତ୍ସାହ ଯୋଗାଉଥିଲେ ସେହି ଆଞ୍ଜା ।''

ପରବର୍ତ୍ତୀ କାଳରେ ଶ୍ରୀ ଉତ୍ସବ ଚନ୍ଦ୍ର ଜେନାଙ୍କ ସମ୍ପର୍କ ଆଞ୍ଜାଙ୍କ ସହିତ ନିବିଡ଼ତର ହେଲା ।

ବିଶ୍ୱନାଥ ଆଞ୍ଜା ବାଲିଗୁଡ଼ାରେ ରହିଲେ । ୧୯୬୭ଠାରୁ ବାଲିଗୁଡ଼ା ହେଲା ତାଙ୍କର ସ୍ଥାୟୀ ଠିକଣା । ବେଲଘରରେ ନବଜୀବନ ମଣ୍ଡଳର କେନ୍ଦ୍ର ଖୋଲିଲେ । ୧୯୭୦ ମସିହା ବେଳକୁ ବୁର୍ଲୁବାରୁ, ରାଙ୍ଗାପାରୁ ଓ ତୁପି ଏହି ତିନୋଟି ଗାଁରେ କାମ ଚାଲୁଥାଏ ।

ରାଙ୍ଗାପାରୁ ଅଞ୍ଚଳ । ଏହାର ଚାରିପାଖେ କନ୍ଧ ବସତି । ବହୁଲୋକ କୁଷ୍ଠରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଏମାନଙ୍କ ସେବାଶୁଶ୍ରୁଷା ଓ ଚିକିତ୍ସା ପାଇଁ ରାଙ୍ଗାପାରୁ ଠାରେ କୁଷ୍ଠରୋଗ କେନ୍ଦ୍ର ଖୋଲାଗଲା । କେତେକ ନିଷ୍ଠାପର କର୍ମୀ ଏଠି କାମକଲେ । ବିଶ୍ୱନାଥ ଆଞ୍ଜା ସ୍ଥାନୀୟ ଲୋକଙ୍କୁ ନେଇ କର୍ମୀଗଠନ କଲେ । କର୍ମୀମାନଙ୍କୁ ତାଲିମ ଦେଲେ । ଗାଁ ଲୋକମାନଙ୍କର ନୈତିକ ଓ ନାଗରିକ ଅଧିକାର ସମ୍ପର୍କରେ କର୍ମୀମାନେ ଗାଁ ଗାଁ ବୁଲି ବୁଝାଇଲେ ।

ବିଶ୍ୱନାଥ ଆଞ୍ଜା ଗାଁ ଗୁଡ଼ିକରେ ଶିଶୁମାନଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟର ଯତ୍ନପାଇଁ କାମ ଆରମ୍ଭ କଲେ । ବିଭିନ୍ନ ପ୍ରକାର କୁ-ସଂସ୍କାରରୁ ଗାଁ ବାସୀମାନଙ୍କୁ ମୁକ୍ତ କରିବା ପାଇଁ ସେ ଅଥକ ପରିଶ୍ରମ କଲେ । ଶିକ୍ଷା ଯେ ସବୁକଥାର ମୂଳ ଏହାହିଁ ଥିଲା ତାଙ୍କ କାମର ପ୍ରଧାନ ଲକ୍ଷ୍ୟ । ଲୋକେ ଯେପରି ନିର୍ଭୟ ହୋଇ ସେମାନଙ୍କର ମତ ପ୍ରକାଶ କରିବେ, ସାହସୀ ହେବେ ସେଥିପାଇଁ ମଧ୍ୟ ବ୍ୟବସ୍ଥା ଗ୍ରହଣ କଲେ । ସବୁଠୁ ବଡ଼କଥା ହେଲା ସେଇ ଲୋକ ମାନଙ୍କ ମଧ୍ୟରୁ କେତେକ ଆଗ୍ରହୀ ଲୋକଙ୍କୁ ସଚେତନ କରାଇ ସେମାନଙ୍କୁ କର୍ମୀଭାବେ ନିଯୁକ୍ତି ଦେଲେ ।

ଆଦିବାସୀ ମୂଳକରେ, କୋରାପୁଟ ଓ କନ୍ଧମାଳରେ ଜୀବନର ବହୁବର୍ଷ କଟାଇ, ଆଦିବାସୀ ଜନ ଜୀବନ, ଚିନ୍ତା ଚେତନା, ସାଂସ୍କୃତିକ ବିଚାରଧାରା ସହିତ ଅନ୍ତରଙ୍ଗଭାବେ ଜଡ଼ିତ ହୋଇ ତାଙ୍କର ଯେଉଁ ପ୍ରତ୍ୟକ୍ଷ ଅନୁଭୂତି ହୋଇଥିଲା, ସେହି ଅନୁଭୂତିରୁ ସେ

କହନ୍ତି, ''ଯେଉଁ ଶ୍ରେଣୀ ପାଇଁ ଆମେ କାମକଲୁ, ସେହି ଶ୍ରେଣୀ ମଧ୍ୟରୁ କେତେକ ଆଗୁଆ ଚିନ୍ତାଧାରାର ଲୋକଙ୍କୁ ସାମନା ଧାଡ଼ିକୁ ଆଣିବା ଆମର ଲକ୍ଷ୍ୟ ରହିଲା । ଆମେ ପ୍ରଥମେ ଭାବୁଥିଲୁ, ଏହି ଆଗୁଆଲୋକେ ନିଜେ ଶୋଷଣର ଚାପାରେ କଷ୍ଟ ପାଇଥିବାରୁ ଲଢ଼େଇବେଳେ ନିଷ୍ଠାର ସହ କାମ କରିବେ । ସାରା ଜୀବନ ଲଢ଼େଇ ସହ ନିଜକୁ ସାମିଲ କରିବେ । କିନ୍ତୁ ସେ ଧାରଣା ଠିକ ବୋଲି ପ୍ରମାଣିତ ହେଲା ନାହିଁ । ଦଳିତ ଶ୍ରେଣୀ ମଧ୍ୟରୁ ଯେଉଁ ମାନଙ୍କୁ ଶିକ୍ଷାର ସୁଯୋଗ ମିଳିଲା, ଚାକିରିର ସୁଯୋଗ ମିଳିଲା, ସେମାନେ ନିଜ ଶ୍ରେଣୀରୁ ଅଲଗା ହୋଇଯିବାକୁ ଇଛାକଲେ । ସେମାନେ ନିଜ ଶ୍ରେଣୀର ଲୋକଙ୍କଠାରୁ ଅଧିକ, ଏହା ପ୍ରମାଣ କରିବାକୁ ବ୍ୟାକୁଳ । ଅନେକ ସମୟରେ ଦଳିତଲୋକ ଠକାମିରେ ପଡ଼ିଲେ କିମ୍ୱା ହଇରାଣରେ ପଡ଼ିଲେ ଏହି ଆଗୁଆଲୋକେ ଦୃଢ଼ ପ୍ରତିବାଦ କରୁନାହାନ୍ତି । ବୋଧହୁଏ ସେମାନେ ଭାବନ୍ତି ଆମ ପ୍ରତିବାଦକୁ କେହି ନଜର ଦେବେ ନାହିଁ ଅବା ପ୍ରତିବାଦ କଲେ ଆମେ ତଥାକଥିତ ସଭ୍ୟ ସମାଜରୁ ଅଲଗା ହୋଇଯିବୁ । ଅବଶ୍ୟ ସାରାଜୀବନ ନ୍ୟାୟ ପାଇଁ କଠୋର ସଂଗ୍ରାମରେ ବିଶ୍ୱାସ କରୁଥିବା କେତେଜଣ ଆଦିବାସୀ କର୍ମୀଙ୍କ ସହ କାମ କରିବାର ସୁଯୋଗ ମୋର ହୋଇଛି ।''

ଲୋକ ଚରିତ୍ର ପ୍ରତି ଗଭୀର ଅନ୍ତର୍ଦୃଷ୍ଟି ଥିବା ବିଶ୍ୱନାଥ ଆଞ୍ଚା ବିଷମ ଓ ବିପରୀତ ପରିସ୍ଥିତିରେ ମଧ ଧୈର୍ଯ୍ୟର ସହ, ସେହି ଲୋକମାନଙ୍କୁ ସାଙ୍ଗରେ ନେଇ ଲକ୍ଷ୍ୟପୂରଣ ଦିଗରେ ଆଗେଇ ଯାଉଥିଲେ । ଧୈର୍ଯ୍ୟ, ସହନଶୀଳତା, ଅକ୍ରୋଧ ଓ ସତ୍ୟାଶ୍ରୟୀ ଗୁଣ ଯୋଗୁଁ ସେ ସମସ୍ତଙ୍କର ସମ୍ମାନର ପାତ୍ରଥିଲେ ଯଦିଓ ସେ ସବୁବେଳେ ନିଜକୁ ଅତି ସାଧାରଣ ମଣିଷ ମନେକରୁଥିଲେ ।

୧୯୭୦ ବେଳକୁ ଆଦିବାସୀ ଓ ହରିଜନଙ୍କ ଶିକ୍ଷା ଓ ସମାଜରେ ସେମାନଙ୍କ ପରିବର୍ତ୍ତିତ ଚଳଣି ଦେଖି ବିଶ୍ୱନାଥ ଆଞ୍ଚା, ସ୍ୱାଧୀନୋତ୍ତର ଶିକ୍ଷା ପଦ୍ଧତି, ସଭ୍ୟତାର ପ୍ରଭାବ ତଥା ଅପ-ସଂସ୍କୃତି କିପରି ସେମାନଙ୍କୁ ପ୍ରଭାବିତ କରୁଛି ତାହାର ବିଶ୍ଳେଷଣ କରି ନିମ୍ନ ନିକର୍ଷରେ ପହଞ୍ଚିଲେ । ବସ୍ତୁବାଦ କିପରି ଏମାନଙ୍କ ଜୀବନ ଯାପନ ପ୍ରଣାଳୀରେ ଅହେତୁକ ଆକର୍ଷଣ ସୃଷ୍ଟି କରି ବିପର୍ଯ୍ୟୟ ସୃଷ୍ଟି କରୁଛି ସେ ସମ୍ୱନ୍ଧରେ ସେ କହନ୍ତି :

''ତଥାକଥିତ ସଭ୍ୟଲୋକ ଯେଉଁ ଜିନିଷ ଭୋଗକରି, ଛାଡ଼ିବା ଅବସ୍ଥାରେ ରହିଲେଣି, ତାହା ସେମାନେ ଭୋଗ କରିବାକୁ ଚାହାନ୍ତି । ଛାପା ଶାଢ଼ୀ, ଟେରିଲିନ୍ ଓ ଅନ୍ୟାନ୍ୟ କୃତ୍ରିମ ତନ୍ତୁର ଲୁଗା ପ୍ରତି ସେମାନଙ୍କର ମୋହ ଆସେ । ଧୋବ ଧାଉଳିଆ ଲୋକଙ୍କ ସହ ଘୋଡ଼ାଦୌଡରେ ଯୋଗଦେବାକୁ ସେମାନଙ୍କର ଗଭୀର ଆଗ୍ରହ ।''

ଆଦିବାସୀ ଓ ହରିଜନଙ୍କ ମନସ୍ତାତ୍ତ୍ୱିକ ଧାରାରେ ପରିବର୍ତ୍ତନ ଯେ ଅବଶ୍ୟମ୍ଭାବୀ ଏହା ବିଶ୍ୱନାଥ ଆଜ୍ଞା ସ୍ୱୀକାର କରୁଥିଲେ । ସବୁକଥାକୁ ନିଜ ବିଚାର ନିକିତିରେ ତଉଲି ସେ ମତ ଦେଲେ, ''ଏ ସବୁରେ ବିଚିତ୍ରତା କିଛି ନାହିଁ । ଇଂରାଜୀ ଶିକ୍ଷା ଓ ପାଶ୍ଚାତ୍ୟ ସଂସ୍କୃତିର ମୋହ ଯଦି ସମସ୍ତଙ୍କୁ ଘାରୁଛି, ସେମାନଙ୍କୁ ଘାରିଲେ କ୍ଷତିକଣ ? କୌଣସି ରୁଦ୍ଧଦ୍ୱାର ଶିକ୍ଷାରେ ମୁଁ ବିଶ୍ୱାସ କରେନାହିଁ । ଆମ ଦେଶର ସବୁଠାରୁ ତଳେଥିବା ଲୋକ ଜାଣୁ ଭାରତୀୟ ସଂସ୍କୃତିରେ କି ମହତ୍ତ୍ୱ ଓ କୁସଂସ୍କାର ରହିଛି । ପାଶ୍ଚାତ୍ୟ ସଂସ୍କୃତିରେ କି ପ୍ରକାର ବୈଜ୍ଞାନିକ ଦୃଷ୍ଟିକୋଣ ଓ ବସ୍ତୁବାଦୀ ଚିନ୍ତାଧାରା ରହିଛି । ଏ ଦୁଇଟି ଜିନିଷ ଜାଣିଲାପରେ ସେ ହୁଏତ ବିଜ୍ଞାନ ସମ୍ମତ ମାନବବାଦ ଗ୍ରହଣ କରିବ । ସତ୍ୟ କ'ଣ, ମିଥ୍ୟା କ'ଣ ଏହା ନିଜେ ଅନୁଭବ କରିବା ଅଧିକାର କ'ଣ ଆଦିବାସୀର ନାହିଁ ? ସେ ପଚାରୁଛି, ଆମ ପାଇଁ ଏ ଭୋଗ ସାମଗ୍ରୀଗୁଡ଼ାକ ମନା କାହିଁକି ? ବେସିକ ଶିକ୍ଷା ଯଦି ପ୍ରଚଳନ ହୁଏ, ତେବେ ସବୁ ସ୍ତରରେ ଏହା କାର୍ଯ୍ୟକାରୀ ହେଉ । କେବଳ ଆଦିବାସୀ ପିଲାଏ ଧନ୍ଦାମୂଳକ ଶିକ୍ଷା ନପାଆନ୍ତୁ । ସ୍ୱାଧୀନତା ପ୍ରାପ୍ତିପରେ ଯେଉଁ ଶିକ୍ଷା ପଦ୍ଧତିର ପରିକଳ୍ପନା ଓ ସୀମିତ ପ୍ରୟୋଗ ହୋଇଥିଲା ତାହା ଯଦି ସମଗ୍ର ଦେଶରେ ପ୍ରଚଳନ ହୋଇଥାନ୍ତା, ଆଜିର ବେକାର ସଂଖ୍ୟା ପାଇଁ ସରକାର ଯେଉଁ ବ୍ୟସ୍ତ ହେଉଛନ୍ତି ତାହା ହେବାକୁ ପଡ଼ିନଥାନ୍ତା । ଲୋକେ ଧନ୍ଦା ମୂଳକ ଶିକ୍ଷା ଦ୍ୱାରା ନିଜର ଗୁଜରାଣ ମେଣ୍ଟାଇଥାନ୍ତେ । ତେଣୁ ବର୍ତ୍ତମାନ ଆଦିବାସୀ ହରିଜନଙ୍କ ପାଇଁ ଉଦ୍ଦିଷ୍ଟ ବିଦ୍ୟାଳୟରେ ଯେଉଁ ପ୍ରକାର ଆଧୁନିକ ଶିକ୍ଷା ଦିଆଯାଉଛି ତାହାକୁ ବିରୋଧ କରିବା ଉଚିତ ନୁହେଁ । ଯଦି ବିରୋଧ ହେବ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଶିକ୍ଷାର ସଂସ୍କାର ପାଇଁ ଚେଷ୍ଟା ହେଉ ।''

ବିଶ୍ୱନାଥ ଆଜ୍ଞାଙ୍କର ଚେତନାସ୍ତର କେତେ ଗଭୀର ତାହା ଉପର୍ଯ୍ୟୁକ୍ତ ମତରୁ ସହଜରେ ଉପଲବ୍‌ଧି କରିହୁଏ । ଏହା ତାଙ୍କର ବହୁ ପଠନ, ଗଭୀର ଅନୁଭୂତି, କ୍ଷେତ୍ର ଅନୁସନ୍ଧାନରୁ ଜାତ ହୋଇଥିବା ନିଶ୍ଚିତ । ଇଚ୍ଛାପୁର ହାଇସ୍କୁଲରୁ ପାଠ ପଢ଼ିସାରି ନିଜ ଗାଁରେ ପିଲାଙ୍କୁ ପାଠ ପଢ଼ାଇ, କୁଚେନ୍ଦ୍ରୀରେ ସେହିକାମ କରି, କନ୍ଧମାଳରେ ପୁଣି ଶିକ୍ଷାର ପ୍ରସାର କରିବାର ଆବେଗ ବିଶ୍ୱନାଥ ଆଜ୍ଞାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ସମୁଜ୍ଜ୍ୱଳ ଦିଗନ୍ତ ।

ଏହି ଚିନ୍ତା ଓ ଚେତନାରୁ ଜାଗ୍ରତ ହେଲା ପୁଣି ଏକ ନୂତନ ପ୍ରେରଣା, ନୂତନ ଅନୁଷ୍ଠାନ ।

* * *

# ବନବାସୀ ସେବା ସମିତିର ଜନ୍ମ

**ସ୍ୱା**ଧୀନତା ପରେ ଓଡ଼ିଶା ସରକାର ଆଦିବାସୀ ଓ ହରିଜନ କଲ୍ୟାଣ ନିମିତ୍ତ ଅନେକ କାର୍ଯ୍ୟକ୍ରମ ଘୋଷଣା କଲେ । ଶିକ୍ଷାର ଉନ୍ନତି ଓ ଆଦିବାସୀ, ହରିଜନ ପିଲାଙ୍କ ପାଇଁ ବୃତ୍ତିର ବ୍ୟବସ୍ଥା କଲେ । ସେବାଶ୍ରମ, ଆଶ୍ରମ ସ୍କୁଲ ଖୋଲିଲେ । ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଏହାର ପରିଚାଳନା କଲେ । ୧୯୪୮ରୁ ଏହି ବ୍ୟବସ୍ଥା ଆରମ୍ଭ ହୋଇଥିଲେ ମଧ୍ୟ ୧୯୭୦ ସୁଦ୍ଧା ସରକାର ସବୁଠାରୁ ଅନଗ୍ରସର ଆଦିବାସୀ ହରିଜନଙ୍କ ପାଖରେ ପହଞ୍ଚି ପାରିଲେ ନାହିଁ । କନ୍ଧମାଳର କଥା ନକହିଲେ ଭଲ ।

ଏ ସମ୍ବନ୍ଧରେ ୧୯୭୦ ବେଳକୁ ବିଶ୍ୱନାଥ ଆଜ୍ଞା ଚିନ୍ତାକଲେ, ''ଆଶ୍ରମ ସ୍କୁଲ ଓ ଅନ୍ୟ ସ୍କୁଲ କଲେଜରେ ସ୍ୱଚ୍ଛଳ ଆଦିବାସୀ ହରିଜନ ପିଲା ପଢୁଛନ୍ତି, ସେମାନଙ୍କ ମଧ୍ୟରୁ ଯେଉଁମାନେ ସରକାରୀ ସାହାଯ୍ୟରୁ ବଞ୍ଚିତ ହୋଇଯାଉଛନ୍ତି ବା ଯେଉଁମାନେ ଭୟ ଅଥବା ଅଜ୍ଞତାରୁ ସୁବିଧା ନେଇପାରୁନାହାନ୍ତି ସେହିମାନଙ୍କ ପାଇଁ କିଛି କରିବି'' ।

ପୁଣି ସେ ଭାବିଲେ, ''ମୁଁ କୋରାପୁଟ ଜିଲ୍ଲାରେ ପୂରା ସମୟ ଦେଉଥିଲାବେଳେ କୋରାପୁଟ ଜିଲ୍ଲାର ଅବହେଳିତ ଆଦିବାସୀ ପୁଅ ଝିଅର ଶିକ୍ଷାର ବିକାଶ ପାଇଁ ବିଭିନ୍ନ ଅନୁଷ୍ଠାନ ମାନଙ୍କରେ ପଢ଼ିବା ପାଇଁ ଛାଡୁଥିଲି । ଫୁଲବାଣୀ ଅବହେଳିତ ଆଦିବାସୀ ପିଲାଙ୍କୁ ବିଭିନ୍ନ ଅନୁଷ୍ଠାନରେ ଛାଡ଼ିବା ଉଦ୍ୟମ କଲି । ମନରେ ଉଠିଲା ନିଜେ ଏକ ଅନୁଷ୍ଠାନ କରିବା କଥା । ପ୍ରେରଣା ଜାଗ୍ରତ ହେଲା ।'' ବାଲିଗୁଡ଼ାରେ ରହି ଖଦୀକାମ କରୁଥିବା ଶ୍ରୀମାନ୍ ଉତ୍ସବଚନ୍ଦ୍ର ଜେନାଙ୍କ ସହ ଆଜ୍ଞା ପରାମର୍ଶ କଲେ ।''

## ଅନୁଷ୍ଠାନର ନାମ କରଣ :

ବିଧିବଦ୍ଧ ଭାବେ ଅନୁଷ୍ଠାନ ଗଠନ କରାଯିବା ନିଷ୍ପତ୍ତି ନିଆଗଲା । ବାଲିଗୁଡ଼ାଠାରେ ବହୁ ସର୍ବୋଦୟ କର୍ମୀଙ୍କ ଉପସ୍ଥିତିରେ ବହୁ ବିଚାର ବିମର୍ଶପରେ ଅନୁଷ୍ଠାନର ନାମ ''ବନବାସୀ ସେବା ସମିତି'' ରଖାଯିବା ଠିକ୍ ହେଲା । ଏହି ବିଚାର ବିମର୍ଶରେ ଶ୍ରୀ ଶରତ ଚନ୍ଦ୍ର ମହାରଣା, ଶ୍ରୀ ମଧୁସୂଦନ ସାହୁ ଆଦି ଯୋଗ ଦେଇଥିଲେ ।

ଆଜ୍ଞାଙ୍କ ଅନୁରୋଧକ୍ରମେ ଶ୍ରୀ ଶରତ ଚନ୍ଦ୍ର ମହାରଣା ଓ ହିନ୍ଦ୍ ସେବକ ସଂଘର ସଦସ୍ୟ ଶ୍ରୀ ମଧୁସୂଦନ ସାହୁ 'ବନବାସୀ ସେବା ସମିତି' ପାଇଁ ଏକ ସମ୍ବିଧାନ ପ୍ରଣୟନ କଲେ ।

ଏହି ଅନୁଷ୍ଠାନର ପ୍ରଥମ ସଭାପତି ହେଲେ ବିଶ୍ୱନାଥ ଆଙ୍ଗା ଓ ଶ୍ରୀ ଉତ୍ସବ ଚନ୍ଦ୍ର ଜେନା ସମ୍ପାଦକ ରହିଲେ । ଅନ୍ୟ ନଅ ଜଣ ସଦସ୍ୟ ଏହି ଅନୁଷ୍ଠାନର ପରିଚାଳନା ସମିତିରେ ରହିଲେ ।

## ଅନୁଷ୍ଠାନର ଜନ୍ମତିଥି :

ସେଦିନ ଥିଲା ମାର୍ଚ୍ଚ ମାସ ୧୪ ତାରିଖ ୧୯୭୪ ମସିହା । ପବିତ୍ର ବୁଦ୍ଧ ପୂର୍ଣ୍ଣିମା ତିଥି । କରୁଣାମୟ ମହାତ୍ମା ବୁଦ୍ଧଙ୍କ ଜନ୍ମ, ବୁଦ୍ଧତ୍ୱ ଓ ପରିନିର୍ବାଣର ଦିବସ । ସେହି ପବିତ୍ର ତିଥି ମଧ୍ୟ ଥିଲା ଧୂଳି ମାଟିର ସନ୍ଥ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀଙ୍କ ଜନ୍ମତିଥି । ଏହି ଦିବସରେ ବାଲିଗୁଡ଼ାଠାରେ ବନବାସୀ ସେବା ସମିତି ପ୍ରତିଷ୍ଠା ଲାଭକଲା ।

ପରମପୂଜ୍ୟ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀଙ୍କ ତ୍ୟାଗପୂତ ଜୀବନ, ଗାନ୍ଧୀ ଓ ବିନୋବାଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ ହୋଇ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ, ଅବହେଳିତ, ଦୁଃସ୍ଥ, ନିଷ୍ପେଷିତ, ବିଶେଷକରି ଆଦିବାସୀ ହରିଜନ ଓ ସବୁଠାରୁ ତଳେ ପଡ଼ିଥିବା ବ୍ୟକ୍ତି ଓ ଜାତିର ଉତ୍ଥାନ ପାଇଁ ଏହି ଅନୁଷ୍ଠାନ କାମ କରିବାର ଲକ୍ଷ୍ୟ ନେଇ ପ୍ରତିଷ୍ଠିତ ହେଲା ।

ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ ଥିଲେ ସତ୍ୟ, ପ୍ରେମ, କରୁଣାର ପ୍ରତୀକ । ମାନବବାଦୀ । ଦେଶରୁ କୁସଂସ୍କାର, ଅନ୍ୟାୟ, ଅତ୍ୟାଚାର, ଶୋଷଣ ଦୂର କରାଇ ସମସ୍ତଙ୍କୁ ମାନବିକ ଦୃଷ୍ଟିକୋଣରେ ଦେଖିବା ଓ ସମସ୍ତଙ୍କର ଅନ୍ତ୍ୟୋଦୟ ନିମିତ୍ତ ସମଗ୍ର ଜୀବନ ସମର୍ପିତ କରିଦେଇଥିବା ମହାତ୍ମା । ସର୍ବଗୁଣାଶ୍ରୟୀ, ଅହିଂସ ବିପ୍ଳବୀ ଓ ମହାଭାରତୀୟ ଚେତନାର ଉତ୍ସ ଥିଲେ ସେ । ସେହି ପୁଣ୍ୟଶ୍ଳୋକ ମହାମାନବଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ ହୋଇ କିଛି କାମ କରିବା ପାଇଁ ବନବାସୀ ସେବା ସମିତିର ସୃଷ୍ଟି ହେଲା ।

## ବନବାସୀ ସେବା ସମିତିର ପ୍ରଥମ ପରିଚାଳନା କମିଟୀର ସଦସ୍ୟଗଣ :

ପାଞ୍ଚଜଣ କର୍ମୀଙ୍କୁ ନେଇ ପାଞ୍ଚ ହଜାର ଟଙ୍କା ମୂଳଧନରେ ବନବାସୀ ସେବା ସମିତି ଗଠନ ହେଲା । ୧୪-୩-୧୯୭୪ ତାରିଖରେ ପବିତ୍ର ବୁଦ୍ଧ ପୂର୍ଣ୍ଣିମା ତିଥିରେ ଏହି ଅନୁଷ୍ଠାନ ରେଜିଷ୍ଟ୍ରୀ ହେଲା । ରେଜିଷ୍ଟ୍ରେସନ୍ ନିମିତ୍ତ ସମସ୍ତ ପ୍ରାଥମିକ କାର୍ଯ୍ୟ ୧୯୭୨ରୁ ଆରମ୍ଭ ହୋଇ ୧୯୭୪ରେ ଶେଷ ହେଲା । ଏଥିପାଇଁ ଦୁଇ ବର୍ଷ ସମୟ ଲାଗିଲା । ଏହି ସମିତିର

ପ୍ରଥମ କମିଟୀରେ ସର୍ବମୋଟ ଏଗାର ଜଣ ସଦସ୍ୟ ରହିଲେ । ସେମାନେ ହେଲେ : ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ସଭାପତି, ଶ୍ରୀ ଉଦ୍ଧବ ଚନ୍ଦ୍ର ଜେନା, ସମ୍ପାଦକ ଓ ଦିବାକର କଅଁର, ଖଳେଶ୍ୱର ଲେଙ୍କା, ଚନ୍ଦ୍ରମଣି ନାଥଶର୍ମା, ବଳରାମ ମଲ୍ଲିକ୍, ଦେବେନ୍ଦ୍ର କଅଁର, କିଆବିଶି ପ୍ରଧାନ, ମୁକ୍ତେଶ୍ୱର ପ୍ରଧାନ, ରାଧାମଣି ସାହୁ ଓ ଧୋବେନ୍ଦ୍ରୀ ମହାପାତ୍ର ସଭ୍ୟ ।

ବନବାସୀ କଲ୍ୟାଣ ଏହାର ମୂଳଲକ୍ଷ୍ୟ ରହିଲା ।

* * *

# ଅସରନ୍ତି ପଥ ଓ ଏକୁଟିଆ ଯାତ୍ରୀ

**ସ**ମାଜ ସେବାର ରାସ୍ତା ଅସରନ୍ତି । ଏହାର ଆରମ୍ଭ ଅଛି ସିନା ଶେଷ ନାହିଁ । ସମାଜରେ ସୃଷ୍ଟି ଆରମ୍ଭରୁ ମଣିଷ ମଣିଷ ଭିତରେ ବିସମତା ରହିଆସିଛି । ସବଳ ଦୁର୍ବଳ ରହି ଆସିଛନ୍ତି । ମଣିଷ ମଣିଷ ଭିତରେ ସମାନତା ପାଇଁ କେତେ ସଂଗ୍ରାମ, ସଂଘର୍ଷ, ବିପ୍ଲବ ହୋଇଛି । କେତେବେଳେ ସବଳ ଧନବଳ, ବାହୁବଳ, ବୁଦ୍ଧିବଳରେ ସବୁ ସୁଖ ସୁବିଧା ହାସଲ କରିଛି । କେତେବେଳେ ଦୁର୍ବଳ ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର ଅନ୍ଧବିଶ୍ୱାସର ହରଡ଼ ଘଣାରେ ପେଶି ହେଇ ଲହୁ ଲୁହାଣ ହେଇଛି, ପୁଣି କେତେବେଳେ ଏକାଠି ହୋଇ ସବଳ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି । ବିପ୍ଲବ କରିଛି । ଲକ୍ଷ୍ୟ ସାଧନ ପାଇଁ ସେ କେତେବେଳେ ହିଂସାର ଗୀତ ଗାଇଛି ତ କେତେବେଳେ ସତ୍ୟ, ଅହିଂସା, ତ୍ୟାଗ ଓ ଆଦର୍ଶର ମାର୍ଗ ଧରିଛି । ଆଗେଇ ଚାଲିବା ହିଁ ମଣିଷର ଧର୍ମ । ଜୀବନର ୫୫ ବର୍ଷ ଧରି ବିଶ୍ୱନାଥ ଆଞ୍ଚା ଏହା ଦେଖି ଆସିଲେ । ସମାଜରେ ଦୁଃଖୀ, ରଙ୍କୀ, ଶୋଷୀ ଭୋକୀ ଓ ନିରନ୍ନ ପ୍ରାଣର ଅସହାୟତାକୁ ଦେଖି ସାରାଜୀବନ ସମର୍ପିଦେଲେ ସମାଜର ହିତ ପାଇଁ । ସେ ଶିଖିଥିଲେ ତାଙ୍କ ଦୀକ୍ଷାଗୁରୁ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀଙ୍କ ଠାରୁ ଗୋଟିଏ ମହତକଥା; ଯାହା ଗାଇଥିଲେ ବିଶ୍ୱକବି ରବୀନ୍ଦ୍ରନାଥ :

''ଯଦି ତୋର ଡ଼ାକଶୁଣି କେହି ସାଥୀରେ ନ ଆସେରେ ଯାତ୍ରୀ ! ତେବେ ଏକାକୀ ଚାଲେ । କେହି ଯଦି ତୋତେ କଥା ପଦେ ବି ନକହେ, ମୁହଁ ଫେରାଇ ନିଏ, ଭୟକରେ ତେବେ କେହି ଶୁଣୁ କି ନଶୁଣୁ ମୁହଁ ଖୋଲି ତୋର ଅନ୍ତରର କଥା ଶୁଣାଇଦେ । ଯଦି ସମସ୍ତେ ଫେରିଯାଆନ୍ତିରେ ଯାତ୍ରୀ, ତୋତେ ଏକୁଟିଆ ଛାଡ଼ି, ଗହନ ପଥରେ ପଡ଼ିଥିବା ସମସ୍ତକଣ୍ଟାକୁ ଦଳି, ରକ୍ତାକ୍ତ ପାଦ ନେଇ ଆଗେଇ ଚାଲେରେ ଯାତ୍ରୀ ! ଯଦି ଝଡ଼ ଅନ୍ଧାର ରାତିରେ ତୋତେ କେହି ବି ଆଲୁଅ ଟିକିଏ ନ ଦେଖାଏ, ଦୁଆର ବନ୍ଦ କରି ଘର ଭିତରେ ରହେ, ତଥାପି ବଜ୍ରାନଳର ଧାସରେ ନିଜ ହୃଦପଞ୍ଜରା ଜାଳି ଏକାକୀ ଚାଲେରେ ଯାତ୍ରୀ । ଯଦି ତୋର ଡ଼ାକଶୁଣି କେହି ସାଥିରେ ନ ଆସେରେ ତେବେ ଏକାକୀ ଚାଲେ ।''

ଏହି ଏକୁଟିଆ ଏକ ଲକ୍ଷ୍ୟରେ ବିଶ୍ୱନାଥ ଆଣ୍ଟା ତାଙ୍କ ଯାତ୍ରା ଆରମ୍ଭ କଲେ କୁମରଡ଼ା ଗାଁରୁ ଡେଲାଙ୍ଗ, ଡେଲାଙ୍ଗ-ବେରବୋଇରୁ ବରୀ, ବରୀରୁ କୁଜେନ୍ଦ୍ରୀ, ଆଉ କୁଜେନ୍ଦ୍ରୀରୁ ଏବେ କନ୍ଧମାଳ । ତାଙ୍କ ସାହଚର୍ଯ୍ୟରେ ଆସିଲେ ବହୁ ସମଧର୍ମୀ ଲୋକ, ସମଦୃଷ୍ଟିର ମଣିଷ, ବହୁ ତ୍ୟାଗୀ, କଷ୍ଟସହିଷ୍ଣୁ ମଣିଷ । କେଉଁଠି ତାଙ୍କୁ ମିଳିଲା ଫୁଲ ତ କେଉଁଠି କଣ୍ଟା । ଫୁଲ କଣ୍ଟାକୁ ସାଉଁଟି ୫୫ ବର୍ଷ ବୟସରେ ସମାଜସେବାର ଅସରନ୍ତି ପଥରେ ବିଶ୍ୱନାଥ ଆଣ୍ଟା ବନବାସୀ ସେବାସମିତିକୁ ମଣିଷ ତିଆରି ଅନୁଷ୍ଠାନରେ ପରିଣତ କରିବାପାଇଁ ଉଦ୍ୟମ ଆରମ୍ଭ କଲେ ମୁଖ୍ୟଭାବେ । ଭୂଦାନ, ଖଦୀକାମ, ସମ୍ପୂର୍ଣ୍ଣକ୍ରାନ୍ତି, ଜରୁରୀକାଳୀନ ପରିସ୍ଥିତି, ବହୁ ସଭା ସମିତି ସମ୍ମିଳନୀ ତାଙ୍କ ପାଇଁ ଏକ ନିତିଦିନିଆ କାର୍ଯ୍ୟକ୍ରମ ହୋଇଗଲା ।

୧୯୬୯ ମସିହାରେ ବିନୋବାଜୀ ତୃତୀୟଥର ପାଇଁ ଓଡ଼ିଶା ଗସ୍ତରେ ଆସିଲେ । ୨୮-୮-୧୯୬୯ରେ ମୋଟର କାର ଯୋଗେ ଟାଟାରୁ ଆସି ରାଇରଙ୍ଗପୁରରେ ପହଞ୍ଚିଲେ । ସେଠୁ କରଞ୍ଜିଆ, ବିଶୋଇ, ବାରିପଦା, ଉଦଳା, ବାରିପଦାରେ ରହଣୀ କରି ୬.୯.୬୯ରେ ୧୦ ଦିନ ଗସ୍ତସାରି ବିହାରର ଚକୁଳିଆ ଅଭିମୁଖେ ଯାତ୍ରାକଲେ । ଓଡ଼ିଶାରୁ ବହୁ ଭୂଦାନକର୍ମୀ ବିନୋବାଜୀଙ୍କ କାର୍ଯ୍ୟକ୍ରମରେ ଯୋଗଦେଲେ ।

୧୯୭୧ ବେଳକୁ ଶ୍ରମଦାନ ଆନ୍ଦୋଳନ ମାନ୍ଦା ଧରିଯାଉଥାଏ । ଏହାର ପ୍ରଭାବ ଭୂଦାନକର୍ମୀଙ୍କ ଉପରେ ପଡୁଥିଲା । ଏମାନଙ୍କ ମନରେ ନିରାଶା ବ୍ୟାପିଯାଉଥିଲା । ସେତେବେଳକୁ ପରିସ୍ଥିତି ବଦଳି ଯାଇଥିଲା । କଣ କଲେ ପୁଣି ଆଗେଇ ହବ ସେ ବିଷୟରେ ଆଲୋଚନାମାନ ହେଉଥାଏ । ସେତେବେଳକୁ ଏକ ପ୍ରକାର ମନୋଭାବ ପ୍ରକାଶ ପାଉଥାଏ ଯେଉଁ ଗାଁମାନଙ୍କରେ ମହାଜନ, ସାହୁକାର, ଟାଉଟର, ଜମି ମାଲିକ, ଉଚ୍ଚ ଜାତିର ଲୋକ ଶାସନତନ୍ତ୍ର ଆଉ ପୋଲିସକୁ ନିଜ ସ୍ୱାର୍ଥରେ ଲଗାଇ ଗାଁର ଗରିବ ଲୋକଙ୍କୁ ଭୟଭୀତ କରି ରଖିଛନ୍ତି ସେମାନଙ୍କର ଏହି ଅସାଧୁ ମେଣ୍ଟକୁ ନଷ୍ଟ କରାଯାଉ, ନ ହେଲେ ଗାଁର ମୁକ୍ତି ସମ୍ଭବ ହେବ ନାହିଁ । ବିନୋବାଜୀ ମଧ ଏହି ବୁନିୟାଦୀ ସମସ୍ୟାକୁ ଯୁଗ ଯୁଗର ସମସ୍ୟା, ଏହା ହଠାତ୍ ଦୂର ହୋଇ ପାରିବ ନାହିଁ, ସମୟ ଲାଗିବ ବୋଲି ମତ ଦେଲେ ।୧୯୭୦ ବେଳକୁ ସରକାରଙ୍କ କାର୍ଯ୍ୟକଳାପ ଦ୍ୱାରା ଜମି ମାଲିକମାନେ କେଉଁ କେଉଁ ଠାରେ ଜମି ଫେରସ୍ତ ନେବାକୁ ଚାହିଁଲେ । ତାର କାରଣ ଭୂଦାନକୁ ମିଳିଥିବା ଯେଉଁ ଜମି ବଣ୍ଟନ ହେଲା ତାହା ଗ୍ରହୀତାଙ୍କ ନାମରେ ସରକାର ରେକର୍ଡ କଲେ ନାହିଁ । ଜମିକୁ ଗ୍ରହୀତା ଚାଷବାସ

କରି ଫସଲ ଆମଦାନୀ କରି ଖାଇଲା କିନ୍ତୁ ଦାତାଙ୍କ ନାମ ରେକର୍ଡରେ ଥିବା ଦ୍ୱାରା ଦାତା ଜମିର ଖଜଣା ଦେଲା । ତା ଫଳରେ କେତେ ଜାଗାରେ ମାଲିକମାନେ ଜମି ଫେରସ୍ତ ନେବା ପାଇଁ ଚାହିଁଲେ ।

ସେହି ବର୍ଷ ଶ୍ରୀ ମନମୋହନ ଚୌଧୁରୀ, ବିଶ୍ୱନାଥ ଆଞ୍ଚା, ମହମ୍ମଦ ବାଜୀ ଓ କେତେକ ଭୂଦାନ କର୍ମୀ ବିନୋବାଜୀଙ୍କୁ ଦେଖାକଲେ । ସେତେବେଳେ ନକ୍ସାଲବାଦୀ ଦମନ ନାରେ ଓଡ଼ିଶାର କୋରାପୁଟ ଜିଲ୍ଲା ଓ ଗଞ୍ଜାମ ମାଳରେ ପୋଲିସ ତରଫରୁ ବର୍ବର ଓ ନିର୍ମମ ଅତ୍ୟାଚାର ଚାଲିଥାଏ । ନିରପରାଧ ଆଦିବାସୀମାନେ ଶାସନତନ୍ତ୍ରର ଶିକାର ହେଉଥାନ୍ତି । ଏହାର ପ୍ରତିକାର କିପରି କରାଯିବ ସେ ସମ୍ବନ୍ଧରେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ମା ରମାଦେବୀ ଆଦି ବହୁତ ଚେଷ୍ଟା କରୁଥାନ୍ତି । ଲୋକଙ୍କ ମନରେ ଭୟ ପଶି ଯାଇଥାଏ । ଲୋକଙ୍କ ଭିତରେ ନିର୍ଭୟତା ଆଣିଦେବା ମୁଖ୍ୟ ପ୍ରସଙ୍ଗ ହୋଇଥାଏ । କର୍ମୀମାନେ ବହୁଚେଷ୍ଟା କରୁଥାନ୍ତି ।

ନମ୍ର ଭାବରେ ବିଶ୍ୱନାଥ ଆଞ୍ଚା, ବିନୋବାଜୀଙ୍କୁ ଅନୁରୋଧ କରି, ଏହି ସମସ୍ୟାର ସମାଧାନ ଲୋଡ଼ିଲେ । ତାହାର ଉତ୍ତରରେ ବିନୋବାଜୀ କହିଲେ ଯେ ପୁଲିସ ଅତ୍ୟାଚାରକୁ ପ୍ରତିକାର କରିବାର ଏକମାତ୍ର ଉପାୟ ହେଉଛି ରାଜ୍ୟଦାନ ହେବା । ଥରେ ରାଜ୍ୟଦାନ ହୋଇଗଲେ ଗ୍ରାମ ସଭାର ପ୍ରତିନିଧିମାନେ ଶାସନ ଦଖଲ କରିବେ ଆଉ ଏମାନେ ପୋଲିସ୍ ସମ୍ବନ୍ଧୀୟ ନୀତି ବଦଳାଇ ଦେବେ । ବିନୋବାଜୀଙ୍କ ଏହିମତ ଯେ ଆତଙ୍କଗ୍ରସ୍ତ ଲୋକଙ୍କ ଆତଙ୍କ ଦୂର କରିବାରେ ସହାୟକ ହେବ, ଏହି ଧାରଣା ବିଶ୍ୱନାଥ ଆଞ୍ଚାଙ୍କର ସ୍ପଷ୍ଟ ହେଲା ନାହିଁ ।

୧୯୭୧ରେ ସର୍ବସେବା ସଂଘର ଅଧିବେଶନ ମଧ୍ୟ-ପ୍ରଦେଶର ଭୋପାଳରେ ବସିଲା । ଏହି ଅଧିବେଶନରେ ଲୋକମାନଙ୍କର ମନରୁ ଭୟ ମୁକ୍ତି ପାଇଁ କି କି ଖାସ ଉପାୟ କରିବାକୁ ହେବ ସେ ସମ୍ବନ୍ଧରେ ବହୁ ତର୍କ ବିତର୍କ ହେଲା । ଏହି ଅଧିବେଶନରେ ଦାଦା ଧର୍ମାଧିକାରୀ ଓ ଧୀରେନ ଦା ଦୁଇ ପ୍ରକାର ମତ ଦେଲେ । ଧର୍ମାଧୀକାରୀ ଗରିବ ଓ ନିମ୍ନମଧ୍ୟବିତ୍ତ ଚାଷୀ ତଥା ନାମକୁ ମାତ୍ର ଚାଷୀ ଓ ଭୂମିହୀନଙ୍କର ଆନ୍ଦୋଳନ ରୂପେ ଗ୍ରାମଦାନକୁ ଦେଖିବା ପାଇଁ ତର୍କ ରଖିଲେ । ଧୀରେନ ବାବୁ ଗାଁର ଧନୀଲୋକ ଓ ବାବୁ ମାନଙ୍କର ଆଚରଣଗତ ବ୍ୟବହାର ପରିବର୍ତ୍ତନ ଆଣି ଏହି ସମସ୍ୟାର ସମାଧାନ ପାଇଁ

ପଦକ୍ଷେପ ନେବାକୁ ଜୋର ଦେଲେ । ଏ ଦୁଇମତ ଶୁଣି କର୍ମୀମାନେ କଣ କରିବେ ସ୍ଥିର କରି ପାରିଲେ ନାହିଁ । ଆଗରୁ କର୍ମୀମାନଙ୍କର ଗତରେ ପଡ଼ିଯାଇଥାଏ । ବିନୋବାଜୀ କିମ୍ବା ଜୟ ପ୍ରକାଶଜୀ ନିଜ ବିଚାର ପ୍ରସ୍ତୁତ କରିବେ ଆଉ କର୍ମୀମାନେ ସେଇ ଅନୁସାରେ କାମ କରିବେ । ଏବେ ଏମିତି ଦୁଇ ବିଚାର ଧାରା ଶୁଣି ଏମାନେ ସୂତ୍ରଟିର ଖିଅ ଧରିବା ସମ୍ଭବ ହେଲାନାହିଁ । ଭୋପାଳ ଅଧିବେଶନରେ ନା ବିନୋବାଜୀ ଥିଲେ, ନା ଜୟପ୍ରକାଶ ଜୀ । ଯାହାହେଉ ବହୁ ବିଚାର ପରେ ଗରିବ ଚାଷୀ ଓ ଭୂମିହୀନଙ୍କୁ ଗ୍ରାମଦାନର ମୂଳପିଣ୍ଡରୂପେ ଧରି ସେମାନଙ୍କୁ ପୁଣି ଥରେ ଏକାଠି କରିବା କଥାଟା ଗୃହୀତ ହେଲା ।

ବିଶ୍ୱନାଥ ଆଞ୍ଜା ଅନୁଭବ କରୁଥିଲେ ଦେଶର ଲୋକଙ୍କର ଚରିତ୍ର ବଦଳି ଗଲାଣି । ସ୍ୱାଧୀନତା ପୂର୍ବରୁ ଯେଉଁ ଚରିତ୍ର ଲୋକଙ୍କର ସେ ଦେଖିଥିଲେ ଏବେ ଆଉ ତାହା ନାହିଁ । ଗାନ୍ଧୀଜୀ ଏ ଦେଶର ଚରିତ୍ରକୁ ଯେଉଁ ସ୍ତରକୁ ନେଇ ଯାଇଥିଲେ, ତାଙ୍କ ମୃତ୍ୟୁପରେ ତାହା ଆସ୍ତେ ଆସ୍ତେ ତଳକୁ ତଳକୁ ଖସି ଏବେ ପ୍ରାୟ ଆଉ ନାହିଁ । ଗାନ୍ଧୀଜୀଙ୍କ ଆନ୍ଦୋଳନର ପ୍ରଭାବ ଆଉ ଅନୁଭୂତ ହେଉ ନଥିଲା । ଭୂଦାନ, ଗ୍ରାମଦାନ ଆନ୍ଦୋଳନ କାଳରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ସହଯୋଗ ଲୋକଙ୍କ ଠାରୁ ମିଳୁଥିଲା ତାହା ମଧ କ୍ରମଶଃ କମି ଆସିଲାଣି । କଂଗ୍ରେସ ଲୋକେ କେବଳ ଗାନ୍ଧୀ ନାମଟାକୁ ମନେରଖି, ସେ ଦେଖାଇଥିବା ବାଟ ଛାଡ଼ି ଅପନ୍ତରା ମାଡିଲେଣି ।

ଏଣେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଦେଶର ପ୍ରଧାନମନ୍ତ୍ରୀ ହେବାଟା କେତେକଙ୍କୁ ସୁଖ ଲାଗୁନଥାଏ । ଲିଙ୍ଗ ବିଚାର କାମ କରୁଥାଏ । ସ୍ତ୍ରୀ ଲୋକଟେ ଯେ ଶାସନ କରିବ, ଏ ସନ୍ଦେହ ମଧ କେତେ ପ୍ରକାଶ କରୁଥାନ୍ତି । ଶ୍ରୀମତୀ ଗାନ୍ଧୀଙ୍କ ଗରିବ ହଟାଅ ଧ୍ୱନି ଓ ସମାଜବାଦ କେତେକଙ୍କ ମନରେ କୋକୁଆ ଭୟ ସୃଷ୍ଟି କରୁଥାଏ । ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଏହାକୁ ସମର୍ଥନ କରି ପାରୁନଥାନ୍ତି । ଶ୍ରୀମତୀ ଗାନ୍ଧୀ ବ୍ୟାଙ୍କ ଜାତୀୟ କରଣ କରିଦେବା ଫଳରେ କେତେକ ଶ୍ରୀମତୀ ଗାନ୍ଧୀଙ୍କ ଶାସନ ତରିକାରେ ଆତଙ୍କିତ ହୋଇ ପଡ଼ିଥାନ୍ତି । କାଳେ କଣ ଗୋଟାଏ ଘଟିଯିବ ଏହି ଭୟରେ । ପାକିସ୍ଥାନ ଠାରୁ ବଙ୍ଗଳାଦେଶ ସ୍ୱାଧୀନ ହୋଇଯିବା ମୂଳରେ ଶ୍ରୀମତୀ ଗାନ୍ଧୀଙ୍କ କାର୍ଯ୍ୟକଳାପ ତାଙ୍କୁ ଦେଶର ଅପ୍ରତିଦ୍ୱନ୍ଦୀ ନେତ୍ରୀ କରିଦେଇଥାଏ । କେତେ ଆଶଙ୍କା ପ୍ରକାଶ କଲେ କାଳେ ଇଏ ଗଣତନ୍ତ୍ର ଶାସନ ବଦଳରେ ଏକଛତ୍ର ଶାସନ ଚଳେଇ ଦବକି କଣ ? ସେତେବେଳକୁ ବିରୋଧୀଦଳଙ୍କ ମତିଗତିରେ ଇନ୍ଦିରା ବିରୋଧୀହାୱା ବହୁଥାଏ । ବଙ୍ଗଳା ଦେଶ ସ୍ୱାଧୀନ ହେବାରେ ଜୟପ୍ରକାଶ

ନାରାୟଣଙ୍କଙ୍କ ଭୂମିକା ମଧ୍ୟ କମ୍ ନଥିଲା । ସେ ଦେଶ ବିଦେଶ ବୁଲି ବଙ୍ଗଳାଦେଶ ସ୍ୱାଧୀନ ପାଇଁ ଲୋକମତ ସଂଗ୍ରହ କରିବାରେ କମ୍ ଉଦ୍ୟମ କରି ନାହାନ୍ତି । ଇନ୍ଦିରାଗାନ୍ଧୀ ଶାସନରେ ଥିଲେ ବୋଲି ବଙ୍ଗଳା ଦେଶ ସ୍ୱାଧୀନ ହେବାରେ ତାଙ୍କର ଅବଦାନ ବେଶୀ ବୋଲି ଲେଖା ହେଲା । ଦୁର୍ନୀତି, ଭ୍ରଷ୍ଟାଚାର ବଢ଼ୁଥାଏ । ସରକାରୀତନ୍ତ୍ର ଦୁର୍ନୀତିଟାକୁ ଅସଲ ମନ୍ତ୍ର କରିଥାନ୍ତି । ଭ୍ରଷ୍ଟନେତା, କର୍ମଚାରୀ, ବ୍ୟବସାୟୀଙ୍କ ଅସାଧୁ ମେଣ୍ଟ କ୍ରମେ ବଳଶାଳୀ ହେଉଥାନ୍ତି । ଦରଦାମ ବଢ଼ୁଥାଏ ।

୧୯୭୨ରେ ଜୟପ୍ରକାଶ ବାଙ୍ଗାଲୋର ଠାରେ ସର୍ବସେବା ସଂଘରର ଅଧିବେଶନ ଡ଼ାକାଇଲେ । ଏହି ଅଧିବେଶନରେ ସର୍ବୋଦୟ ଆନ୍ଦୋଳନର ଗତିବିଧି, ଗ୍ରାମଦାନ ଆନ୍ଦୋଳନ ସହ ଦେଶରେ ଘଟୁଥିବା ଘଟଣା ଗୁଡ଼ିକ ଉପରେ ଆଲୋଚନା କରାଗଲା । ଦୁର୍ନୀତି ବଢ଼ୁଥିଲା । ଶ୍ରୀମତୀ ଗାନ୍ଧୀଙ୍କ ଏକଛତ୍ର ମନୋଭାବ ଉପରେ ଜୟପ୍ରକାଶ କହିଲେ । ଏଠି ସର୍ବୋଦୟ କର୍ମୀମାନେ ଏହି ସମସ୍ୟାଗୁଡ଼ିକ ସହିତ ଜଡ଼ିତ ହେବାକଥା ମଧ୍ୟ ଉଠିଲା ।

ସର୍ବସେବା ସଂଘ ଅଧିବେଶନରେ ଯୋଗଦେଇଥିବା ସମସ୍ତ ସଭ୍ୟ ବିନୋବାଜୀଙ୍କୁ ଦେଖା କରିବା ପାଇଁ ପୋନାର ଆଶ୍ରମକୁ ଗଲେ । ସେଠି ବିଶ୍ୱନାଥ ଆଞ୍ଚା ଓ ଅନ୍ୟମାନେ ଶୁଣିଲେ  ବିନୋବାଜୀ ଅନନ୍ତକାଳ ଯାଏ ଅପର ପକ୍ଷକୁ ବୁଝାଇବାରେ ବିଶ୍ୱାସ ରଖନ୍ତି । କେବଳ ବୁଝାଇ ହୃଦୟ ପରିବର୍ତ୍ତନ କରାଇବା ଦରକାର । ଏଥିରୁ ଜଣା ପଡୁଥିଲା ବିନୋବାଜୀ ପ୍ରତ୍ୟକ୍ଷ ଓ ସୃଷ୍ଟି ହେଉଥିବା ସମସ୍ୟା ପ୍ରତି ଦୃଷ୍ଟି ଦେବା ବଦଳରେ ବ୍ରହ୍ମଚର୍ଯ୍ୟ ପ୍ରଚାର, ନାଗରୀ ଲିପି ପ୍ରଚାର, ଭକ୍ତିମାର୍ଗ ଆଦି ଉପରେ ଜୋର ଦେଉଛନ୍ତି । ଏମାର୍ଜେନସୀ ସମୟରେ ବିନୋବାଜୀ ମଉନ ରହିବାଦ୍ୱାରା ତାଙ୍କୁ ବହୁତ ସମାଲୋଚନା କରାଯାଇଥିଲା । ଏଣେ କେତେକ ସର୍ବୋଦୟ କର୍ମୀଙ୍କ ବିଚାର ବଦଳିଲା, ଯାହା ବିଶ୍ୱନାଥ ଆଞ୍ଚାଙ୍କ ମନରେ ଆଘାତ ଦେଉଥିଲା ।

ଆସ୍ତେ ଆସ୍ତେ ବିନୋବାଜୀ ଅନ୍ତର୍ମୁଖୀ ହୋଇଗଲେ । ବହୁତ କମ୍ କଥାବାର୍ତ୍ତା କଲେ । ଭୂଦାନ ଓ ସର୍ବୋଦୟ କର୍ମୀମାନେ ତାଙ୍କ ବିଚାର, ପରାମର୍ଶ ଶୁଣିବା କମିଗଲା । ବିଶ୍ୱନାଥ ଆଞ୍ଚା କେବେ ବି ରାଜନୀତିରେ ନଥିଲେ କି ସେ ସମ୍ବନ୍ଧରେ ବିଶେଷଭାବେ ଜଡ଼ିତହେବା ତାଙ୍କ ବିବେକାନୁମୋଦିତ ନଥିଲା । ସେଥିଲେ ବିଶୁଦ୍ଧ ଗାନ୍ଧିବାଦୀ । ନିଷ୍କାମ କର୍ମଯୋଗୀ । ଏ ଭିତରେ ବିନୋବା ଗୁରୁ ଶିଷ୍ୟ ପରମ୍ପରାର ସୂତ୍ରଧରି ରାଜଶକ୍ତିର ସମର୍ଥନ କଲେ ।

ଏଣେ ଗୁଜୁରାଟର ଛାତ୍ର ଆନ୍ଦୋଳନ ପରେ ଜୟପ୍ରକାଶଜୀ କଂଗ୍ରେସର ଏକଛତ୍ରବାଦ ବିରୋଧରେ ସମ୍ପୂର୍ଣ୍ଣକ୍ରାଂନ୍ତିର ଲକ୍ଷ୍ୟନେଇ ରାଜନୈତିକ ଭୂମିକା ଗ୍ରହଣ ନେଲେ ।

ଏ ସବୁ ବିଶ୍ୱନାଥ ଆଜ୍ଞା ଅନୁଭବ କରୁଥିଲେ ମଧ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଗାନ୍ଧୀଙ୍କ ସମୟରେ ରଚନାତ୍ମକ କର୍ମୀଙ୍କର ଯାହା ଭୂମିକା ରହିଛି, ସେହି ଭୂମିକାର କୌଣସି ପରିବର୍ତ୍ତନ ଏବେ ବି ହୋଇନାହିଁ । ଏବେ ବି ସମାଜରେ ସେଇ ସବୁ ଅଭାବ ଅସୁବିଧା ରହିଛି ଯାହା ଗାନ୍ଧୀ କାଳରେ ଥିଲା । ଏଣୁ ରଚନାତ୍ମକ କର୍ମୀମାନେ ରାଜନୀତିରେ ଜଡ଼ିତହେବା ଉଚିତ ନୁହେଁ । ରଚନାତ୍ମକ କର୍ମୀ ସାରାଜୀବନ ସମର୍ପିତ କର୍ମୀଭାବେ କାମକରିବା ଉଚିତ । ଆଗର ସଂଗଠନର ଆବଶ୍ୟକତା ଯେତେ ଥିଲା ଏବେ ବି ସେତିକି ରହିଛି । ଏଣୁ ସେ କନ୍ଧମାଳରେ ସେହି ରଚନାତ୍ମକ କର୍ମୀର କାମକରିବା ସଂକଳ୍ପରେ ଅଟଳ ରହିଲେ, ଯଦିଓ ପୂର୍ବ କାମର ପ୍ରଭାବ, ଲୋକ ସମ୍ପର୍କ, ବିଭିନ୍ନ ଅନୁଷ୍ଠାନର ପଦପଦବୀ ଯୋଗୁଁ ସେ ପୂର୍ବପରି ବିଭିନ୍ନ ଅଞ୍ଚଳ ଗସ୍ତ କଲେ, ଆଲୋଚନାରେ ଭାଗନେଲେ, ବହୁଲୋକଙ୍କ ସମ୍ପର୍କରେ ଆସିଲେ ।

ଏ ଭିତରେ ଦେଶସାରା ଶ୍ରୀମତୀ ଗାନ୍ଧୀଙ୍କ ଶାସନ ଓ ବିରୋଧୀ ଦଳର ବିରୋଧକୁ ନେଇ ତୁମ୍ଭି ତୋଫାନ । ବିନୋବାଜୀ ଶ୍ରୀମତୀ ଗାନ୍ଧୀଙ୍କ କାର୍ଯ୍ୟକଳାପକୁ ପ୍ରକାଶ୍ୟ ସମର୍ଥନ କଲେ । ତେଣୁ ଜୟପ୍ରକାଶଜୀ ଦେଶସାରା ତୋଫାନୀଯାତ୍ରା କରି କଂଗ୍ରେସର କୁଶାସନ ସମ୍ବନ୍ଧରେ, ଦୁର୍ନୀତି ଭ୍ରଷ୍ଟାଚାର ବିରୋଧରେ ସଭା ସମିତି କଲେ ।

୧୯୭୪ ରେ ଶ୍ରୀମତୀ ଇନ୍ଦିରଗାନ୍ଧୀ ଭୁବନେଶ୍ୱର ସଭାରେ ସର୍ବୋଦୟ କାର୍ଯ୍ୟର ସମାଲୋଚନା କଲେ । ପରିସ୍ଥିତି ବିସ୍ଫୋରକ ହୋଇ ଉଠୁଥିଲା । ଶ୍ରୀମତୀ ଗାନ୍ଧୀଙ୍କ ଦୃଷ୍ଟିରେ 'ଜୟପ୍ରକାଶ ନାରାୟଣ ଦେଶରେ ବିପ୍ଳବର ଚକ୍ରାନ୍ତ କରୁଛନ୍ତି' ଏହି ପ୍ରକାର ସଂବାଦ ପ୍ରକାଶିତ ହେଲା । ଏମିତି ୧୯୭୫ ପହଞ୍ଚିଗଲା ।

ବିଶ୍ୱନାଥ ଆଜ୍ଞା ଦେଶରେ ଘଟୁଥିବା ଘଟଣା ଦେଖୁଥାନ୍ତି । ଏ ଭିତରେ ସେ ବାଲିଗୁଡ଼ା ବନବାସୀ ସେବା ସମିତିର କାର୍ଯ୍ୟପ୍ରଣାଳୀ, ବିଭିନ୍ନ ସଂସ୍ଥା ଗଠନ ଓ ସମାଜର ଦଳିତ ନିଷ୍ପେଷିତଙ୍କ ସେବାରେ ବହୁତ ସମୟ କଟାଇଲେ ।

## ୧୯୭୫ ମାର୍ଚ୍ଚ, ଜୟପ୍ରକାଶଜୀଙ୍କ ଓଡ଼ିଶା ଗସ୍ତ :

ଜୟପ୍ରକାଶଜୀ ୧୯୭୫ ମାର୍ଚ୍ଚ ମାସ ଶେଷଆଡକୁ ଓଡ଼ିଶା ଗସ୍ତରେ ଆସିଲେ । ଉତ୍କଳ ସର୍ବୋଦୟ ମଣ୍ଡଳ ତାଙ୍କ କାର୍ଯ୍ୟକ୍ରମ ସ୍ଥିର କରିଥିଲା । ସେ ଝାରସୁଗୁଡ଼ାରେ ଓହ୍ଲେଇ ସମ୍ବଲପୁର, ଢ଼େଙ୍କାନାଳ, କଟକ ଓ ଭୁବନେଶ୍ୱର ଯିବା ପାଇଁ ବ୍ୟବସ୍ଥା କରାଗଲା । ତାଙ୍କ ଗସ୍ତର ଦେଖାରେଖା ଦାୟିତ୍ୱ ନେଇଥାନ୍ତି ମଦନମୋହନ ସାହୁ ।

ଝାରସୁଗୁଡ଼ାରେ ଓହ୍ଲାଇ ଜୟପ୍ରକାଶ ଆସିବା ରାସ୍ତାରେ ଢ଼େଙ୍କାନାଳର ସେତେବେଳର ଏମ୍.ଏଲ୍.ଏ. ଶ୍ରୀବତ୍ସ ନାୟକ ଯିଏକି ଆଗରୁ ବ୍ରହ୍ମପୁରରେ ଗାନ୍ଧୀ ସ୍ମାରକ ନିଧି ତରଫରୁ ଖୋଲା ଯାଇଥିବା ଶାନ୍ତି ପ୍ରତିଷ୍ଠାନର ପରିଚାଳକ ଥିଲେ, ଗୁଣ୍ଡା ମାନଙ୍କୁ ନେଇ ଜୟପ୍ରକାଶଙ୍କୁ ମାରିଦେବା ପାଇଁ ଗାଡ଼ିକୁ ଅଟକାଇ ଠେଙ୍ଗା ମାଡ଼ ଦେଉଥିବା ବେଳେ ଜୟପ୍ରକାଶଜୀଙ୍କ ସାଙ୍ଗରେ ଥିବା ସାଥୀମାନେ ଠେଙ୍ଗା ଧରି ନେଇ ତାଙ୍କୁ ରକ୍ଷା କରିଥିଲେ । ମହମ୍ମଦ ବାଜୀ ତାଙ୍କ ସହଥିଲେ । ସେ ହେଉଛନ୍ତି ପ୍ରତ୍ୟକ୍ଷଦର୍ଶୀ ।

ଜୟପ୍ରକାଶଜୀ ଆସିଲେ । ସମ୍ବଲପୁର ଓ ଝାରସୁଗୁଡ଼ାରେ ତାଙ୍କ ସଭାରେ ବହୁଲୋକ ଯୋଗଦେଲେ । ସେଠୁ ସେ ମୋଟର ଯୋଗେ ଅନୁଗୁଳରେ ପହଞ୍ଚିଲେ ରାତିରେ । ସକାଳେ ସେ ଅନୁଗୁଳରେ ବାଜୀରାଉତ ଛାତ୍ରାବାସ ଦେଖିଲେ । ମାଳତୀ ଦେବୀଙ୍କୁ ସାକ୍ଷାତ କଲେ ।

ଏଣେ ଓଡ଼ିଶାରେ କଂଗେସ ମନ୍ତ୍ରୀ ମଣ୍ଡଳ । ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ । ସେ ଏବଂ ତାଙ୍କ ଦଳ ଜୟପ୍ରକାଶଜୀଙ୍କ ସଭାଗୁଡ଼ିକୁ ଭଣ୍ଡୁର କରିବା କାମମାନ କରୁଥାନ୍ତି । ବିଜୁ ପଟ୍ଟନାୟକ ଓ ବିରୋଧୀ ଦଳମାନେ ଜୟପ୍ରକାଶଜୀଙ୍କୁ ସମର୍ଥନ ଓ ସାହାଯ୍ୟ କରୁଥାନ୍ତି । ଅନୁଗୁଳ ସର୍କିଟ ହାଉସରେ ଜୟପ୍ରକାଶଜୀ ରହିବାର ବ୍ୟବସ୍ଥା ହୋଇଥିଲା କିନ୍ତୁ କଂଗ୍ରେସ କର୍ମୀମାନେ ସବୁଘର ଦଖଲ କରି ନେଇଗଲେ, ଏଣୁ ଜୟପ୍ରକାଶଜୀ ଭୁବନେଶ୍ୱରରେ ରହିଲେ ।

୧.୪.୧୯୭୫, ସେଦିନ ଭୁବନେଶ୍ୱରରେ ଜୟପ୍ରକାଶଙ୍କ ସଭା ହେବ, ଏଣୁ ଓଡ଼ିଶା ସରକାର ବିଶେଷତଃ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଆଉ ଏକ ସମାନ୍ତରାଳ ସରକାରୀ ସଭାର ଆୟୋଜନ କରାଇଲେ ।

## ଉତ୍କଳଦିବସ ପାଳନ :

୧.୪.୧୯୩୬ରେ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ୧୩ଟି ଜିଲ୍ଲାକୁ ନେଇ ଗଠିତ ହେଲା । ସାର୍ ଜନ୍ ଅଷ୍ଟିନ୍ ହବାକ୍ ଏହାର ପ୍ରଥମ ରାଜ୍ୟପାଳ ହେଲେ । ସେହିଦିନଠୁ ୧.୪.୧୯୭୫ ଯାଏ ଓଡ଼ିଶାର କୌଣସି ସରକାର କିମ୍ବା ଓଡ଼ିଶାବାସୀଙ୍କୁ, ଦୀର୍ଘ ୩୯ ବର୍ଷ ଭିତରେ ଉତ୍କଳ ଦିବସ ପାଳନ କରିବାକୁ ବେଳ ମିଳିଲାନାହିଁ କି ସେ ବିଷୟରେ କେହି ଚିନ୍ତାକରିବା ଉଚିତ ମଣିଲେନାହିଁ ।

ଜୟ ପ୍ରକାଶଜୀଙ୍କ ସଭାକୁ ଭଣ୍ଡୁର କରିବା ପାଇଁ ହଠାତ୍ ୧.୪.୧୯୭୫ଦିନ ଓଡ଼ିଶା ସରକାରଙ୍କ ମନ ଓ ହୃଦୟରେ ଉତ୍କଳଦିବସ ସରକାରୀ ସ୍ତରରେ ମହା ଆଡମ୍ବରରେ ପାଳନ କରିବାର ଅଭିଳାଷ ଜାଗ୍ରତ ହେଲା । ଜୟପ୍ରକାଶଜୀଙ୍କୁ ସଭା କରିବାପାଇଁ ପରେଡ ପଡ଼ିଆ ଦିଆଗଲା ନାହିଁ । ସେଠି ୧.୪.୭୫ ଦିନ ଓଡ଼ିଶା ସରକାର ଉତ୍କଳ ଦିବସ ପାଳନ କଲେ । ସେଦିନର ବାଣ ରୋଷଣି ଦେଖିବାର କଥା । ସଭାରେ ଥିବା ଲୋକ ବୋଇଲେ ଗଣ୍ଡେ ସରକାରୀ ଲୋକ, ସ୍କୁଲ ପିଲା ଓ ଦଳେ କଂଗ୍ରେସ କର୍ମୀ ।

ଏଣେ ଭୁବନେଶ୍ୱର ମାର୍କେଟ ପଡ଼ିଆ ସାମନାରେ ଜୟପ୍ରକାଶଙ୍କ ସଭାହେଲା । ଲୋକେ ଥାଟ ପଟାଳି ଭାଙ୍ଗିଲେ । ସାରା ଭୁବନେଶ୍ୱର ଅଜାଡ଼ି ହୋଇ ପଡ଼ିଲା ଯେମିତି ଜୟପ୍ରକାଶଙ୍କୁ ଶୁଣିବା ପାଇଁ । ସେଦିନ ସଭାରେ ମା ରମାଦେବୀ ସଭାନେତ୍ରୀ ହେଲେ । ତାଙ୍କ ତେଜସ୍ୱିତା ଦେଖି ଜୟପ୍ରକାଶଜୀ କହିଲେ, ''ସ୍ୱାଧୀନତା ଆନ୍ଦୋଳନରେ ଆଗୁଆ ଥିଲେତ, ଏଥିରେ ବି ପଛରେ ରହନ୍ତେ କେମିତି ।''

ଗଣତନ୍ତ୍ରର ସମସ୍ତ ସାମ୍ବିଧାନିକ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇ କଂଗ୍ରେସଦଳ ଶ୍ରୀମତୀ ଗାନ୍ଧୀଙ୍କ ଏକଛତ୍ର ଶାସନ ଆଡକୁ ମୁହାଁଇବାରେ ବେଶୀ ସାହାଯ୍ୟକଲେ । ଏମିତି ଏକ ଘଡିସନ୍ଧି ମୁହୂର୍ତ୍ତରେ ଶ୍ରୀମତୀ ଗାନ୍ଧୀଙ୍କ ୧୯୭୧ ନିର୍ବାଚନକୁ ଅସିଦ୍ଧ ଘୋଷଣା କରିବା ପାଇଁ ଶ୍ରୀରାଜ ନାରାୟଣ ଆଲ୍ହାବାଦ ହାଇକୋର୍ଟରେ କରିଥିବା ନିର୍ବାଚନ ମାମଲାର ରାୟ ବାହାରିଲା, ଯାହାର ପରିଣତି ଦୁଇବର୍ଷ ଯାଏ ସାରା ଭାରତକୁ ଆଚ୍ଛନ୍ନ କରି ରଖିଲା ।

## ଆଲ୍‌ହାବାଦ ହାଇକୋର୍ଟର ଐତିହାସିକ ରାୟ:

ଜୁନ୍ ମାସ ୧୨ ତାରିଖ ୧୯୭୫ ମସିହା ଦିନ ଆଲହାବାଦ ହାଇକୋର୍ଟ ବିଚାରପତି ମାନ୍ୟବର ଜଗମୋହନଲାଲ ସିହ୍ନା ଶ୍ରୀମତୀ ଇନ୍ଦିରାଗାନ୍ଧୀ ୧୯୭୧ ମସିହାରେ ଉତ୍ତର ପ୍ରଦେଶ ରାୟବରେଲୀରୁ ପାର୍ଲିଆମେଣ୍ଟକୁ ସଭ୍ୟଭାବେ ନିର୍ବାଚିତ ହୋଇଥିବା ସଭ୍ୟପଦକୁ ଅସିଦ୍ଧ ଘୋଷଣା କରିଦେଲେ । ସେହି ରାୟରେ ନିର୍ବାଚନ ସମୟରେ ଶ୍ରୀମତୀ ଗାନ୍ଧୀ ସରକାରୀ କର୍ମଚାରୀଙ୍କୁ ତାଙ୍କ କାମରେ ଲଗାଇଥିବା ଓ ଆଇନ ଅନୁସାରେ ସୀମାତିରିକ୍ତ ଅର୍ଥ ଖର୍ଚ୍ଚକରିଥିବା ଆଦି ଅପରାଧରେ ଦୋଷୀ ସାବ୍ୟସ୍ତ କରି ସେ ଆଉ ୭ ବର୍ଷ ଯାଏ କୌଣସି ନିର୍ବାଚନରେ ଲଢ଼ି ପାରିବେନାହିଁ ବୋଲି ରାୟ ଦେଲେ । ଏହା ସାରା ଭାରତରେ ଚହଳ ପକାଇଦେଲା ।

ଜୁନ୍ ୨୧ ତାରିଖ ୧୯୭୫ ଦିନ ଜୟପ୍ରକାଶ 'ଇନ୍ଦିରା ହଟାଅ' ଆନ୍ଦୋଳନର ଧ୍ୱନି ଦେଲେ । ବିରୋଧୀଦଳମାନେ ଶ୍ରୀମତୀ ଗାନ୍ଧୀଙ୍କ ଇସ୍ତଫା ଦାବିକଲେ । ଜୁନ ୨୫ ତାରିଖ ଦିନ ଜୟପ୍ରକାଶଜୀ ଦିଲ୍ଲୀର ଏକ ବିଶାଳ ଜନସଭାରେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଇସ୍ତଫା ଦାବି କରିବା ସଙ୍ଗେ ସଙ୍ଗେ ଭାରତର ପୋଲିସ୍ ଓ ପ୍ରତିରକ୍ଷା ବାହିନୀକୁ ମଧ୍ୟ ନିଜ ବିବେକ ଅନୁସାରେ କାମକରିବା ପାଇଁ ଆହ୍ୱାନ କଲେ । ଏହା ଶାସକଦଳ, ଶ୍ରୀମତୀ ଗାନ୍ଧୀ, ତାଙ୍କପୁତ୍ର ସଞ୍ଜୟ ଗାନ୍ଧୀ ଓ ତାଙ୍କ ଚାଟୁକାରମାନଙ୍କ ପାଇଁ ଜୀବନ ମରଣ ସମସ୍ୟା ଓ ପ୍ରତିଷ୍ଠାର ପ୍ରଶ୍ନ ହୋଇଗଲା । ଶ୍ରୀମତୀ ଗାନ୍ଧୀ କଂଗ୍ରେସଦଳ ଦ୍ୱାରା ଆୟୋଜିତ ବହୁସଭାରେ ବିରୋଧୀଦଳ ଓ ତାଙ୍କର ସମାଲୋଚନା କରୁଥିବା ଅନ୍ୟମାନେ ଦେଶର ଶତ୍ରୁ ବୋଲି ପ୍ରମାଣ କରିବାକୁ ଚେଷ୍ଟାକଲେ । ଦେଶସାରା କେମିତି ଗୋଟାଏ ଅନିଶ୍ଚିତତାର ବାତାବରଣ ଖେଳିଗଲା । ତତ୍‌କାଳୀନ କଂଗ୍ରେସ (ଇ) ସଭାପତି ଦେବକାନ୍ତ ବରୁଆ ପାଦେ ଆଗେଇ ଯାଇ କହିଲେ, ''ଭାରତ କହିଲେ ଇନ୍ଦିରା''ଙ୍କୁ ବୁଝାଏ ।

## ଆଭ୍ୟନ୍ତରୀଣ ଜରୁରୀପରିସ୍ଥିତି ଜାରି :

୧୯୭୫ ମସିହା ବେଳକୁ ଭାରତର ଗଣତନ୍ତ୍ର ପ୍ରତି ବିପଦ ସୃଷ୍ଟି ହୋଇ ଯାଇଥିଲା । ରାଜନୀତି କ୍ଷେତ୍ରରେ ଦେଶ, ସମ୍ବିଧାନ ଓ ଆଦର୍ଶ ବଦଳରେ ବ୍ୟକ୍ତିପୂଜାର ପରମ୍ପରା କଂଗ୍ରେସ ଦଳ ନେହେରୁଙ୍କ ସମୟରୁ ଆରମ୍ଭ କରି ସାରିଥିଲେ । ଏଣୁ ୧୨.୬.୭୫ରେ

ଆଲହାବାଦ ହାଇକୋର୍ଟ ରାୟକୁ ଇନ୍ଦିରା କଂଗେସ ବାଲାଏ ସେମାନଙ୍କ ନିରଙ୍କୁଶ କ୍ଷମତା ପ୍ରତି ଏକ ଆହ୍ୱାନ ବୋଲି ଗ୍ରହଣ କରିନେଲେ । ଏଣେ ବିରୋଧୀଦଳ ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ମନେକରି ଆନ୍ଦୋଳନ ଆରମ୍ଭ କଲେ । ଶ୍ରୀମତୀ ଇନ୍ଦିରାଗାନ୍ଧୀ ନୈତିକତା ଦୃଷ୍ଟିରୁ ଇସ୍ତଫା ଦେବାକୁ ଚାହୁଁଥିଲେହେଁ କୌଣସି ପଦ ପଦବୀରେ ନଥାଇ ମଧ୍ୟ ଶ୍ରୀ ସଞ୍ଜୟଗାନ୍ଧୀ ଏବଂ ତାଙ୍କ ଅନୁଗତ ବନ୍ଧୁଗଣ ଶ୍ରୀମତୀ ଗାନ୍ଧୀଙ୍କୁ ଇସ୍ତଫା ନ ଦେଇ ସୁପ୍ରିମ କୋର୍ଟରେ ଅପିଲ କରି ଫଳାଫଳ ପ୍ରକାଶ ପାଇବା ଯାଏ ଅପେକ୍ଷା କରିବାକୁ ପ୍ରବର୍ତ୍ତାଇବାରେ ସଫଳ ହେଲେ । ୨୫-୬-୭୫ ଦିନ ଶ୍ରୀ ସଞ୍ଜୟଗାନ୍ଧୀ, ବଂଶୀଲାଲ, ବିଦ୍ୟାଚରଣ ଶୁକ୍ଳ, କ୍ୟାଣ୍ଡି, ଅମ୍ବିକାସୋନୀ, ରୁକସାନା ସୁଲତାନ, ଜଗଦୀଶ ଟାଇଟାଲର, ରାମଧନ, ପ୍ରଣବ ମୁଖାର୍ଜୀ ଏକତ୍ର ହୋଇ କେଉଁ ବିରୋଧୀଦଳ ନେତାମାନଙ୍କୁ ଗରିଫ କରାଯିବ ତାହାର ଏକ ତାଲିକା ତିଆରି କରିଥିଲେ । ଏକଥା ଇନ୍ଦିରାଗାନ୍ଧୀ ମଧ୍ୟ ଜାଣିଥିଲେ ।

ଦିଲ୍ଲୀ ସଭାରେ ଜୟପ୍ରକାଶଙ୍କ ଡ଼ାକରା ଭାରତରେ ଆଭ୍ୟନ୍ତରୀଣ ଜରୁରୀ ପରିସ୍ଥିତି ଜାରି କରିବା ପାଇଁ ଶାସକଦଳଙ୍କୁ ସୁଯୋଗ ଦେଲା । ୨୫-୬-୧୯୭୫ ରାତି ୧୧.୪୫ ମିନିଟରେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପରାମର୍ଶରେ ଭାରତର ରାଷ୍ଟ୍ରପତି ଫକରୁଦ୍ଦିନ୍ ଅଲ୍ଲୀ ଅହମଦ ଭାରତରେ ଆଭ୍ୟନ୍ତରୀଣ ଜରୁରୀ ପରିସ୍ଥିତି ଜାରି ହେଲା ବୋଲି ଘୋଷଣା ନାମାରେ ସ୍ୱାକ୍ଷର କଲେ । ଏହା ଫଳରେ ପ୍ରେସ ଉପରେ କଟକଣା, ଅଦାଲତରେ ଆଶ୍ରୟ ନେବାରେ କଟକଣା ଉଲ୍ଲେଖ କରାଗଲା ।

୨୬.୬.୭୫ ପାହାନ୍ତିଆ ବେଳକୁ ଜୟପ୍ରକାଶ ନାରାୟଣ, ମୋରାରଜୀ ଦେଶାଇ, ଆଦି ବହୁ ଜାତୀୟ ସ୍ତରର ନେତାଙ୍କୁ ଭାରତରକ୍ଷା ଆଇନ ଓ ମିସା ଆଇନ୍‌ରେ ଗିରଫ କରିନେଲେ । ଆଇନର ଶାସନ ନାମରେ ଏକ ଅତ୍ୟାଚାରର ପର୍ବ ୧୯ ମାସ ଯାଏ ଚାଲିଲା । ବିନୋବାଜୀ ଏହାକୁ 'ଅନୁଶାସନ ପର୍ବ' ବୋଲି ଆଖ୍ୟା ଦେଲେ ।

## ଏଣେ ଓଡ଼ିଶାରେ :

ଜରୁରୀ ପରିସ୍ଥିତି ଜାରି ହେବା ସଙ୍ଗେ ସଙ୍ଗେ ଓଡ଼ିଶା ମୁଖ୍ୟମନ୍ତ୍ରୀ ଓ ତାଙ୍କ ଅଧସ୍ତନ ମନ୍ତ୍ରୀ, କର୍ମୀ ଚଳଚଞ୍ଚଳ ହୋଇଉଠିଲେ । ଆଇନର ଶାସନ ହେବା ଚାହି । ଏଣୁ କାହାକୁ କାହାକୁ ଗିରଫ କରାଯିବ ତାର ତାଲିକାହେଲା । ପୋଲିସ ହୁସିଆର ହୋଇଗଲେ ହୁକୁମ ତାମିଲ କରିବାକୁ ।

କଟକ ଥୋରିଆ ସାହି, ଗୁଣନିଧି ଭବନ ଯେଉଁଠି ଗୋପବନ୍ଧୁ ଚୌଧୁରୀ ଶେଷ ଜୀବନ କଟାଇଥିଲେ, ସେଇଠି ୨୬.୬.୭୫ ଉପରଓଳି ଜମାହେବା ପାଇଁ ଶ୍ରୀ ମନମୋହନ ଚୌଧୁରୀ କଟକର ପଚିଶି ତିରିଶ ଜଣଙ୍କୁ ସୂଚନା ଦେଲେ । ଏ ସଂବନ୍ଧରେ ଶ୍ରୀ ମନମୋହନ ଚୌଧୁରୀ କହନ୍ତି, ''ଚାରିଟା ବେଳକୁ ପଚିଶ ତିରିଶ ଜଣେ ଖଣ୍ଡେ ଏକାଠି ହେଲେ । ସେମାନଙ୍କ ଭିତରେ ଥିଲେ ଡ଼ଃ ହରେକୃଷ୍ଣ ମହତାବ, ସର୍ବଶ୍ରୀ ନୀଳମଣି ରାଉତରାୟ, ପୂର୍ଣ୍ଣଚନ୍ଦ୍ର ପରିଜା, ଶ୍ରୀକାନ୍ତ ପଣ୍ଡା, ବିରଜା ରାୟ, ବୋଉ, ଶ୍ୟାମଳୀ ମହାପାତ୍ର, ବିଶମ୍ବର ପରିଡ଼ା (ସର୍ବୋଦୟ କର୍ମୀ), ସର୍ବଶ୍ରୀ ସୁରେନ୍ଦ୍ର ମହାନ୍ତି, କ୍ଷେତ୍ରବାସୀ ପତି, ନିକୁଞ୍ଜ ଦାସ, ଗୋପାଳ ପ୍ରସାଦ ଦାସ, ପ୍ରଭୃତି ଥିଲେ । ଦାଦା (ନବବାବୁ) ଅନୁଗୁଳରେ ଥିଲେ । ତାଙ୍କୁ ଖବରଦିଆ ହୋଇଥିଲା ଓ ସେ ପରେ ପହଞ୍ଚିଲା । ବୈଠକରେ ଅନେକ କଳ୍ପନା ଜଳ୍ପନା ଚାଲିଲା । ଜରୁରୀକାଳୀନ ପରିସ୍ଥିତି ଘୋଷଣା ଯେ ସମସ୍ତଙ୍କୁ ସ୍ତମ୍ଭିତ କରିଦେଇଛି ତାହା ଜଣା ପଡ଼ିଲା । ଦୀର୍ଘ ଆଲୋଚନା ପରେ ସ୍ଥିରହେଲା ଯେ ଏହାର ବିରୋଧ କରବାକୁ ହେବ । ଖବରକାଗଜରେ ସତ ଖବର ବାହାରିବାର ସମ୍ଭାବନା ନଥିବାରୁ ଲୋକଙ୍କୁ ପ୍ରକୃତ ପରିସ୍ଥିତି ବିଷୟରେ ଅବହିତ କରିବା ପାଇଁ କିଛି କରିବାକୁ ହେବ ।''

ତାପରେ ସ୍ଥିରହେଲା ଖଣ୍ଡେ ସାନ ପ୍ରଚାରପତ୍ର ଛାପି ରେଲଷ୍ଟେସନ ଓ ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ବାଣ୍ଟିଦେଲେ ତାହା ସାରା ଓଡ଼ିଶା ସାରା ପହଞ୍ଚିଯିବ ଗୋଟାଏ ଦିନ ଭିତରେ । ଆଲୋଚନା ଅନୁସାରେ ପ୍ରଚାର ପତ୍ରର ଚିଠା କରାହେଲା । ଏହି ପ୍ରଚାରପତ୍ର ମା ରମାଦେବୀଙ୍କ ଦସ୍ତଖତରେ ବାହାର କରିବା ପାଇଁ ସମସ୍ତେ ମତଦେଲେ । ପ୍ରଚାରପତ୍ର କଟକ ଗ୍ରାମସେବକ ପ୍ରେସରେ ଛପାହେଲା ।

ଏହି ଭିତରେ ଶ୍ରୀ ମନମୋହନ ଚୌଧୁରୀ, ବିନୋବାଜୀଙ୍କୁ ଖଣ୍ଡିଏ ଚିଠି ଲେଖିଲେ । ସେଥିରେ ସେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ମନୋବୃତ୍ତି ବିଷୟରେ ଲେଖି ଶ୍ରୀମତୀ ଗାନ୍ଧି କେମିତି ଗଣତନ୍ତ୍ର ଲୋପକରି ଏକଛତ୍ରବାଦ ପ୍ରତିଷ୍ଠା କରିବାକୁ ଯାଉଛନ୍ତି ଏବଂ ବିନୋବାଜୀ ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତା ସପକ୍ଷରେ ସ୍ୱର ଉତ୍ତୋଳନ କରନ୍ତୁ ବୋଲି ଅନୁରୋଧ କଲେ ।

୨୯.୬.୭୫ ଦିନ ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ, ମଦନମୋହନ ସାହୁ, ମନମୋହନ ମିଶ୍ର, ଅଶୋକ ଦାସଙ୍କୁ ଗିରଫ କରାଗଲା ।

## ପ୍ରଚାରପତ୍ର :

*॥ ସମସ୍ତେ ଧ୍ୟାନ ଦିଅନ୍ତୁ ॥*

ଆଜି ସକାଳୁ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ସରକାର ଦେଶରେ ନୂତନ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରି ସବୁ ଖବରକାଗଜମାନଙ୍କରେ ଖବର ବାହାରିବା ଉପରେ କଟକଣା ଜାରି କରିଛନ୍ତି । ସେଥିପାଇଁ ଆପଣ ଆଉ ଖବର କାଗଜରୁ ପ୍ରକୃତ ଖବର ପାଇବେ ନାହିଁ । ରେଡ଼ିଓରେ ତ ବରାବର ମିଥ୍ୟା ପ୍ରଚାର ଚାଲିଛି । ଏଣୁ ଏ ବୁଲେଟିନ୍ ।

ନୂଆ ଜରୁରୀକାଳୀନ ପରିସ୍ଥିତି ଦ୍ୱାରା ସରକାର ଯାହାକୁ ଇଚ୍ଛା ତାକୁ ଗିରଫ କରି ଅଟକ ରଖିବା କ୍ଷମତା ନେଇଛନ୍ତି । ଏ ଅନୁସାରେ ଶ୍ରୀ ଜୟପ୍ରକାଶ ନାରାୟଣ ଓ ବିରୋଧୀ ଦଳର ନେତା ସର୍ବଶ୍ରୀ ମୋରାରଜୀ ଦେଶାଇ, ରାଜନାରାୟଣ, ଅଟଳ ବିହାରୀ ବାଜପେୟୀ, ଲାଲକୃଷ୍ଣ ଆଡଭାନୀ, ଶ୍ୟାମନନ୍ଦନ ମିଶ୍ର, ଜ୍ୟୋତିର୍ମୟ ବସୁ, ସମରଗୁହ, ପିଲୁମୋଦୀ, ଚରଣ ସିଂହ, ଜର୍ଜ ଫର୍ଣ୍ଣାଡିସ୍ ପ୍ରଭୃତିଙ୍କୁ ଓ କଂଗ୍ରେସଦଳର କାର୍ଯ୍ୟକାରୀ କମିଟୀର ସଦସ୍ୟ ଶ୍ରୀ ଚନ୍ଦ୍ରଶେଖର, କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସଂପାଦକ ଶ୍ରୀ ରାମଧନ ପ୍ରମୁଖଙ୍କୁ ଗିରଫ କରାଯାଇଛି । ଖବରକାଗଜମାନଙ୍କରେ ଗିରଫଦାରୀ ଓ ପ୍ରତିବାଦ ଆଦିର ଖବର ପ୍ରକାଶ କରାଯାଇ ପାରିବ ନାହିଁ ଓ ସବୁ ଖବର ସରକାରୀ ଯାଞ୍ଚ ଅଫିସରଙ୍କ ଅନୁମତି ଦ୍ୱାରାହିଁ ପ୍ରକାଶ କରାଯାଇ ପାରିବ ବୋଲି ଆଦେଶ ଜାରି ହୋଇଛି । ଏହାଦ୍ୱାରା ଏ ଦେଶରେ ବସ୍ତୁତଃ ଏକଛତ୍ରବାଦ ଜାରି ହେଲା । କଂଗ୍ରେସ ଦଳ ଭିତରେ ଥିବା ଗଣତନ୍ତ୍ରର ସମର୍ଥକଙ୍କୁ ଗିରଫ କରିବାଦ୍ୱାରା ଏକଥା ଏବେ ଜଳ ଜଳ ଦେଖା ଯାଉଛି ।

କାଲି ଦିଲ୍ଲୀରେ ଏକ ଅଭୂତପୂର୍ବ କିଶାନ ସଭାରେ ଭାଷଣ ଦେଇ ଶ୍ରୀ ଜୟପ୍ରକାଶ ନାରାୟଣ ଘୋଷଣା କରିଥିଲେ ଯେ ଆସନ୍ତା ୨୯ ତାରିଖଦିନ ଦେଶସାରା ଶ୍ରୀମତୀ ଗାନ୍ଧୀଙ୍କ ଇସ୍ତଫା ଦାବିକରି ଆନ୍ଦୋଳନ ଚାଲିବ । ଏବେ ନଗ୍ନ ଏକଛତ୍ରବାଦ ବିରୋଧରେ ଲଢ଼ିବା ପାଇଁ ଦେଶବାସୀଙ୍କୁ ଅଣ୍ଟା ଭିଡ଼ିବାକୁ ହେବ ।''

ସର୍ବୋଦୟ ଓ ସର୍ବସେବା ସଂଘର ବହୁକର୍ମୀ ରାତିସାରା ବର୍ଷାରେ ତିନି ଏହି ପ୍ରଚାରପତ୍ର ବାଣ୍ଟିଲେ ।

୨୭.୬.୧୯୭୫ଦିନ କଟକ ସହରରେ ଏକ ପ୍ରତିବାଦ ସଭା କରାଗଲା । ମା ରମାଦେବୀ ଓ ନବବାବୁଙ୍କ ସ୍ୱାକ୍ଷରରେ ଦ୍ୱିତୀୟ ବୁଲେଟିନ୍ ଛପା ହୋଇ ବଣ୍ଟାହେଲା । ଏହି ବୁଲେଟିନରେ ସମ୍ପୂର୍ଣ୍ଣବିପ୍ଳବ କରି ଏକଛତ୍ରବାଦର ବିରୋଧ କରିବାପାଇଁ ସାରା ଓଡ଼ିଶାର ଲୋକଙ୍କୁ ଆହ୍ୱାନ କରାଗଲା । ଏହି ବୁଲେଟିନ୍‌ରେ ଲେଖାଥିଲା ।

।। ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କର ଏକଛତ୍ରବାଦର ବିରୋଧ କରନ୍ତୁ ।।

‘‘ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କର ସରକାର କାଲି ଏ ଦେଶରେ ଏକ ନୂତନ ଜରୁରୀ କାଳୀନ ପରିସ୍ଥିତି ଘୋଷଣାକରି ନିଜ ହାତକୁ ବିଶେଷ କ୍ଷମତା ନେଇଛନ୍ତି । ଏହା ବଳରେ ଖବରକାଗଜ ମାନଙ୍କରେ ଖବର ଯାଞ୍ଚକରି କେବଳ ତାଙ୍କୁ ସୁହାଇବା ଭଳି ଖବର ସରକାର ଛାପିବା ପାଇଁ ଅନୁମତି ଦେବା ବ୍ୟବସ୍ଥା କରିଛନ୍ତି ଓ ଦେଶସାରା ଗିରଫଦାରୀ ଆରମ୍ଭ କରି ଦେଇଛନ୍ତି । କାଲି ଶ୍ରୀ ଜୟପ୍ରକାଶ ନାରାୟଣ ଓ ସର୍ବଶ୍ରୀ ମୋରାରଜୀ ଦେଶାଇ, ରାଜ ନାରାୟଣ, ଚରଣ ସିଂହ, ଅଶୋକ ମେହେତା, ପିଲୁମୋଦୀ, ଜର୍ଜ ଫର୍ଣ୍ଣାଡିସ୍, ବିଜୁ ପଟ୍ଟନାୟକ, ଅଟଳ ବିହାରୀ ବାଜପେୟୀ, ଲାଲକୃଷ୍ଣ ଆଡଭାନି ପ୍ରମୁଖ ବିରୋଧୀ ଦଳର ନେତା, ସର୍ବୋଦୟ ନେତା ସିଦ୍ଧରାଜ ଚଡ଼ା ଓ ଶହ ଶହ ଅନ୍ୟଲୋକ ଗିରଫ ହୋଇଛନ୍ତି । ଆକାଶବାଣୀ ମିଥ୍ୟା ପ୍ରଚାର ଚଳାଇଥିବାରୁ ଓ ଖବରକାଗଜରେ ସମ୍ବାଦ ପ୍ରକାଶ ଉପରେ କଟକଣା ଯୋଗୁଁ ସବୁ ଆଡର ଖବର ପାଇବା ଅସମ୍ଭବ ପ୍ରାୟ ହୋଇଛି । କଂଗ୍ରେସ କାର୍ଯ୍ୟକାରୀ କମିଟୀର ସଦସ୍ୟ ଶ୍ରୀ ଚନ୍ଦ୍ରଶେଖର ଓ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଅନ୍ୟତମ ସମ୍ପାଦକ ଶ୍ରୀ ରାମଧନ ମଧ ଗିରଫ ହୋଇଛନ୍ତି ।

ଏହାଦ୍ୱାରା ଶ୍ରୀମତୀ ଗାନ୍ଧି ନିଜ ହାତକୁ ଏକଛତ୍ର ଶାସନକ୍ଷମତା ନେଇଛନ୍ତି ଓ ଦେଶର ଗଣତନ୍ତ୍ରର ଓ ଲୋକଙ୍କର ନାଗରିକ ସ୍ୱାଧୀନତାର କଣ୍ଠରୋଧ କରିଛନ୍ତି । ଦେଶର ସୁରକ୍ଷା ପ୍ରତି ଆଭ୍ୟନ୍ତରୀଣ ବିପଦର ଆଶଙ୍କା ଯୋଗୁଁ ଏହା କରାଯାଇଛି ବୋଲି ସୂଚାଇ ଦିଆ ଯାଇଛି ମାତ୍ର କଂଗ୍ରେସଦଳର ହିଁ ଉଚ୍ଚ ପାହ୍ୟାର ନେତାଙ୍କ ଗିରଫଦାରୀ ଦ୍ୱାରା ଏହା ସ୍ପଷ୍ଟ ହୋଇଛି ଯେ ଦେଶପ୍ରତି ବିପଦର ଆଶଙ୍କା ନୁହେଁ, ପ୍ରଧାନମନ୍ତ୍ରୀଙ୍କ କ୍ଷମତା ଲାଳସା ହିଁ ଏହାର ଅସଲ କାରଣ । ସେଥିପାଇଁ ଜୟପ୍ରକାଶ ନାରାୟଣ ବହୁ ପୂର୍ବରୁ ଯେଉଁ ସତର୍କବାଣୀ

ଦେଶବାସୀଙ୍କୁ ଶୁଣାଇ ଆସିଛନ୍ତି ତାହା ଯେ ନିରାଟ ସତ୍ୟ, ତାହା ଏହାଦ୍ୱାରା ସାବ୍ୟସ୍ତ ହେଲା । ଇନ୍ଦିରାଗାନ୍ଧୀଙ୍କ ସରକାରଙ୍କର ଏହି ପଦକ୍ଷେପ ଏ ଦେଶର ଜନତା ପ୍ରତି ଏକ ଆହ୍ୱାନ ଓ ମହାତ୍ମାଗାନ୍ଧୀଙ୍କ ଡ଼ାକରାରେ ସ୍ୱାଧୀନତା ପାଇଁ ରକ୍ତ ଦେଇଥିବା ଏ ଦେଶର ଜନତା ଯେ ତାହା ଉପରେ ଏ ଆକ୍ରମଣକୁ ମୁଣ୍ଡପାତି ସହିନେବେ ନାହିଁ ଏହା ଆମର ଦୃଢ଼ ବିଶ୍ୱାସ । ଜୟପ୍ରକାଶଙ୍କ ପନ୍ଥାରେ ପୂର୍ଣ୍ଣବିପ୍ଳବ ପାଇଁ ସଂଗଠିତ ହେବା ଓ ସଂଗ୍ରାମ କରିବା ଏଥିରୁ ମୁକ୍ତିର ଏକମାତ୍ର ପନ୍ଥା । ସେଥିପାଇଁ ଓଡ଼ିଶାର ଜନସାଧାରଣଙ୍କୁ ଅଣ୍ଟାଭିଡ଼ିବାକୁ ଆମେ ନିବେଦନ କରୁଛୁ ।

ଜୁନ୍ ୨୯ ତାରିଖ ଠାରୁ ଦେଶବ୍ୟାପି ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କରିବା ପାଇଁ ଜୟପ୍ରକାଶଜୀଙ୍କ ନେତୃତ୍ୱରେ ଅଖିଳ ଭାରତ ଜନସଂଘର୍ଷ ସମିତି ସ୍ଥିର କରିଛନ୍ତି । ଏବେ ଆଉ କେବଳ ପ୍ରଧାନମନ୍ତ୍ରୀଙ୍କ ଇସ୍ତଫା ଦାବୀ ପ୍ରଶ୍ନ ନାହିଁ । ଏକଛତ୍ର ଶାସନ ବିରୋଧରେ ଓ ପୂର୍ଣ୍ଣବିପ୍ଳବ ପାଇଁ ଏହି ଜୁନ୍ ୧୯ ତାରିଖରୁ ସାରା ଓଡ଼ିଶାରେ ଲୋକଙ୍କୁ ବର୍ତ୍ତମାନ ପରିସ୍ଥିତି ବୁଝାଇବା ଓ ସଂଗ୍ରାମ ସମିତି ମାଧମରେ ସଂଗଠିତ କରିବା ଉଦ୍ୟମ ଆରମ୍ଭ କରାଯାଉ । ଏଥିପାଇଁ ବଜାର, ଛକ ଓ ଗାଁ ଗହଳିରେ ସର୍ବତ୍ର ସଭା କରାଯାଉ । ସରକାରଙ୍କ ପକ୍ଷରୁ ସଭା ଓ ଶୋଭାଯାତ୍ରା ଆଦି ଉପରେ କଟକଣା ଜାରିକରାଗଲେ ତାହା ଭଙ୍ଗ କରିବାର ବିଧିବଦ୍ଧ କାର୍ଯ୍ୟକ୍ରମ ନିଆଯାଉ, ଆଗକୁ କାର୍ଯ୍ୟକ୍ରମ ଏହାପରେ ଯଥା ସମୟରେ ଦିଆଯିବ ।''

ଏହି ଦୁଇ ବୁଲେଟିନ୍ ୨୮.୬.୧୯୭୫ରେ ବାଲିଗୁଡ଼ାରେ ପହଞ୍ଚିଲା । ବିଶ୍ୱନାଥ ଆଞ୍ଚାଙ୍କୁ ପୁଣି ଏକ ଆହ୍ୱାନ, ସାଧାରଣ ମଣିଷ ଏବେ ଘୋର ଦୁର୍ଦ୍ଦିନରେ, ପୁଣି ସେଇ ଭୟ; ସେଇ ଆତଙ୍କ, ସେଇ ଶାସନ-ତନ୍ତ୍ର । ପୁଣିଥରେ ସଂଗ୍ରାମ କରିବାକୁ ହେବ ।

ବାଲିଗୁଡ଼ା ବନବାସୀ ସେବା ସମିତିରେ ଥିବା ନିଜ କୋଠରୀ କୋଣରେ ରଖା ହୋଇଥିବା ମାଠିଆରୁ ପାଣି ଗିଲାସେ ପିଇ କାନ୍ଥରେ ଟଙ୍ଗାହୋଇଥିବା ମହାପୁରୁଷ ମାନଙ୍କ ଫଟୋଗୁଡ଼ିକୁ ସେ ଥରେ ଦେଖିନେଲେ । ଦେଖିନେଲେ ସେହି ସହିଦ ମାନଙ୍କର ନାମ ଯେଉଁ ମାନେ ଦେଶର ସ୍ୱାଧୀନତା ପାଇଁ ଜେଲ ଭିତରେ ପ୍ରାଣ ଦେଇଥିଲେ, ଫାଶୀ ପାଇଥିଲେ ।

ପଟା ଖଟର ଦାଢ଼ରେ ବସି ସେ ପଢ଼ିନେଲେ ସେଇ ଦୁଇଟି ବୁଲେଟିନ୍‌କୁ । ସକାଳର ସୂର୍ଯ୍ୟୋଦୟ ହେବାକୁ ଯାଉଛି । ଆଉ ଅଳ୍ପ ସମୟପରେ ଆଶ୍ରମର ନିତି ଦିନିଆ କାମ ଆରମ୍ଭ ହେବ । ସେ ପ୍ରାର୍ଥନାରେ ଯୋଗଦେବା ପାଇଁ ବାହାରିଲେ । ଆଶ୍ରମର ପିଣ୍ଡାରୁ ପିଲାମାନଙ୍କ ସମବେତ କଣ୍ଠରେ ଶୁଭିଲା :

ଯେଉଁଠାରେ ଖାଲି ଲୁହ ପ୍ରଭୁ ହେ !
ସେହିଠାରେ ମୋତେ ନିଅ
ଆଜୀବନ ଯିଏ କାନ୍ଦୁଛି ଖାଲି
ପୋଛିବି ତା ଆଖି ଲୁହ, ପ୍ରଭୁ ହେ ।
ଜୀବନକୁ ଯିଏ ମଣିଅଛି ଭାର
ଚିରଦିନ ମୁଦା ହସର ଦୁଆର
ଜୀବନ ମରଣ ଭେଦ ନ ବୁଝିଣ
ବଞ୍ଚିବା ତା ଦୁର୍ବିସହ, ପ୍ରଭୁ ହେ ।
ସେହିଆଡ଼େ ମୋତେ ନିଅ ଭଗବାନ ନିଅ
ପୋଛିବି ମୁଁ ତା'ର ସଜଳ ଆଖିର ଲୁହ ।
କହିବି ଡାହାରେ ଡ଼ାକି
ଶୁଣ ହେ ଦୁଃଖର ସାଥୀ
ଆମ ଭଗବାନ ଦେଇଛି ଯେ ଦାନ
ମୋ ଠାରୁ ତା' କାଢ଼ିନିଅ, ସାଥୀ ହେ
ମୋତେ ତୁମ ଲୁହ ଦିଅ ।

ଏହି ପ୍ରାର୍ଥନାରେ ଥିଲା ଦଳିତ ନିଷ୍ପେଷିତ ମଣିଷ ପାଇଁ ପ୍ରେରଣା ଦେବାକୁ ପ୍ରଭୁଙ୍କ ଠାରେ ପ୍ରାର୍ଥନା । ପ୍ରାର୍ଥନାର ଶକ୍ତି ଅସୀମ । ଏହା ମନକୁ ଶାନ୍ତ, ଦ୍ରବିତ କରେ । ଭଗବତ ବିଶ୍ୱାସ ମନରେ ଜଗାଏ । ଆତ୍ମିକ ଶକ୍ତି ଦିଏ । ଦୀର୍ଘ ୩୫ ବର୍ଷର ଅନୁଭବରେ ବିଶ୍ୱନାଥ ଆଞ୍ଚା ଏହା ଜାଣି ପାରିଥିଲେ ।

ସେ ମନେକଲେ ଏହି ଦୁଇଟି ବୁଲେଟିନ୍ ଯେମିତି ପୁଣିଥରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ନେଇ ଆସିଛି ତାଙ୍କ ପାଖକୁ । ସେ ମାନସିକ ସ୍ତରରେ ପ୍ରସ୍ତୁତ ହେଲେ

ଏହି ସଂଗ୍ରାମ ଚଳାଇ ରଖିବାକୁ । ତାଙ୍କର ମନେ ପଡ଼ିଲା ମହାତ୍ମାଙ୍କ ଗୋଟିଏ କଥା ଯାହା ସେ ୧୯୪୪ରେ କହିଥିଲେ । ସ୍ୱରାଜ ଆସୁଛି ମାତ୍ର ତାହା ମୋର କଳ୍ପିତ ସ୍ୱରାଜ ନୁହେଁ । ମୋ ସ୍ୱରାଜ ପାଇଁ ପୁଣି ଥରେ ଲଢ଼ିବାକୁ, ଜନଶକ୍ତିକୁ ସଂଗଠିତ କରିବାକୁ ହେବ ।'' ୧୯୪୮ ମସିହାରେ ମହାତ୍ମା ତାଙ୍କ ଉଇଲନାମାରେ ଲେଖିଥିଲେ, ''ଭାରତରେ ଏବେ ମଧ୍ୟ ସାମାଜିକ, ନୈତିକ ଓ ଆର୍ଥିକ ସ୍ୱାଧୀନତା ଅର୍ଜନ କରିବାର କାମ ବାକି ଅଛି । ଗଣତାନ୍ତ୍ରିକ ଲକ୍ଷ୍ୟ ଦିଗରେ ଭାରତ ଗତି କରୁଥିଲା ବେଳେ ସାମରିକ ଶକ୍ତି ଉପରେ ଜନଶକ୍ତିର ବିଜୟ ପାଇଁ ଆନ୍ଦୋଳନ ହେବ ହିଁ ହେବ ।''

ବିଶ୍ୱନାଥ ଆଞ୍ଚା ପୁଣିଥରେ କନ୍ଧମାଳ ଓ କୋରାପୁଟ ଜିଲ୍ଲାରେ କର୍ମୀମାନଙ୍କୁ ସଂଗଠିତ କରି ବୁଲେଟିନ୍ ପ୍ରଚାର ଓ ସଭା ସମିତି କରି ଲୋକମତ ଜାଗ୍ରତ କରିବା ପାଇଁ ବାହାରିଲେ । ସେତେବେଳକୁ ଓଡ଼ିଶାର ବହୁକର୍ମୀ ଗିରଫ ହୋଇ ବିଭିନ୍ନ ଜେଲରେ ଥିଲେ ।

ଜୁଲାଇ ମାସର ବର୍ଷା, ଶୀତକୁ ଖାତିରି ନକରି ବିଶ୍ୱନାଥ ଆଞ୍ଚା କେତେକ ଯୁବ ଓ ଆଗ୍ରହୀ କର୍ମୀଙ୍କ ସହ କନ୍ଧମାଳର କେତେ ଜାଗାରେ ପ୍ରଚାରପତ୍ର ବାଣ୍ଟି କୋରାପୁଟ ଅଭିମୁଖେ ଯାତ୍ରା କଲେ ।

କୋରାପୁଟ ଆସିବା ବାଟରେ ଲକ୍ଷ୍ମୀପୁର, ବନ୍ଧୁଗାଁ, ନାରାୟଣ ପାଟଣା, କାକରିଗୁମ୍ମାରେ ବୁଲେଟିନ୍ ବଣ୍ଟାହେଲା । କୋରାପୁଟରେ ରହଣି କରି ନିଶାକର ଦାସଙ୍କ ସହିତ ଆଲୋଚନା କରି ସେଠୁ ତାଙ୍କ ସହିତ ଜୟପୁରଗଲେ । ଜୟପୁରରୁ ମାଲକାନଗିରି, ମୁଦୁଲି ପଡ଼ା । ଏସବୁ ଅଞ୍ଚଳରେ ଜନସଚେତନତା ଜାଗ୍ରତ କରି ବିଶ୍ୱନାଥ ଆଞ୍ଚା ଆସି ପହଞ୍ଚିଲେ ମାଥିଲିରେ । ମାତିଲି ଶହିଦ ଲକ୍ଷ୍ମଣ ନାୟକଙ୍କ ସ୍ମୃତିରେ ଗୋଟିଏ ଜଣାଶୁଣା ଗାଁ । ମହୁଲ, ହରିଡା, ଶାଳବଣରେ ଘେରା । ଏହି ଗାଁ ଦେଖିଥିଲା ୧୯୪୨ ଅଗଷ୍ଟ ୨୧ର ସ୍ୱାଧୀନତା ସଂଗ୍ରାମ । ସଂଗ୍ରାମୀଙ୍କ ପୁଣ୍ୟଭୂମି ମାତିଲି । ଏଠା ଥାନାରେ ୧୭ ଜଣ ପୋଲିସ ବିଶ୍ୱନାଥ ଆଞ୍ଚା, ନିଶାକର ଦାସ ଓ ସ୍ଥାନୀୟ ଭୂଦାନ କାର୍ମୀ ବାବାଜୀ ସାହୁଙ୍କୁ ରଖି ଜରୁରୀକାଳୀନ ପରିସ୍ଥିତି ତଥା ଉପରର ନିର୍ଦ୍ଦେଶ ଅନୁସାରେ ଚାରିଘଣ୍ଟାକାଳ ଜେରା କଲେ । ଖାନତଲାସ କରାଗଲା ଆପତ୍ତି ଜନକ କାଗଜ ପତ୍ର ମିଳିବା ଆଶାରେ । କିଛି ନପାଇ ପୋଲିସ ଶେଷରେ ବାଧହୋଇ ବିଶ୍ୱନାଥ ଆଞ୍ଚା ଓ ଅନ୍ୟକର୍ମୀ ମାନଙ୍କୁ ଛାଡ଼ିଦେଲେ ।

ଜରୁରୀ କାଳୀନ ପରିସ୍ଥିତିରେ ଭୂମିଗତ ହୋଇ ଗୁପ୍ତରେ ବିଶ୍ୱନାଥ ଆଞ୍ଚା କୋରାପୁଟ ଓ କନ୍ଧମାଳରେ ଏହା ବିରୋଧରେ କାମ କଲେ । ପରିଣାମକୁ ଖାତିରି ନକରି ନିର୍ଭୟ ଭାବେ ଦଳିତ ମଣିଷ ମନରୁ ଭୟ ଛଡ଼ାଇବା କାମ କରିବାର ଅଭ୍ୟାସ ଏବେ ମଧ୍ୟ ତାଙ୍କୁ ପ୍ରେରଣା ଦେଉଥିଲା । ପରାଧୀନ ମଣିଷ ଶାସନର ନାଲିଆଖି ଓ ଶୋଷଣର ଶିକାର ହେବାରେ ଐତିହାସିକ ସତ୍ୟତା ଥିଲା କିନ୍ତୁ ସ୍ୱାଧୀନ ଭାରତରେ କେବଳ ଜଣେ ବ୍ୟକ୍ତିର ଶାସନ କରିବାର ଏକଛତ୍ର ମନୋଭାବ ଏବଂ କେବଳ କେତେକ ଚାଟୁକାରଙ୍କ ଆନୁଗତ୍ୟକୁ ପୁଞ୍ଜିକରି ଗଣତନ୍ତ୍ର, ସମ୍ବିଧାନ ଓ ଆଦର୍ଶକୁ ହେୟଜ୍ଞାନ କରିବା ସହ ନାଗରିକ ସ୍ୱାଧୀନତାକୁ ଆଇନ ମାଧ୍ୟମରେ ବାତିଲ କରି, ଭୟ, ଆତଙ୍କ ଓ ଦଣ୍ଡର ଶାସନ ଚଳାଇବା ଉଚିତ ନଥିଲା । ଏଣୁ ଏହାର ପ୍ରତିବାଦ କରିବା, ବିରୋଧ କରିବା ସଚେତନ ନାଗରିକଙ୍କର ନୈତିକ କର୍ତ୍ତବ୍ୟ ଥିଲା । ବିଶ୍ୱନାଥ ଆଞ୍ଚା ଓ ତାଙ୍କ ସମଧର୍ମୀ ସମସ୍ତେ ଏଥିପାଇଁ ଏକତାବଦ୍ଧ ହୋଇ କାମକଲେ । କେତେ ପୋଲିସ୍ ନଜରରୁ ନିଜକୁ ଆପାତତଃ ନିରାପଦ ଦୂରତାରେ ରଖି କାମକଲେ ଆଉ କେତେ ଜେଲ ଭିତରେ ରହିଲେ । ତଥାପି ସଂଗ୍ରାମ ଜାରି ରହିଲା ।

ବିନୋବାଜୀ ଜରୁରୀକାଳୀନ ପରିସ୍ଥିତି ସମୟରେ କୌଣସି ମତାମତ ଦେବା ଉଚିତ ମନେକଲେ ନାହିଁ ବରଂ ନିଜର ଆଧ୍ୟାତ୍ମିକ ଉନ୍ନତି ପାଇଁ ୨୫-୧୨-୧୯୭୫ ଯାଏ ମୌନବ୍ରତ ରଖିବାର ଘୋଷଣାକଲେ ଓ ଏହି ସମୟ ଭିତରେ ସେ ପଢ଼ାପଢ଼ିରେ ବିଶେଷ ମନଦେବେ ବୋଲି କହିଲେ । କେତେକ ଭୂଦାନ ଓ ସର୍ବୋଦୟ କର୍ମୀଙ୍କୁ ଏହା ଭଲ ଲାଗିଲା ନାହିଁ । ଏଣୁ ସେମାନେ ନିଜ ମତରେ ଜରୁରୀ କାଳୀନ ପରିସ୍ଥିତିର ମୁକାବିଲା କରିବାକୁ ସ୍ଥିର କରିଥିଲେ ।

ପୋଲିସ ନଜରରୁ ଦୂରରେ ରହି ଆଜି ଏହି ଗାଁ ତ କାଲି ସେଇ ଗାଁରେ ପଦଯାତ୍ରା କରି ଲୋକଙ୍କୁ ବୁଝାଇବା, ସଂଗଠିତ କରିବା କାମ ଚାଲିଥାଏ । ଜରୁରୀକାଳୀନ ପରିସ୍ଥିତି ଲୋକଙ୍କ ମନରେ ଏମିତି ଭୟ ସୃଷ୍ଟି କରିଥାଏ ଯେ ଲୋକେ ମୁହଁ ଖୋଲିବାକୁ ଡ଼ରୁଥାନ୍ତି । ସ୍ୱାଧୀନତା ପୂର୍ବର ଅବସ୍ଥାଠାରୁ ଏ ଅବସ୍ଥା ଭୟଙ୍କର ହୋଇ ଉଠୁଥାଏ । ଚାରିଆଡେ଼ ଆତଙ୍କରାଜ, ଧରପଗଡ଼, ଜେଲଦଣ୍ଡ, ପ୍ରହାର, ଅମାନବୀୟ ବ୍ୟବହାର । କେହି ଛାଡ଼ ପାଇବାର ନାହିଁ । ଏକଛତ୍ର ଶାସନର ଲଙ୍ଗଳା ନିଷ୍ଠୁରତା, ବର୍ବରତାର ଶିକାର ହୋଇ

ସେତେବେଳକୁ ୩୪,୦୦୦ ରୁ ଅଧିକ ଲୋକ ଜେଲ ଭିତରେ ଥାନ୍ତି । ଏ ସବୁ ଶୁଣି ବିଶ୍ୱନାଥ ଆଞ୍ଚା ଅତୀତ ଓ ବର୍ତ୍ତମାନକୁ ତୁଳନା କରୁଥିଲେ । ତାଙ୍କ ମନରେ ଗାନ୍ଧୀଙ୍କ ଆଦର୍ଶ, ରାମରାଜ୍ୟର କଳ୍ପନା, ସତ୍ୟ, ଅହିଂସା, ତ୍ୟାଗ ଓ କଷ୍ଟସହି କଷ୍ଟରୁ ମୁକ୍ତି ପାଇବାର କଥା ଯେମିତି ଅନେକ ପ୍ରଶ୍ନ ମୁଣ୍ଡଟେକୁ ଥିଲା । ଏ ଦେଶ ସ୍ୱାଧୀନ ହେବାପରେ କେଉଁବାଟରେ ଯାଉଛି ସତରେ !

**ଦେଶର ଅବସ୍ଥା :**

ଦେଶରେ ୨୬-୬-୭୫ରେ ଜରୁରୀ ପରିସ୍ଥିତି ଜାରି ହେଲା । ଜୁନ୍.ମାସ ୨୯ ତାରିଖ ଦିନ ଭାରତର ରାଷ୍ଟ୍ରପତି ଭାରତର ଆଭ୍ୟନ୍ତରୀଣ ନିରାପତ୍ତା ରକ୍ଷା ଆଇନ ବଳରେ ଗିରଫ ହେଉଥିବା ବ୍ୟକ୍ତିମାନଙ୍କୁ କାହିଁକି ଗିରଫକରାଗଲା ସେ ସମ୍ବନ୍ଧରେ କୌଣସି କାରଣ ଦର୍ଶାଯିବ ନାହିଁ ବୋଲି ଆଦେଶ ଜାରି କଲେ । ଏହା ଫଳରେ ପୋଲିସ ଓ ଆଇନ ଶୃଙ୍ଖଳା ଅଧିକାରୀଙ୍କୁ ଅମାପ କ୍ଷମତା ଦେଇ ଦିଆଗଲା ।

ଶ୍ରୀମତୀ ଗାନ୍ଧୀଙ୍କ ପରାମର୍ଶକ୍ରମେ ଦେଶବିରୋଧୀ କାର୍ଯ୍ୟରେ ଲିପ୍ତଥିବାର ଅଭିଯୋଗରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ, ଆନନ୍ଦ ମାର୍ଗ, ଜାମାତ-ଇ-ଇସଲାମ ଓ ଦେଶର ୨୩ଟି ବିଭିନ୍ନ ସାମାଜିକ ସଂଗଠନକୁ ଅବୈଧ ଘୋଷଣା କରାଗଲା ଏବଂ ଏମାନଙ୍କ କାର୍ଯ୍ୟକଳାପ ଉପରେ କଡ଼ା ନଜର ରଖିବା ପାଇଁ ତା ୦୪-୦୭-୧୯୭୫ ଦିନ ଆଦେଶ ଜାରି କରାଗଲା ।

ଶ୍ରୀମତୀ ଗାନ୍ଧୀଙ୍କ ଜରୁରୀକାଳୀନ ପରିସ୍ଥିତିର ବିରୋଧ କରି ୨୬.୦୭.୧୯୭୫ଦିନ ମାନ୍ଦ୍ରାଜ ଠାରେ ଦ୍ରାବିଡ଼ ମୁନେତ୍ରା କାଜାଗମ୍ ଦଳ ପକ୍ଷରୁ ବିଶାଳ ଜନ ସମାବେଶର ଆୟୋଜନ କରାଯାଇ ନିନ୍ଦାବାଦ ପ୍ରସ୍ତାବ ଗ୍ରହଣ କରାଗଲା ଫଳରେ କଂଗ୍ରେସ ଦଳର କର୍ମୀମାନେ ଆହୁରି ଉତ୍କ୍ଷିପ୍ତ ହେଲେ ।

ଜୁଲାଇ ମାସ ଶେଷ ସପ୍ତାହରେ ଜରୁରୀ କାଳୀନ ପରିସ୍ଥିତି ଜାରିକୁ ବିରୋଧ କରିବା ଅଭିଯୋଗରେ ୩୦ ଜଣ ଲୋକସଭା ସଦସ୍ୟଙ୍କୁ ଗିରଫ କରି ଜେଲ ଭିତରେ ପୂରାଇ ଦିଆଗଲା ଏବଂ ପାର୍ଲିଆମେଣ୍ଟ, ଜରୁରୀକାଳୀନ ପରିସ୍ଥିତି ଜାରି କରାଯିବା ଘଟଣାକୁ ଅନୁମୋଦନ କଲେ ।

ଅଗଷ୍ଟ ମାସ ୬ ତାରିଖ ଦିନ ନିର୍ବାଚନ ଆଇନକୁ ବଦଳାଇ ଦିଆଗଲା ଏବଂ ଆହ୍ଲାବାଦ ହାଇକୋର୍ଟର ରାୟ ଯେପରି କାର୍ଯ୍ୟକାରୀ ହୋଇ ପାରିବ ନାହିଁ ସେଥିପାଇଁ ବ୍ୟବସ୍ଥା ଖଞ୍ଜାଗଲା । ଅଗଷ୍ଟ ୭ ତାରିଖ ଦିନ ପାର୍ଲିଆମେଣ୍ଟ (ଜେଲ ଯାଇଥିବା ଓ ଭୂମିଗତ ହୋଇଥିବା ସାଂସଦକୁ ଛାଡ଼ି) ୩୯ ତମ ସମ୍ବିଧାନ ସଂଶୋଧନ ବିଲକୁ ଅନୁମୋଦନ କଲେ । ଏଥିରେ ଭାରତର ରାଷ୍ଟ୍ରପତି, ଉପରାଷ୍ଟ୍ରପତି, ଲୋକସଭାର ବାଚସ୍ପତି ତଥା ପ୍ରଧାନମନ୍ତ୍ରୀଙ୍କୁ ବିଚାରଳୟର ପରିସର ମଧ୍ୟରୁ ଉର୍ଦ୍ଧ୍ୱରେ ରଖାଯିବାର ବ୍ୟବସ୍ଥା ରହିଲା । ୧୯୭୫ ସେପ୍ଟେମ୍ବର ମାସର ପ୍ରଥମାର୍ଦ୍ଧରେ ମିସା ଆଇନର ସଂଶୋଧନ କରି ନିୟମ ରଖାଗଲା ଯେ ଅଦାଲତ, ମିସା ଆଇନ ଅନୁସାରେ ଅଟକ ହୋଇଥିବା ବନ୍ଦୀଙ୍କୁ କେଉଁ କାରଣରୁ ବନ୍ଦୀକରି ଅଟକ ରଖାଯାଇଛି ତାହା ପଚାରି ପାରିବେ ନାହିଁ । ଅଦାଲତର କ୍ଷମତାକୁ ବହୁ ପରିମାଣରେ ସଙ୍କୁଚିତ କରି ରଖାଗଲା ।

## ନଭେମ୍ବର ମାସ ୧୨ ତାରିଖ ୧୯୭୫ ମସିହା :

୧୯୭୫ ମସିହା ନଭେମ୍ବର ମାସ ୧୨ ତାରିଖ ଦିନ ଜୟପ୍ରକାଶଜୀ ଜେଲ ଭିତରେ ଅତ୍ୟାଚାରିତ ହୋଇ ମୃତପ୍ରାୟ ପଡ଼ିରହିବା ଦେଖି ସରକାର ତାଙ୍କୁ ଚିକିତ୍ସାପାଇଁ ଖଲାସ କଲେ । ମାଳତୀ ଦେବୀ ଓ ମା ରମାଦେବୀ ଜୟପ୍ରକାଶଜୀଙ୍କୁ ଦେଖିବା ପାଇଁ ଦିଲ୍ଲୀ ଯାତ୍ରା କଲେ ।

ଏଣେ ବାରିପଦା ଜେଲରେ ନବବାବୁ ହଠାତ୍ ରକ୍ତଚାପ ଜନିତ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ । ସେଦିନର ସ୍ମୃତିକୁ ମନେ ପକାଇ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଲେଖନ୍ତି "୧୯୭୫ରେ ଏମେର୍ଜେନ୍ସୀ ବେଳେ ସମ୍ପୂର୍ଣ୍ଣ ବିଦ୍ରୋହରେ ଏକ ଆନ୍ତରିକ ଆବେଗରେ ଝାମ୍ପଦେଲେ । ଜୀବନରେ ଯେଉଁ ଅଧୀରତା, ବ୍ୟାକୁଳତା ତାହା ସାଙ୍ଗକୁ ଶାରୀରିକ ଦୁର୍ବଳତା ତାଙ୍କ ମନକୁ ଅସ୍ଥିର କରୁଥିଲା, ତାହା କୁଆଡେ ଉଭେଇ ଗଲା । ବିଭିନ୍ନ ଜାଗାରେ ଗିରଫଦାରୀ ଆରମ୍ଭ ହୋଇ ଯାଇଥିଲା । ...ମାତ୍ର ଏହି ବେଳର ବନ୍ଦୀ ଜୀବନ ହିଁ ସବୁଠାରୁ ଦୁଃଖ ଦାୟକ କାହାଣୀ । ବନ୍ଦୀଶାଳା ଭିତରେ ତାଙ୍କ ପ୍ରତି ଯେଉଁ ବ୍ୟବହାର କରାଗଲା, ତାହା ବ୍ରିଟିଶ ଅମଳର କଟକଣାରୁ ବଳିପଡ଼ିଲା; ଅତି ଅମନୁଷ୍ୟୋଚିତ ଓ ଅନିଷ୍ଟସୂଚକ ଦୁର୍ବ୍ୟବହାର । ଏଥିରେ ହିଁ ତାଙ୍କର ଯେଉଁ ସ୍ୱାସ୍ଥ୍ୟଭଙ୍ଗ ଘଟିଲା, ତାହା ଆଉ ସୁଧୁରି ପାରିଲା ନାହିଁ ।"

"ଜୟପ୍ରକାଶଙ୍କୁ ରକ୍ଷାକର" ନାମକ ଏକ ନିବେଦନ ପତ୍ର ବିଲାତରୁ ବାହାରିଲା । ଏହି ନିବେଦନ ପାଇଁ ଯେଉଁ କମିଟୀ ଗଠନ କରାଯାଇଥିଲା ତାର ସଭାପତି ଥିଲେ ନୋବେଲ ପୁରସ୍କାର ବିଜେତା ଶ୍ରୀ ନୋଏଲ୍ ବେକର । ସେହି କମିଟୀ ପକ୍ଷରୁ ଲଣ୍ଡନରେ ରହୁଥିବା ଶହ ଶହ ଲୋକ ଦସ୍ତଖତ କରି ସାରା ପୃଥିବୀରେ ଏହି ନିବେଦନ ପତ୍ରର ପ୍ରଚାରକଲେ । ତାହା ଯେପରି ଭାରତ ଭିତରକୁ ନଆସେ ସେଥିପ୍ରତି ସରକାର କଡ଼ା କଟକଣା ଜାରିକଲେ ।

ଏ ଭିତରେ ୨୫-୧୨-୧୯୭୫ ଦିନ ବିନୋବାଜୀ ତାଙ୍କ ମୌନବ୍ରତ ଭାଙ୍ଗିଲେ ।

## ଜରୁରୀ ଅବସ୍ଥା ଓ ନନ୍ଦିନୀଶତପଥୀ :

ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପ୍ରକୃତ ପ୍ରତିନିଧିଭାବେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାରେ ଯେଉଁ ଦମନଲୀଳା ଚଳାଇଲେ ତାହା ଯେ ସମ୍ପୂର୍ଣ୍ଣ ଅଗଣତାନ୍ତ୍ରିକ ଥିଲା ଏହା ସମସ୍ତେ ସ୍ୱୀକାର କଲେ । ଜରୁରୀ ପରିସ୍ଥିତି ସମୟରେ ମିସା ବନ୍ଦୀମାନଙ୍କୁ ଯେଉଁ ପ୍ରକାର ଶାରୀରିକ ଯନ୍ତ୍ରଣା ଦିଆଗଲା ତାହା ପରାଧୀନ ଭାରତରେ ମଧ୍ୟ ଶୁଣାନଥିଲା ।

ଜର୍ଜ ଫର୍ଣ୍ଣାଡେସ୍‌ଙ୍କ ଭାଇ ଲରେନ୍‌ସଙ୍କ ପ୍ରତି ଅକଥନୀୟ ଅତ୍ୟାଚାର, ବାଙ୍ଗାଲୋରର ସ୍ନେହଲତା ରେଡୀଙ୍କ ପ୍ରତି ବର୍ବର ଅତ୍ୟାଚାର ଭାଷାରେ କହିହେବ ନାହିଁ । ସେମିତି ଓଡ଼ିଶାର ବହୁଜେଲରେ ମିସା ଅଟକବନ୍ଦୀମାନଙ୍କୁ ଯେଉଁ ଅସହ୍ୟ ଯନ୍ତ୍ରଣା ଦିଆଯାଇଥିଲା ତାର ଇୟତ୍ତା ନାହିଁ ।

ସେ ସମୟରେ ଓଡ଼ିଶାରେ ପ୍ରତିବାଦର ସ୍ୱର ମଧ୍ୟ ତୀବ୍ର ହୋଇଥିଲା । ଭୂଦାନକର୍ମୀ, ସର୍ବୋଦୟ କର୍ମୀ, ସର୍ବସେବା ସଂଘର କର୍ମୀମାନେ ଦୃଢ଼ ଭାବରେ ନିର୍ଭୀକ ଭାବେ କୌଣସି ପରିଣାମକୁ ଖାତିରି ନ କରି ପ୍ରଚାରପତ୍ର, ସଭା ସମିତି, ଗୁପ୍ତ ବୁଲେଟିନ୍ ଦ୍ୱାରା ଜରୁରୀ କାଳୀନ ପରିସ୍ଥିତିର ବିରୋଧ କଲେ ।

ଓଡ଼ିଶାର ବିରୋଧୀଦଳର ମୁଖ୍ୟ ବିଜୁବାବୁ ଜେଲ ଭିତରେ ଥାଇ ଜରୁରୀ ପରିସ୍ଥିତିର ବିରୋଧରେ ଲିଫ୍‌ଲେଟ୍, ପ୍ରଚାରପତ୍ର, ପୋଷ୍ଟର ଗୁପ୍ତଭାବରେ ବଣ୍ଟାଇଲେ । ଓଡ଼ିଶାରେ

ଗିରଫ ହୋଇଥିବା ମିସା ଅଟକବନ୍ଦୀ ସର୍ବଶ୍ରୀ ହରିଶ୍ ଚନ୍ଦ୍ର ବକ୍ସିପାତ୍ର, ହରିହର ବାହିନୀପତି, ପଦ୍ମଚରଣ ସାମନ୍ତସିଂହାର, ରବିରାୟ, ବିଶ୍ୱନାଥ ପଣ୍ଡିତ, ଅଶୋକ ଦାସ ଓ ଶ୍ରୀକାନ୍ତ ଜେନା ଥିଲେ, ତା ଛଡ଼ା ବିଶ୍ୱଭୂଷଣ ହରିଚନ୍ଦନ, ଅମର ଶତପଥୀ, ରାମକୃଷ୍ଣ ପଟ୍ଟନାୟକ, ସୁରେନ୍ଦ୍ରନାଥ ନାୟକ, ଭାଗବତ ବେହେରା, ତ୍ରିଲୋଚନ କାନୁନ୍‌ଗୋ, ବ୍ରଜ ତ୍ରିପାଠୀ, ପ୍ରଦୀପ୍ତ ମହାରଥୀ ମଧ୍ୟ ଗିରଫ ହେଲେ । ନଳିନୀ ମହାନ୍ତି, ବିଜୟ ମହାପାତ୍ର, ଉମେଶ ସ୍ୱାଇଁ ଆତ୍ମଗୋପନ କରି ଲିଫ୍‌ଲେଟ୍ ବାଣ୍ଟିଲେ ।

ଓଡ଼ିଶାରେ ଆଖିବୁଜା ଗିରଫଦାରୀ ପାଇଁ ଶ୍ରୀମତୀ ନନ୍ଦିନୀ ଶତପଥୀ ଓ ତାଙ୍କ ପଛରେ ଥିବା ବହୁଲୋକ ଦାୟୀ ଏହା ହିଁ ଐତିହାସିକ ସତ୍ୟ ।

## ୧୯୭୬ରେ ଦେଶର ଅବସ୍ଥା :

କଳକାରଖାନାରେ ହରତାଳ, ଷ୍ଟ୍ରାଇକ୍ ଆଦିକୁ ନିଷିଦ୍ଧ କରି ଦିଆଗଲା ଏବଂ ବୋନସ୍ ଆଇନର ପ୍ରତିବାଦ କରିବାରୁ ପଶ୍ଚିମବଙ୍ଗ ଟ୍ରେଡ ୟୁନିଅନର ୧୬.୦୦୦ ସଦସ୍ୟଙ୍କୁ ଗିରଫ କରାଗଲା । ରାଷ୍ଟ୍ରପତି ଭାରତ ସମ୍ବିଧାନର ୧୯ ଧାରାରେ ନାଗରିକମାନଙ୍କୁ ଦିଆଯାଇଥିବା ୭ଟି ମୌଳିକ ଅଧିକାରକୁ ବାତିଲ କରିଦେଲେ । ୩୧-୦୧-୭୬ ଦିନ ତାମିଲନାଡୁ ସରକାର ଓ ବିଧାନସଭାକୁ ଭାଙ୍ଗି ଦିଆଗଲା ଓ ୭୦୦ ରାଜନୈତିକ କର୍ମୀଙ୍କୁ ବନ୍ଦୀ କରାଗଲା । ମାର୍ଚ୍ଚ ମାସ ୨ ତାରିଖ ଦିନ ପୋଲିସ ହାଜତଭିତରେ ପୋଲିସର ଅତ୍ୟାଚାର ସହିନପାରି କାଲିକଟ୍ ଇନ୍‌ଜିନିଅରିଂ କଲେଜର ଛାତ୍ର ରାଜନ୍ ଓ ମାର୍ଚ୍ଚ ମାସ ୯ ତାରିଖରେ ବିଜୟନ୍ ନାୟାର ମୃତ୍ୟୁ ବରଣ କଲେ । ମାର୍ଚ୍ଚ ମାସ ୧୨ ତାରିଖରେ ଗୁଜରାଟ ସରକାରକୁ ଭାଙ୍ଗିଦିଆଯାଇ ରାଷ୍ଟ୍ରପତି ଶାସନ ଜାରି କରାଗଲା । ଏପ୍ରିଲ ୧୯ରେ ଯୁବକଂଗ୍ରେସ ନେତା ଶ୍ରୀ ସଞ୍ଜୟ ଗାନ୍ଧୀଙ୍କ ନେତୃତ୍ୱରେ ଦିଲ୍ଲୀର ତୁର୍କମେନ ଗେଟର ମସ୍‌ଜିଦ୍ ନିକଟରେ ଶହ ଶହ ବସ୍ତିବାସିନ୍ଦାଙ୍କୁ ଉଚ୍ଛେଦ କରାଯାଇ ସେମାନଙ୍କ ଘରକୁ ବୁଲଡୋଜର ଦ୍ୱାରା ଭାଙ୍ଗି ଦିଆଗଲା । ଏପ୍ରିଲ ୨୮ରେ ଦେଶର ୭ଟି ହାଇକୋର୍ଟ ଦେଇଥିବା ହେବିଅସ୍ କର୍ପସ ରିଟ୍‌କୁ ବାତିଲ କରି ସୁପ୍ରିମକୋର୍ଟର ମୁଖ୍ୟନ୍ୟାୟାଧିଶ ଏ.ଏନ୍.ରୟ, ଜରୁରୀକାଳୀନ ପରିସ୍ଥିତି ଜାରି ସମ୍ବନ୍ଧୀୟ କୌଣସି କାରଣ ବା ପ୍ରଶ୍ନ ପଚାରିପାରିବେ ନାହିଁ ବୋଲି ରାୟଦେଲେ । ମେ ୧୧ ତାରିଖରେ ପ୍ରସିଦ୍ଧ ହିନ୍ଦୀ ପ୍ରଚ୍ଛଦପଟ ଗାୟକ ଶ୍ରୀ ସଞ୍ଜୟଗାନ୍ଧୀଙ୍କ ଏକ କାର୍ଯ୍ୟକ୍ରମରେ ଗୀତ ଗାଇବାକୁ ମନା କରିଦେବା ଫଳରେ ତାଙ୍କ ନିର୍ଦ୍ଦେଶକୁ ତାମିଲକରି

ଅଲ ଇଣ୍ଡିଆ ରେଡ଼ିଓ କିଶୋରକୁମାରଙ୍କର କୌଣସି ଗୀତ ବଜାଇଲା ନାହିଁ । ଜୁନ୍ ୧୦ ତାରିଖ ୧୯୭୬ ରେ ଜର୍ଜ ଫର୍ଣ୍ଣାଡିସ୍‌ଙ୍କୁ କଲିକତା ଠାରେ ଗିରଫ କରାଗଲା ।

ଅକ୍ଟୋବର ୨ ତାରିଖରେ ଦିଲ୍ଲୀଠାରେ ମହାତ୍ମାଗାନ୍ଧୀଙ୍କ ସମାଧିପୀଠ ରାଜଘାଟଠାରେ ଆଚାର୍ଯ୍ୟ କୃପାଳିନୀ, ଏଚ୍.ଭି. କାମାଥ, ଡ଼ଃ ସୁଶୀଲା ନାୟାରଙ୍କୁ ଗିରଫ କରାଗଲା । ୧୮ ଅକ୍ଟୋବରରେ ଉତ୍ତର ପ୍ରଦେଶର ମୁଜାଫର ନଗରଠାରେ ବାଧ୍ୟତା ମୂଳକ ବନ୍ଧ୍ୟାକରଣର ପ୍ରତିବାଦ କରି ୪୩ ଜଣ ସାଧାରଣ ବ୍ୟକ୍ତି ପୋଲିସ ଗୁଳିରେ ହତହେଲେ । ନଭେମ୍ବର ୫ ତାରିଖ ଦିନ ଲୋକସଭା ସଂସଦର କାର୍ଯ୍ୟକାଳକୁ ଏକ ବର୍ଷ ବଢ଼ାଇଦେଲେ ଏବଂ କାର୍ଯ୍ୟକରୁଥିବା ଲୋକସଭା ନଭେମ୍ବର ୧୯୭୭ଯାଏ କାର୍ଯ୍ୟ କରିବ ବୋଲି ଅଧ୍ୟାଦେଶ ଜାରିହେଲା ।

ସେତେବେଳକୁ ବିଶ୍ୱନାଥ ଆଈଆ ବାଲିଗୁଡ଼ା ଅନୁଷ୍ଠାନର ସଭାପତି ଥିଲେ । ସେ ଅନୁଷ୍ଠାନରୁ ଇସ୍ତଫା ଦେଇ ଏମାର୍ଜେନ୍‌ସୀ ବିରୋଧରେ କାମ କରୁଥିଲେ । ସେ ସେତେବେଳ ବାଲିଗୁଡ଼ା ଅନୁଷ୍ଠାନ ସହ ଏକବାର ସମ୍ପର୍କ ତୁଟାଇ ବାହାରେ ଅଧିକାଂଶ ସମୟ ବୁଲି କାମ କରୁଥିଲେ ।

ଏହା ଭିତରେ ବିନୋବାଜୀ ଭାରତ ସରକାର ସେପ୍ଟେମ୍ବର ୧୧, ୧୯୭୬ ସୁଦ୍ଧା ଗୋବଧ-ବନ୍ଦ ପାଇଁ ଆଇନ୍ ତିଆରି ନକଲେ ସେ ଆମରଣ ଅନଶନ କରିବାର ଆହ୍ୱାନ ଦେଲେ । ଏଥିରେ ମଧ ଏକ ଚହଳ ପଡ଼ିଗଲା । ବିନୋବାଜୀ ତାଙ୍କ ମୌନବ୍ରତ ଭାଙ୍ଗିଲା ପରେ ଏକ ଆଚାର୍ଯ୍ୟ ସମ୍ମିଳନୀ ଡ଼କାଇଲେ । ସେଠି ଏହି ଆଚାର୍ଯ୍ୟଙ୍କ ଉପସ୍ଥିତିରେ ସେ ଜରୁରୀ କାଳୀନ ପରିସ୍ଥିତି ଉଠାଇଦେବାକୁ, ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିଦେବା ପାଇଁ ଖବର କାଗଜ ଉପରୁ କଟକଣା ଉଠାଇଦେବା ଏବଂ ନିର୍ବାଚନ କରାଇବାକୁ ପ୍ରସ୍ତାବ ଆଗତ କଲେ । ପ୍ରସ୍ତାବ ଗୃହୀତ ହେଲା । ମା ରମାଦେବୀ ବିନୋବାଜୀଙ୍କୁ ସାକ୍ଷାତ କରିବାକୁ ପୋନାର ଆଶ୍ରମଗଲେ ।

ମା ରମାଦେବୀ ଫେରିବା ପରେ ଓଡ଼ିଶା ସାରା ଗୋାବଧ ନିରୋଧ ଆଇନ କରିବା ପାଇଁ ଓଡ଼ିଶା ସରକାରଙ୍କ ଉପରେ ଚାପ ପକାଇବାକୁ ଗାନ୍ଧୀ ବିନୋବା ଆଦର୍ଶରେ

ଅନୁପ୍ରାଣିତ କର୍ମୀମାନଙ୍କୁ ଅନୁରୋଧ ଜଣାଇଲେ । ଶ୍ରୀମତୀ ନନ୍ଦିନୀ ଶତପଥୀ ବିନୋବାଜୀଙ୍କ ଗୋବଧ-ବନ୍ଦ ଆଇନ ସମ୍ବନ୍ଧୀୟ ବିବୃତ୍ତିକୁ ଛାପିବା ପାଇଁ ଓଡ଼ିଶାରେ ଅନୁମତି ଦେଲେ ନାହିଁ । ମାଳତୀଦେବୀ, ବିଶ୍ୱନାଥ ଆଞ୍ଚା, ମହମ୍ମଦବାଜୀ ଆଦି ବହୁ ଭୂଦାନକର୍ମୀ କୋରାପୁଟ ଜିଲ୍ଲାସାରା ପଦଯାତ୍ରା କରି ବିନୋବାଜୀଙ୍କ ସତ୍ୟାଗ୍ରହ ବାର୍ତ୍ତା ପ୍ରଚାର କଲେ ।

ମାଳତୀ ଦେବୀଙ୍କ ସହ ଶ୍ୟାମଳିନୀ ମହାପାତ୍ର ଏବଂ ବିଶ୍ୱନାଥ ଆଞ୍ଚା ଓ ଅନ୍ୟମାନେ କୋରାପୁଟର ନିଶାକର ଦାସଙ୍କ ସହ ଗୋବଧ ସଂପର୍କୀୟ ପ୍ରଚାରପତ୍ର ପିଠିରେ ଟଙ୍ଗାଇ ରାସ୍ତା ବଜାରରେ ବୁଲି ପ୍ରଚାର କରୁଥିଲେ । କୋରାପୁଟରେ ନିଶାକର ଦାସଙ୍କ ନିଜ ଘର ''ପ୍ରକୃତି ନିବାସ''ରେ ଏମାନେ ଥିଲାବେଳେ ପୋଲିସ୍ ଆସି ତାଙ୍କୁ ନାନା ହଇରାଣ କଲା, ତା ବିରୋଧରେ ସେ ଏସ୍.ପି, କଲେକ୍ଟରଙ୍କୁ ଜଣାଇ ଅନ୍ୟାୟର ବିରୋଧ କଲେ । ଅକ୍ଷୟ ମହାନ୍ତି ସରକାରଙ୍କ ସହ ଯୋଗସୂତ୍ର ରଖି ଏ ଅନ୍ୟାୟର ବିରୋଧ ପାଇଁ ମାଳତୀ ଦେବୀଙ୍କୁ ସହଯୋଗ କରୁଥିଲେ । ତାଙ୍କ ସହ ବିଶ୍ୱନାଥ ଆଞ୍ଚା, ନିଶାକର ଦାସ ଓ ଅନ୍ୟମାନେ ଦେହରେ ପ୍ରଚାରପତ୍ର ଝୁଲାଇ ମାଳତୀ ଦେବୀଙ୍କ ସହ ବୁଲିଥିଲେ ।

ନଭେମ୍ବର ୧୪, ୧୯୭୫ରୁ ଜାନୁଆରୀ ୨୬, ୧୯୭୬ ଯାଏ ଏମେରଜେନ୍‌ସୀ ବିରୁଦ୍ଧରେ ଚାରିଆଡ଼େ ଆନ୍ଦୋଳନ ଚାଲିଲା । ମାଳତୀଦେବୀ ସମ୍ବଲପୁର ରୁ 'ସଂଗ୍ରାମ' ନାମରେ ବୁଲେଟିନ୍ ବାହାର କରି ଆନ୍ଦୋଳନ ଚଳାଇଲେ । ଅନେକ କର୍ମୀ ଖାନତଲାସ ସହିଲେ, ଗିରଫ ହେଲେ ତଥାପି ପ୍ରଚାରକାର୍ଯ୍ୟ ଚାଲିଲା । ଫେବୃୟାରୀ ମାସ ୭ ତାରିଖରେ ମାଳତୀ ଦେବୀ ଗିରଫ ହେଲେ ଓ କଟକ ଜେଲରେ ତାଙ୍କୁ ରଖାଗଲା । ରମାଦେବୀଙ୍କୁ କଟକ ଥୋରିଆ ସାହି ଗୁଣନିଧି ଭବନରେ ନଜରବନ୍ଦୀରେ ରଖାଗଲା । ଘର ଆଗରେ ୧୮ ଜଣ ପୋଲିସ ଜଗୁଆଳୀ ରହିଲେ । ତାଙ୍କୁ ଯିଏ ସାକ୍ଷାତ କରିବାକୁ ଯାଉଥିଲା, ତାକୁ ପୋଲିସ ଜେରା କରୁଥିଲେ । ଫେରିବାବେଳେ ଖାନତଲାସ ମଧ୍ୟ କରୁଥିଲେ ।

ଡ଼ିସେମ୍ବର ମାସ ୧୮ ତାରିଖରେ ଭାରତ ସମ୍ବିଧାନର ୪୪ ତମ ସଂଶୋଧନ ବିଲ୍ ୪୨ ତମ ସଂଶୋଧନ ବିଲ୍ ଭାବେ ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇ, ଆଇନରେ ପରିଣତ ହେଲା ।

ଏହି ଆଇନ୍ ଅନୁସାରେ ସମ୍ବିଧାନର ମୁଖବନ୍ଧ, ଧାରା ୫୩ ଓ ୭ମ ଅନୁଚ୍ଛେଦର ପରିବର୍ତ୍ତନ କରାଗଲା । ନାଗରିକମାନଙ୍କ ଦେଶପ୍ରତି ମୌଳିକ କର୍ତ୍ତବ୍ୟ ବୋଲି ଏକ

ପରିଚ୍ଛେଦ ଯୋଗ କରାଗଲା । ନାଗରିକମାନଙ୍କର ମୌଳିକ ଅଧିକାରକୁ ସଙ୍କୁଚିତ କରାଗଲା । କେବଳ ସେତିକି ନୁହେଁ ପାର୍ଲିଆମେଣ୍ଟକୁ ନ୍ୟାୟାଳୟ ଅପେକ୍ଷା ଅଧିକ କ୍ଷମତା ଦିଆଯିବା ସଙ୍ଗେ ସଙ୍ଗେ ନ୍ୟାୟପାଳିକା ପାର୍ଲିଆମେଣ୍ଟର ଅଧୀନ ବୋଲି ନିୟମ ହେଲା । ଏହି ସାମ୍ବିଧାନିକ ପରିବର୍ତ୍ତନକୁ କୌଣସି ନ୍ୟାୟାଳୟରେ ଏହାର ବୈଧତା ସମ୍ବନ୍ଧରେ ମୋକଦ୍ଦମା କରାଯାଇ ପାରିବ ନାହିଁ ବୋଲି ସ୍ପଷ୍ଟ ନିର୍ଦ୍ଦେଶ ରହିଲା ।

ଏମିତି ନାଗରିକ ସୁରକ୍ଷା, ଅଧିକାର ଓ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ସମ୍ପୂର୍ଣ୍ଣରୂପେ ଲୋପ କରିବାର ଆଇନଗତ ବ୍ୟବସ୍ଥା କରିସାରିଲାପରେ ଶ୍ରୀମତୀ ଗାନ୍ଧୀ, ନିଜପୁତ୍ର ସଞ୍ଜୟ ଗାନ୍ଧୀଙ୍କ ଚାପରେ ଜାନୁଆରୀ ମାସ ୧୮ ତାରିଖ ୧୯୭୭ ମସିହାରେ ଭାରତର ଲୋକସଭା ଭଙ୍ଗକରି ନିର୍ବାଚନ ଘୋଷଣା କଲେ । ୨୦ ତାରିଖରେ ଏମେରଜେନ୍‌ସୀର କେତେକ ନିୟମକୁ କୋହଳ କରାଗଲା । ମାର୍ଚ୍ଚମାସ ୧୬ ତାରିଖରେ ଲୋକସଭା ପାଇଁ ନିର୍ବାଚନ ହେଲା ଏବଂ ଏହି ନିର୍ବାଚନରେ ଶ୍ରୀମତୀ ଇନ୍ଦିରାଗାନ୍ଧି, ଶ୍ରୀ ସଞ୍ଜୟଗାନ୍ଧୀ, ବଂଶୀଲାଲ ଓ ବହୁ କଂଗ୍ରେସ ନେତା ପରାଜିତ ହେଲେ । ୨୨ ମାର୍ଚ୍ଚରେ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ଏବଂ ଶ୍ରୀ ମୋରାରଜୀ ଦେଶାଇ, ଜନତାଦଳ ତରଫରୁ ଭାରତର ପ୍ରଧାନମନ୍ତ୍ରୀ ଭାବେ ଶପଥ ନେଲେ ।

ବିଶ୍ୱନାଥ ଆଜ୍ଞା କେବେ ବି ରାଜାନୀତି ଭିତରେ ନଥିଲେ । ସମାଜସେବା ତାଙ୍କ ଜୀବନର ବଡ଼ ଧ୍ୟେୟ ଥିଲା । ତଥାପି ମହାତ୍ମାଜୀଙ୍କର ଗୋଟିଏ କଥା ସେ ସବୁବେଳେ ମନେ ରଖିଥିଲେ ଯେ ଉପଯୁକ୍ତ ରାଷ୍ଟ୍ରଭାବନା ସଂପନ୍ନ ଲୋକ ଯଦି ଜନସାଧାରଣଙ୍କ ସାଙ୍ଗରେ ରହି ସେମାନଙ୍କୁ ସବୁବେଳେ ସଜାଗ ସତର୍କ ନକରିବେ, ଲୋକେ ଯଦି ସ୍ୱେଚ୍ଛାରେ ଅସ୍ପୃଶ୍ୟତା, ଜାତିଭେଦ, ବିବାହ ବ୍ରତରେ ଅଯଥା ଖର୍ଚ୍ଚ, ସମାଜରେ ଥିବା ଦୋଷ ଦୁର୍ବଳତା ଗୁଡ଼ିକୁ ଦୂର କରିବାକୁ ବଦ୍ଧ ପରିକର ନ ହେବେ; ଖରାତରା, ଭୋକ ଉପାସ, ମାନ ଅପମାନ ନ ସହିବେ; ଏବଂ ନିର୍ଭୀକ ଭାବରେ ଦେଶରେ ସମ୍ପୂର୍ଣ୍ଣ ବିପ୍ଳବର ବାର୍ତ୍ତା ପହଞ୍ଚାଇବା ପାଇଁ ନ ବାହାରିବେ, ତା ହେଲେ ଏ ଦୁର୍ନୀତି, ଭ୍ରଷ୍ଟାଚାର, କୁଶାସନ ଆଦି ପରସ୍ପର ସଂପୃକ୍ତ ଦୁଷ୍ଟଚକ୍ର ଗୁଡ଼ିକରୁ ଦେଶ ପାର ପାଇ ପାରିବ ନାହିଁ । ଏଣୁ ହଜାର ହଜାର ଦେଶପ୍ରେମୀ ବାହାରିବା ଦରକାର ।

ବିଶ୍ୱନାଥ ଆଜ୍ଞା ୧୯୪୧ରୁ ୧୯୭୭ କେବଳ ଏହି କାମହିଁ କରି ଆସିଛନ୍ତି । ଆଗକୁ ଅଛି ଆହୁରି ଅସରନ୍ତି ପଥ । ଲକ୍ଷ୍ୟ ବହୁଦୂରରେ ଅଛି ।

## ବିଶ୍ୱନାଥ ଆଞ୍ଚାଙ୍କ ଜୟପ୍ରକାଶଜୀଙ୍କ ସହ ସାକ୍ଷାତ :୧୯୭୭

ଜରୁରୀକାଳୀନ ପରିସ୍ଥିତି ଜାରି ହେଲାପରେ ୨୬.୦୬.୧୯୭୫ ଦିନ ଜୟ ପ୍ରକାଶ ନାରାୟଣଙ୍କୁ ଅଟକ ବନ୍ଦୀ କରି ହରିୟାଣା ରାଜ୍ୟର ଏକ ମଫସଲ ଜାଗାରେ ଥିବା ସରକାରୀ ଗେଷ୍ଟ ହାଉସରେ ରଖାଗଲା । ତାଙ୍କୁ ସମ୍ପୂର୍ଣ୍ଣ ଏକୁଟିଆ ରହିବାକୁ ହେଲା । ନା ସେ କେଉଁଠି ରହିଛନ୍ତି ତାହା ଲୋକଙ୍କୁ ଜଣାଇ ଦିଆଗଲା, ନା ତାଙ୍କୁ କାହାସହିତ ମିଶି କଥାବାର୍ତ୍ତା କରିବାକୁ ସୁଯୋଗ ଦିଆଗଲା ।

ବୋଧେ ଶ୍ରୀମତୀ ଗାନ୍ଧୀ ଚାହୁଁଥିଲେ ଏହିପରି ଅସହାୟ ଅବସ୍ଥାରେ ଏକାକୀରହି ତିଳ ତିଳ ହୋଇ ଜୟପ୍ରକାଶ ନାରାୟଣ ମରିଯିବେ ।

ଜୟପ୍ରକାଶ ନାରାୟଣଙ୍କର ଆଗରୁ ବହୁମୂତ୍ରରୋଗ ଥିଲା । ସେ ଅସୁସ୍ଥ ହୋଇ ପଡ଼ିବାରୁ ତାଙ୍କୁ କେତେକ ଔଷଧ ଦିଆଗଲା । ଦେହ ଭଲହେବା ପରିବର୍ତ୍ତେ ଅଧିକ ଖରାପ ହେଲା । ସେ ମରଣାପନ୍ନ ଅବସ୍ଥାରେ ପହଞ୍ଚିଗଲେ । ତାପରେ ତାଙ୍କୁ ଚଣ୍ଡିଗଡ଼ ଅଣାଗଲା । ଏ ଖବର ଶୁଣି ରମାଦେବୀ, ମାଳତୀଦେବୀ ଓ ଶ୍ରୀ ଫକୀର ମିଶ୍ର ତାଙ୍କୁ ଦେଖିବା ପାଇଁ ଚଣ୍ଡିଗଡ଼ ଗଲେ । ରମାଦେବୀ ତାଙ୍କୁ ଦେଖିଲାପରେ ସେ ଯେ ଆଉ ବଞ୍ଚିବେ ଏଇ ଆଶା ରହିଲା ନାହିଁ । ଶେଷରେ ଜୟପ୍ରକାଶଙ୍କ ସାନଭାଇ ରାଜେଶ୍ୱର ପ୍ରସାଦଙ୍କ ଚେଷ୍ଟାରେ ତାଙ୍କୁ ବମ୍ବେର ଯଶଲୋକ ହସପିଟାଲରେ ଭର୍ତ୍ତି କରାଗଲା ।

ଡ଼ଃ ମଣି ଓ ଅନ୍ୟ ଡ଼ାକ୍ତରଙ୍କ ବହୁ ପରିଶ୍ରମରେ ଜୟପ୍ରକାଶ ଆରୋଗ୍ୟ ଲାଭ କଲେ କିନ୍ତୁ ପୂର୍ବରୁ ବହୁମୂତ୍ର କମିବା ପାଇଁ ଯେଉଁ ଔଷଧ ଦିଆଯାଇଥିଲା ସେ ସବୁ ଔଷଧ ବହୁମୂତ୍ର ରୋଗୀମାନଙ୍କୁ ଦେବା ନିଷେଧ । ଜାଣିଶୁଣି ତାଙ୍କ କିଡ଼ନି ନଷ୍ଟକରିବା ପାଇଁ ଏହା ଯେ ସୁଚିନ୍ତିତ ଭାବେ କରାଯାଇଥିଲା ଏଥିରେ ସନ୍ଦେହ ନାହିଁ । ଜୟପ୍ରକାଶଙ୍କ ଦୁଇଟି ଯାକ କିଡ଼୍‌ନି ନଷ୍ଟ ହୋଇଗଲା । ଏହା ଭଗବାନଙ୍କ ହିଁ ବରାଦ ଯେ ସେ ଏହି ଦୁଃସାଧ ପରିସ୍ଥିତିରୁ ମୁକୁଳିଗଲେ । ତାଙ୍କୁ ବଞ୍ଚିଥିବା ଯାକେ ଡାଏଲସିସ୍‌ରେ ରହିବାକୁ ହେଲା ।

୧୯୭୭ରେ ଜରୁରୀକାଳୀନ ପରିସ୍ଥିତି ଉଠିଲାପରେ ବିଶ୍ୱନାଥ ଆଞ୍ଚା, ଫୁଲବାଣୀ ରଙ୍ଗାପାରୁ ଗାଁରେ ଥିବା କୁଷ୍ଠରୋଗ କେନ୍ଦ୍ରର ଦାୟିତ୍ୱରେ ଥିବା ଫୁଲବାଣୀ ଜିଲ୍ଲା ନବଜୀବନ ମଣ୍ଡଳର ଶ୍ରୀମତୀ ରାଧାମଣି ସାହୁ ଓ ନବରଙ୍ଗପୁର ଜିଲ୍ଲା ବିଜାପୁର ଆଶ୍ରମର ସଞ୍ଚାଳକ ବିଶିଷ୍ଟ ଭୂଦାନକର୍ମୀ ମହମ୍ମଦ ବାଜୀ, ସେ ବର୍ଷ ଅନୁଷ୍ଠିତ ହୋଇଥିବା ଆହ୍ଲାବାଦ କୁମ୍ଭମେଳାକୁ ଯାଇଥିଲେ । ମୂଳରୁ କୁମ୍ଭମେଳା ପ୍ରତି ବିଶ୍ୱନାଥ ଆଞ୍ଚାଙ୍କ ଆକର୍ଷଣ ରହିଆସିଛି । ସେଠାରୁ ସେମାନେ ପାଟନା ଗଲେ ଜୟପ୍ରକାଶଙ୍କ ସହିତ ସାକ୍ଷାତ କରିବାକୁ ।

ସେମାନେ ଦେଖିଗଲାବେଳକୁ ଜୟପ୍ରକାଶଜୀ ବିହାରରେ ପ୍ରଭାବତୀ ବେହନ୍ (ଜେ.ପି.ଙ୍କ ସ୍ତ୍ରୀ) ଆଶ୍ରମରେ ଅବସ୍ଥାନ କରିଥିଲେ ।

ବିଶ୍ୱନାଥ ଆଞ୍ଚାଙ୍କୁ ଦେଖି ଜୟପ୍ରକାଶ ଖୁସି ହେଲେ । ସେ କହିଲେ, '' ଆଞ୍ଚା, ଆଗୟେ ।'' ବିଶ୍ୱନାଥଙ୍କ ପରିଚୟ ହିଁ 'ଆଞ୍ଚା' ଶବ୍ଦରେ । ଭାରତରେ ଯେତେ ବଡ଼ଲୋକ ସମସ୍ତେ ବିଶ୍ୱନାଥଙ୍କୁ ଆଞ୍ଚା ନାମରେ ହିଁ ସମ୍ବୋଧନ କରୁଥିଲେ । ବିଶ୍ୱନାଥ ଆଞ୍ଚା ପାଟନା ଯିବା ଓ ଜୟ ପ୍ରକାଶଙ୍କୁ ସାକ୍ଷାତ କରିବା କାଳରେ କାଶ୍ମୀରରୁ ଶେଖ୍ ଅବଦୁଲା ତାଙ୍କ ପୁତ୍ର ଫାରୁକ୍ ଅବଦୁଲା ପରିବାର ସହ ସେଠାକୁ ଆସିଥିଲେଁ । ଜୟପ୍ରକାଶଙ୍କୁ ସାକ୍ଷାତ କରିବାପାଇଁ ବହୁତ କଟକଣା ରହିଥିଲା । ପୋଲିସ୍ ଜେରାକରି ନାନା ଧମକ ଦେଉଥିଲେ । ଏମିତି ପରିସ୍ଥିତିରେ ମଧ ଅନେକେ ଜୟପ୍ରକାଶଙ୍କୁ ସାକ୍ଷାତ କରି କଥାବାର୍ତ୍ତା କରିଯାଉଥିଲେ ।

ବିଶ୍ୱନାଥ ଆଞ୍ଚା ଓ ଅନ୍ୟମାନେ ଜୟପ୍ରକାଶଜୀଙ୍କୁ ଦେଖିବାକୁ ଗଲାବେଳକୁ ସେ ଫାରୁକ୍ ଅବଦୁଲ୍ଲା ଓ ତାଙ୍କ ପରିବାରଙ୍କୁ ବିଦାୟ ଦେବାପାଇଁ ଘରର ସିଡ଼ି ନିକଟକୁ ଆସିଥିଲେ । ତାଙ୍କ ସହ ନାରାୟଣ ଦେଶାଇ ଏବଂ ଶ୍ରୀମତୀ ଉତ୍ତରା ଦେଶାଇ ମଧ ଥିଲେ । ଜୟପ୍ରକାଶଜୀଙ୍କ ସହ କିଛି ଘଣ୍ଟା କଟାଇ ବିଶ୍ୱନାଥ ଆଞ୍ଚା, ରାଧାମଣି ସାହୁ, ମହମ୍ମଦ ବାଜୀ ସନ୍ଧ୍ୟା ୫ଟାରେ ତାଙ୍କଠାରୁ ବିଦାୟ ନେଇ ଫେରିଲେ ।

## ନିର୍ବାଚନର ହାଓ୍ୱା :

ଶ୍ରୀମତୀ ଗାନ୍ଧୀଙ୍କର ଶାସନରେ ଲୋକେ ଅତିଷ୍ଠ ହୋଇ ପଡ଼ିଥିଲେ । ଏଣୁ ୧୯୭୭ରେ ମାର୍ଚ୍ଚ ମାସରେ ଲୋକସଭାର ନିର୍ବାଚନ ଘୋଷଣା ଶୁଣି ଲୋକେ ସେମାନଙ୍କ ମତସ୍ଥିର କରି ନେଇଥିଲେ । ସେତେବେଳକୁ କେତେକ ସର୍ବୋଦୟ କର୍ମୀ ବିନୋବାଙ୍କ ପ୍ରଭାବରେ ଏତେଦୂର ପ୍ରଭାବିତ ହୋଇଥାନ୍ତି ଯେ ସେମାନେ କୌଣସି ଦଳର ସପକ୍ଷ ଓ ବିପକ୍ଷରେ କହିବା ସର୍ବୋଦୟର ନୀତି ନୁହେଁ ବୋଲି ବିଚାରୁଥାନ୍ତି କାରଣ ଲୋକସେବକ ସଂକଳ୍ପ ପତ୍ରରେ ଥାଏ ଯେଉଁମାନେ ଲୋକ ସେବକ ହେବେ ସେମାନେ କୌଣସି ରାଜନୈତିକ ଦଳର ସଦସ୍ୟ ହେବେ ନାହିଁ, ନିର୍ବାଚନରେ ପ୍ରାର୍ଥୀଦେବେ ନାହିଁ କି ଦଳଗତ ରାଜନୀତିରେ ଜଡ଼ିତ ହେବେ ନାହିଁ ।

କେତେଜଣ କର୍ମୀଙ୍କୁ ଏ ନିର୍ଲିପ୍ତଭାବ ମୋଟେ ଭଲ ଲାଗୁ ନଥାଏ । ସେମାନେ ଯୁକ୍ତି କରୁଥାନ୍ତି କଂଗ୍ରେସ (ଇ)କୁ ଶାସନରୁ ହଟାଇବା କୌଣସି ଦଳଗତ ରାଜନୀତି ନୁହେଁ ବରଂ ଦେଶର ଅଗଣିତ ନାଗରିକଙ୍କ ଅଧିକାର ଓ ଗଣତନ୍ତ୍ରର ସୁରକ୍ଷା ପାଇଁ ଏହା କରିବାକୁ ହେବ । ଅନେକ ଆଲୋଚନା ପରେ  ଦିଲ୍ଲୀ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର ସଭାଘର ବୈଠକରେ

ଶେଷରେ ନିଷ୍ପତ୍ତି ନିଆଗଲା ଯେ କୌଣସି ନିର୍ଦ୍ଦିଷ୍ଟ ପ୍ରାର୍ଥୀଙ୍କର ସପକ୍ଷରେ କି ବିପକ୍ଷରେ କୁହାଯିବ ନାହିଁ, କେବଳ ଯେଉଁମାନେ ଗଣତନ୍ତ୍ରର ସମର୍ଥକ ସେମାନଙ୍କୁ ଭୋଟ ଦେବାପାଇଁ ଲୋକଙ୍କୁ କୁହାଯବ ।

ସର୍ବୋଦୟ କର୍ମୀମାନେ ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତା ଉପରେ ଜୋରଦେଇ ପ୍ରଚାର କରିବା ପାଇଁ ସ୍ଥିର ହେଲା ।

ନିର୍ବାଚନରେ କଂଗ୍ରେସ ଦଳ ସମ୍ପୂର୍ଣ୍ଣ ହତାଶ ହେଲେ । ଜନତା ଦଳ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ପାଇ ସରକାର ଗଠନକଲେ ୧୯୭୭ ମାର୍ଚ୍ଚ ମାସରେ । ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନ ମନ୍ତ୍ରୀ ହେଲେ ଏବଂ ଯାଙ୍କ ସରକାର ଜରୁରୀ କାଳୀନ ସମୟର ସମସ୍ତ ଜନମାରଣ ନୀତି ଓ ନିୟମ ଗୁଡ଼ିକୁ ପ୍ରତ୍ୟାହାର କରିନେଲେ ।

୧୯୭୭ରୁ ୧୯୮୦ ଅଢ଼େଇବର୍ଷ ଭିତରେ ଏ ସରକାରଙ୍କ ଗତି ଅପେକ୍ଷା ଦୁର୍ଗତି ବେଶି ହେଲା । ଏମାନଙ୍କ ଭିତରେ ମନୋମାଳିନ୍ୟ, କମିଶନ୍ ବସାଇବାର ନାଟକ ଓ ଶାସନ କ୍ଷେତ୍ରରେ ଅପାରଗତା ଲୋକବିଶ୍ୱାସକୁ  ଚହଲାଇ ଦେଲା ।

ସର୍ବୋଦୟ କର୍ମୀମାନେ ଯେଉଁ ଆଶା ଓ ବିଶ୍ୱାସ ରଖିଥିଲେ  ତାହା ନଷ୍ଟ ହୋଇଗଲା । ଏହି ସରକାର ଗ୍ରାମ ପୁନର୍ଗଠନ, ନିଶା ନିବାରଣ, କ୍ଷମତା ବିକେନ୍ଦ୍ରୀକରଣ କାମମାନ କରି ପାରିଲେ ନାହିଁ । ଲୋକଅସନ୍ତୋଷ ବଢ଼ିଲା ଏବଂ ୧୯୮୦ ନିର୍ବାଚନରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପୁଣି ସଂଖ୍ୟା ଗରିଷ୍ଠ ହୋଇ ସରକାର ଗଠନ କଲେ ।

ଗଣତନ୍ତ୍ର ପ୍ରେମୀ ଓ ସର୍ବୋଦୟ କର୍ମୀଙ୍କ ମଧ୍ୟରେ ନାନା ପ୍ରତିକ୍ରିୟା ଦେଖାଗଲା । ଭୂଦାନ କର୍ମ ଓ ସର୍ବୋଦୟ କର୍ମର ଅଧିକ ବଦନାମ କରିବା ପାଇଁ ଏବଂ ସେମାନଙ୍କ କର୍ମର ସମୀକ୍ଷା ପାଇଁ ଶ୍ରୀମତୀ ଗାନ୍ଧୀ 'କୁଦାଲ କମିଶନ' ବସାଇଲେ । 'କୁଦାଲ କମିଶନ' ଓଡ଼ିଶାକୁ ମଧ୍ୟ ଆସିଥିଲେ । ଓଡ଼ିଶାରେ ଗ୍ରାମ ନିର୍ମାଣ ପାଇଁ ଯେଉଁ କୂଅ ଖୋଳା ଯାଉଥିଲା ତାହାର ଉପର କାଠରେ ତିଆରି ହୋଇଥିଲା । ୨୦ ବର୍ଷର କାଠ ବୋଧେ ଭୁଷୁଡ଼ି ଭାଙ୍ଗି ପଡ଼ିଥିଲା । କୁଦାଲ କମିଶନ୍ ଫଟୋ ନେଇ କୂଅ ହୋଇନାହିଁ ବୋଲି  ରିପୋର୍ଟ ଦେଇଥିଲେ । ଏମିତି ଅନେକ ମିଥ୍ୟା ଖବର କୁଦାଲ୍ କମିଶନ୍ ରିପୋର୍ଟରେ ଦର୍ଶାଯାଇଥିଲା । ସେତେବେଳକୁ ବିଶ୍ୱନାଥ ଆଜ୍ଞା ଅନୁଭବ କଲେ ଯେ କେତେକ ରଚନାତ୍ମକ ସଂସ୍ଥା ସୁବିଧାବାଦୀ ମନୋବୃତ୍ତି ନେଲେଣି । ଏମାନେ ବ୍ୟବସାୟଗତ ମନୋଭାବକୁ ନେଇ ଆଶ୍ରିତ

ଜୀବନ କଟାଇବାକୁ ସୁଖ ମଣିଲେଣି । ସେ ଅନୁଭବ କରୁଥିଲେ ଏହି କର୍ମୀମାନଙ୍କ ମଧ୍ୟରୁ ଅଧିକାଂଶ କାଦୁଅକୁ ଯିବେ ନାହିଁ କି ଗୋଡ଼ ଧୋଇବେ ନାହିଁ, କ୍ଷମତାର ଥିବା ଲୋକଙ୍କ ସହିତ ସାଲିସ କରି ବଞ୍ଚିବେ । ୧୯୮୦ ବେଳକୁ ଗାନ୍ଧୀ ଆଦର୍ଶ ବୋଲି କହିଲେ ଖଦୀ, ନିଶା ନିବାରଣ ଓ ଗୋରକ୍ଷାକୁ ବୁଝାଗଲା ।

୧୯୮୦ରେ ବିଶ୍ୱନାଥ ଆଜ୍ଞା ୬୫ ବର୍ଷରେ ପହଞ୍ଚିଲେ । ଏ ସମୟରେ ସେ ଦେଖିଲେ ଶ୍ରୀମତୀ ଗାନ୍ଧୀ ପୁଣିଥରେ ଶାସନକୁ ଫେରିବାପରେ ଧୀର ସ୍ଥିର ଭାବରେ ମହାତ୍ମାଗାନ୍ଧୀ ପନ୍ଥୀମାନଙ୍କୁ ଜବତ କରିବାପାଇଁ ଏବଂ ଯେଉଁମାନେ ବିଶେଷତଃ ଜୟପ୍ରକାଶଜୀଙ୍କୁ ସମର୍ଥନ କରିଥିଲେ ସେମାନଙ୍କୁ ପାନେ ଚଖାଇବା ପାଇଁ ବ୍ୟବସ୍ଥାକରୁଛନ୍ତି ।

ସର୍ବପ୍ରଥମେ ଜଣେ କଂଗ୍ରେସ ସଦସ୍ୟ ୧୯୮୦ ଲୋକସଭାରେ ଏହି ଗାନ୍ଧିପନ୍ଥୀ-ମାନେ ସାଧାରଣ ପାଣ୍ଠିର ବହୁ ଅପବ୍ୟବହାର କରୁଛନ୍ତି ବୋଲି ଅଭିଯୋଗ ଆଣିଲେ । ଆଉ କେତେକ ଏମାନେ ବିଦେଶରୁ ବହୁଟଙ୍କା ଆଣୁଛନ୍ତି ଏବଂ ଏହା ଦେଶ ବିରୋଧୀକାମ ବୋଲି କହିଲେ । ଏହା ଫଳରେ ଭାରତ ସରକାର ଏ ସମସ୍ତ ଅଭିଯୋଗର ଅନୁସନ୍ଧାନ କରି ରିପୋର୍ଟ ଦେବାପାଇଁ ରାଜସ୍ଥାନର ଜଣେ ଅବସର ପ୍ରାପ୍ତ ବିଚାରପତି କୁଦାଲଙ୍କୁ ନେଇ ଗୋଟିଏ ଆୟୋଗ ବସାଇଲେ । ଏହି ଆୟୋଗ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ରଚନାତ୍ମକ ସଂସ୍ଥାମାନଙ୍କ ଠାରୁ ବିଗତ ୩୫-୪୦ ବର୍ଷର ହିସାବ ଓ ତଥ୍ୟ ମାଗିଲେ । ଦେଶର ପ୍ରାୟ ୯୦୦ ରଚନାତ୍ମକ ସଂସ୍ଥା ବିରୋଧରେ ନିର୍ଦ୍ଦିଷ୍ଟ ଅଭିଯୋଗ ନଥାଇ ମଧ୍ୟ ଯାଞ୍ଚ ଚାଲିଲା । ଶେଷଯାଏ ଏହାର ଫଳ କିଛି ହେଲା ନାହିଁ, କେବଳ ସଂସ୍ଥାଗୁଡ଼ିକ ସରକାରୀ ଚକ୍ରାନ୍ତର ଶିକାର ହେବା ସାରହେଲା । ଶ୍ରୀମତୀଗାନ୍ଧୀ ଏହି ଆୟୋଗ ପାଇଁ ଦେଶପାଣ୍ଠିରୁ ୪ କୋଟି ଟଙ୍କା ଖର୍ଚ୍ଚ କରିଥିଲେ ।

ଏମିତି ପରିସ୍ଥିତି ସବୁଦେଖି ବିଶ୍ୱନାଥ ଆଜ୍ଞା ଯେତିକି ପାରିବେ ସେତିକି କରିବା ପାଇଁ ଇଚ୍ଛାକଲେ ଏବଂ ନିଜର ଅଧିକାଂଶ ସମୟ ବନବାସୀ ସେବା ସମିତିର ଉନ୍ନତିରେ ଲଗାଇବା ପାଇଁ ସ୍ଥିରକଲେ । ସେ ଆଉ କୌଣସି ରଚନାତ୍ମକ ସଂସ୍ଥାର ପଦ ପଦବୀରେ ନରହିବା ପାଇଁ ନିଷ୍ପତ୍ତି ନେଲେ । ଏମିତି ସମୟ ଗଡ଼ିଚାଲିଲା । ଭୂଦାନ, ସର୍ବୋଦୟର ଆଦର୍ଶ ଧୀରେ ଧୀରେ ମଉଳି ଆସୁଥିଲା ।

* * *

-ଅଣତିରିଶି-

## ପ୍ରେରଣାର ଦୀପ ଲିଭିଗଲା

**ସ**ମୟ କାହାକୁ ଅପେକ୍ଷା କରେନାହିଁ । ସେ ଚାଲିଥାଏ ତା ବାଟରେ । ମଣିଷର ସବୁଦିନ ସମାନ ଯାଏ ନାହିଁ । ଯେଉଁମାନେ ମାଟିପିଣ୍ଡ ନେଇ ଆସିଥାନ୍ତି ଏହି ମର୍ତ୍ତ୍ୟଭୁବନକୁ ନିଜ ନିଜର କର୍ମ କରି ସାରି ଫେରିଯାଆନ୍ତି । ଛାଡ଼ିଯାଆନ୍ତି ସ୍ମୃତି । କେହି ଯଶ ପାଏ, କେହି ନିନ୍ଦା ।

ଯେଉଁମାନଙ୍କ ପ୍ରେରଣା ବିଶ୍ୱନାଥ ଆଞ୍ଚାଙ୍କୁ ନିଜ କର୍ତ୍ତବ୍ୟ ପଥରେ ଆଗେଇ ଯିବାକୁ ବାଟ ଦେଖାଇଥିଲା, ୧୯୮୫ ବେଳକୁ ସେମାନଙ୍କ ମଧ୍ୟରୁ ବହୁ ମହାମନୀଷୀ ଇହଧାମ ତ୍ୟାଗ କରି ସାରିଥିଲେ । ୧୯୪୮ ଜାନୁଆରୀ ୩୦ ରେ ମହାତ୍ମାଗାନ୍ଧୀଙ୍କ ତିରୋଧାମ ସମସ୍ତଙ୍କୁ ମର୍ମାହତ କରିଦେଲା । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଋଷିପ୍ରାଣ, ସନ୍ଥ ଗୋପବନ୍ଧୁ ଚୌଧୁରୀ ଅପ୍ରେଲ ମାସ ୨୯ ତାରିଖ ୧୯୫୮ ମସିହା ରାତି ୧୧.୫୫ରେ ଇହଧାମ ତ୍ୟାଗକଲେ । ଆସ୍ତେ ଆସ୍ତେ ଓଡ଼ିଶାରେ ଭୂଦାନର ବନ୍ୟାବୁହାଇ ଥିବା ବହୁ ମହାପ୍ରାଣଙ୍କ ସମୟ ଏ ମାଟିପୃଥିବୀରେ ସରିଗଲା । ୧୯୭୧ ମସିହା ଫେବୃୟାରୀ ୨୧ ତାରିଖରେ ସକାଳ ୬ଟା ୪୭ ମିନିଟରେ ଥୋରିଆ ସାହିରେ ଆଚାର୍ଯ୍ୟ ହରିହର ଦାସଙ୍କ ମହାପ୍ରୟାଣ ଘଟିଲା । ୧୯୭୫ ଜୁଲାଇ ୨୬ରେ ପଣ୍ଡିତ କୃପାସିନ୍ଧୁ ହୋତା ଏ ସଂସାର ଛାଡ଼ିଚାଲିଗଲେ । ଯେଉଁମାନଙ୍କୁ ଆଦର୍ଶଭାବେ ନେଇ, ଯେଉଁମାନଙ୍କ କର୍ମରୁ ପ୍ରେରଣାପାଇ ବିଶ୍ୱନାଥ ଆଞ୍ଚା ସ୍ୱାଧୀନତା ସଂଗ୍ରାମରୁ ଭୂଦାନକର୍ମ ଯାଏ, ଭୂଦାନକର୍ମରୁ ବନବାସୀ ସେବା ସମିତି ଯାଏ ଗଠନ କରି ମାନବସେବାକୁ ନିଜ ଜୀବନର ବ୍ରତ କରିନେଲେ ସେମାନେ ନିଜ ନିଜ ମହାନତାରେ ମହୀୟାନ ହୋଇ ନିଜ ନିଜ ଜୀବନର ଜୀବନକୁ ମାନବ ସେବାରେ ଅର୍ପଣ କରି ଜଣକ ପରେ ଜଣେ ଚାଲିଗଲେ । ୧୯୮୪ ମସିହା ଜୁନ୍ ମାସ ୨୪ ତାରିଖରେ ମହାନ ବିପ୍ଳବୀ, ସଂସ୍କାରକ, ମାନବିକତାର ମୂର୍ତ୍ତିରୂପ ନବକୃଷ୍ଣ ଚୌଧୁରୀ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ଇହଲୀଳା ସମ୍ବରଣ କଲେ । ୧୯୮୫ ମସିହାରେ ମହପ୍ରାଣା ମା ରମାଦେବୀଙ୍କର ପରଲୋକ ଘଟିଲା ଏବଂ ୧୯୯୮ରେ ମାଳତୀ ଦେବୀ ଚାଲିଗଲେ । ଏମିତି ବିଶ୍ୱନାଥ ଆଞ୍ଚାଙ୍କ ପ୍ରେରଣାର ସ୍ରୋତ

ଗୁଡ଼ିକ କ୍ଷୀଣରୁ କ୍ଷୀଣତର ହୋଇଗଲେ । ଏବେ କେବଳ ପୁରୁଣା ସ୍ମୃତିକୁ ମନେପକାଇ ବଞ୍ଚୁଥିବା ଯାଏ ଆଗେଇ ଚାଲିବା କଥା । ଯେଉଁମାନେ ଏବେ ଅଛନ୍ତି ତାଙ୍କର ସହଧର୍ମୀ ହୋଇ ସେମାନେ ବି ଉର୍ଦ୍ଧୀର୍ଣ୍ଣ ବୟସରେ ଏବେ ।

୧୯୮୫ ପରେ ବିଶ୍ୱନାଥ ଆଜ୍ଞା ଆଉ ଆଗଭଳି ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗ ନଦେଇ ସାଂଗଠନିକ କାମରେ ନିଜକୁ ଉତ୍ସର୍ଗ କରିଛନ୍ତି । ସମସ୍ତ ପ୍ରେରଣାର ଦୀପ ଲିଭିଯିବା ପରେ ସେ ଏବେ ଏକ ସ୍ତିମିତ ଦୀପର ଶିଖା ।

* * *

# ଏକ ଶ୍ରଦ୍ଧାମୟ ସଂସାର : ବନବାସୀ ସେବା ସମିତି

ସବୁବେଳେ ଏକାକୀ ଯାତ୍ରୀ ଭାବରେ ସେବାମନୋଭାବକୁ ନେଇ ଆଗେଇ ଚାଲୁଥିବା ମଣିଷଟିଏ ବିଶ୍ୱନାଥ ପଟ୍ଟନାୟକ, ସମସ୍ତଙ୍କ ଶ୍ରଦ୍ଧାର 'ଆଞ୍ଚା'। ୧୯୭୨ ମସିହାରେ ସେ ଗଢ଼ିଲେ ବାଲିଗୁଡ଼ାରେ ଏକ ଶ୍ରଦ୍ଧାମୟ ସଂସାର:ବନବାସୀ ସେବା ସମିତି ।

ବାଲିଗୁଡ଼ା ସବ୍ ଡ଼ିଭିଜନ୍‌ର ସଦର ମହକୁମା ବାଲିଗୁଡ଼ା । କନ୍ଧମାଳର ଏହା ଏକ ସବ୍‌ଡ଼ିଭିଜନ୍ । ଏଠି ଶୀତରେ ଦେହର ପଞ୍ଜରା ଥରେ, ଅବିଶ୍ରାନ୍ତ ବର୍ଷା ହୁଏ ବର୍ଷାଦିନେ । ଯେତେ ବେଳେ ଚୈତ୍ର ଆସେ, ହଳଦୀ କିଆରୀରେ ମେରିଆ ପୂଜାରେ ଆଦିବାସୀ ବିଶ୍ୱାସ ରୂପନିଏ । ଜାନି ମନ୍ତ ଉଚ୍ଚାରଣ କରି ପ୍ରଚୁର ଫସଲର କାମନା କରେ । ପୋଢ଼ ଯାତ୍ରା କରେ । ଆଦିବାସୀ ଗୀତରେ ଉଛୁଳିଯାଏ ଗାଁ ଦାଣ୍ଡ । କାନ୍ଦୁଲ୍ ପରବ, ପୁଷ ପରବ, ଚଇତ ପରବରେ, ଖୁସିରେ ଆତ୍ମହରା ହୁଏ । ଏହି ବାଲିଗୁଡ଼ାରେ ବିଶ୍ୱନାଥ ଆଞ୍ଚା ପ୍ରତିଷ୍ଠା କଲେ ବନବାସୀ ସେବା ସମିତି ।

ବାଲିଗୁଡ଼ାର କେନ୍ଦ୍ରସ୍ଥଳରେ ଯେଉଁଠି ଫୁଲବାଣୀ, ଭଞ୍ଜନଗର, ମଦନପୁର ରାମପୁର, ତୁମଡ଼ିବନ୍ଧ ଆଡୁ ଆସି ବସ୍ ଅଟକେ, ସେଇଠୁ ବାଲିଗୁଡ଼ା ଷ୍ଟେଟବ୍ୟାଙ୍କ ରାସ୍ତାରେ ଦଶ ମିନିଟର ବାଟ ବାଲିଗୁଡ଼ା ବନବାସୀ ସେବା ସମିତି । ତାଛଡ଼ା ଏଠାର ପ୍ରତ୍ୟକ୍ଷ ଠାକୁରାଣୀ ମାଆ ପାଟଖଣ୍ଡାଙ୍କ ମନ୍ଦିର ପଛପାଖ ରାସ୍ତା ଦେଇ ସିଧା ଦୁଇଶହ ମିଟର ଗଲେ ପଡ଼ିବ ବନବାସୀ ସେବା ସମିତି । ଉଚ୍ଚ ପାଚେରୀ ଘେରା, ଲୁହା ଫାଟକ ଖଞ୍ଜା ୪ ଏକର ୬୨ ଡେସିମିଲ ଆୟତନକୁ ନେଇ ଏହି ଅନୁଷ୍ଠାନ । ଏହା ଦୁସ୍ଥ, ଦଳିତ ମଣିଷର ସେବାପାଇଁ ଏକ ଉତ୍ସର୍ଗୀକୃତ ଅନୁଷ୍ଠାନ ।

୧୯୭୨ ମସିହାରେ ବନବାସୀ ସେବା ସମିତିର କାର୍ଯ୍ୟ ଫୁଲବାଣୀ ଜିଲ୍ଲା ପରିସରଭୁକ୍ତ ଥିଲା । ପରେ ପରେ କଳାହାଣ୍ଡି, କୋରାପୁଟ ଜିଲ୍ଲା ଏହାର ପରିସୀମା ଭିତରକୁ ଆସିଲା । ବନବାସୀ ସେବା ସମିତି ପ୍ରତିଷ୍ଠାର ମୂଳଲକ୍ଷ୍ୟ ହେଲା ଅନାଥ ପିତାମାତା ପରିଚୟ ନଥିବା ଶିଶୁମାନଙ୍କୁ ଆଶ୍ରୟଦେବା, ନିରାଶ୍ରୟ ଓ ଅସହାୟ ମହିଳାଙ୍କୁ ଜାତି ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଥଇଥାନ କରିବା, ଶିଶୁ ମାନଙ୍କ ମଙ୍ଗଳ ପାଇଁ ବାଳବାଡ଼ି ଓ ସ୍କୁଲ ପ୍ରତିଷ୍ଠା କରିବା, ସାକ୍ଷରତା ଅଭିଯାନର ବିକାଶ ପାଇଁ ସଂସ୍ଥା ଗଠନ କରିବା ଏବଂ

ପ୍ରୌଢ଼ଶିକ୍ଷା କାର୍ଯ୍ୟ ଆରମ୍ଭ କରିବା, ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରିବା । ତାଛଡ଼ା ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, କୁଷ୍ଠ ନିରାକରଣ କ୍ଲିନିକ, ପ୍ରସୂତିକକ୍ଷ ଆଦି ନିର୍ମାଣ, ଶାରୀରିକ ଶିକ୍ଷା ପାଇଁ କ୍ରୀଡ଼ା ଓ ବ୍ୟାୟାମର ବ୍ୟବସ୍ଥା କରିବା । ସଂଗୀତ ଓ ନୃତ୍ୟ ପାଇଁ ତଥା ସାଂସ୍କୃତିକ ବିକାଶ ପାଇଁ ଅନୁଷ୍ଠାନ ସ୍ଥାପନ, ଆତ୍ମ-ନିଯୁକ୍ତି ଓ କୁଟୀର ଶିଳ୍ପର ବିକାଶ ସକାଶେ ସୂତାକଟା, ଲୁଗାବୁଣା, କୃଷି, ପଶୁପାଳନ, କୁକୁଡ଼ାପାଳନ, ମାଛଚାଷ, ଖଦୀ ଓ ଗ୍ରାମେଦ୍ୟୋଗ କ୍ଷେତ୍ରରେ ବୈଷୟିକ କୌଶଳ ଶିକ୍ଷାଦାନ, ଆଦିବାସୀ ହରିଜନ ଓ ଅନ୍ୟାନ୍ୟ ଅନୁନ୍ନତ ବର୍ଗଙ୍କୁ ସମାଜର ମୁଖ୍ୟସ୍ରୋତରେ ମିଶାଇବା ପାଇଁ କାର୍ଯ୍ୟକ୍ରମ, ଅନ୍ଧ ମୂକ ବଧୀରଙ୍କ ପାଇଁ ସ୍କୁଲ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଅକର୍ମଣ୍ୟ ଓ ଅକ୍ଷମ ପିଲାମାନଙ୍କୁ ଆଶ୍ରୟ ପ୍ରଦାନ କରିବା, ତଥା ବିକଳାଙ୍ଗଙ୍କ ପାଇଁ କର୍ମ ସଂସ୍ଥାନ, ତାଲିମକେନ୍ଦ୍ର ପ୍ରତିଷ୍ଠା, କୁଷ୍ଠ ସଦନ ନିର୍ମାଣ କରି କୁଷ୍ଠରୋଗୀ ଥଇଥାନ, ସର୍ବ ସାଧାରଣ ପାଠାଗାର ଓ ପଠନଗୃହ ନିର୍ମାଣ, ଗ୍ରାମାଞ୍ଚଳରେ ଜନସଚେତନତା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ପ୍ରଚଳନ କରିବା । ବାଲିଗୁଡ଼ା ବନବାସୀ ସେବା ସମିତି ରାଜନୀତି ଠାରୁ ବହୁଉର୍ଦ୍ଧରେ ଥିବା ଏକ ସେବା ଅନୁଷ୍ଠାନ ।

ଏହି ସମିତିର ପରିଚାଳନାରେ ଯେ କେତେକର୍ମୀଙ୍କ ଦିନରାତିର ଉତ୍ସର୍ଗୀକୃତ ପରିଶ୍ରମ କାମ କରୁଛି ତାହା ଦେଖିଲେ ଆଶ୍ଚର୍ଯ୍ୟଲାଗେ । ସେବା ମନୋଭାବ ନେଇ ମାନବିକତାକୁ ପୁଞ୍ଜିକରି ସେମାନଙ୍କର କର୍ମ ତତ୍ପରତା ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ଏହାର ମୂଳସ୍ତମ୍ଭ ହେଉଛନ୍ତି ବିଶ୍ୱନାଥ ଆଞ୍ଚା ।

୧୯୭୪ରେ ବନବାସୀ ସମିତି ପାଇଁ ବାଲିଗୁଡ଼ା ହରିଜନ ବସ୍ତିରେ ଏକ ଜମି କିଣାଗଲା । ୧୯୭୫ରେ ଜରୁରୀକାଳୀନ ପରିସ୍ଥିତିର ପ୍ରଭାବ କାଳେ ବନବାସୀ ସେବା ସମିତି ଉପରେ ପଡ଼ିବ ଭାବି ବିଶ୍ୱନାଥ ଆଞ୍ଚା ସମାଜ ସଂସ୍କାରକୁ ରାଜନୀତି ସହିତ ନ ଯୋଡି ଏ ସଂସ୍ଥାରୁ ସ୍ୱେଚ୍ଛାରେ ଅବସର ନେଲେ ।

ବନବାସୀ ସେବା ସମିତି ବିଶ୍ୱନାଥ ଆଞ୍ଚାଙ୍କ ମାନସ ସନ୍ତାନ । ଏହାର ସୃଷ୍ଟି ଓ ବିକାଶର ଏକ ସଂକ୍ଷିପ୍ତ ପରିଚର୍ଯ୍ୟା ନିଶ୍ଚିତଭାବେ ବିଶ୍ୱନାଥ ଆଞ୍ଚାଙ୍କ ଦୂରଦୃଷ୍ଟିର ପରିଚୟ ଦେବ ।

ଆଜିକୁ ୩୭ ବର୍ଷତଳେ ବିଶ୍ୱନାଥ ଆଞ୍ଚା ଫୁଲବାଣୀ ଜିଲ୍ଲାର ମାଳ ଅଞ୍ଚଳରେ ଆଦିବାସୀଙ୍କ ମଧରେ ସଚେତନତା ଆଣିବା, ଜାଗରଣ ସୃଷ୍ଟିକରିବା ଓ ସେମାନଙ୍କ ଅଭ୍ୟୁଦୟ ପାଇଁ ଚିନ୍ତା କରିଥିଲେ । ସେତେବେଳେ ତାଙ୍କ ବୟସ ୫୦ ବର୍ଷ ।

ରେଜିଷ୍ଟ୍ରେସନ ଆକ୍ଟ ଅନୁଯାୟୀ ୧୯୭୦ରୁ ଉଦ୍ୟମ ହୋଇ ୧୯୭୨ ମସିହାରେ ବନବାସୀ ସେବା ସମିତି କାମ ଆରମ୍ଭ ହୋଇଥିଲା ଏବଂ ୧୯୭୪ରେ ମାନ୍ୟତା ପାଇଲା । ଝିଅମାନେ, ଯେଉଁମାନେ ୮ମ, ୯ମ ଶ୍ରେଣୀ ପଢ଼ିବା ପରେ ପାଠ ଛାଡ଼ିଦେଇଥିଲେ ଓ ଫୁଲବାଣୀ ଜିଲ୍ଲାର ୨୫ ଜଣ ଆଦିବାସୀ ହରିଜନ ଝିଅ ଏହି ଶିକ୍ଷା ପାଇଲେ । ୧୯୬୭ରେ ଆଉ ୨୫ଜଣ ନାମ ଲେଖାଇଲେ ।

୧୯୭୭ରେ ରାଜ୍ୟ ଗୋଷ୍ଠୀ ଉନ୍ନୟନ ବିଭାଗ ଓ କେନ୍ଦ୍ର ସରକାରଙ୍କ ସମାଜ ମଙ୍ଗଳ ବିଭାଗ ସହାୟତାରେ ବାଲିଗୁଡ଼ା କେନ୍ଦ୍ରରେ ଏକ ବାଳାଶ୍ରମ ଖୋଲାଗଲା । ପ୍ରଥମେ ଏଠାରେ ୫୦ ଜଣ ଅନାଥ ଶିଶୁ ରହୁଥିଲେ ଏବଂ ଏବେ ୧୦୦ରୁ ଅଧିକ ଶିଶୁ ରହୁଛନ୍ତି । ଏହି ଶିଶୁମାନଙ୍କ ଲାଳନ ପାଳନ ଓ ସେବାପାଇଁ ମାତୃରୂପିଣୀ ସେବିକାଙ୍କ ସେବା ଅନସ୍ୱୀକାର୍ଯ୍ୟ ।

୧୯୭୮-୭୯ ମସିହାରୁ ବାଲିଗୁଡ଼ା ଠାରେ ଓଡ଼ିଶା ରାଜ୍ୟ ସରକାରଙ୍କ ପଞ୍ଚାୟତିରାଜ ବିଭାଗଦ୍ୱାରା ୧୫୦ ଜଣ ଛାତ୍ରଛାତ୍ରୀଙ୍କ ସକାଶେ ଶିଶୁ ସଦନ କାର୍ଯ୍ୟ କରୁଛି । ଏହା ବ୍ୟତୀତ ୧୯୯୧-୯୨ରେ ବାସୁଦେବ ସେବା ସଦନ, ଜଙ୍କିକିଆ, ୧୯୯୧-୯୨ରେ ଆଚାର୍ଯ୍ୟ ହରିହର ସେବାସଦନ, ରବିଙ୍ଗିଆ ଓ ୧୯୯୦-୯୧ରେ କଳାହାଣ୍ଡିର ଡ଼ଙ୍ଗରୀଗୁଡ଼ା ଠାରେ ୫୦ ଜଣ ଲେଖାଏଁ ଛାତ୍ରଛାତ୍ରୀଙ୍କୁ ନେଇ ଶିକ୍ଷା ଦିଆଯାଉଛି । ୧୯୯୯ ସୁଦ୍ଧା ଏହି ଅନୁଷ୍ଠାନ ଗୁଡ଼ିକରେ ୩୫ ଜଣ କର୍ମଚାରୀ କାମ କରୁଛନ୍ତି । ଅନ୍ଧ, ମୂକ ପିଲା ବାଦେ ବନବାସୀ ସେବା ସମିତିର ବାଳାଶ୍ରମରେ ୧୫୦ରୁ ଉର୍ଦ୍ଧ୍ୱପିଲା ରହୁଛନ୍ତି ।

ବନବାସୀ ସେବା ସମିତିର ନିଜସ୍ୱ ଖର୍ଚ୍ଚରେ, ସମିତିର ପରିସର ମଧ୍ୟରେ ଏକ ପ୍ରାଥମିକ ବିଦ୍ୟାଳୟ କାମ କରୁଛି ୧୯୯୪ ମସିହାରୁ । ଏହାର ଛାତ୍ରଛାତ୍ରୀ ସଂଖ୍ୟା ବର୍ତ୍ତମାନ (୧୯୯୯-୨୦୦୦) ୧୯୫ ଅଟେ ୧୯୭୭ ମସିହାରୁ ବନବାସୀ ମଧ ଇଂରାଜୀ ବିଦ୍ୟାଳୟ ବାଲିଗୁଡ଼ାରେ ପ୍ରତିଷ୍ଠିତ ହୋଇ ଶିକ୍ଷା ବିଭାଗ ଦ୍ୱାରା ମାନ୍ୟତା ପାଇଛି । ୧୧୧ ଜଣ ଛାତ୍ରଛାତ୍ରୀ ଏହି ବିଦ୍ୟାଳରେ ଅଧ୍ୟୟନ କରୁଛନ୍ତି ।

ଦୁଇପଟେ ଘନ ଜଙ୍ଗଲ । ମଝିରେ ଲମ୍ବି ଯାଇଚି ବାଲିଗୁଡ଼ାରୁ ଫୁଲବାଣୀ ଆଡକୁ ପିଚୁରାସ୍ତା । ପ୍ରାକୃତିକ ଦୃଶ୍ୟ ଅତି ମନୋରମ । ବାଲିଗୁଡ଼ାରୁ ଜୀପରେ ଅଧଘଣ୍ଟାର ବାଟ ବନ୍ଧଗଡ଼ । ବନବାସୀ ସମିତି ପକ୍ଷରୁ ଏଠି ଗଢ଼ି ଉଠିଛି କନ୍ୟାଶ୍ରମଟିଏ । କେନ୍ଦ୍ର ସରକାରଙ୍କ ଆଦିବାସୀ ବ୍ୟାପାର ମନ୍ତ୍ରଣାଳୟର ସହାୟତାରେ, ଭାରତୀୟ ଆଦିମ ଜାତି ସେବକ

ସଂଘ ଜରିଆରେ ବନ୍ଧଗଡ଼ ଠାରେ ଏକ ଆଦିବାସୀ କନ୍ୟାଶ୍ରମ ପରିଚାଳିତ ହେଉଛି । ଏହି କନ୍ୟାଶ୍ରମର ଅନ୍ତେବାସୀ ୧୦୦ ଜଣ । ଏମାନେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ଧନ୍ଦାମୂଳକ ଶିକ୍ଷା ମଧ ଶିଖୁଛନ୍ତି । ଏଠି ନିଜର ଅନୁଭୂତ କଥା ଟିକିଏ କହିରଖେ । ସେଦିନଥିଲା ଅକ୍‌ଟୋବର ୧୭ ତାରିଖ ୧୯୯୭ ମସିହା । ସମୟ ଅହରାହ୍ନ ୫.୩୦ ହେବ । ବିଶ୍ୱନାଥ ଆଞ୍ଚାଙ୍କ ସହ ବନବାସୀ ସେବା ସମିତିରୁ ଜୀପ୍‌ରେ ବାହାରି ବାଲିଗୁଡ଼ାରୁ ଫୁଲବାଣୀ ରାସ୍ତାରେ ୩୮ କି.ମି. ଗଲାପରେ ପଡ଼ିଲା ବନ୍ଧଗୁଡ଼ା । ଆଶ୍ରମ ଭିତରକୁ ଗଲୁ । ସାଙ୍ଗରେ ମହମ୍ମଦ ବାଜୀ ଥିଲେ । ଆଶ୍ରମର ତତ୍ତ୍ୱାବଧାରିକା ସୁପ୍ରିୟା ପରବିନ୍ । ବେଶ୍ ମିଷ୍ଟଭାଷିଣୀ, ସୁନ୍ଦର ବ୍ୟବହାର ସମ୍ପନ୍ନା । ସେ ବାଜୀବାବୁଙ୍କ ବଡ଼ଭାଇଙ୍କ ପୁଅର ଝିଅ, ନାତୁଣୀ । ଆଶ୍ରମର ଚାରିଆଡ଼େ ବହୁବର୍ଣ୍ଣ ଫୁଟନ୍ତାଫୁଲ । ସଞ୍ଜ ହେଇ ଆସୁଥିଲା । ପ୍ରାର୍ଥନା ସମୟ । ଘଣ୍ଟା ବାଜିଲା । ସମସ୍ତ ଅନ୍ତେବାସୀ ଆଶ୍ରମ ବାରଣ୍ଡାରେ ଧାଡ଼ି ହୋଇ ବସିଲେ । ବିଶ୍ୱନାଥ ଆଞ୍ଚା, ବାଜୀବାବୁ ଓ ମୁଁ ପ୍ରାର୍ଥନାରେ ବସିଲୁ । ଫୁଲର ବାସ୍ନା, ଝିପି ଝିପି ବର୍ଷାରେ ମାଟିର ଗନ୍ଧ ଭିତରେ ପ୍ରାର୍ଥନା ପୂର୍ବ ଶାନ୍ତ ନୀରବତା । ମନରେ କେମିତି ଏକ ଭାବ । କିଛି ସମୟପରେ ଦୁଇ ଆଦିବାସୀ ଝିଅ ମଧୁର ସ୍ୱରରେ ନିମ୍ନ ପ୍ରାର୍ଥନାଟିକୁ ବୋଲିଲେ । ମନ ବୁଡ଼ି ଯାଉଥିଲା କେମିତି ଚିତ୍ତ ପ୍ରଶାନ୍ତିରେ । ମନ୍ତ୍ରିତ ହେଉଥିଲା ପ୍ରାର୍ଥନା ଏମିତି :

ତୁମେତ ଅସୀମ ପ୍ରଭୁ ତୁମେତ ମହାନ
ଆଖି ଖୋଲି ଦେଖିଲି ଯା
ସବୁତ ତୁମରି ଦାନ ।।
ତୁମେ ଗଢ଼ିଅଛ ଏହି ଆକାଶ ବତାସ ମହୀ
ସୂର୍ଯ୍ୟ ଚନ୍ଦ୍ର ଆଦି ଗ୍ରହ ତାରା
ଫୁଲରେ ଭରି ସୁବାସ ଫଳରେ ମଧୁର ରସ
ହସାଇଲ ଏହି ବସୁନ୍ଧରା
ସୁନ୍ଦର ଏ ଧରାପରେ ସୁନ୍ଦର ମଣିଷଟିଏ
ତୁମେତ ଗଢ଼ିଛ ଭଗବାନ
ତୁମେତ ଅସୀମ ପ୍ରଭୁ .....୧
ମଣିଷର ମନେପୁଣି ଭରିଦେଇ କେତେ ଆଶା
ଶିଖାଇଲ ବଞ୍ଚିବାର ରାହା
ଭଲପରେ ମନ୍ଦଯେଣୁ ରଖିଲ ଦୁଇଟି ରେଣୁ

ସୁଖପରେ ଦୁଃଖପୁଣି ଯାହା
ତୁମରି ଚରଣତଳେ ଭକ୍ତି କୁସୁମ ଢ଼ାଳି
କରେ ମୁଁ ହିଁ ତବ ଜୟଗାନ
ତୁମେତ ଅସୀମ ପ୍ରଭୁ...୨

କେମିତି ଏକ ମୁଗ୍ଧ ଅନୁଭବକୁ ନେଇ ବନ୍ଧଗଡ଼ ଆଶ୍ରମଛାଡ଼ି ଆମ ଜୀପ ଚାଲିଲା ଆଗକୁ । ବନ୍ଧଗଡ଼ ଠାରୁ ଫୁଲବାଣୀ ରାସ୍ତାରେ ୫୭ କି:ମି: ଗଲାପରେ ପଡ଼ିଲା ଛକଟିଏ । ସେଠୁ ବାଁ ହାତି ବାଙ୍କିଯାଇଛି ମାଟିରାସ୍ତାଟିଏ । ଦିପଟେ, ଅଁଳା, ବାହାଡା, ମହୁଲ, ଶାଳ ଓ ବାଉଁଶର ବଣ । ରାସ୍ତା ଖାଲ, ଢ଼େପ, କେଉଁଠି ଗାତ ହୋଇଛି ତ କେଉଁଠି ଢ଼ିମା ପଥର ମୁହଁ ଉଠାଇ ଚାହୁଁଛି । ୧୮କି:ମି ଗଲାପରେ ଜୀପ ଅଟକି ଗଲା ରବିଙ୍ଗିଆ ଗ୍ରାମରେ ଥିବା ଆଚାର୍ଯ୍ୟ ହରିହର ଶିଶୁ ସଦନ ଆଗରେ । ଏଠି ଛୋଟ ଛୋଟ ୫୦ ଜଣ ଅନ୍ତେବାସୀ । ଗୋଟିଏ ବଡ଼ ହଲରେ ବସି ପଟା ଓ ଖଡ଼ିରେ ପାଠ ଲେଖୁଥିଲେ । ଆଈଙ୍କୁ ପହଞ୍ଚିବାର ଦେଖି ପିଲାଙ୍କର ଖୁସି କହିଲେ ନସରେ । ଆଚାର୍ଯ୍ୟ ହରିହରଙ୍କ ନାମରେ ନାମିତ ଶିଶୁ ସଦନରୁ ଅଳ୍ପଦୂରରେ ସୁଦୃଶ୍ୟ ପକ୍କାଘରଟିଏ ଦିଶିଲା । ସେଠି ଚାଲୁଥିଲା ମା ରମାଦେବୀ କନ୍ୟାଶ୍ରମ । କନ୍ୟାଶ୍ରମରେ ପଶୁ ପଶୁ ରାତିର ନିସ୍ତବ୍ଧତା ଭିତରେ ଆଶ୍ରମ ଅଗଣାରେ ଫୁଟିଥିବା ରଜନୀଗନ୍ଧା ଫୁଲର ବାସ୍ନାରେ ଖଣ୍ଡମଣ୍ଡଳ ମହକି ଯାଉଥିବାର ଅନୁଭବ ହେଲା । ମା ରମାଦେବୀ କନ୍ୟାଶ୍ରମ କେନ୍ଦ୍ର ସରକାରଙ୍କ ଆଦିବାସୀ ବ୍ୟାପାର ମନ୍ତ୍ରଣାଳୟର ଆର୍ଥିକ ସହାୟତାରେ ପରିଚାଳିତ । ସବୁଠି ଆଈଙ୍କ ପବିତ୍ର ହାତର ସ୍ପର୍ଶ । ଶୃଙ୍ଖଳା ସବୁଠି ଦେଖିବାକୁ ମିଳିଲା । ଆଈଙ୍କ ଶ୍ରଦ୍ଧାମୟ ସଂସାରର ଏ ଗୁଡ଼ିକ ଗୋଟିଏ ଗୋଟିଏ ଉପାଦାନ ଥିଲା । ପ୍ରକୃତି ଓ ମଣିଷର ପାରସ୍ପରିକ ସମ୍ପର୍କ । ମଣିଷ ସହିତ ମଣିଷର ମାନବୀୟ ସ୍ନେହ ଶ୍ରଦ୍ଧାର ପ୍ରତୀକଥିଲା ଏହି ଅନୁଷ୍ଠାନ ।

୧୯୮୧ ମସିହା ଠାରୁ ରେଡକ୍ରସ ଦୃଷ୍ଟିହୀନ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି ଏବଂ ୧୯୯୩ରେ ଏହା ଏକ ଉଚ୍ଚ ବିଦ୍ୟାଳୟରେ ପରିଣତ ହୋଇଛି । ବନବାସୀ ସେବା ସମିତିର ପ୍ରତ୍ୟକ୍ଷ ପରିଚାଳନାରେ ଏହା ଚାଲିଛି । ଓଡ଼ିଶା ସରକାରଙ୍କ ମହିଳା ଓ ଶିଶୁ ବିକାଶ ବିଭାଗର ଆର୍ଥିକ ସହାୟତାରେ ଏହି ଅନୁଷ୍ଠାନ ଶୃଙ୍ଖଳିତ ଭାବେ କାର୍ଯ୍ୟ କରୁଛି । ଏବକୁ ୬ ବର୍ଷଧରି ପିଲାମାନେ ମାଟ୍ରିକ ପରୀକ୍ଷା ଦେଇ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇ ଆସୁଛନ୍ତି । ୧୯୯୯-୨୦୦୦ ମସିହାରେ ବିଦ୍ୟାଳୟରେ ୮୦ ଜଣ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିଲେ ।

କେବଳ ପାଠ ନୁହେଁ ପରବର୍ତ୍ତୀ ଜୀବନରେ ସ୍ୱାବଲମ୍ବୀ ହେବା ପାଇଁ ସେମାନଙ୍କୁ ଧନ୍ଦାମୂଳକ ଶିକ୍ଷାମାନ ମଧ ଦିଆ ଯାଉଛି । ସଙ୍ଗୀତ ଓ ବାଦ୍ୟଯନ୍ତ୍ର, ପ୍ଲାଷ୍ଟିକ୍‌ବ୍ୟାଗ, ଚକ୍, ପାପୋଛ ଓ ମହମବତୀ ତିଆରି ଶିକ୍ଷା ପ୍ରଶିକ୍ଷିତ କର୍ମୀମାନେ ଶିଖାଉଛନ୍ତି । ଏମାନଙ୍କ ଯତ୍ନନେବା ପାଇଁ ଗୃହମାତା ଓ ଶିକ୍ଷାଦାନ ପାଇଁ ଶିକ୍ଷକ, ଶିକ୍ଷୟିତ୍ରୀ ନିଯୁକ୍ତି ପାଇଛନ୍ତି ।

୧୯୮୫ ମସିହାରେ ବନବାସୀ ସେବା ସମିତିର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବନବାସୀ ବଧିର ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ତରପର୍ଯ୍ୟନ୍ତ ଶିକ୍ଷାଦେବା ସଙ୍ଗେ ସଙ୍ଗେ ଧନ୍ଦାମୂଳକ ଶିକ୍ଷା ଦିଆଯାଉଛି । ଏମାନେ ସିଲେଇ ଶିକ୍ଷା, ଚିତ୍ରକଳା, ଖେଳନା ତିଆରି, ବାଉଁଶ ଓ ବେତକାମ ଆଦି ଶିଖୁଛନ୍ତି ।

ଆଦିବାସୀ ହରିଜନ ପିଲାଙ୍କ ପାଇଁ ବାଲିଗୁଡ଼ା ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ଜରିଆରେ ଏକ ସ୍ୱତନ୍ତ୍ର ଛାତ୍ରାବାସ ୫୦ ଜଣ ଅନ୍ତେବାସୀଙ୍କୁ ନେଇ ଗଢ଼ିଉଠିଛି । ଏଠି ଛାତ୍ରଛାତ୍ରୀ ମାନଙ୍କୁ ୧୦ ମାସ ନିମିତ୍ତ ଆର୍ଥିକ ସହାୟତା ମିଳେ ଏବଂ ଆଉ ଦୁଇମାସ ବନବାସୀ ସେବା ସମିତି ଏମାନଙ୍କ ଖର୍ଚ୍ଚ ତୁଲାଇଥାନ୍ତି ।

**ବନବାସୀ ପଲ୍ଲୀ (ବଗିଚା):**

ବାଲିଗୁଡ଼ାଠାରୁ ଫୁଲବାଣୀ ଯିବାବାଟରେ ଅକ୍ଟ୍ରାଇ ଚେକ୍‌ଗେଟ୍ ଠାରୁ ଡାହାଣହାତ ମୁହାଁଇଯାଇଛି ପିଚୁରାସ୍ତାଟିଏ ଉତ୍ତରମୁହାଁ ହୋଇ । ଦୁଇ ପାଖରେ ନାନା କିସମର ଗଛବୃଚ୍ଛ । ମୁଣ୍ଡ ଉପରେ ଆକାଶ, ପ୍ରଶାନ୍ତ, ନୀଳ, ସ୍ଥିର । ଡ଼ାହାଣ ପାଖେ ଦିଶି ଯାଉଛି ନୀରବରେ ଠିଆ ହୋଇଥିବା ତୀଖ ପାହାଡ଼ । ସେଇ ରାସ୍ତାରେ ଏକ କିଲୋମିଟର ଗଲେ ପଡ଼େ ବନବାସୀ ପଲ୍ଲୀ । ଲମ୍ବା ଲମ୍ବା ଶାଳଗଛ, ଗୋଟିଏ ପାଖେ ପାହାଡ଼, ମଝିରେ ବିସ୍ତୀର୍ଣ୍ଣ ୬୦ ଏକର ପରିମିତ ଜମିକୁ ନେଇ ଗଢ଼ି ଉଠିଛି ବଗିଚାଘର । ଏ ଭିତରେ କେତେ ଚମ୍ପାଗଛ, ଫୁଲ ଫୁଟିଲେ ପବନ ମହକି ଉଠେ । ବଗିଚାଘରର ତନୁଶ୍ରୀରେ ସବୁଜ ବୃକ୍ଷଙ୍କ ବେହରଣ । ଅନେକ ନାମ-ଅନାମ ଚଢ଼େଇଙ୍କ କଳରବ । ଶୀତଦିନର କାକରରେ ଯେତେବେଳେ ସୂର୍ଯ୍ୟକିରଣ ପଡ଼େ ଝଲସି ଯାଏ ବଗିଚାଘର । ଦେଖିଲେ ମନଶାନ୍ତ ହୋଇଯାଏ । ବଗିଚା ଘରର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିଲେ କବିବର ରାଧାନାଥ ମନେ ପଡ଼ନ୍ତି :

'ସୁନ୍ଦର ତୃପ୍ତିର ଅବସାନ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦର ପଣର ଚିରନ୍ତନ ରୀତି ।।''

ଚିରନ୍ତନ ସୌନ୍ଦର୍ଯ୍ୟର ଲୀଳାକ୍ଷେତ୍ର ଏହି ବଗିଚାଘର, ଯାହାକୁ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମା ଉଦ୍‌ଘାଟନ କରିଥିଲେ । ଏହାବୋଧେ ବିଶ୍ୱନାଥ ଆଜ୍ଞାଙ୍କ ପ୍ରକୃତି ପ୍ରାଣର ସୁନ୍ଦରତମ ଅଭିବ୍ୟକ୍ତି । ବଗିଚାଘର ଭିତରେ ରହିଛି ଦୃଷ୍ଟିହୀନ ବିଦ୍ୟାଳୟ, ସ୍ୱଳ୍ପକାଳୀନ ମହିଳା ନିବାସ ଓ ଆଉକେତୋଟି ଅନୁଷ୍ଠାନ । ବର୍ଷାଦିନେ ବଗିଚା ଘରର ସୌନ୍ଦର୍ଯ୍ୟ ଅନନ୍ୟ ହୋଇଉଠେ । ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟର ଆର୍ଥିକ ସହାୟତାରେ ଭାରତୀୟ ଆଦିମଜାତି ସେବକ ସଂଘ, ନୂଆଦିଲ୍ଲୀଙ୍କ ଜରିଆରେ ୧୯୯୩ଠାରୁ ବାଲିଗୁଡ଼ା ଠାରେ ସ୍ୱଳ୍ପକାଳୀନ ମହିଳା ନିବାସ, ବନବାସୀ ସେବା ସମିତିର ତତ୍ତ୍ୱାବଧାନରେ ଚାଲିଛି । ଏହି ନିବାସରେ ଅସହାୟ । ନିରାଶ୍ରିତ । ବିଧବା, ସ୍ୱାମୀ ପରିତ୍ୟକ୍ତା ମହିଳାମାନଙ୍କୁ ସ୍ୱାବଲମ୍ବନଶୀଳ । କରାଇବା ପାଇଁ ବିଭିନ୍ନ ପ୍ରକାର ତାଲିମ ଓ ଧନ୍ଦାମୂଳକ ଶିକ୍ଷା ଦିଆଯାଏ । ଏମାନେ ସିଲେଇ, ଏମ୍ବ୍ରୋଡୋରୀ ଶିକ୍ଷା, ନଡ଼ିଆକତା ଓ ଝୋଟରେ ବିଭିନ୍ନ ପ୍ରକାର ହାତବୁଣା କାମ ଶିଖନ୍ତି ।

ଏବେ ଜାନୁଆରୀ ୨୦୦୦ରେ ସମିତି ଆନୁକୂଲ୍ୟରେ ୧୯୯୦ ଅକ୍ଟୋବର ୨୯-୩୦ ତାରିଖରେ ଘଟି ଯାଇଥିବା ମହାପ୍ରଳୟ, ବାତ୍ୟା ଓ ବନ୍ୟା ଭୋଗିଥିବା ଜିଲ୍ଲାକୁ ବିଚାରକୁ ନେଇ ସମିତି କେନ୍ଦ୍ରାପଡ଼ାର   ଗରାପୁର ଓ ଜଗତସିଂହପୁର ଜିଲ୍ଲାର ରଘୁନାଥପୁର (ଶିବପୁର) ଓ ବାଲିକୁଦାର ବରଗୁଡ଼ିପଡ଼ା ଠାରେ ଗୋଟିଏ ଲେଖାଏ ସର୍ଟ ଷ୍ଟେ ହୋମ୍ ଖୋଲିଛନ୍ତି କେନ୍ଦ୍ରାପଡାରେ ୪୯ ଜଣ ରଘୁନାଥପୁରରେ ୪୯ଜଣ, ବାଲିକୁଦାରେ ୪୯ ଜଣ ଓ ବାଲିଗୁଡ଼ାରେ ୩୦ ଜଣ ମହିଳା ଏହି ନିବାସରେ ରହୁଛନ୍ତି ।

ନାଆଁ ତାର ବନବାସୀ ପଲ୍ଲୀ । ବଗିଚାଘରକୁ ଲାଗି ବଡ଼ଘେର ଭିତରେ ପକ୍‌କା ଘରଟିଏ । ଘର ପଛକୁ କୂଅ । ଘର ଆଗରେ ପିଚୁରାସ୍ତା । ରାସ୍ତା ଡେଇଁଲେ ବଣ । ସେଇଠି ଜୀବନର ବାର୍ଦ୍ଧକ୍ୟରେ ପହଞ୍ଚିଥିବା କେତେଜଣ ଆଦିବାସୀ ପୁରୁଷ ଓ ମହିଳା । ଯେଉଁମାନଙ୍କର କେହି ନାହିଁ ଦେଖାରେଖା କରିବାକୁ ଏ ବୟସରେ, ସେମାନଙ୍କ ପାଇଁ ବନବାସୀ ସେବା ସମିତିର ଏହି ଜରା ନିବାସ । ଏଠି ଏବେ ୨୫ ଜଣ ବୃଦ୍ଧ ବୃଦ୍ଧା ରହିଛନ୍ତି ।

ଏମାନଙ୍କ ସ୍ୱାସ୍ଥ୍ୟସେବା, ଅନ୍ୟାନ୍ୟ ସୁଖ ସୁବିଧା ସମିତି ଦେଖନ୍ତି । ସଂଜ ହେଲେ ଯେତେବେଳେ ଅନ୍ଧାର ଘେରିଯାଏ ଚାରିଆଡେ, ଚଢ଼େଇ ସବୁ ଦିନସାରା ଚରାଖୋଜି ବସାକୁ ଫେରନ୍ତି, ସେତେବେଳେ ଜରାନିବାସରେ ଶୁଭେ ପୁରାଣ ପାଠ, ଭଜନ ଓ କୀର୍ତ୍ତନ । ପବିତ୍ରତାର ସ୍ପର୍ଶରେ ବାୟୁମଣ୍ଡଳ ପୁଣ୍ୟମୟ ହୋଇଯାଏ । ଧର୍ମଗ୍ରନ୍ଥ ପଠନ, ମହାପୁରୁଷଙ୍କ ଜୀବନୀପାଠରେ ସମୟ କଟେ । ଖଲିସିଆଁ, ଦଉଡ଼ିବଳାରେ ବେଳଯାଏ । ନିରାପତ୍ତା, ଆଶ୍ରୟ, ସ୍ନେହ, ଶ୍ରଦ୍ଧାକୁ ନେଇ ସେମାନେ ଏକ ସମ୍ମାନଜନକ ଜୀବନ ବଞ୍ଚନ୍ତି । ୧୯୯୦ରୁ ବାଲିଗୁଡ଼ା ବନବାସୀ ପଲ୍ଲୀର ଜରାନିବାସ କାର୍ଯ୍ୟ କରୁଛି । ବିଶ୍ୱନାଥ ଆଜ୍ଞାଙ୍କ ଅନ୍ତରଙ୍ଗ ସ୍ପର୍ଶ ଏହି ଜରା ନିବାସର କୋଣ ଅନୁକୋଣରେ ଅନୁଭବି ହୁଏ ।

କେବଳ ସେତିକିରେ ସମିତିର କାମ ସୀମିତ ନୁହେଁ । ସମିତି ପରିସର ଭିତରେ ଗୋଟିଏ ଶିଶୁଗୃହ କାମ କରୁଛି । ଯେଉଁ ଶିଶୁମାନେ ଜନ୍ମରୁ ବେ-ସହାରା, ପିତୃମାତୃ ସ୍ନେହରୁ ବଞ୍ଚିତ, ସେମିତି ଶିଶୁଙ୍କୁ ସାଉଁଟି ଆଣି, ସେମାନଙ୍କ ପାଳନ ପୋଷଣ ଥଇଥାନ ଓ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ବ୍ୟବସ୍ଥା କରାଯାଉଛି । ଯେଉଁ ଦମ୍ପତି ସନ୍ତାନ ସନ୍ତତିହୀନ ସେମାନେ ଚାହିଁଲେ ଏହି ଶିଶୁ ଗୃହର ଯେ କୌଣସି ଶିଶୁକୁ ପୋଷ୍ୟଭାବେ ଗ୍ରହଣ କରି ପାରିବେ ଏହି ବ୍ୟବସ୍ଥା ମଧ୍ୟ ରହିଛି । କେନ୍ଦ୍ର ସରକାରଙ୍କ ସମାଜିକ ନ୍ୟାୟ ଓ ଅଧିକାର ମନ୍ତ୍ରଣାଳୟର ଆର୍ଥିକ ସହାୟତାରେ ଏହା ପରିଚାଳିତ । ୧୯୯୯-୨୦୦୦ରେ ଏହି ଶିଶୁଗୃହରେ ୧୪ ଜଣ ଶିଶୁ ଲାଳିତ ପାଳିତ ହେଉଛନ୍ତି । ୨ ଜଣ ଶିଶୁଙ୍କୁ ପୋଷ୍ୟପୁତ୍ର ଭାବେ ଦିଆଯାଇଛି । ଏହାର ମୂଳରେ ସେବାକାର୍ଯ୍ୟର ଯେଉଁ ମାନବୀୟ ଦୃଷ୍ଟି କୋଣଟିକୁ ଅନୁଭବ କରିହୁଏ ତାହାର ତୁଳନା ନାହିଁ । ଏହା ଈଶ୍ୱରୀୟ ସେବାର ଅନ୍ୟନାମ ।

ସମାଜସେବାରେ ଉତ୍ସର୍ଗିତ ଅନୁଷ୍ଠାନ ବାଲିଗୁଡ଼ା ବନବାସୀ ସେବା ସମିତିର ବହୁମୁଖୀ କାର୍ଯ୍ୟକ୍ରମ ଭିତରେ କନ୍ଧମାଳ ଜିଲ୍ଲାର ବାଲିଗୁଡ଼ା ଓ ଫିରିଙ୍ଗିଆ ବ୍ଲକର ୧୧ଟି ଓ କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା ବ୍ଲକର ୩ଟି ଶିଶୁପାଳନ କେନ୍ଦ୍ର (Creche) ଆଦିବାସୀ ବହୁଳ ଗ୍ରାମରେ ପ୍ରତିଷ୍ଠିତ କରାଯାଇଅଛି । ତାଛଡ଼ା କେନ୍ଦ୍ର ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟର ଆର୍ଥିକ ସହାୟତାରେ ୧୦୦ ଗୋଟି ଅଣ-ଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର (Non formal Education) ବାଲିଗୁଡ଼ା ବ୍ଲକର ୮ ଗୋଟି ଆଦିବାସୀ ବହୁଳ ଗ୍ରାମ-ପଞ୍ଚାୟତରେ ଚାଲୁଛି । ସିନ୍ଦ୍ରିଗାଁ, କୁଟିକିଆ, ବୁଡୁକିଆ, ସଲାଗୁଡ଼ା, ପରମପାଙ୍ଗା, ବାଟାଗୁଡ଼ା ଓ ବାରଖମା ଗାଁ ଗୁଡ଼ିକରେ ପ୍ରଥମ ଶ୍ରେଣୀରେ ୧୧୫୬, ଦ୍ୱିତୀୟ ଶ୍ରେଣୀରେ ୧୨୮୫ ତୃତୀୟ ଶ୍ରେଣୀରେ ୩୧୬ ଏପରି ସର୍ବମୋଟ ୨୭୮୮ ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି ।

ବନବାସୀ ସେବା ସମିତି ଦ୍ୱାରା ୧୯୮୯ ମସିହାଠାରୁ ବାଲିଗୁଡ଼ା ବ୍ଲକର ୬ ଗୋଟି ଗ୍ରାମ ପଞ୍ଚାୟତରେ ମୋଟ ୪୩ ଗୋଟି ଅଙ୍ଗନବାଡ଼ି କେନ୍ଦ୍ର (I.C.D.S) ଓ ୪୦ ଗୋଟି ଉପକେନ୍ଦ୍ର ପରିଚାଳିତ ହେଉଛି । 'ହେଲ୍‌ପେଜ୍ ଇଣ୍ଡିଆ'ଙ୍କ ସହାୟତାରେ ୬୦ ଜଣ ବୃଦ୍ଧ ଓ ବୃଦ୍ଧାଙ୍କ ଥଇଥାନ ପାଇଁ ବନବାସୀ ସେବା ସମିତି ବାଟାଗୁଡ଼ା ଗ୍ରାମ-ପଞ୍ଚାୟତରେ କାମ କରୁଛି । ବନବାସୀ ବିକାଶ ଟ୍ରଷ୍ଟ ଗଠନ କରି ପ୍ରତିବର୍ଷ ରୋଗୀ ଚିକିତ୍ସା କରାଯାଉଛି, କ୍ୟାଥୋଲିକ ଚାରିଟିଜ୍, ଜଟଣୀ ୧୦୦ ଜଣ ପିଲାଙ୍କୁ ସୁଷମ ଖାଦ୍ୟ ଯୋଗାଇ ଦେଉଛନ୍ତି । କନ୍ଧମାଳ ସ୍ୱାକ୍ଷରତା ଅଭିଯାନରେ ବନବାସୀ ସେବା ସମିତିର କାର୍ଯ୍ୟ କିଛି କମ୍ ନୁହେଁ । ପୋଡୁଚାଷ ନିରାକରଣ ଓ ବୃକ୍ଷରୋପଣ କାର୍ଯ୍ୟକ୍ରମରେ ସମିତିର ପ୍ରଶଂସନୀୟ କାର୍ଯ୍ୟ ଦେଖିବାକୁ ମିଳେ । କଳାହାଣ୍ଡି ଜିଲ୍ଲାର ଡ଼ଙ୍ଗରୀଗୁଡ଼ାଠାରେ ଠକକ୍‌ର ବାପା ସେବା ସଦନ, ଅଙ୍ଗନବାଡ଼ି ତାଲିମ କେନ୍ଦ୍ର, ପ୍ରତିଷ୍ଠା କରା ଯାଇଛି । ୧୯୯୩ ମସିହା ଠାରୁ ବାଲିଗୁଡ଼ା ବ୍ଲକ୍‌ରେ ସି.ଡ଼ି.ଡ଼ି/ ୱାଟସନ୍ କାର୍ଯ୍ୟକ୍ରମ ୟୁନିସେଫ ଓ କନ୍ଧମାଳ ଜିଲ୍ଲା ପ୍ରଶାସନିକ ସହାୟତାରେ ସମିତି ପରିଚାଳନା କରି ଆସୁଛନ୍ତି । ଆଦର୍ଶ ପରିମଳ ଗ୍ରାମ ଗଠନ ଯୋଜନା ମାଧ୍ୟମରେ ବାଲିଗୁଡ଼ା ବାଟାଗୁଡ଼ା ଗ୍ରାମ-ପଞ୍ଚାୟତ ଓ ବାରଖମା ଗ୍ରାମ-ପଞ୍ଚାୟତର ବଣ୍ଡେମିଲା, ପକରିସାହି, ଦୁରିଗୁଡ଼ା ଗ୍ରାମରେ ପରିମଳ ସଂପର୍କରେ ବହୁକାମ କରା ଯାଉଛି । ପାଣି-ଶୋଧନ, ପାଇଖାନା ନିର୍ମାଣ, ପରିମଳ ସଚେତନତା ସୃଷ୍ଟି କରାଯାଉଛି । ତାଛଡ଼ା ବାରଖମା ଗ୍ରାମ ପଞ୍ଚାୟତର ବାଲାକିଆ, ଦୁଲୁକିଆ, ସଲାକିଆ ଗ୍ରାମରେ ମଧ ପରିମଳ କାର୍ଯ୍ୟକ୍ରମ ଚାଲୁ ରହିଛି ।

ସବୁଠାରୁ ବଡ଼କଥା ହେଲା ବନବାସୀ ସେବା ସମିତିର ସାହାଯ୍ୟରେ ଆଦିବାସୀ ହରିଜନ ପିଲା ପାଠପଢ଼ି, ଧନ୍ଦାମୂଳକ ଶିକ୍ଷା ଲାଭକରି ସ୍ୱାବଲମ୍ବନଶୀଳ ହୋଇ ବର୍ତ୍ତମାନ ସୁଦ୍ଧା ସ୍ୱାସ୍ଥ୍ୟ ବିଭାଗରେ ୨୩ ଜଣ, ଶିକ୍ଷା ବିଭାଗରେ ୪୪ ଜଣ, ବେସରକାରୀ ସଂସ୍ଥାରେ ସ୍ୱେଚ୍ଛାସେବୀ ଭାବେ ୧୨୮ ଜଣ, ଡ଼ାକ ବିଭାଗ ଅଧୀନରେ ଦୁଇ ଜଣ, ପରିସଂଖ୍ୟାନ ବିଭାଗ ଅଧୀନରେ ଜଣେ, ଆଦିବାସୀ, ହରିଜନ ବିକାଶ ବିଭାଗରେ ଦୁଇ ଜଣ, ପ୍ରତିରକ୍ଷା ବିଭାଗରେ ତିନି ଜଣ, ପଶୁଚିକିତ୍ସା ବିଭାଗରେ ଜଣେ ଏବଂ ଲୁଗାପଟା ସିଲାଇ କରି ୩୯ ଜଣ, ତାଲିମ ପାଇଁ ପାଞ୍ଚ ଜଣ ଏହିପରି ମୋଟ ୩୧୨ ଜଣ ଆତ୍ମନିଯୁକ୍ତି ପାଇଛନ୍ତି ।

ବାଲିଗୁଡ଼ା ବନବାସୀ ସେବା ସମିତି ଗଠନ ସମୟରେ ବିଶ୍ୱନାଥ ଆଜ୍ଞା ଯେଉଁ ସ୍ୱପ୍ନ ଦେଖିଥିଲେ, ଯେଉଁ ମଞ୍ଜିଟି ପୋତିଥିଲେ ତାହା ଏବେ ୧୯୭୨ରୁ ୨୦୦୨ ମସିହା ଭିତରେ ୩୧ ବର୍ଷର ବିଶାଳ ବଟବୃକ୍ଷରେ ପରିଣତ ହୋଇଛି । ପ୍ରିଣ୍ଟିଂ ପ୍ରେସ୍, ଅଟୋ ଜେରୋକ୍ସମେସିନ୍, ଇଲେକ୍ଟ୍ରୋନିକ ଟାଇପ ମାଧ୍ୟମରେ ଏଠି ଶିକ୍ଷା ମିଳୁଛି । ଆଦିବାସୀ ହରିଜନଙ୍କ ମଧ୍ୟରେ ସଚେତନତା ଜାଗରଣ ସକାଶେ ବିଭିନ୍ନ ଶିବିର, ସଭା, ସମିତି, ସେମିନାର ଆଦିର ଆୟୋଜନ କରାଯାଉଛି । ନର୍ସରୀ ଶିକ୍ଷା କାର୍ଯ୍ୟ ଓ ତାଲିମ ଏଠାରେ ଉପଲବ୍ଧ ହେଉଛି । ଜଙ୍ଗଲ ସୁରକ୍ଷା ଚେତନା ପୁସ୍ତକ, ଅନ୍ନପୂର୍ଣ୍ଣା ମହାରଣାଙ୍କ ଆମ ଖେଳଘର ପାଠର ମୁଦ୍ରଣ, ପ୍ରସାରଣ ସମିତିର କାର୍ଯ୍ୟକୁ ବ୍ୟାପକ କରିଛି ।

* * *

# ଅସରନ୍ତି ସଂଗ୍ରାମ ପଥରେ

୧୯୮୦ରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପୁଣିଥରେ ଶାସନକୁ ଆସିଲେ । କୁଦାଲ କମିଶନ ମାଧ୍ୟମରେ ଗାନ୍ଧୀପନ୍ଥୀମାନେ ନାନା ସମସ୍ୟାର ସମ୍ମୁଖୀନ ହେଲେ । ଦେଶର ପରିସ୍ଥିତି ବିଷୟରେ ଆଲୋଚନା କରିବା ପାଇଁ ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ ପୁଣିଥରେ ବହୁ ବୈଠକରେ ମିଳିତ ହେଲେ । ବହୁ ଆଲୋଚନା ପରେ 'ସ୍ୱରାଜ ସଂଗମ' ନାମରେ ଏକ ସଂଗଠନ ଗଢ଼ାଯିବା ପାଇଁ ସ୍ଥିର କରାଗଲା । କୌଣସି ଦଳ ସହିତ ଯୁକ୍ତ ନଥିବା ବିଶିଷ୍ଟ ନେତାମାନେ ଏହାର ସଦସ୍ୟ ହେଲେ । ଏମାନେ ସଚ୍ଚା ଓ ନୀତିଭିତ୍ତିକ ରାଜନୀତି ଗଣତନ୍ତ୍ରକୁ ସବଳ କରବା, ଦେଶର ଦାରିଦ୍ର୍ୟ ଓ ବେକାରୀ ଦୂରକରିବା ତଥା ଅନ୍ୟ ମୌଳିକ ସମସ୍ୟାର ସମାଧାନ କରିବା ଉଦ୍ଦେଶ୍ୟରେ ଏକ ସକ୍ଷମ ଜନମତ ସୃଷ୍ଟିକରିବା ପାଇଁ ନିଷ୍ପତ୍ତି ନିଆଗଲା ।

କ୍ରମେ କ୍ରମେ ସ୍ପଷ୍ଟ ହୋଇ ଉଠୁଥିଲା ଯେ ସ୍ୱାଧୀନତା ପରଠାରୁ ୧୯୮୫ଯାଏ ଭୂଦାନ ଓ ସର୍ବୋଦୟ କାମରେ ଯେତେକର୍ମୀ ନିଷ୍ଠାର ସହିତ ଯୋଡ଼ିହୋଇଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଉ ନାହାନ୍ତି । ନିଷ୍ଠାପର ଓ ଯୋଗ୍ୟକର୍ମୀଙ୍କ ସଂଖ୍ୟା ଏବେ ହାତ ଗଣତିରେ । ଅଧିକାଂଶ ନିଜନିଜର ସୀମିତ କାର୍ଯ୍ୟକୁ ନେଇ ବ୍ୟସ୍ତ । ପୂର୍ବର ଲୋକ ଚରିତ୍ର ଆଉ ନାହିଁ ।

ଏ ଭିତରେ ଦେଶଭିତରେ ବହୁ ଘଟଣା ଘଟିଗଲା । ପଞ୍ଜାବରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ 'ଅପରେସନ ବ୍ଲୁ ଷ୍ଟାର' ଘଟାଇ ଶିଖ ସମ୍ମାନ ଉପରେ ଆଞ୍ଚ ଅଣାଇଲେ । ଏହି ସାମରିକ ହସ୍ତକ୍ଷେପ ଫଳରେ ସ୍ୱର୍ଣ୍ଣମନ୍ଦିର ଓ ବହୁ ଗୁରୁଦ୍ୱାର କ୍ଷତିଗ୍ରସ୍ତ ହେଲା । ଏହାର ଫଳ ଏଇୟା ହେଲା ଯେ ଜଣେ ଅସନ୍ତୁଷ୍ଟ ଶିଖ, ବିଅନ୍ତ ସିଂହ ୩୧-୧୦-୧୯୮୪ ସକାଳେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କୁ ହତ୍ୟାକଲା । ଏହାର ପରବର୍ତ୍ତୀ ପରିଣାମରେ ଦିଲ୍ଲୀ ଓ ଭାରତର ବହୁ ସ୍ଥାନରେ ଶିଖମାନଙ୍କୁ ବର୍ବରଭାବେ ପ୍ରତିକ୍ରିୟାଶୀଳ କ୍ଷମତାପନ୍ନ ବ୍ୟକ୍ତିଙ୍କ ଦଲାଲମାନଙ୍କ ଦ୍ୱାରା ହତ୍ୟାକରାଗଲା ।

ପରେ ଶ୍ରୀରାଜୀବଗାନ୍ଧୀ ଦେଶର ପ୍ରଧାନମନ୍ତ୍ରୀ ହେଲେ । ଅଭିଜ୍ଞତା ନଥିଲା । ଶାସନଭିତରେ ବାଧ ହୋଇ ପଶିଥିବା ଶ୍ରୀମତୀ ଗାନ୍ଧୀଙ୍କ ଦ୍ୱିତୀୟପୁତ୍ର, ତାଙ୍କ ଚାରି ପାଖରେ

ଘେରି ରହିଥିବା ଚାଟୁକାରଙ୍କ ପରାମର୍ଶରେ ଯେଉଁ ନିଷ୍ପତ୍ତିମାନ ନେଲେ ତାହା ଦେଶ ପାଇ ଶୁଭଙ୍କର ହେଲା ନାହିଁ । ତାଙ୍କ ସଭାପତିତ୍ୱରେ ବମ୍ବେଠାରେ ଭାରତୀୟ ରାଷ୍ଟ୍ରୀୟ କଂଗ୍ରେସର ଶତବାର୍ଷିକୀ ଉତ୍ସବ ୧୯୮୫ରେ ପାଳନ କରାଗଲା, ଯାହା ରାଷ୍ଟ୍ରର ବହୁ ବିଶିଷ୍ଟ ନାଗରିକ ଓ ଗାନ୍ଧିବାଦୀ ମାନେ ପସନ୍ଦ କଲେ ନାହିଁ । ଏଣେ ପଞ୍ଜାବ, ଆସାମ ଓ ଉତ୍ତର ପୂର୍ବ ରାଷ୍ଟ୍ର ଗୁଡ଼ିକରେ ସନ୍ତ୍ରାସବାଦ ମୁଣ୍ଡ ଟେକିଲା । ଶ୍ରୀ ରାଜୀବ ଗାନ୍ଧୀ ଶ୍ରୀଲଙ୍କାରେ ସଂଗଠିତ ସନ୍ତ୍ରାସବାଦକୁ ଯେଉଁମାନେ ନିଜକୁ (Liberation Tigers of Tamil Elam) ଏଲ.ଟି.ଟି.ଇ ବୋଲି କହୁଥିଲେ ସେମାନଙ୍କୁ ଦମନ କରିବା ପାଇଁ ଶ୍ରୀଲଙ୍କା ସରକାରଙ୍କ ଅନୁରୋଧ କ୍ରମେ ଦେଶର ଖର୍ଚ୍ଚରେ ଭାରତୀୟ ଶାନ୍ତିରକ୍ଷା ବାହିନୀ (IPKK)ଙ୍କୁ ପଠାଇଲେ ଏବଂ ଏକ ଭୁଲସିଦ୍ଧାନ୍ତ ଯୋଗୁଁ ଭାରତୀୟ ସୈନ୍ୟ ବାହିନୀର ୩୦୦୦ରୁ ଅଧିକ ସହିଦ ହୋଇଗଲେ ।

ଏଣେ ବୋଫର୍ସ ତୋପ କିଣା ମାମଲା ଦେଶରେ ହଇଚଇ ସୃଷ୍ଟିକଲା । ଦେଶର ପରିସ୍ଥିତି ଦିନକୁ ଦିନ ଉତ୍କଟ ହେବାକୁ ଲାଗିଲା । ଦେଶରେ ପୁଣିଥରେ, ଦୁର୍ନୀତି, ଭ୍ରଷ୍ଟାଚାର ବଢ଼ି ବଢ଼ି ଚାଲିଲା ।

ଏ ସମୟରେ କଳାହାଣ୍ଡିରେ ମରୁଡ଼ି ପଡ଼ି ୧୯୮୫ରେ ବହୁଲୋକ ମୃତ୍ୟୁବରଣ କଲେ । ଓଡ଼ିଶା ସରକାର  ଏହି ସମସ୍ୟାର ମୁକାବିଲା କରି ପାରିଲେ ନାହିଁ । ସର୍ବୋଦୟ ରିଲିଫ୍ କମିଟୀ ୧୯୮୯ ଯାଏ ଏ ଅଞ୍ଚଳରେ କାମ କରିଥିଲେ ।

ଏ ଭିତରେ ରଚନାତ୍ମକ ସଂସ୍ଥାମାନେ ସରକାର ମୁଖାପେକ୍ଷୀ ହେବା ଆରମ୍ଭ କରିଦେଲେ । ଏମାନଙ୍କର ମତିଗତି ଦେଖି ବିନୋବାଜୀ ଦୁଃଖ ପ୍ରକାଶକରି କହିଲେ ଯେ ରଚନାତ୍ମକ ସଂସ୍ଥା ଓ ଆଶ୍ରମ ସବୁ ମଠବାଡ଼ିରେ ପରିଣତ ହୋଇ ଯାଉଛନ୍ତି । ଏମାନଙ୍କର ଆଉ ଲୋକ ଓ ଲୋକସମସ୍ୟା ସହିତ୍ କୌଣସି ସମ୍ପର୍କ ରହୁନାହିଁ ।

୧୯୮୫ ମସିହାରେ କୋରାପୁଟ ଜିଲ୍ଲାର ଗୋପାଳବାଡ଼ିରେ ଏକ ରଚନାତ୍ମକ କର୍ମୀ ସମ୍ମିଳନୀ ଆୟୋଜନ ହୋଇଥିଲା । ଓଡ଼ିଶାର ବହୁକର୍ମୀ ଏଠାକୁ ଆସିଥିଲେ । ଶ୍ରୀ ମନମୋହନ ଚୌଧୁରୀ, ମାଳତୀଦେବୀ, ମହମ୍ମଦ ବାଜୀ, ଶରତ ଚନ୍ଦ୍ର ମହାରଣା, ବିଶ୍ୱନାଥ ଆଞ୍ଚା । ଏହି ସମ୍ମିଳନୀରେ ଗୃହୀତ ପ୍ରସ୍ତାବ ଉପରେ ସର୍ବୋଦୟ ଶବ୍ଦର ବ୍ୟବହାର ବିରୋଧରେ ବହୁ ସଦସ୍ୟ ଆଲୋଚନାକଲେ, ସେତେବେଳକୁ କୁଦାଲ କମିଶନ ଜୋରସୋରରେ ଭୂଦାନ ଓ ସର୍ବୋଦୟ ବାଲାଙ୍କୁ ବସେଇ ଉଠେଇ ଦେଉ ନଥାନ୍ତି ।

ଏଣେ ରାଜୀବଗାନ୍ଧୀ ସ୍ୱେଚ୍ଛାସେବୀ ସଂଗଠନ ମାନଙ୍କୁ ହାତରେ ରଖିବା ପାଇଁ ୧୦୦ କୋଟି ଟଙ୍କାର ବ୍ୟବସ୍ଥା ଖଞ୍ଜିଲେ ଫଳରେ ବହୁ ସଂସ୍ଥା ଗ୍ରାଣ୍ଟ ପାଇବା ପାଇଁ ସୃଷ୍ଟି ହେଲେ । ଏମାନଙ୍କର ଲୋକଙ୍କ ସହିତ ସମ୍ପର୍କ ରହିଲା ନାହିଁ । ଏମାନେ ସରକାରଙ୍କଠାରୁ ଟଙ୍କା ଆଣି କାମକଲେ । ଏହି ସଂସ୍ଥାଗୁଡ଼ିକ ଲୋକଙ୍କ ମନରେ ଆତ୍ମ ବିଶ୍ୱାସ, ସ୍ୱାବଲମ୍ବନଶୀଳତା ବଢ଼ାଇବେ କଣ ବରଂ ଭିକାରୀ ମନୋଭାବ ବଢ଼ାଇଲେ ।

ଏମିତି ଅନେକ ପ୍ରତିକୂଳ ପରିସ୍ଥିତି ଦେଶ ଭିତରେ ସୃଷ୍ଟିହେଲା । ଦେଶରେ ରାଜନୈତିକ ଅସ୍ଥିରତା ବଢ଼ିଲା । ଆସାମରେ, ପଞ୍ଜାବରେ ସନ୍ତ୍ରାସବାଦର ହିଂସାରେ ବହୁଲୋକ ମୃତାହତ ହେଲେ । ଏଲ.ଟି.ଟି.ଇ ର ସୁଚିନ୍ତିତ ଷଡଯନ୍ତ୍ରରେ ୧୯୯୪ ମେ ୨୧ ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବଗାନ୍ଧୀ ମାନବ-ବୋମା ଦ୍ୱାରା ମୃତ୍ୟୁବରଣ କଲେ । ଦେଶସାରା ହିଂସା, ସାଂପ୍ରଦାୟିକ ହିଂସା, ଧର୍ମ ଓ ବିଶ୍ୱାସକୁ ନେଇ ରାଜନୀତି ତଥା ଦୁର୍ନୀତି, ଭ୍ରଷ୍ଟାଚାର ଅଧିକରୁ ଅଧିକ ହେଲା । ଭାରତୀୟ ଲୋକ-ଚରିତ୍ରରେ ନୈତିକପତନ, ସ୍ୱାର୍ଥପରତା, ଲୋଭ ଓ ଇର୍ଷା ବଢ଼ିଲା । ଏସବୁ ଦେଖି ପୁଣିଥରେ ଗାନ୍ଧିବାଦୀ ନେତା ଓ ସଚେତନ ନାଗରିକଗଣ ଦେଶକଥା ଚିନ୍ତା କରିବା ଓ କାମ କରିବା ପାଇଁ ମିଳିତ ହେଲେ । ଆଉ ଜୟପ୍ରକାଶ କି ବିନୋବା ନଥିଲେ ଦିଗ୍‌ଦର୍ଶନ ଦେବାପାଇଁ ।

ରାଜନୈତିକ ଦିଗ୍‌ବଳୟରେ ଧର୍ମନିରପେକ୍ଷତା ଓ ରାଷ୍ଟ୍ରବାଦକୁ ନେଇ ବହୁ ତର୍କ ବିତର୍କ ହେଲା । ସାଂପ୍ରଦାୟିକ ସଦ୍‌ଭାବ ବଦଳରେ ବିଦ୍ୱେଷ ବଢ଼ିଲା ଏବଂ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ପି.ଭି. ନରସିଂହଙ୍କ ରାଓଙ୍କ ସମୟରେ ଅଯୋଧ୍ୟାରେ ବାବ୍‌ରୀ ମସ୍‌ଜିଦ୍‌କୁ ନେଇ ଦେଶସାରା ଅଶାନ୍ତ ବାତାବରଣ ସୃଷ୍ଟିହେଲା । ଏହି ଘଟଣାର ପ୍ରତିବାଦରେ ସର୍ବୋଦୟ ମଣ୍ଡଳର କର୍ମୀମାନେ ଶାନ୍ତିସେନା ଗଠନ କରି ଅଯୋଧ୍ୟା ଯିବା ପାଇଁ ସ୍ଥିରହେଲା । ଅଖିଳଭାରତ ସର୍ବସେବା ସଂଘ ଏହାର ନେତୃତ୍ୱ ନେଲା ।

**ଏ ସମ୍ବନ୍ଧରେ ଓଡ଼ିଶାର ଜଣେ ବିଶିଷ୍ଟ ଭୂଦାନ କର୍ମୀ ଶ୍ରୀ ଅଲେଖ ପାତ୍ର କହନ୍ତି :**

‘‘ସେଦିନ ଥିଲା ଜାନୁଆରୀ ମାସ ୧୦ ତାରିଖ ୧୯୯୧ ମସିହା । ପ୍ରାୟ ଶହେଜଣ ଶାନ୍ତିସେନା ପୁରୁଷ ଓ ସ୍ତ୍ରୀ ଦୁଇଦିନ ଧରି ଉପବାସ ଓ ପ୍ରାର୍ଥନା କରିବା ନିମନ୍ତେ ଅଯୋଧ୍ୟାରେ ପହଞ୍ଚିଲେ । ବାବ୍‌ରୀ ମସଜିଦ୍ ଠାରୁ ବହୁଦୂରରେ ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତି ସାମନାରେ ବସି ଏମାନେ କାର୍ଯ୍ୟ ଆରମ୍ଭକଲେ । ଭଜନ ଓ ପ୍ରାର୍ଥନା ପରେ ସୂତାକଟା ଆରମ୍ଭ ହେଲା ।

ସଦ୍‌ଭାବନା ଜାଗରଣ ପାଇଁ କେହି କେହି ସକ୍ଷିପ୍ତ ଭାଷଣ ଦେଉଥାନ୍ତି । କ୍ରମେ ଦର୍ଶକ ଓ ଶ୍ରୋତାମାନେ ଏମାନଙ୍କୁ ଶୁଣିଲେ ।

ଏହାର କିଛି ସମୟ ପରେ ସିନ୍ଦୁର ଟୋପା ଲଗାଇ 'ଜୟଶ୍ରୀରାମ ଧ୍ୱନି' ଦେଇ କେତେ ଯୁବକ ପହଞ୍ଚିଲେ । ଏମାନଙ୍କୁ ସ୍ଥାନଛାଡ଼ି ଚାଲିଯିବାକୁ କହିଲେ । ସର୍ବୋଦୟ କର୍ମୀମାନେ ଶାନ୍ତଭାବରେ ନିଜ ନିଜ କାମ ଚଲାଇ ରଖିବା ଦେଖି ଧମକ ମଧ୍ୟ ଦେଲେ । ଏହି ଯୁବକ ମାନେ ତା ପରେ କ୍ରୋଧରେ ଅନ୍ଧ ହୋଇଗଲେ । ଚରଖା ସବୁ ଛଡ଼ାଇନେଲେ । ମାଟି ଓ ଚପଲ ଫୋପାଡ଼ିଲେ । ଗାଳିଗୁଲଜ କଲେ । କର୍ମୀମାନେ ବସିଥିବା ଆସନ କମ୍ବଳ ଟାଣିନେଲେ । ମହିଳାମାନେ ଘୋଡାଇ ହୋଇଥିବା ଶାଲ ମଧ୍ୟ । ଉତ୍ତର ଭାରତର ଶୀତ, କୋହଲା ପବନରେ, ଫୁଙ୍ଗୁଳା ଦେହରେ ଖୋଲା ଚଟାଣ ଉପରେ ବସିରହି କର୍ମୀମାନେ ରାମଧୁନ, ଭଜନ ବୋଲୁଥାନ୍ତି । ଯୁବକମାନଙ୍କ ତୁଣ୍ଡରେ ଗାଳି ଶାଳୀନତାର ସୀମାଛୁଉଁ ନଥିଲା । ସକାଳ ଦିନ ନ' ଟାରୁ ଏହା ଅନବରତ ଚାଲିଲା ।''

ସେଦିନର ଏକ ମର୍ମନ୍ତୁଦ ଘଟଣାକୁ ଚାକ୍ଷୁଷ କରିଥିବା ବିଶଷ୍ଟ ସର୍ବୋଦୟ ନେତା ଶ୍ରୀଯୁକ୍ତ ଅଲେଖ ପାତ୍ର କହନ୍ତି, ''ପ୍ରାୟ ଦିନ ଦୁଇଟା ବେଳକୁ ବାଜୀଭାଇ (ମହମ୍ମଦ ବାଜୀ) ପରିସ୍ରା କରିବା ପାଇଁ ଆମ ମେଳ ଭିତରୁ ବାହାରି ଯିବାର କିଛିକ୍ଷଣ ପରେ ତାଙ୍କ ମୁଣ୍ଡରେ ଶକ୍ତ ଠେଙ୍ଗାପାହାର ପଡ଼ିଲା ଏବଂ ସେ ଚିତ୍କାର କରି ତଳେ ପଡ଼ିଗଲେ । ମୁଣ୍ଡରୁ ରକ୍ତର ଧାର ଛୁଟିଥାଏ । ଭଉଣୀମାନଙ୍କ ରୁମାଲ ସବୁ ରକ୍ତରେ ଜୁଡୁବୁଡୁ ହୋଇଯିବା ପରେ ମୁଁ ମୋର ପିନ୍ଧା ଧୋତିର କାନିକୁ ଚାପି ଧରିଲି । ସେହି ରକ୍ତଭିଜା ଧୋତି ଏବେ ମଧ୍ୟ ମୋ ପାଖେ ସ୍ମୃତିରୂପେ ରହିଛି । ଗାନ୍ଧିଜୀଙ୍କର ସେବିକା, ପୂର୍ବତନ କେନ୍ଦ୍ରସ୍ୱାସ୍ଥ୍ୟମନ୍ତ୍ରୀ ଡ଼ାକ୍ତର ସୁଶୀଳା ନାୟାରଜୀ ବାଜୀଭାଇଙ୍କୁ ପୋଲିସ ଜୀପରେ ଧରି ସ୍ଥାନୀୟ ଡ଼ାକ୍ତର ଖାନାକୁ ନେଇ ମୁଣ୍ଡରେ ବ୍ୟାଣ୍ଡେଜ୍ କରାଇଲେ । କେତୋଟି ସିଲାଇ ମଧ୍ୟ ପଡ଼ିଲା । ଡ଼ାକ୍ତର ନାୟାର ସେତିକିରେ ସନ୍ତୁଷ୍ଟ ନହୋଇ ତାଙ୍କୁ ଫୈଜାବାଦର ହିଲ୍ ହସପିଟାଲରେ ଭର୍ତ୍ତି କରି ଦେଇଥିଲେ । ବାଜୀଭାଇଙ୍କ ସଙ୍ଗେ ନବରଙ୍ଗପୁରରୁ ଯାଇଥିବା ଯୁବକ (ବୋଧହୁଏ ନରହରି ଜାନୀ) ଓ ମୁଁ ରହିଥିଲୁ । ଆବଶ୍ୟକ ଚିକିତ୍ସାପରେ ଡ଼ାକ୍ତରଖାନାରୁ ମୁକୁଳି ବାରାଣସୀ ସର୍ବସେବା ସଂଘରେ ଦୁଇଦିନ ବିଶ୍ରାମ କରି ରାୟପୁର ଦେଇ ଆମେ ଫେରିଲୁ ।''

* * *

# ଜୀବନ ଯାହାର ସେବା ସାଧନାର ସରଣୀ

ସ୍ୱାଧୀନତା ପାଇଁ, ବଣ ମୁଲକରେ ସାମାଜିକ ଅନ୍ୟାୟରେ ସଢୁଥିବା ମଣିଷ ପାଇଁ; ଦୁସ୍ଥ, ଅସହାୟ, ନିରାଶ୍ରୟ, ସାହା ଭରସା ନଥିବା ମଣିଷ ପାଇଁ ସେବାର ଅକ୍ଷୟ ମନ୍ତ୍ରରେ ଦୀକ୍ଷିତ; ନିଷ୍ଠା, ତ୍ୟାଗ, ଅହିଂସା ଓ ଆଦର୍ଶରେ ଅନୁପ୍ରାଣିତ ବିଶ୍ୱନାଥ ପଟ୍ଟନାୟକଙ୍କର ସମଗ୍ର ଜୀବନ ଥିଲା ସେବା ସାଧନାର ସରଣୀ ।

ମଣିଷକୁ ଅନ୍ତରାତ୍ମାରେ ଭଲ ପାଉଥିବା, ତାର ସୁଖ ଦୁଃଖ, ହସକାନ୍ଦରେ ଏକୀଭୂତ ହୋଇଥିବା, ମଣିଷର ଅନ୍ତର୍ନିହିତ ଶକ୍ତିରେ ପ୍ରଚଣ୍ଡ ବିଶ୍ୱାସ ରଖିଥିବା, କର୍ମକୁ ଜୀବନର ମୂଳମନ୍ତ୍ର କରିଥିବା ବିଶ୍ୱନାଥ ପଟ୍ଟନାୟକ ବାସ୍ତବିକ ଜଣେ କର୍ମଯୋଗୀ ।

''କର୍ମ ମୋହର ନିଜଗୁରୁ
ଉଦ୍ଧବ କେତେ ତୁ ପଚାରୁ''

କର୍ମକୁ ଗୁରୁମାନିବାର ଦୀକ୍ଷା ସେ ଘେନିଥିଲେ, ଧୂଳି ମାଟିର ସନ୍ଥ ୰ଗୋପବନ୍ଧୁ ଚୌଧୁରୀଙ୍କ ଠାରୁ । ମା ରମାଦେବୀଙ୍କ ଠାରୁ । ଋଷି ଆଚାର୍ଯ୍ୟ ହରିହରଙ୍କ ଠାରୁ । ଗୋଟିଏ ଧ୍ୟାନ, ଗୋଟିଏ ଧାରଣା, ଗୋଟିଏ ଚେତନାରେ ସେ ହୋଇଗଲେ ଅଭିମନ୍ତ୍ରିତ । ମହାପ୍ରଜ୍ଞାର ଅଧିକାରୀ ସନ୍ଥଭୀମଭୋଇଙ୍କ ବେଦବାକ୍ୟ ହୋଇଗଲା ତାଙ୍କର ଜୀବନ ଦର୍ଶନ :

''ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।''

ପ୍ରାଣୀଙ୍କ ଅପ୍ରମିତ ଆର୍ତ୍ତିରେ ବିଗଳିତ ମଣିଷ ବିଶ୍ୱନାଥ ପଟ୍ଟନାୟକ, ମୁଁକାର ଠାରୁ ଶତ ଯୋଜନ ଦୂରରେ । ସମସ୍ତଙ୍କ ଭିତରେ ମିଶିଯାଇ ସବୁବେଳେ ନିଜ କଥା କହିବାକୁ ସଂକୋଚ କରୁଥିବା ଧୀର, ନମ୍ର, କୋମଳଭାଷୀ ମଣିଷ ବିଶ୍ୱନାଥ ପଟ୍ଟନାୟକଙ୍କ କଣ୍ଠରେ ଏଥିପାଇଁ ନିମ୍ନ ଭଜନଟି ବହୁତ ଅର୍ଥରଖେ :

''ମୁଁ କାର ମାତର ମୋର ନୁହେଁ ବୋଲି
କହିବାକୁ ନାହିଁ ବାଟ
ଦୂରୁ ଶ୍ରୀଚରଣେ ଅର୍ପଣ କରୁଛି
ଘେନହେ ବିଶ୍ୱ ସମ୍ରାଟ ।''

ନିଜକୁ ଏକ ସମର୍ପିତ ସେବକଭାବେ ଚିରକାଳ ସେ ମଣିଲେ । ମଣିଷର ଦୁଃଖକୁ ନିଜର ଦୁଃଖ ମଣି ସେ ୧୨ ବର୍ଷ ବୟସରୁ ପାଠଛାଡ଼ି ୧୯୩୮ରେ ବେରବୋଇ ସମ୍ମିଳନୀରେ ମହାତ୍ମାଜୀଙ୍କୁ ଦେଖି ତାଙ୍କ କଥାଶୁଣି ଯେଉଁ ପ୍ରେରଣା ପାଇଲେ ପରବର୍ତ୍ତୀ କାଳରେ ତାହାହିଁ ହେଲା ତାଙ୍କ ଯାତ୍ରାପଥର ଆଲୋକରେଖା ।

ତାପରେ କେତେ ମାଟି କାଦୁଅ ବିଲହୁଡା ପାର ହୋଇ ସେ ପହଞ୍ଚିଲେ ବରୀ ଆଶ୍ରମରେ । ସେଠି ୧୯୩୮ରୁ ୧୯୪୦ ଯାଏ ସେ ଶିଖିଲେ ଶରୀରଶ୍ରମର ମହତ୍ତ୍ୱ । ଢେଙ୍କାନାଳ ଗଡ଼ଜାତ ଅତ୍ୟାଚାରକୁ ଚାକ୍ଷୁଷକଲେ ପ୍ରଜା ମଣ୍ଡଳ ଆନ୍ଦୋଳନ ଦ୍ୱାରା ଶରଣାର୍ଥୀ ହୋଇ ଆସିଥିବା ଶହ ଶହ ଶରଣାର୍ଥୀଙ୍କୁ ଦେଖି । ସ୍ୱାବଲମ୍ବୀ ହେବାର ପାଠ ଶିଖିଲେ ୰ଗୋପବନ୍ଧୁ ଚୌଧୁରୀଙ୍କ ଠାରୁ, ତାପରେ ବରୀରୁ କୋରାପୁଟ ଜିଲ୍ଲାର ଗୁଣୁପୁର । ସେଠୁ ଶ୍ରୀ ପ୍ରହ୍ଲାଦ ପାଣିଗ୍ରାହୀଙ୍କ ସାହାଯ୍ୟରେ କୁଜେନ୍ଦ୍ରୀ । ଏଠି ସେ ଦେଖିଲେ ଆଦିବାସୀ ହରିଜନ ମଣିଷର ଦୁଃଖ ଦୁର୍ଦ୍ଦଶା । ଦେଖିଲେ ରାଜ କର୍ମଚାରୀ, ପୋଲିସ୍, ଜଙ୍ଗଲ କର୍ମଚାରୀଙ୍କ ଶୋଷଣ । ଦୁର୍ଭିକ୍ଷରେ ଖାଇବାକୁ ନପାଇ ଝଡ଼ି ପଡୁଥିବା ମଣିଷକୁ । ଯେଉଁମାନଙ୍କ ସରଳତାର ସୁଯୋଗନେଇ ଶୁଣ୍ଢୀ, ସାହୁକାର, ମହାଜନ ଶୋଷଣ କରୁଥିଲେ ଏହି ବନବାସୀ ମାନଙ୍କୁ । ୧୯୪୧ରୁ ୧୯୫୮, ଦୀର୍ଘ ୧୮ ବର୍ଷ ସେ କଟାଇଦେଲେ ଏହି ଦୁସ୍ଥ ମଣିଷଙ୍କ ସେବାରେ । କୁଜେନ୍ଦ୍ରୀ ଯେଉଁଠି ଶବର, କନ୍ଧ, ହରିଜନ ମାନେ ଜୀଉଁଥିଲେ ଗୋତିର ଜୀବନ, ଭୂମି ଖଣ୍ଡେ ପାଇଁ ସହୁଥିଲେ ଶାସନର ଦଣ୍ଡ, ସେମାନଙ୍କୁ ଶୋଷଣରୁ ମୁକ୍ତ କରିବାପାଇଁ ବିଶ୍ୱନାଥ ପଟ୍ଟନାୟକ ସେମାନଙ୍କୁ ନିର୍ଭୀକ ହେବା ଶିଖାଇଲେ । ତାଙ୍କ ସହିତ ମିଶି, ତାଙ୍କ ପରି ଲୁଗାପିନ୍ଧି, ତାଙ୍କ ପରି ମାଣ୍ଡିଆ ପେଜ ଖାଇ, ଆମ୍ବ ଟାକୁଆ ଶସର ଗୁଣ୍ଡ, ଗୁର୍ଦ୍ଦିଶାଗ ସିଝା ଖାଇ, ତାଙ୍କ ଭାଷା ଶିଖି, ବନବାସୀ ହେଲେ । ଏଠାର ବନବାସୀ ଆଦରରେ, ସ୍ନେହରେ, ସମ୍ମାନରେ ତାଙ୍କୁ ଆଜ୍ଞା ବୋଲି ଡ଼ାକିଲେ । ତାଙ୍କରି ସଂଗଠନ ଓ ପ୍ରେରଣାରେ କୁଜେନ୍ଦ୍ରୀ, ଗୁଣୁପୁର, ଗୁଡ଼ାରୀ, ପଦ୍ମପୁର, ରାୟଗଡ଼ାର ବହୁ ଅଞ୍ଚଳରେ ଗାନ୍ଧିଜୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ଆଦର୍ଶକୁ ଗ୍ରହଣ କରି ସେ ଲୋକଙ୍କ

ଭିତରେ ଚରଖାରେ ସୂତା କାଟିବା, ଲୁଗାଭିଣିବା, କପାଚାଷ କରିବା, ପାଠ ପଢ଼ିବା ଏବଂ ସର୍ବୋପରି ସ୍ୱାଧୀନତା ସଂଗ୍ରାମରେ ଅହିଂସଭାବେ ସତ୍ୟାଗ୍ରହ କରିବା ଶିଖାଇଲେ । ୧୯୪୨ ଭାରତଛାଡ ଆନ୍ଦୋଳନରେ ସେ ଜେଲଗଲେ । ଜେଲରୁ ଫେରିଲେ ୧୯୪୫ରେ ।

ଦେଶ ସ୍ୱାଧୀନ ହେଲା, ଯୋଜନା ହେଲା, ହେଲେ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଘୁଞ୍ଚିଲା ନାହିଁ । ଏଣୁ ସେ ଲୋକଙ୍କୁ ସାମାଜିକ ନ୍ୟାୟ ଦିଆଇବା ପାଇଁ ଗଢ଼ିଲେ ''ଭୂ ସତ୍ୟାଗ୍ରହୀ ସମାଜ ।'' ଏହାର ସୁଦୂର ପ୍ରସାରୀ ପ୍ରଭାବ ହେଲା । ବହୁ ଆଦିବାସୀ ଉପକୃତ ହେଲେ । ଯକ୍ଷ୍ମ ନିରାକରଣ କେନ୍ଦ୍ର ଓ କୁଷ୍ଠ ରୋଗ ନିରାକରଣ କେନ୍ଦ୍ର ହୋଇ ଶ୍ରୀମତୀ ମାଳତୀ ବିଶ୍ୱାଳ ଓ କେତକୀଦେବୀଙ୍କ ଚେଷ୍ଟାରେ ବହୁ ବନବାସୀ ରୋଗମୁକ୍ତ ହେଲେ ।

୧୯୪୧ରେ କୁଜେନ୍ଦ୍ରୀର ବାଇରୁ ଗମାଙ୍ଗୋର ଝିଅ ସାଣ୍ଡି ଗମାଙ୍ଗୋଙ୍କୁ ପାଠ ପଢ଼ାଇ ତାଲିମ ପାଇଁ ବରୀ ପଠାଇଲେ । ସାଣ୍ଡି ନା ବଦଳି ହେଲା ଶାନ୍ତି । ଶାନ୍ତି ହେଲେ କୁଜେନ୍ଦ୍ରୀ ଅଞ୍ଚଳର ପ୍ରଥମ ନାରୀ ସେବିକା । ତାଙ୍କ ସେବା ଓ ଆଗ୍ରହ ଫଳରେ ବହୁ ନାରୀକର୍ମୀ ବନବାସୀ ଅଞ୍ଚଳରେ ତିଆରି ହେଲେ । ନାରୀ ଜାଗରଣ ଓ ସଚେତନତା ସୃଷ୍ଟି କରିବାରେ ସେ ଅଗ୍ରଣୀ ଥିଲେ । ବିଶ୍ୱନାଥ ପଟ୍ଟନାୟକଙ୍କ ପ୍ରେରଣା, ପରାମର୍ଶ ଓ ଦିଗ ଦର୍ଶନରେ ଶାନ୍ତିର କର୍ମନିଷ୍ଠା ଏହି ଅନୁନ୍ନତ ଅଞ୍ଚଳ ପାଇଁ ମନ୍ତ୍ରପରି କାମ କଲା ।

ବନବାସୀ ଜନ-ଜୀବନ, ସେମାନଙ୍କ ସଂସ୍କୃତି, ପରମ୍ପରାକୁ ବିଶ୍ୱନାଥ ପଟ୍ଟନାୟକ ଅନ୍ତରାତ୍ମାର ସହିତ ଭଲ ପାଉଥିଲେ । ତାଙ୍କର ଜୀବନ-ଚର୍ଯ୍ୟାଥିଲା ସମସ୍ତଙ୍କୁ ଭଲ ପାଇବା, କୋଳେଇ ନେବା । ମଣିଷ ଭିତରେ ଥିବା ସରଳତା ଓ ସହୃଦୟତାରେ ସେ ମୁଗ୍ଧ ହେଉଥିଲେ । ଯେତେବେଳେ କଥା ପ୍ରସଙ୍ଗରେ କୁଜେନ୍ଦ୍ରୀର ବନବାସୀର କଥାପଡ଼େ, ସେ କହନ୍ତି :

''ଭଲ ପାଇଚି ସଉରାଙ୍କ ଭାଷାକୁ, ଆଦିବାସୀଙ୍କ ନାଚଗୀତକୁ, ମୋହିତ ହୋଇଛି ସେମାନଙ୍କ ଅକପଟ ସ୍ନେହ ଶ୍ରଦ୍ଧା ପାଖରେ; ଲୋଟି ପଡ଼ିଛି ସେମାନଙ୍କ ଖୋଲାମନ, ବିପୁଳ ବିଶ୍ୱାସ ପାଖରେ; ଆକର୍ଷିତ ହୋଇଛି ସେମାନଙ୍କ ବିଚାର, ବିବେଚନା ନିକଟରେ; ପୁଣି ବିରୋଧ କରିଛି ସେମାନଙ୍କ ପୋଡ଼ୁ, ନରବଳି, ମେରିଆକୁ ।''

ସ୍ନେହ ଶ୍ରଦ୍ଧା, ମମତାକୁ ନେଇ ଗଢ଼ା ତାଙ୍କର ଅନ୍ତରାତ୍ମା ଯେତେବେଳେ ଦେଖିଛି ୧୯୫୮-୬୫ ଭିତରେ କୋରାପୁଟ, ଫୁଲବାଣୀ, ପାରଳାଖେମୁଣ୍ଡି ଅଞ୍ଚଳରେ କମ୍ୟୁନିଷ୍ଟ

ଦଳର ହିଂସା ପ୍ରଚାର, ବାଲିଖମାରର ହରି ମିଶ୍ରଙ୍କ ହତ୍ୟା, ସେ ନିଜକୁ, ନିଜର କାର୍ଯ୍ୟପ୍ରଣାଳୀକୁ ବିଶ୍ଳେଷଣ କରିଛନ୍ତି ଏବଂ ହିଂସା ଯେ ସମସ୍ୟା ସମାଧାନର ପ୍ରକୃତ ରାସ୍ତା ନୁହେଁ ଏହାହିଁ ସେ ବିଶ୍ୱାସ କରିଛନ୍ତି । ତାପରେ ସେ କୁଜେନ୍ଦ୍ରୀ ଛାଡ଼ିଛନ୍ତି ଆଉ ପୁଣି କୋରାପୁଟ ଜଙ୍ଗଲରୁ ଆସିଛନ୍ତି କନ୍ଧମାଳ ଜଙ୍ଗଲକୁ, ବନବାସୀ କନ୍ଧଙ୍କ ମେଳକୁ । ସେଇ ସେବାର ଲକ୍ଷ୍ୟ ନେଇ । ଜଙ୍ଗଲରୁ ଜଙ୍ଗଲକୁ ତାଙ୍କର ଯାତ୍ରା, ନିଜେ ସତେ ଜଣେ ବନବାସୀ ଯେମିତି । ସେଇ ବଣ, ପାହାଡ, ଝୋଲା, ଝରଣା ସବୁବେଳେ ତାଙ୍କୁ ହାତଠାରି ଡାକିଛି । ସବୁଜିମାର ଆକର୍ଷଣ ତାଙ୍କ ପାଇଁ ଅନନ୍ୟ । ସାରା ଜୀବନ ବିଶ୍ୱନାଥ ପଟ୍ଟନାୟକ ସେଇ ବନବାସୀଙ୍କ ମେଳରେ ରହି, ସେମାନଙ୍କ ସେବାରେ କଟାଇ ଦେଇଛନ୍ତି । ଜୀବନର ସାୟାହ୍ନରେ, ଗୋଧୂଳିବେଳାରେ ଯେତେବେଳେ ଚାଲୁ ଚାଲୁ ଥକି ପଡ଼ିଛନ୍ତି, ଟିକିଏ କ୍ଳାନ୍ତି ମେଣ୍ଟାଇବା ପାଇଁ କେଉଁଗଛ ମୂଳେ କି ପଥର ଚାଞ୍ଚଡା ଉପରେ କି କେଉଁ ପୁରୁଣା ମନ୍ଦିର ପିଣ୍ଡାରେ ବସି ପଡ଼ିଛନ୍ତି, ସେ ଭାବନ୍ତି ଚାଲି ଯାଇଥିବା ଅତୀତର କେତେକଥା । ସେ ଦେଖନ୍ତି ମଣିଷ ବଦଳି ଯାଉଛି । ପରିବେଶ ବଦଳି ଯାଉଛି । ୧୯୪୧ ବେଳକୁ ମଣିଷ ଯେତିକି ସରଳଥିଲା ୧୯୯୧ ବେଳକୁ ଅଧିକ ଜଟିଳ ହୋଇ ପଡ଼ିଛି । ମଣିଷର ଚିନ୍ତା, ବିଚାର ଓ ଚେତନାରେ ଏବେ କେତେ ପରିବର୍ତ୍ତନ । ଏହି ପରିବର୍ତ୍ତନ ବନବାସୀ ଜୀବନକୁ ବେଶି ଆକ୍ରାନ୍ତ କରିଛି । ସହରୀ ସଭ୍ୟତା ଗ୍ରାସ କରି ଯାଉଛି ସେମାନଙ୍କୁ । ଏ ସବୁ ଦେଖି ବ୍ୟଥିତ ବିଶ୍ୱନାଥ ପଟ୍ଟନାୟକ କହନ୍ତି :

''ଏକଦା ଆମେ ବହୁଚେଷ୍ଟା କରି ଆଦିବାସୀଙ୍କ ସଂସ୍କୃତି, ପରଂପରାକୁ ଉଜ୍ଜୀବିତ ରଖିଥିଲୁ । ମାତ୍ର ଏବେ ଆଧୁନିକତାର ପ୍ରବେଶ ଯୋଗୁଁ ସେମାନେ ନିଜ ସଂସ୍କୃତି ଓ ଭାଷାକୁ ଭୁଲି ସିନେମାର ନାଚ ଗୀତକୁ ଅନୁକରଣ କରି ଏକ ବିକୃତ ଚଳଣି କୁ ଆଦରି ନେଲେଣି । ଏପରିକି ନିଜର ପାରମ୍ପରିକ ବେଶଭୂଷା ପିନ୍ଧି ନାଚ କରିବାକୁ ମଧ୍ୟ ଲଜ୍ଜାବୋଧ କରୁଛନ୍ତି ।''

କିଏ ଏବେ ବିଶ୍ୱାସ କରିବ ଯେ ଦିନଥିଲା ଯେବେ ବିଶ୍ୱନାଥ ଆଜ୍ଞା ସେହି ବନବାସୀଙ୍କ ମେଳରେ ରହି, ତାଙ୍କ ସାଙ୍ଗରେ ମିଶି କାମ କରି, ତାଙ୍କ ସଙ୍ଗେ ଏକାଠି ବସି ଖାଇ, ଶିଖାଉଥିଲେ ଗ୍ରାମ ପରିମଳ । ସେଇମାନଙ୍କୁ ଧରି ଗାଁ ଦାଣ୍ଡ ଓଳଉ ଥିଲେ । ଝେଲୁଆ ଧରି ସଫାକରୁଥିଲେ ଗାଁର ମଇଳା ଆବର୍ଜନା । କହୁଥିଲେ ନିଶା ନିବାରଣର କଥା । ଶିକ୍ଷାର ପ୍ରସାର ପାଇଁ ପାଠ ପଢ଼ାଉଥିଲେ ଗାଁ ପିଲା, ବୁଢ଼ା, ସମସ୍ତଙ୍କୁ । ସେମାନଙ୍କୁ ଦେଖାଇଥିଲେ ନୂଆଜୀବନର ରାହା । ଆଜିକାଲି ଆଖି ଝଲସେଇ ଦଉଥିବା ବିଜୁଳି ଆଲୁଅ, ମଟର ଗାଡ଼ି, କୋଠାବାଡ଼ି, ପିଚୁ ସଡକ, ସିନେମା, ଟେଲିଭିଜନର ଭିଡ଼ ଭିତରେ ହଜୁଥିବା

ନୂଆ ଆଦିବାସୀ ପିଢ଼ି କେମିତି ଜାଣିବେ ଯେ ଦିନେ ତା ଦାଦି ବୁଢ଼ା କି ବଡୁ, ଅଜା କି ବାପାମାନେ କେମିତି ଅଜ୍ଞତାର ଅନ୍ଧାର ଭିତରେ, ଶୋଷଣର ଜାଲରେ ଛନ୍ଦି ହୋଇ ପଡୁଥିଲେ । ସେତେବେଳେ କେମିତି କେନ୍ଦ୍ରଘରେ ମାଟିତେଲ ଦୀପ ବଡ଼ ଆଧୁନିକ ଥିଲା । ସେ କାଳରେ ସେମାନଙ୍କୁ ପାଠ ପଢ଼ାଇବା କି ଯେ କଷ୍ଟ ସାଧ ଥିଲା ସତେ । ଏହି ପାଠ ପଢ଼ା ଭିତରେ ବିଶ୍ୱନାଥ ଆଞ୍ଚା ସେମାନଙ୍କୁ ଶିଖାଉଥିଲେ ଜଗନ୍ନାଥ ଜଣାଣ । ଗାନ୍ଧୀଜିଙ୍କ ପ୍ରିୟଭଜନ, 'ବୈଷ୍ଣବ ଜନତୋ ତେ ନ କହିୟୋ'ରେ, ଆଚାର୍ଯ୍ୟ ହରିହରଙ୍କ ସଂକଳନ ଗୀତା ପାଠ ଭିତରେ, ମଣିଷ ମନରେ ନୂଆ ଚେତନାର ମୂଳଦୁଆ ପଡୁଥିଲା ।

ଆଜି ସ୍ୱାଧୀନୋତ୍ତର ଭାରତର ଅବସ୍ଥା ବିଡ଼ମ୍ବିତ । ସ୍ୱାଧୀନତା ପୂର୍ବରୁ ଯେଉଁ ସ୍ୱପ୍ନ ସଂଗ୍ରାମୀମାନେ ଦେଖିଥିଲେ, ଏକ ଶୋଷଣହୀନ, ଦୁର୍ନୀତିହୀନ, ନିର୍ମଳ ସମାଜର ସ୍ୱପ୍ନ ତାହା ଆଉ ନାହିଁ । ମଣିଷ ମଣିଷ ଭିତରେ ପୁଣି ସେଇ ଭେଦଭାବ, ଜାତି ଜାତି ମଧ୍ୟରେ ପୁଣି ସେଇ ସାନ ବଡ଼ର କଥା । ଦଳିତ ନାମରେ ବହୁ ରାଜନୀତି । ଦିନେ ବିଶ୍ୱନାଥ ପଟ୍ଟନାୟକ ଏବଂ ତାଙ୍କ ସମଧର୍ମୀମାନେ ଜାତିଭେଦର ପାଚେରୀ ଭାଙ୍ଗି ଯେଉଁ ବୃହତ୍ତର ଗୋଷ୍ଠୀ ପାଇଁ ମନ୍ଦିର ପ୍ରବେଶ ସହ କୁଅରୁ ପାଣି କାଢ଼ିବାର ବାଧାକୁ ଦୂର କରିବା ପାଇଁ ଚେଷ୍ଟା କରିଥିଲେ ଏବେ ସେଇ ବଣ ମୁଲକରେ ଆଦିବାସୀ, ହରିଜନଙ୍କ ଭିତରେ ସଂଘର୍ଷ, ରକ୍ତପାତ, ବିଦ୍ୱେଷର ନିଆଁ ଜଳୁଛି । ଏସବୁକୁ ଦେଖି, ସ୍ୱାଧୀନୋତ୍ତର ଭାରତର ସାମ୍ପ୍ରତିକ ରୂପକୁ ଅନୁଭବ କରି ବିଶ୍ୱନାଥ ପଟ୍ଟନାୟକ ଭାରି ଦୁଃଖ ପ୍ରକାଶ କରି କହନ୍ତି :

''ଦେଶ ଯାହା ହେବ ବୋଲି ଆଶା କରାଯାଉଥିଲା ତାହା ସବୁ ଓଲଟା ହେଲା । ଦେଶ ଅନ୍ୟ ଉପରେ ନିର୍ଭର ନ କରି ନିଜେ ନିଜେ ସ୍ୱାବଲମ୍ବନ ହୋଇ ଚଳିବ, ଅନ୍ୟ ଉପରେ ନିର୍ଭର କରିବ ନାହିଁ । ତଳ କର୍ମଚାରୀ ସହ ଉଚ୍ଚ କର୍ମଚାରୀଙ୍କ ଦରମା ତଫାତ ବିଶେଷ ହେବ ନାହିଁ । ଦେଶାତ୍ମଭାବ ଜାଗ୍ରତ ହେବ । ପରସ୍ପରକୁ ସାହାଯ୍ୟ କରିବେ ଇତ୍ୟାଦି ଯାହା ହେବା କଥା ତାର ଓଲଟା ଦେଖିବାକୁ ମିଳୁଛି । କିଛି ପରିବର୍ତ୍ତନ ଅବଶ୍ୟ ହୋଇଛି କିନ୍ତୁ ୫୦ ବର୍ଷର ସ୍ୱାଧୀନତା କଥା ଭାବିଲେ କିଛି ନୋହିଲା ପରି ମନେ ହେଉଛି ।''

ବିଶ୍ୱନାଥ ଆଞ୍ଚା ଜୀବନର ୮୬ ତମ ବର୍ଷ ବୟସରେ ଅନୁଭବ କରୁଛନ୍ତି କେମିତି ଆସ୍ତେ ଆସ୍ତେ ମଣିଷ ଭିତରୁ ମୂଲ୍ୟବୋଧ ନଷ୍ଟ ହୋଇ ଯାଉଛି, ବିଶ୍ୱାସ ମରି ମରି ଯାଉଛି; କେମିତି ଆଧୁନିକ ସଭ୍ୟତା ଗ୍ରାସି ଯାଉଛି ଆମ ସଂସ୍କୃତି, ପରମ୍ପରାକୁ । କେମିତି ଏବେ

ଆମଦେଶର ସାଧାରଣ ଯୁବଗୋଷ୍ଠୀ ବସ୍ତୁବାଦର ଦାସ ହୋଇ ଯାଉଛନ୍ତି । ପାଶ୍ଚାତ୍ୟ ମୁଖାପେକ୍ଷୀ ଦିଶା-ବିହୀନ ଯୁବଗୋଷ୍ଠୀକୁ ଦେଖି ତାଙ୍କ ମନରେ ଅନେକ ପ୍ରଶ୍ନବାଚୀ, ଅନେକ ଅସମାଧିତ ସମସ୍ୟା । ସେ ମନେକରୁଛନ୍ତି କେମିତି ସ୍ୱାଧୀନତା ପରେ ଅମଲାତନ୍ତ୍ର ଓ ରାଜନୈତିକ ନେତାଙ୍କ ବୁଝାମଣାରେ ଏ ଦେଶର ବିରାଟ ଜୀବନ୍ତ ଯୁବଶକ୍ତିକୁ ଅକର୍ମଣ୍ୟ କରି ଦିଆଯାଉଛି । ଏ ସମ୍ପର୍କରେ ତାଙ୍କର ମତାମତ ପ୍ରଣିଧାନ ଯୋଗ୍ୟ ।

''ଦେଶରେ ଏବେ ବିଚାରବାନ ଯୁବ ଶକ୍ତି ଗଢ଼ି ଉଠିଥିଲେ ହୋଇଥାନ୍ତା କିନ୍ତୁ ଆମର ନେତାମାନେ ଅଫିସରଙ୍କ କଥାରେ ଚାଲିଲେ । ସେମାନେ ଯାହା କହିଲେ ତାହା ସତ୍ୟ ବୋଲି ଭାବିଲେ । ଅଫିସରମାନେ ମଧ ନେତାଙ୍କୁ ସନ୍ତୋଷ ହେବାଭଳି ଆଚାର, ବ୍ୟବହାର ଦ୍ୱାରା କାମକରେଇ ଅଫିସର ମାନଙ୍କର ଥାଟ, ବାଟ ଯେପରି ଥିଲା, ତାକୁ ରଖିଲେ । ଏ ସବୁର ପରିବର୍ତ୍ତନ ହେଲେ ଆମେ କେମିତି ଚଳିବା ବୋଲି ଅଫିସର ମାନଙ୍କର ଭାବନାଥିଲା ତେଣୁ ସେମାନେ ନିଜ ଢ଼ଙ୍ଗରେ ନେତାଙ୍କୁ ଗଢ଼ିଦେଲେ ଯାହା ଫଳରେ ଲୋକଙ୍କର ଶକ୍ତି ଜାଗ୍ରତ ହେଲା ନାହିଁ । ଲାଞ୍ଚ ମିଛ ବଢ଼ି ଚାଲିଲା । ଦେଶର ଇଜ୍ଜତ ନଷ୍ଟ ହେଲା । ଲୋକଶକ୍ତି ଜାଗ୍ରତ ହେଲେ ନେତାମାନଙ୍କ ଚୈତନ୍ୟ ଜାଗ୍ରତ ହୁଅନ୍ତା । ତାଙ୍କୁ ହଟାଇ ନୂଆ ଢ଼ଙ୍ଗରେ କାମ ଚାଲନ୍ତା । ଏ ଦିଗରେ ଉଦ୍ୟମ ହେବା ଦରକାର । ଯୁବଶକ୍ତି ନେତାଙ୍କ ଗୋଡାଣିଆ ହୋଇ ରହିଛନ୍ତି । ନେତାମାନେ ତାଙ୍କ କ୍ଷମତାକୁ ଜାରି ରଖିବାକୁ ସେମାନଙ୍କୁ ହାତରେ ରଖିଛନ୍ତି । ଯୁବକମାନେ ନାଚିବେ ଗାଇବେ ସବୁ କରିବେ କିନ୍ତୁ ନିଜତ୍ୱ ରହିବ ନାହିଁ । ଅକର୍ମଣ୍ୟ ହୋଇ ରହିଲେ ତାଙ୍କ ପଛରେ ଗୋଡାଇବେ ଏହି ଚେଷ୍ଟାରେ ଯୁବକଙ୍କୁ ଗୁଣ୍ଡା ଭାବରେ ଗଢ଼ି ନେତାମାନେ ନିଜର କ୍ଷମତା ଜାରି ରଖିଛନ୍ତି ।''

କେତେ ପାର୍ଥକ୍ୟ ସତେ, ସ୍ୱାଧୀନତା ପୂର୍ବର ଯୁବ ମାନସିକତା ଆଉ ଏବର ଯୁବ ମାନସିକତା ଭିତରେ । କାହିଁ ସେ କାଳର ତ୍ୟାଗ, ନିଷ୍ଠା, ନିଃସ୍ୱାର୍ଥପରତା, ସର୍ବସ୍ୱ ତ୍ୟାଗର ପ୍ରତୀକ ଯୁବ ଶକ୍ତି । କାହିଁ ଏ କାଳର ଜଡ଼ବାଦୀ, ଇନ୍ଦ୍ରିୟ ସୁଖ ଭୋଗୀ, ବ୍ୟକ୍ତି କୈନ୍ଦ୍ରିକ ଯୁବଶକ୍ତି, ଏହି ସବୁ ପରିବର୍ତ୍ତନକୁ ଦେଖି ବିଶ୍ୱନାଥ ପଟ୍ଟନାୟକ ଏବେ ବିଷାଦର ଘେରରେ ।

ସ୍ୱାଧୀନତା ସଂଗ୍ରାମ କାଳରେ ଦୀର୍ଘଦିନ କୋରାପୁଟ ଜେଲରେ ରହି ସେ ଦେଖି ଥିଲେ ସହିଦ ସଦାଶିବ ବେହେରା ଓ ଡ଼ମ୍ବରୁ ତଲିଆଙ୍କ ମୃତ୍ୟୁକୁ । ଦେଖିଥିଲେ ଦଣ୍ଡାବେଡ଼ିରେ ମୃତ୍ୟୁ ଯନ୍ତ୍ରଣା ଭୋଗୁଥିବା ଲକ୍ଷ୍ମଣ ନାୟକ ଓ ଅନ୍ୟ ୪୯ ଜଣ ମାତଲି ଗୁଳିକାଣ୍ଡରେ ଅଭିଯୁକ୍ତ ସ୍ୱାଧୀନତା ସଂଗ୍ରାମୀଙ୍କୁ । ପରିଣତ ବୟସରେ ଜେଲ ଭିତରେ ଅହସ୍ୟ ଦୁଃଖ

କଷ୍ଟସହି ସହିଦ ହୋଇ ଯାଇଥିବା ବନବାସୀ ବଗା ପୂଜାରୀଙ୍କୁ । ଦେଶ ପାଇଁ ଲଢ଼ିଥିଲେ ବୋଲି, କାରାବରଣ କରିଥିଲେ ବୋଲି, ସେ ଯେ ସ୍ୱାଧୀନତା ସଂଗ୍ରାମୀଭତ୍ତା ନେବେ ଏହା ତାଙ୍କ ଅନ୍ତରାତ୍ମା ସ୍ୱୀକାର କରିନଥିଲା ଏଣୁ ଏହି ଭତ୍ତା ପାଇଁ ଆବେଦନ କରିବା ପ୍ରଶ୍ନ ତାଙ୍କ ପାଇଁ କୌଣସି ମହତ୍ତ୍ୱ ରଖି ନଥିଲା । ଜେଲ ଭିତରେ ଓଡ଼ିଶାର ବହୁ ବିଖ୍ୟାତ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଥିଲେ । ରାଜନୈତିକବନ୍ଦୀ ଭାବରେ କୋରାପୁଟ ଜିଲ୍ଲା ଜେଲରେ ଥିଲାବେଳେ ସେ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହ ମିଶିଥିଲେ ।

ଯେତେବେଳେ ଭୂଦାନ ଆନ୍ଦୋଳନ ଆରମ୍ଭ ହେଲା ଏବଂ ଗୋପବନ୍ଧୁ ଚୌଧୁରୀ ବିନୋବାଜୀଙ୍କ ପ୍ରେରଣାରେ ଓଡ଼ିଶାରେ ଏହି କାମ ଆରମ୍ଭ କଲେ କୋରାପୁଟ ହୋଇଗଲା ଭୂଦାନ କାର୍ଯ୍ୟର କେନ୍ଦ୍ରସ୍ଥଳ । ଭୂଦାନକାର୍ଯ୍ୟରେ ବିଶ୍ୱନାଥ ପଟ୍ଟନାୟକଙ୍କ କର୍ମନିଷ୍ଠା ଓ କର୍ମତତ୍ପରତା ଦେଖି ବିନୋବାଜୀ ତାଙ୍କୁ ।'' ''ଗ୍ରାମଦାନ ସର୍ଦ୍ଦାର'' ନାମ ଦେଲେ । ଫୁଲପରି କୋମଳ କିନ୍ତୁ କାମ କରିବାର ସଂକଳ୍ପରେ ବଜ୍ରପରି ସେ କଠିନ ଥିଲେ । ସବୁବେଳେ ବିବେକ ଅନୁମୋଦିତ କାମ କରୁଥିଲେ । ସେ ଥିଲେ ବିନୋବାଜୀଙ୍କ ଭାଷାରେ ''କର୍ମମୟ ଉପାସନାର ପ୍ରତୀକ ।''

ବିଶ୍ୱନାଥ ପଟ୍ଟନାୟକଙ୍କ ଜୀବନ ଓ ଜୀବନଦର୍ଶନରେ ଯେଉଁ ଏକାଦଶ ବ୍ରତର ସମାହାର ଦେଖିବାକୁ ମିଳେ ତାହା ତାଙ୍କ ତପସ୍ୟା, ସାଧନାର କଥା ହିଁ କହିଥାଏ ।

ଅହିଂସା ସତ୍ୟ ଅସ୍ତେୟ ବ୍ରହ୍ମଚର୍ଯ୍ୟ ଅସଂଗ୍ରହ

ଶରୀରଶ୍ରମ ଅସ୍ୱାଦ ସର୍ବତ୍ର ଭୟ ବର୍ଜନ

ସର୍ବଧର୍ମ ସମାନତ୍ୱ ସ୍ୱଦେଶୀ ସ୍ପର୍ଶଭାବନା

ହୀଁ ଏକାଦଶ ସେବାବୀ ନମ୍ରତ୍ୱେବ୍ରତ ନିଶ୍ଚୟଂ ।

ଏହି ଏକାଦଶ ବ୍ରତକୁ କାୟ ମନ ବାକ୍ୟରେ ପାଳନ କରିବା ଓ ଆଚରଣରେ ଦେଖାଇବା ସାଧାରଣ ଧାତୁରେ ତିଆରି ମଣିଷ ପକ୍ଷେ ଯେ ଅସମ୍ଭବ କଳ୍ପନା କିନ୍ତୁ ବିଶ୍ୱନାଥ ପଟ୍ଟନାୟକ ଏହାର ଏକ ଅନନ୍ୟ ବ୍ୟତିକ୍ରମ । ସତେଯେମିତି ସେ ଉପର ମନ୍ତ୍ରର ଭୌତିକ ରୂପ । ତାଙ୍କ ଜୀବନର ଆରମ୍ଭକାଳରୁ ସଂଗ୍ରାମୀ ମନୋବୃତ୍ତିଟିଏ ଯେତେବେଳେ ସନ୍ୟାସମୁଖୀ ହୋଇଗଲା ।

ସେ ହୋଇଗଲେ ଅନ୍ତର୍ମୁଖୀ । ଯେତିକି ଲୋଡା, ସେତିକି କଥା, ମପାଚୁପା । ସେଥିରେ ନଥିଲା ଭାଷାର ଯାଦୁକରୀ ପୁଟ କି କଳ୍ପନାର ପ୍ରବଣତା । ଯାହା ଦରକାର, ଯେତିକି ଦରକାର, ଶବ୍ଦକୁ ନେଇ ଗଢ଼ି ଭାଙ୍ଗି, ଭାଷଣରେ ତତାଇ, ମତାଇବା ମାତ୍ର ସେତିକି । କଥା ତାଙ୍କର କେବେହେଲେ ନଥିଲା କି ଏବେବି ନାହିଁ । ଏବେ ଜୀବନର ଗୋଧୂଳି ଲଗ୍ନରେ ସେ । ଘରବେଳ ପାଇଁ ଅପେକ୍ଷା । ଚଢ଼େଇ ଉଡ଼ିବାକୁ କେତେବେଳ ବା ବାକି ?

ଏବେ ତାଙ୍କ ଆଖି ଆଗରେ ମୂଲ୍ୟବୋଧ ନଥିବା ମଣିଷଙ୍କ ମେଳା । କେମିତି ସ୍ୱାର୍ଥ, ଲୋଭ ଭିତରେ ମଣିଷ ନିଜର ମଣିଷତ୍ୱ ହରାଉଛି । ଭୀମଭୋଇଙ୍କ ଆଦର୍ଶରେ ଅନୁପ୍ରାଣିତ ବିଶ୍ୱନାଥ ପଟ୍ଟନାୟକ ଦେଖୁଛନ୍ତି ଜୀବନ ଯନ୍ତ୍ରଣାରେ ହଜି ଯାଉଥିବା ମଣିଷକୁ, ହଜି ଯାଉଥିବା ସଂସ୍କୃତିକୁ ।

ଅତୀତରେ ତାଙ୍କ ହାତରେ ଗଢ଼ା ବନବାସୀ ସେବା ସମିତି, ତାର ବଗିଚାଘର, ବନବାସୀ ପଲ୍ଲୀର ଜରାନିବାସ, ଅନ୍ଧ ବିଦ୍ୟାଳୟ ମୂକ-ବଧୀର ବିଦ୍ୟାଳୟ, ସ୍ୱଳ୍ପକାଳୀନ ମହିଳା ନିବାସର କାର୍ଯ୍ୟ ସବୁଦେଖି ଓଡ଼ିଶାର ରାଜ୍ୟପାଳ ଯଜ୍ଞଦତ୍ତ ଶର୍ମା, ବି. ସତ୍ୟ ନାରାୟଣ ରେଡ୍ଡି କର୍ମଯୋଗୀ ବିଶ୍ୱନାଥ ପଟ୍ଟନାୟକଙ୍କ ନିଷ୍କାମ କର୍ମ ଓ ପ୍ରେରଣାକୁ ଅନ୍ତରର ସହିତ ପ୍ରଣାମ ଜଣାଇଛନ୍ତି ।

ଯେଉଁଠି ସହଜରେ ପହଞ୍ଚିବାକୁ ରାସ୍ତା ନାହିଁ, ପିଇବାକୁ ମୁନ୍ଦାଏ ଭଲପାଣି ନାହିଁ, ଯେଉଁଠି ଯକ୍ଷ୍ମା, କୁଷ୍ଠ, ମ୍ୟାଲେରିଆ, ଡେଙ୍ଗୁ, ଟାଏଫଏଡ୍, ମସ୍ତିଷ୍କଜ୍ୱର ରେ ମଣିଷ ଆକ୍ରାନ୍ତହୁଏ, ସେଇ ଘନଘୋର, ବନବାସୀ ଅଞ୍ଚଳର ସେ ଦିସାରୀ, ବାଟ ଦେଖାଇବା ଲୋକ । ବାଘ, ଭାଲୁ ହାତୀଙ୍କ ଚରାଭୂଇଁ କୋରାପୁଟ, ଫୁଲବାଣୀ ମାଳାଞ୍ଚଳରେ ଏମିତି କୌଣସି ଗାଁ ନାହିଁ ଯେଉଁଠି ତାଙ୍କ ପାଦ ପଡ଼ିନାହିଁ, ତାଙ୍କ କଥା ମଣିଷ ଶୁଣି ନାହିଁ । ଏବେତ ବହୁତ କଥା ବଦଳି ଗଲାଣି ।

ଡେଲାଙ୍ଗ ସମ୍ମିଳନୀରୁ ବରୀ,. ବରୀରୁ ଗୁଣୁପୁର, ଗଣୁପୁରରୁ କୁଜେନ୍ଦ୍ରୀ, କୁଜେନ୍ଦ୍ରୀରୁ ବାଲିଗୁଡ଼ା, ବାଲିଗୁଡ଼ାରୁ ଜଙ୍କିକିଆ, ବନ୍ଧଗଡ଼, ରବିଙ୍ଗିଆ ତାଙ୍କ ସେବା ସାଧନାର ଦୀର୍ଘପଥ । ଏତେ ଦୀର୍ଘପଥରେ ସେ ଅକ୍ଳାନ୍ତ ଯାତ୍ରୀ । କ୍ରାନ୍ତି ଅତନ୍ଦ୍ର ଘୋଷଣାକାରୀ । ଉତ୍କଳ ମଣିଙ୍କ ଭାଷାରେ ସେ ଘଣ୍ଟା ବଜାଇବା ଲୋକ । ଘଣ୍ଟା ବାଜୁଥାଉ କେହି ନା କେହିତ ଶୁଣିବେ ।

ଚାରିଆଡେ ବନସ୍ପତୀୟ ସ୍ପର୍ଶ । ସ୍ୱର୍ଣ୍ଣଚମ୍ପାର ମହ ମହ ବାସ୍ନା, ମଧୁମାଳତୀରେ ଚହଟରେ ମହକି ଯାଉଥିବା ବନବାସୀ ସେବା ସମିତି । ସେଠି ତାଙ୍କ ଆସ୍ଥାନ, ବଖୁରିଏ

ଘର । ଘର ଭିତରେ ଖଣ୍ଡେ ଖଟ । ଖଟ ଚାରିପାଖେ ଚିଠିତାଡା, କେତେ ପତ୍ର ପତ୍ରିକା । ପାଖ ଟୁଲ ଉପରେ କେତେଟା ଔଷଧ ଶିଶି, କରଞ୍ଜ ଦାନ୍ତକାଠି ବିଡ଼ାଏ, ତେଲକାଚ, ଜଗ ଓ ପାଣି ପିଇବା ଗ୍ଲାସଟିଏ । ଘରର କାନ୍ଥର ଉପରଭାଗରେ ଜଗନ୍ନାଥ, ଯୀଶୁଖ୍ରୀଷ୍ଟ ବୁଦ୍ଧଦେବ, ବାପୁଜୀ ଓ କସ୍ତୁରୀ ବାଈ, ଗୋପବନ୍ଧୁ ଚୌଧୁରୀ, ମା ରମାଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ବିନୋବାଭାବେ, ଈଶ୍ୱରଲାଲ ବ୍ୟାସ, ଗୋବିନ୍ଦ ରେଡ଼ି, ବଦ୍ରିନାଥଙ୍କ ଫଟୋ । ତାଛଡ଼ା ୧୯୪୨ ମସିହାରେ ଭାରତଛାଡ ଆନ୍ଦୋଳନରେ ଯୋଗଦେଇ କୋରାପୁଟ ଜେଲରେ ଶହୀଦ ହୋଇଥିବା ୭୩ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ବିସ୍ତୃତ ତଥ୍ୟ ଲେଖା ଏକ ଝୁଲନ୍ତ ନାମ ତାଲିକା, ସମ୍ମୁଖ କାନ୍ଥରେ ଅନଶନ ଶଯ୍ୟାରେ ଶୋଇଥିବା ମହାତ୍ମାଜୀଙ୍କ ଫଟୋ । ଏହି କୋଠରୀ ତାଙ୍କ ଜୀବନ ସନ୍ଧ୍ୟାର ସ୍ପର୍ଶରେ ଦୀର୍ଘ ୮୬ ବର୍ଷର ସ୍ମୃତିର ସମ୍ଭାରକୁ ନେଇ ମୁଖର । ଏହି ବଖୁରିଆ ଘରେ ବସିଥିଲା ଯାଏ ମନରେ ଯେଉଁ ଭାବ ଆସେ ତାହା କହିହେବ ନାହିଁ । ଏବେ ବିଶ୍ୱନାଥ ଆଶ୍ରାଙ୍କ ଆସ୍ଥାନ ଚାରିପଟେ କର୍ମମୟ ଜୀବନର ଜୟଯୋଗ: ପିଲାଙ୍କ ସ୍କୁଲ, ଶିଶୁଙ୍କ ସଦନ, ଛାତ୍ରାବାସ ଓ ଛାତ୍ରୀ ନିବାସ, ଉଦ୍ୟାନ ଓ ଅତିଥିଶାଳା, ପ୍ରିଣ୍ଟିଂ ପ୍ରେସ୍, ସମିତିର ମୁଖ୍ୟ କାର୍ଯ୍ୟାଳୟ, ସଂପାଦକଙ୍କ ଅଫିସ୍ ଓ ସମିତିର ପାଠାଗାର ।

ଏବେବି ପରିଣତ ବୟସରେ, ଯେତେବେଳେକି ବୟସଭାରରେ ଦେହ ନଇଁ ପଡ଼ିବାର ଉପକ୍ରମ କରୁଛି, ଦେହ ଶିଥିଳ ହୋଇ ଆସୁଛି, ଚିର ଉଦାସୀ ଆଖିରେ ସନ୍ନ୍ୟାସୀୟ ନିର୍ବିକାରତା, ମନରେ ଦୁଃସ୍ଥ ଅବହେଳିତ ମଣିଷ ପାଇଁ ସବୁଜସ୍ୱପ୍ନ ରହିଛି । ଅନ୍ୟ ଓଠରେ ହସ ଫୁଟାଇବାର ଚିରନ୍ତନୀ ଅଭିଳାଷ ତାଙ୍କ ଭିତରେ ଏବେ । ସେ ଯେ ମାଟି ପାଣି ପବନ ଆଲୋକ ଶୂନ୍ୟର ପଞ୍ଚଭୂତ ମଣିଷ କେବଳ ତା ନୁହେଁ, ସେ ସମସ୍ତ ଭଲଗୁଣର ଭାବାନାତ୍ମକ ପରିପ୍ରକାଶ । ତ୍ୟାଗ ଓ ତିତିକ୍ଷାର, ସଂଗ୍ରାମ ଓ ସଂଘର୍ଷର, ସେବା ଓ ସମର୍ପଣର, ନମ୍ରତା ଓ ଶାଳୀନତାର ସମସ୍ତ ବିଭୂତି ଯେମିତି ଗୋଳିହେଇ ରୂପନେଇଛି ତାଙ୍କ ଭିତରେ ।

କ୍ଲାନ୍ତି ନାହିଁ, ଶ୍ରାନ୍ତି ନାହିଁ, ଏବେବି ସେଇ ସକାଳ ଭୋରରୁ ଉଠି, ନିତ୍ୟକର୍ମ ସାରି ପ୍ରାର୍ଥନାରେ ଦିନ ଆରମ୍ଭ କରନ୍ତି ସେ । ପାହାଡ, ପର୍ବତ, ଘାଟି ଅରଣ୍ୟରେ ୨୦ ବା ୨୫ ମାଇଲ ବାଟ ଚାଲିବା ଜୀବନର ଗୋଟିଏ ଅଙ୍ଗ ତାଙ୍କ ପାଇଁ । ନିଜ କାମ ନିଜ ହାତରେ କରନ୍ତି । ସବୁବେଳେ ବାହାରକୁ ବାହାରିଲେ କାନ୍ଧରେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ସହ ଝୁଲାମୁଣି ଧରିଥାନ୍ତି । ଦିନରେ ଥରେ ମାତ୍ର ଖିଆ । ଗିନାଏ ଭାତ, ଲୁଣ ପଡ଼ିନଥିବା ସେ

ଫଳସିଝା, ବିଶେଷତଃ ଅମୃତଭଣ୍ଡା । ରାତିରେ କେଉଁଠି କେମିତି ଟିକିଏ ଖୀର ମିଳିଲେ ଚଳିଲା, ନହେଲେ ବି ଚଳିବ । ଉପବାସରେ ରହିବା ନିତିଦିନିଆ ଅଭ୍ୟାସ ତାଙ୍କର । ସତରେ କେତେଜନ୍ମର, ବୈଦିକ ସଂସ୍କାର ନେଇ ତାଙ୍କର ଜନ୍ମ । ଋଷି ପ୍ରତିମ ମଣିଷ । ଗର୍ବ, ଅହଙ୍କାର, ଅଭିମାନ ଛୁଇଁନାହିଁ କେବେ । ତାଙ୍କୁ ଦେଖିଲେ ମନେହୁଏ ସେ ସନ୍ଥ ଚରିତ୍ର ନେଇ ଧରାବତରଣ କରିଛନ୍ତି । ସନ୍ଥମାନଙ୍କ ସାରାଜୀବନ ସମାଜ କଲ୍ୟାଣରେ ବ୍ୟୟିତ ହୋଇଥାଏ । ଗୋସ୍ୱାମୀ ତୁଳସୀଦାସ ସନ୍ଥ ଚରିତ୍ରର ଗୁଣଗାନ କରି କହିଥିଲେ-

ସାଧୁଚରିତ ଶୁଭ ସରିସ କପାସୂ ।

ନିରସ ବିଷଦ ଗୁନମୟ ଫଲଜାସୂ ।।

ଜୋ ସହି ଦୁଖ ପର ଛିଦ୍ର ଦୁରାୱା ।

ବନ୍ଦନୀୟ ଜେହି ଜଗ ଯଶ ପାୱା ।।

ସକାଳ ପହରୁ ରାତି ଘଡିଏ ଯାଏଁ କେତେ ସମଧର୍ମୀ, ସହକର୍ମୀଙ୍କ ସାକ୍ଷାତ, ଆଲୋଚନା, କେତେ ଶିଷ୍ୟ ପ୍ରଶିଷ୍ୟଙ୍କ ବନ୍ଦନା, କେତେ ସାଧାରଣ ମଣିଷଙ୍କ ସହ ସେମାନଙ୍କ ସମସ୍ୟା ବିଷୟରେ ବିଚାର, ବିମର୍ଶ, କେତେ ଅନ୍ତେବାସୀ, ଅନ୍ତେବାସିନୀଙ୍କ ସାଷ୍ଟାଙ୍ଗ ପ୍ରଣାମ, ଏହା ଆଖି ଦେଖାକଥା ।

ପ୍ରଚାର, ପ୍ରସାର ବିଷୟରେ ଚିର ଉଦାସୀନ । ଯଶ, ପ୍ରଶଂସାରୁ କଣ ବା ମିଳିବ ? ନିଷ୍କାମ କର୍ମରେ ଚିର ବିଶ୍ୱାସୀ ସେ । ନିରାସକ୍ତ, ନିର୍ଲୋଭ, ଉଦାସ ପ୍ରାଣର ମଣିଷ । ଏତେ ଅନ୍ତରଙ୍ଗ, ଏତେ ସ୍ନେହୀ ମଣିଷ ମିଳିବା ଦୁର୍ଲ୍ଲଭ । ଦେଖିଲେ କୋଳେଇ ପକେଇବେ । ପାଖରେ ବସି ବଳେଇ ବଳେଇ ଖୁଆଇଦେବେ । ତାଙ୍କ ବନ୍ଧୁ ପଣିଆ କାନକୁ ନୋଳି ପରି । ଗୋଡକୁ ବଳାପରି ।

ଦୁଃଖରେ ସୁଖରେ, ଭଲରେ ମନ୍ଦରେ, ଶୀତରେ ଖରାରେ ସମଭାବର ସ୍ଥିତପ୍ରଜ୍ଞ ମଣିଷ, ଯେତେବେଳେ ତାଙ୍କୁ ପଚରାଯାଏ ଏ ଦେଶର ଭବିଷ୍ୟତ, ସେ ଆଶାବାଦର ସ୍ୱର ତୋଳନ୍ତି, କହନ୍ତି, ''ଜନଶକ୍ତି ଜାଗ୍ରତ ହେଲେ ଭାରତର ଭବିଷ୍ୟତ ନିଶ୍ଚୟ ଉଜ୍ଜଳ ହେବ କିନ୍ତୁ ଆମକୁ ଭିକମଗା ପ୍ରବୃତ୍ତିଛାଡ଼ି ନିଜଗୋଡରେ ଠିଆ ହେବାକୁ ହେବ ।''

ଗୋଟିଏ କଥାରେ ଜୋର ଦିଅନ୍ତି ଆଉ କହନ୍ତି ପରିବର୍ତ୍ତିତ ପରିସ୍ଥିତିରେ ଯେଉଁ ଅଭାବ ବେଶି ଦିଶୁଛି ତାହା ହେଲା ଦେଶପାଇଁ ନିଷ୍ଠା ଓ ତ୍ୟାଗର ସହ କାମ କରିବା ଲୋକଙ୍କର ଅଭାବ । ଏଣୁ ସେ ମତ ଦିଅନ୍ତି- ''ମାତୃଭୂମିର ସେବା କରିବା ନିମନ୍ତେ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଯୁବ ସମାଜ ଆଗେଇ ଆସନ୍ତୁ । ବର୍ତ୍ତମାନ ଭାରତରେ ନିଷ୍ଠାପର ଜନସେବକ ମାନଙ୍କର ଅଭାବ ଅଛି ।''

ବିଶ୍ୱନାଥ ପଟ୍ଟନାୟକ ପ୍ରଶଂସା, ନିନ୍ଦାରୁ ବହୁ ଉର୍ଦ୍ଧ୍ୱରେ । ତାଙ୍କ ନିଜ ବିଷୟରେ କିଛି କହିବାକୁ ସେ ଉଚିତ ମନେକରନ୍ତି ନାହିଁ । ଭାରି କୁଣ୍ଠିତ ଏ ବିଷୟରେ । ତାଙ୍କପାଇଁ ପ୍ରଶଂସା ତୁଚ୍ଛ ଓ ସାମାନ୍ୟ । ବଳେଇ ବଳେଇ ଜିଗର ଲଗାଇ ପଚାରିଲେ ଅତି ସନ୍ତର୍ପଣରେ, ସଂକୋଚରେ, ଅତି ନମ୍ର ଭାବେ କହନ୍ତି ''ଲୋକେତ କେତେ କଷ୍ଟ ସହି ଜୀବନ ତମାମ ସାଧନା ତପସ୍ୟା କରି କେତେ କଣ କରୁଛନ୍ତି । ମୁଁ କଣଟା ବେଶି କରି ପକାଇଛି ଯେ ।''

ବିଶ୍ୱନାଥ ଆଜ୍ଞାଙ୍କ ଜୀବନ ଏକ ଚଳନ୍ତି ଇତିହାସ । ସଂଗ୍ରାମ ସଫଳତା-ବିଫଳତାକୁ ନେଇ ପୂର୍ବ ସ୍ୱାଧୀନତା ଓ ସ୍ୱାଧୀନୋତ୍ତର ଭାରତର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର ଜୀବନ୍ତ ଆଲେଖ୍ୟ ସେ । ଭଗବତ୍ ବିଶ୍ୱାସକୁ ନେଇ ତାଙ୍କ ପାଦତଳେ ସମର୍ପିତ ପ୍ରାଣ ବିଶ୍ୱନାଥ ପଟ୍ଟନାୟକଙ୍କ ଅର୍ନ୍ତବାଣୀ ଯେମିତି ନିମ୍ନ ଭଜନରେ ଶୁଣିହୁଏ-

''ଭଲ ବାଟ ମୋତେ ଦେଖାଅ ତୁମେ ଉଢ଼ାଳେ ଥାଇ
ଦାଉ ଧକ୍‌କା ଯେତେ ଆସିବ ସବୁ ଯିବି ଏଡାଇ
ସତ ମିଠା ବୋଲି ଦିଅହେ ସଦା ତୁଣ୍ଡରେ ମୋର
ଦେଶ ଦୁନିଆର କାମେ ନ ମଣେ ଆପଣା ପର ।
ଦୁଃଖୀ ରଙ୍କି ଶୋଷୀ ସକାଶେ ଝରୁ ଆଖିରୁ ପାଣି
ତାଙ୍କ ସେବା ଲାଗି ସାହସ ବଳ ଦିଅହେ ଆଣି
ସମ୍ପଦେ ନହୁଏ ବିଭୋର ବିପଦରେ ଅଧୀର
ସତ ଲାଗି ଛାଡି ପାରେ ମୁଁ କଟୁ ପଛେ ମୋ ଶିର
ଟଙ୍କା ସୁନା ପଉରୁଷକୁ ମନ ନବଳୁ ତିଳେ
ନତ କର ସଦା ମୋ ମଥା ତୁମ ଚରଣ ତଳେ ।''

ବିଶ୍ୱନାଥ ଆଜ୍ଞା ସ୍ରଷ୍ଟା ଓ ସାଧକ । ସେ ଗୋପୀନାଥ ମହାନ୍ତିଙ୍କ ପ୍ରଣମ୍ୟ ପୁରୁଷ । ତାଙ୍କ ନୀରବତା, ମୌନତା ତାଙ୍କ କର୍ମରେ ସବୁଠୁ ବେଶି ମୁଖର । ଆଚାର୍ଯ୍ୟ ହରିହରଙ୍କ

ପ୍ରଧାନ ଶିଷ୍ୟ ସେ । ଆଚାର୍ଯ୍ୟ ମହାଶୟଙ୍କ ପିନ୍ଧାବସ୍ତ୍ର, ତାଙ୍କ ବ୍ୟବହୃତ ବେଢ଼ାଣ ଓ ମନିପର୍ସ ତାଙ୍କର ମହାର୍ଘ୍ୟ ସମ୍ପତ୍ତି ।

ପିଣ୍ଡରେ ପ୍ରାଣଥିଲା ଯାଏ ସେବା କରିବାର ସ୍ଥିତପ୍ରଜ୍ଞ ମନଟିଏ ନେଇ, ଜୀବନର ଅପରାହ୍ଣରେ ବିଶ୍ୱନାଥ ଆଜ୍ଞା ତଥାପି କର୍ମ କରି ଚାଲିଛନ୍ତି ନିଖିଳ ବିଶ୍ୱର ଦୁସ୍ଥ ପ୍ରାଣରେ ଟିକିଏ ହସ, ଟିକିଏ ବିଶ୍ୱାସ ଫୁଟାଇବା ପାଇଁ । ଚିର ସୁନ୍ଦର ଏଇ ପୃଥିବୀରେ ମାନବିକତାର ବୈତରଣୀ ବୁହାଇବା ପାଇଁ । ମୈତ୍ରୀ, ଭ୍ରାତୃତ୍ୱଭାବ, ସମାନତା, ସହଭାଗିତାରେ ମଣିଷ ଜୀବନ ଯେମିତି ଶାନ୍ତି ପ୍ରୀତିର ମନ୍ତ୍ରରେ ଦୀକ୍ଷିତ ହେବ, ସେଇ ସ୍ୱପ୍ନ ଦେଖି ସେ ଶେଷରେ କାମନା କରିଛନ୍ତି-

''କାହା ଉପରେ ବୋଝ ନହୋଇ ଏମିତି ଚାଲୁ ଚାଲୁ ଚଞ୍ଚଳ ଏ ସଂସାରରୁ ଚାଲିଗଲେ ଆନନ୍ଦ । ସେଇ ମଫସଲରେ, ସେଇ ଆଦିବାସୀଙ୍କ ମେଳରେ, ମୋର ପ୍ରିୟ ବଣଭୂଇଁର ନିକାଞ୍ଚନ ପରିବେଶରେ, ସମସ୍ତଙ୍କ ଅଜ୍ଞାତରେ, ନୀରବରେ ବାହୁଡ଼ି ଯିବା ହିଁ ମୋର ଶେଷଇଛା । କେହି ଯେମିତି ଏ ମରଣରେ ବ୍ୟସ୍ତ ନ ହୁଅନ୍ତି । ଆମ ପିଢ଼ିର ଲୋକେ ଅଚଳ ହୋଇଗଲେଣି । ଆମଦ୍ୱାରା ଆଉ କିଛି କାମ ହୋଇ ପାରୁନି ।''

ଏହା ଏକ ମୃତ୍ୟୁଞ୍ଜୟ ମଣିଷର ସମର୍ପିତ ସେବାର ଇତିବୃତ୍ତ, ଏ ପୃଥିବୀରେ ଦୁଃଖଥିଲା ଯାଏ, ସେବାର ମନ୍ତ୍ରୋଚ୍ଚାର ହେଉଥିବ । ଜୀବନ ପାଇଁ ଜୀବନର ଆହୂତି, ଏହି ମଣିଷର, ସତ୍ତାର ଶେଷକଥା । ଅନିର୍ବାଣ ଏ ମଣିଷର ଆଦର୍ଶ । ସମାଜର ନିମ୍ନବର୍ଗର ମଣିଷଟିଏ ଦୁଃଖ, ଦୁଃସ୍ଥିତିରେ ଥାଇ ଶୋଷଣ, ଅତ୍ୟାଚାର ଭୋଗି କଷ୍ଟ ସହି କଷ୍ଟରୁ ମୁକ୍ତି ପାଇବା ପାଇଁ ସଂଗ୍ରାମ କରୁଥିବା ଯାଏ, ତା'ର ଆଶା, ବିଶ୍ୱାସ, ସ୍ୱପ୍ନ ରହିଥିବା ଯାଏ ସମସ୍ତଙ୍କ ଅନ୍ତରାତ୍ମାରେ ବିଶ୍ୱନାଥ ଆଜ୍ଞା ରହିଥିବେ ।

ଏ ଜୀବନୀ ଚରିତ ଅପୂର୍ଣ୍ଣ ରହିବାରେ ହିଁ ତା'ର ସାର୍ଥକତା ।

* * *




# ଚିତ୍ରରେ ଚିତ୍ରରେ
# ବିଶ୍ୱନାଥ ଆଙ୍କା




-ତେତିଶି-

# ଚିତ୍ରରେ ଚିତ୍ରରେ ବିଶ୍ୱନାଥ ଆଷ୍ଟା



୧୯୮୮ ମସିହାରେ କଳାହାଣ୍ଡି ଜିଲ୍ଲାର ଦଙ୍ଗରୀ ଗୁଡ଼ାଠାରେ ଠକ୍କରବାପା ସେବା ସଦନ ଶୁଭାରମ୍ଭ ଅବସରରେ ତତ୍କାଳୀନ ଜିଲ୍ଲାପାଳ ଶ୍ରୀ ଅରବିନ୍ଦ ବେହେରା, ଭାରତୀୟ ଆଦିମଜାତି ସେବକସଂଘ ନୂଆଦିଲ୍ଲୀର ସଭାପତି ୰ଜନାର୍ଦ୍ଦନ ହରି ତିଝଲକରଙ୍କ ସମେତ ଅନ୍ୟାନ୍ୟ ଅତିଥିମାନଙ୍କ ସହ ''ଆଷ୍ଟା''



ଦୃଷ୍ଟିହୀନ ବିଦ୍ୟାଳୟର ଛାତ୍ରଛାତ୍ରୀ ଓ କର୍ମୀମାନଙ୍କ ଗହଣରେ ଆଷ୍ଟା



ଶ୍ରୀଯୁକ୍ତ ଶରତଚନ୍ଦ୍ର ମହାରଣା, ଶ୍ରୀଯୁକ୍ତ ମହମ୍ମଦ ବାଜି ଓ ସ୍ଥାପ୍ମାନଙ୍କ ଗହଣରେ ଆଜ୍ଞା



ପ୍ରାର୍ଥନା ସଭାରେ ଆଜ୍ଞା



ତତ୍କାଳୀନ ରାଜ୍ୟପାଳ ବି.ସତ୍ୟନାରାୟଣ ରେଡ୍‌ଡିଙ୍କ ସହିତ ବାର୍ତ୍ତାଳାପରେ ଆଞ୍ଚା



ନିୟମଗିରି ହିଲ୍‌ସର ଦୁଇଜଣ କର୍ମଜୀବୀ ମହିଳାଙ୍କ ସହ ଆଲୋଚନାରେ ଆଞ୍ଚା



ଉତ୍କଳ ନବଜୀବନ ଉନ୍ନୟନ
ମଣ୍ଡଳର ସଭାପତି ଶ୍ରୀଯୁକ୍ତ
ଗୁରୁମହାନ୍ତିଙ୍କ ଦ୍ୱାରା ଆଜ୍ଞାଙ୍କୁ
ଅଭିନନ୍ଦନ



ଆଜ୍ଞାଙ୍କ ୮୫ତମ ଜନ୍ମଦିବସ
ଅବସରରେ ଶ୍ରୀଯୁକ୍ତ ବନଓ୍ୱାରିଲାଲ
ଗଉଡ, ସଭାପତି, ଭାରତୀୟ
ଆଦିମଜାତି ସେବକସଂଘ ନୂଆଦିଲ୍ଲୀ
ଦ୍ୱାରା ପୁଷ୍ପହାର ଦ୍ୱାରା ଅଭିନନ୍ଦନ



ଶ୍ରୀଯୁକ୍ତ ମନମୋହନ ଚୌଧୁରୀ, ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି ଓ ଅନ୍ୟାନ୍ୟ ଅତିଥିଙ୍କ ଗହଣରେ ଆଜ୍ଞା।



୨୦୦୨ ମସିହାରେ ଆଜ୍ଞାଙ୍କୁ ପ୍ରଦ୍ୟୁମ୍ନ ବଳ ସ୍ମାରକୀ ପୁରସ୍କାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ପ୍ରଦାନ




ସ୍ୱଳ୍ପକାଳୀନ ମହିଳା ନିବାସ ଦେଖିବା ଅବସରରେ ଆଜ୍ଞା



୮୬ତମ ଜନ୍ମଦିବସ ଅବସରରେ ଆଜ୍ଞା ପିଲାମାନଙ୍କୁ ତାଙ୍କର ଅନୁଭୂତିର କିଛିଅଂଶ କହୁଛନ୍ତି



→ ୧୯୬୭ ମସିହାରେ
ଆଚାର୍ଯ୍ୟ ମହାଶୟଙ୍କ ସହିତ
ଆଜ୍ଞା ଓ ବାଜିଭାଇ



୧୯୬୫ ମସିହାରେ ଗରଣ୍ଡା
ଠାରେ ଉତ୍କଳ ନବଜୀବନ ମଣ୍ଡଳିର
ସମ୍ମିଳନୀରେ କର୍ମୀମାନଙ୍କ ଗହଣରେ
ଆଜ୍ଞା, ବାଜିଭାଇ ଓ ରେଡ଼ିଜୀ ←



→ ୧୯୫୫ ମସିହାରେ ବିନୋବାଜୀଙ୍କ
କୋରାପୁଟ ଆଗମନ ନିମିତ୍ତ ଆଜ୍ଞା
ଓ ବାଜିଭାଇ ଆଲୋଚନା ରତ



୧୯୫୫ ମସିହାରେ କୁଜେନ୍ଦ୍ରିଠାରେ ବିନୋବାଜୀ
ଓ ଗୋପବନ୍ଧୁ ଚୌଧୁରୀଙ୍କ ସହ ଆଙ୍ଗା



୧୧.୦୯.୨୦୦୦ରେ
ସ୍ୱାଧିନତା ସଂଗ୍ରାମୀ ୰ଲକ୍ଷ୍ମିଚନ୍ଦ୍ର ଦାସଙ୍କ
ଶ୍ରାଦ୍ଧ ଉତ୍ସବରେ ଆଙ୍ଗାଙ୍କର ବକ୍ତବ୍ୟ



ନବରଙ୍ଗପୁର ସର୍ବୋଦୟ ଆଶ୍ରମ
୧୯୬୭ ମସିହାରେ ଆଚାର୍ଯ୍ୟ ମହାଶୟ
ଓ କର୍ମୀମାନଙ୍କ ଗହଣରେ
ଆଙ୍ଗା ଓ ବାଜିଭାଇ





ବନବାସୀ ସେବାସମିତିର
ସଂପାଦକଙ୍କ ସହ ଆଙ୍ଗା

ପରିଶିଷ୍ଟ-୧

# ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଜୀବନ ଦେଇଥିବା କୋରାପୁଟ ଜିଲ୍ଲାର ବୀର ଶହୀଦ ଗଣ

| କ୍ରମିକ ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦ ପୀଠ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|
| ୧ ଲକ୍ଷ୍ମଣ ନାଇକ | ଢେଣ୍ଟୁଳିଗୁମା | ମାଥିଲି | ବ୍ରହ୍ମପୁର ଜେଲ୍‌ରେ | ଶତ୍ରୁର ଫାସିରେ |
| ୨. ସମରାବିଶି ନାଇକ | ମିଙ୍ଗାରିଗୁଡ଼ା | ,, | ମାଥିଲି ଥାନାରେ | ଶତ୍ରୁର ଗୁଳିରେ |
| ୩. ନରସିଙ୍ଗ ଡ଼ମ୍ବ | ନୂଆ ଗୁଡ଼ା | ,, | ,, | ,, |
| ୪. ଅର୍ଜୁନ କୁଟିଆ | କୁଡ଼ଙ୍କଗୁଡ଼ା | ,, | ,, | ,, |
| ୫. ଲିଙ୍ଗ କୁଟିଆ | ଟିମସପୁଟ | ,, | ,, | ,, |
| ୬. ଖଗପତି ଅମାନାତ୍ୟ | ଭଲ୍ଲା | ନବରଙ୍ଗପୁର | ପାପଡାହାଣ୍ଡି ନଦୀତଟରେ | ,, |
| ୭. ସୁଦୁ ଭତରା | ନନ୍ଦାହାଣ୍ଡି | ,, | ,, | ,, |
| ୮. ଆନନ୍ଦ ଗୌଡ଼ | ଦୁଗୁଗୁଡ଼ା | ,, | ,, | ,, |
| ୯. ବଳି ସଉରା | ଧଣରା | ଢେଣ୍ଟୁଳିଖୁଣ୍ଟି | ,, | ,, |
| ୧୦. ବୁଦୁ ଅମାନାତ୍ୟ | ଉସୁରିପଦର | ,, | ,, | ,, |
| ୧୧. ରତନ ଭଣ୍ଡାରି | ତୁରୁଞ୍ଜି | ,, | ,, | ,, |
| ୧୨. ରାମଚନ୍ଦ୍ର ଆମାନାତ୍ୟ | ପୁଂପୁଗାଁ | ,, | ,, | ,, |
| ୧୩. ଘାସି ଜାନି | ନୂଆଗାଁ | ,, | ,, | ,, |
| ୧୪. ଶୁକୁ ମୁଦୁଲି | ସୁଲାବାଇ | ,, | ,, | ,, |
| ୧୫. ରତନ ପୂଜାରି | ଉସୁରି ପଦର | ,, | ,, | ,, |
| ୧୬. ଦୀନବନ୍ଧୁ ଜାନି | ନୂଆ ଗାଁ | ,, | ,, | ,, |
| ୧୭. ବୁଦୁ ଅମାନାତ୍ୟ | ତୁରୁଞ୍ଜ | ,, | ,, | ,, |
| ୧୮. ଜଗନ୍ନାଥ ଅମାନାତ୍ୟ | ଗାଣ୍ଡ୍ରପୁଟ | ,, | ,, | ,, |
| ୧୯. ସହଦେବ ପୂଜାରୀ | ପଡ଼େଇଗୁଡ଼ା | ,, | ,, | ,, |
| ୨୦. ବଣ୍ଡରିଆ ଭତରା | ବଦ୍ଧାଇଗୁଡ଼ା | ପାପଡାହାଣ୍ଡି | ,, | ,, |
| ୨୧. ଭଗବାନ ଭତରା | ମଣ୍ଡାଗୁଡ଼ା | ,, | ,, | ,, |
| ୨୨. ଲଚନା ଦୋରା | ଫଟାଙ୍ଗୀ | ଫଟାଙ୍ଗୀ | କୋରାପୁଟ ଜେଲ୍‌ରେ | ଶତ୍ରୁର ଲାଠିମାଡ଼ରେ |
| ୨୩. ଗୋପିନାଥ ପୂଜାରୀ | ସାନଗୁମା | ମାଥିଲି | ,, | ,, |
| ୨୪. ଲଣ୍ଡେସୁନା ଝରିଆ | ଲିଆଙ୍ଗ | ,, | ,, | ,, |

| କ୍ରମିକ ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦ ପୀଠ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|
| ୨୫. ଗୁରୁକଟିଆ | ଟିମସପୁଟ | ମାଥିଲି | କୋରାପୁଟ | ଶତ୍ରୁର ଲାଠିମାଡ଼ରେ |
| ୨୬. ଭଦେନାଥ ଓଡ଼ | ବୈଶାଖଘାଟ | ” | ” | ” |
| ୨୭. ବଳରାମ ଭୂମିଆ | ଟେମୁରୁପାଲି | ” | ” | ” |
| ୨୮. ମଙ୍ଗଳା ମାଢ଼କାମି | ସରଗିଗୁଡ଼ା | ” | ” | ” |
| ୨୯. ସୋମନାଥ ଭୂମିଆ | ଭଦେଗିରି | ” | ” | ” |
| ୩୦. ଚନ୍ଦ୍ରବାଢା | ନାଇକଗୁଡ଼ା | ” | ” | ” |
| ୩୧. ଦାମା ପୂଜାରୀ | ଚଲାଣାଗୁଡ଼ା | ” | ” | ” |
| ୩୨. ଶୁକ୍ରୁ ଗୋଟେ | ସଞ୍ଜିଗୁଡ଼ା | ” | ” | ” |
| ୩୩. ଗୋବିନ୍ଦ କୋପେ | ଗାଳଗାଁ | ” | ” | ” |
| ୩୪. ସମ୍ବାରୁ ନାଇକ | ପିତାଡଙ୍ଗ | ” | ” | ” |
| ୩୫. ଅର୍ଜୁନ ଭୂମିଆ | ସାନଗୁମା | ” | ” | ” |
| ୩୬. ଚୈତନ୍ୟ ପୂଜାରୀ | ବାଲିଲିଗୁଡ଼ା | ” | ” | ” |
| ୩୭. ଲକ୍ଷନ ସମରଥ | ସାରଙ୍ଗପାଲି | ” | ” | ” |
| ୩୮. ଭକତ ଜରା | ଜବାଗୁଡ଼ା | ପାଡୁଆ | ” | ” |
| ୩୯. ଡମ୍ବରୁ ସିଶା | ମାଲେଗାଁ | ” | ” | ” |
| ୪୦. ଭଗବାନ ଜରା | ଜନିପଡ଼ା | ” | ” | ” |
| ୪୧. ଥାଦୁ ଗଲରି | ପ୍ରତିହିଁ | ” | ” | ” |
| ୪୨. ସମରା ମାଝି | ସିନ୍ଧୁପୁଟ | ” | ” | ” |
| ୪୩. ଲିଙ୍ଗର ଧନୁର୍ଜୟ | ସାକୁଲୁ | ” | ” | ” |
| ୪୪. ଭଗବାନ ଖିଲ | ବାଗ୍ରା | ଜୟପୁର | କୋରାପୁଟ ଜେଲରେ | ରୋଗର ବିନା ଚିକିତ୍ସାରେ |
| ୪୫. ଖଗପତି ପୂଜାରୀ | ପରସଲା | ବରିଗୁମା | ” | ” |
| ୪୬. ହରି ଅମାନାତ୍ୟ | ବାମଣୀ କୋଟ | ନବରଙ୍ଗପୁର | ” | ” |
| ୪୭. ଲାବାନ୍ୟ ଭାତରା | ସାନ କୁମୁଲି | ” | ” | ” |
| ୪୮. ରଘୁନାଥ ରଣ୍ଡାରୀ | ତୁରଣ୍ଡ | ତେନ୍ତୁଳିଖୁଣ୍ଟି | ” | ” |
| ୪୯. ଗଙ୍ଗାଧର ମୁଦୁଲି | ପିଲବାସନି | ତେନ୍ତୁଳିଖୁଣ୍ଟି | ” | ” |
| ୫୦. ରତନ ଭତରା | କୁସୁମି | ” | ” | ” |

| କ୍ରମିକ ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦ ପୀଠ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|
| ୫୧. ସଦାଶିବ ରଣା | ମଟାଗାଁ | " | " | " |
| ୫୨. ମୁଦିଆ ଭତରା | କଣାଗୁଡ଼ାଇ ସାଗୁମୁଣ୍ଡା | କଡ଼ିଙ୍ଗା | କୋରାପୁଟ ଜେଲ୍‌ରେ | " |
| ୫୩. ଝଗେଶ୍ୱର ମାଝି | ଜାମଗୁଡ଼ା | ମୈଦଳପୁର | " | " |
| ୫୪. ଧବୁଲୁ ପାଇକ | ଓଟାଗୁଡ଼ା | " | " | " |
| ୫୫. ବାଳଟି ଭତରା | ଗପିଗୁଡ଼ା | " | " | " |
| ୫୬. ହଡି ବଲରା | " | " | " | " |
| ୫୭. ଘଣ୍ଟିକା ଭତରା | ଏକରୀ | ପାପଡାହାଣ୍ଡି | " | " |
| ୫୮. ମାଧବ ମାଝି | ମାଝିଗୁଡ଼ା | " | " | " |
| ୫୯. କାଳିଆ ମାଝି | ଗ୍ରାନିଆଗୁଡ଼ା | ଡ଼ାବୁଗାଁ | " | " |
| ୬୦. ଜଗୁ ମାଝି | ଟେଗଟି ଆମ୍ବ | " | " | " |
| ୬୧. ବନମାଳୀ ହରିଜନ | ପାଡ୍ରି | " | " | " |
| ୬୨. ବଗା ପୂଜାରୀ | ରଣ୍ଡି | ଉମରକୋଟ | " | " |
| ୬୩. ସୁଜମନ ଭତରା | ଗପିଗୁଡ଼ା | ମୈଦଳ ପୁରି | ନବରଙ୍ଗପୁର ଜେଲ୍‌ରେ | " |
| ୬୪. ପର୍ଶୁରାମ ମାଳି | ଚନ୍ଦ୍ରପୁର | " | " | " |
| ୬୫. ଲକ୍ଷ୍ମଣ ମ୍ରାଷ୍ଟା | ନୂଆଗାଁ | " | " | " |
| ୬୬. ଟେରୁ ପାଇକ | ଗର୍ପଗୁଡ଼ା | " | " | " |
| ୬୭. ମଙ୍ଗଲୁ ଭତରା | ଉମରିଗାଁ | କଡିଙ୍ଗା | " | " |
| ୬୮. ଡ଼ମରୁ ମାଝି | ଲାଣ୍ଡଗୁଡ଼ା | " | " | " |
| ୬୯. ଘାସିଆ ଗଣ୍ଡ | " | | " | " |
| ୮୦. ପରମାନନ୍ଦ ସଉରା | ବସ୍ତା | ନବରଙ୍ଗପୁର | ନବରଙ୍ଗପୁରହସପିଟାଲ | ଷଡୁର ଗୁଳିରେ |
| ୮୧. ସଦାଶିବ ବେହେରା | ଜୟପୁର | ଜୟପୁର | କୋରାପୁଟଜେଲ୍‌ରେ | ରୋଗର ବିନା ଚିକିତ୍ସାରେ |
| ୮୨. ଡ଼ମରୁ ତଳିଆ | " | " | " | " |
| ୮୩. ଲକ୍ଷ୍ମଣ ଖମ | ଲାଲୁଗାଁ | ମାତିଲି | କୋରାପୁଟ ଜେଲ୍‌ରେ | ଷଡୁର ଗୁଳି ମାଡରେ |

✱ ✱ ✱

## ପୁରସ୍କାର ଓ ସମ୍ମାନ

ବିଶ୍ୱନାଥ ପଟ୍ଟନାୟକ ମାନ, ସମ୍ମାନ ଓ ପୁରସ୍କାର ଠାରୁ ବହୁତ ଉର୍ଦ୍ଧ୍ୱରେ । ସେ କେବେହେଲେ ସ୍ୱୀକୃତି ଚାହିଁ ନାହାନ୍ତି, ନିଜ ଜୀବନକାଳ ଭିତରେ । ୰ଗୋପବନ୍ଧୁ ଚୌଧୁରୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲାପରେ, ନିଷ୍କାମ କର୍ମଯୋଗରେ ଯୋଗୀ ହେଲାପରେ, ତାଙ୍କ ପାଇଁ ଏ ସବୁର ମୂଲ୍ୟ ଯେ ତୁଚ୍ଛ ଏହା ତାଙ୍କ ନିମ୍ନ ବକ୍ତବ୍ୟରୁ ଜଣାପଡ଼େ- ''ପୁରସ୍କାର ଓ ସମ୍ମାନ ମୋତେ ମୋ କାମରୁ ଦୂରେଇ ଦେଲା ପରି ମନେହୁଏ ।'' ସମ୍ମାନ ତାଙ୍କ ପାଖକୁ ଆସିଛି ।

ତାଙ୍କ ପ୍ରତିଷ୍ଠିତ ବାଲିଗୁଡ଼ା ବନବାସୀ ସମିତି ରାଷ୍ଟ୍ରୀୟ ସ୍ତରରେ ୧୯୯୪ ଖ୍ରୀଷ୍ଟାବ୍ଦରେ ଭାରତର ରାଷ୍ଟ୍ରପତିଙ୍କ ଠାରୁ ୨ଲକ୍ଷ ଟଙ୍କାର ଶିଶୁ କଲ୍ୟାଣ ପୁରସ୍କାର ପାଇଥିଲା ।

୧୯୯୧ ରେ ଭାରତୀୟ ଆଦିମ ଜାତି ସେବକ ସଂଘ ତରଫରୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଶ୍ରେଷ୍ଠ ସମାଜସେବୀ ଭାବେ ସମ୍ମାନିତ କରାଗଲା ।

ଓଡ଼ିଶା ସରକାରଙ୍କ ଠାରୁ ପ୍ରକୃତି ମିତ୍ର ପୁରସ୍କାର ମିଳିଗଲା ଏବଂ ୧୯୯୬ରେ କଳାହାଣ୍ଡି ଜିଲ୍ଲାର ଡ଼ଙ୍ଗରିଗୁଡ଼ା ଠାରେ ଭାରତୀୟ ଆଦିମ ଜାତି ସେବକ ସଂଘ, ନୂଆଦିଲ୍ଲୀ ଆନୁକୂଲ୍ୟରେ ହୋଇଥିବା ସର୍ବଭାରତୀୟ ରାଷ୍ଟ୍ରୀୟ ସମ୍ମିଳନୀରେ ବିଶ୍ୱନାଥ ଆଜ୍ଞାଙ୍କୁ ଶ୍ରେଷ୍ଠ ସମାଜ ସେବୀ ଭାବେ ପ୍ରଶଂସା ପତ୍ର ପ୍ରଦାନ କରାଯାଇଥିଲା ।

ଆଦିବାସୀ, ଜନଜାତିର ଉତ୍‌ଥାନ ଓ ସମାଜର ସାମୂହିକ ଉନ୍ନତି ପାଇଁ ଦୀର୍ଘ ୪୫ ବର୍ଷ ନିରବଚ୍ଛିନ୍ନ ସାଧନା କରିଥିବା ଗାନ୍ଧୀବାଦୀ ନେତା, ସ୍ୱାଧୀନତା ସଂଗ୍ରାମୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଜଷ୍ଟିସ ରାଜ କିଶୋର ଦାସ ସ୍ମୃତି ପରିଷଦ ପକ୍ଷରୁ  ଜଷ୍ଟିସ ଦାସଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ପାଳନ ଅବସରରେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍ସବରେ ତତ୍‌କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ୨୫ ହଜାର ଟଙ୍କା, ମାନପତ୍ର ଏବଂ ଉପଢ଼ୌକନ ପ୍ରଦାନ କରି ସମ୍ବର୍ଦ୍ଧନା ଦେଲେ ।

ଏହି ପୁରସ୍କାର ଅର୍ଥକୁ ବିଶ୍ୱନାଥ ଆଜ୍ଞା ବନବାସୀ ସେବା ସମିତିକୁ ଦାନ କରିଦେଲେ । ସେ କହିଲେ, ''୨୫ ହଜାର ଟଙ୍କା ପୁରସ୍କାର ମୋତେ ମିଳିନାହିଁ କିମ୍ବା ଅନୁଷ୍ଠାନକୁ ମିଳିନାହିଁ । ଆଦିବାସୀ ହରିଜନ, ଅନାଥ ଶିଶୁ ମାନଙ୍କ ପାଇଁ କାମ କରୁଥିବାରୁ ଏହା ମିଳିଛି, ତାହା ସେମାନଙ୍କ ପାଇଁ ଖର୍ଚ୍ଚ ହେବ । ଜଣେ ବିଶିଷ୍ଟ ବ୍ୟକ୍ତି ବିଚାରପତି ସ୍ୱର୍ଗତ ଦାସଙ୍କ ଏହା ଦାନ ।''

୨୦୦୨ ମସିହାରେ ଆଜ୍ଞାଙ୍କୁ ପ୍ରଦ୍ୟୁମ୍ନ ବଳ ସ୍ମାରକୀ ପୁରସ୍କାର ବାବଦକୁ ଟ ୫୦,୦୦୦/- (ପଚାଶ ହଜାର) ଟଙ୍କା ଓ ମାନପତ୍ର ମିଳିଥିଲା । ସେହି ଅର୍ଥରାଶିର ସୁଧକୁ ଆଦିବାସୀ ପିଲାମାନଙ୍କ ବିକାଶ ଦିଗରେ ଖର୍ଚ୍ଚ କରାଯିବ ବୋଲି ଘୋଷଣା କରିଥିଲେ ।

ଜୁନ୍ ୨୦୦୨ରେ IMFA ଭୁବନେଶ୍ୱର ତରଫରୁ ଶାରଳା ପୁରସ୍କାର ବାବଦକୁ ଟ ୧୦,୦୦୦/- ମିଳିଥିଲା । ତାଙ୍କର ସମସ୍ତ ପୁରସ୍କାର ଅର୍ଥରାଶିକୁ ସେ ବନବାସୀ ବିକାଶ ଟ୍ରଷ୍ଟକୁ ପ୍ରଦାନ କରିଛନ୍ତି ।

***

ପରିଶିଷ୍ଟ-୩

# ବନବାସୀ ସେବା ସମିତି ମାର୍ଫତରେ ୨୦୦୨ ମସିହା ସୁଦ୍ଧା କାର୍ଯ୍ୟରତ ଅନୁଷ୍ଠାନ ଗୁଡ଼ିକର ତାଳିକା:

| କ୍ର. ନଂ | କାର୍ଯ୍ୟକ୍ରମର ନାମ | ମୋଟପିଲା | ଆଦିବାସୀ | ହରିଜନ | ଅନ୍ୟାନ୍ୟ | ପୁଅ | ଝିଅ | କର୍ମଚାରୀ |
|---|---|---|---|---|---|---|---|---|
| ୧. | ଦୃଷ୍ଟିହୀନ ବିଦ୍ୟାଳୟ | ୮୦ | ୪୫ | ୨୧ | ୧୪ | ୫୩ | ୨୭ | ୨୭ |
| ୨. | ବଧିର ବିଦ୍ୟାଳୟ | ୯୩ | ୫୫ | ୩୩ | ୫ | ୬୪ | ୦୯ | ୧୯ |
| ୩. | ବନବାସୀ ମଧ୍ୟ ଇଂରାଜୀ ବିଦ୍ୟାଳୟ | ୧୧୧ | ୪୧ | ୨୭ | ୪୩ | ୬୬ | ୪୫ | ୦୩ |
| ୪. | ବନବାସୀ ପ୍ରାଥମିକ ବିଦ୍ୟାଳୟ | ୧୯୫ | ୧୩୦ | ୨୭ | ୩୯ | ୧୨୪ | ୭୧ | ୦୫ |
| ୫. | ସ୍ୱତନ୍ତ୍ର ଛାତ୍ରାବାସ | ୫୦ | ୪୨ | ୦୮ | - | ୩୬ | ୧୪ | - |
| ୬. | କନ୍ୟାଶ୍ରମ ବକ୍ଷଗଡ଼ | ୧୦୦ | ୯୭ | ୦୩ | - | - | ୧୦୦ | ୧୧+୧(P.T) |
| ୭. | କନ୍ୟାଶ୍ରମ ରବିଙ୍ଗିଆ | ୧୦୦ | ୯୬ | ୦୪ | - | - | ୧୦୦ | ୧୧+୧(P.T) |
| ୮. | ସ୍ପନସରସିପ୍ ପ୍ରୋଗ୍ରାମ | ୧୦୪ | ୮୧ | ୧୨ | ୧୧ | ୫୩ | ୫୧ | ୧ |
| ୯. | ଜରା ନିବାସ | ୨୫ | ୧୧ | ୧୦ | ୦୪ | ୧୨ | ୧୩ | ୬+୧(P.T) |
| ୧୦. | ସ୍ୱଳ୍ପ କାଳୀନ ମହିଳା ନିବାସ | ୧୭୭ | ୧୩ | ୫୪ | ୧୧୦ | - | ୧୭୭ | ୧୯ |
| ୧୧. | ଆନନ୍ଦ ପଣ୍ଡ | ୧୮ | ଶିଶୁ ସଦନର ପିଲାମାନେ | | | | | |
| ୧୨. | ୫୪-ବାଲୱାଡ଼ି/ଇ.ସି.ଇ | ୧୮୧୦ | | | | | | ୧୦୮(P.T) |
| ୧୩. | ୧୪ କ୍ରେଚ୍ | ୪୨୦ | | | | | | ୨୮(P.T) |
| ୧୪. | ୧୦୦ ଅଣ ଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର | ୨୭୮୮ | ୧୪୨୮ | ୧୦୯୨ | ୨୧୮ | ୧୫୦୧ | ୧୨୮୭ | ୧୧୨ |
| ୧୫. | ସମନ୍ୱିତ ଶିଶୁ ବିକାଶ ଯୋଜନା | ୪୯୬୫ | | | | | | ୮୩ |
| ୧୬. | ଅଙ୍ଗନବାଡ଼ି ଟ୍ରେନିଂ ସେଣ୍ଟର ବାଲିଗୁଡ଼ା | ୨୨୪ | | | | | ୨୨୪ | ୦୫ |
| ୧୭. | ଅଙ୍ଗନବାଡ଼ି ଟ୍ରେନିଂ ସେଣ୍ଟର ଡୁଙ୍ଗରାଗୁଡ଼ା, କଳାହାଣ୍ଡି | ୨୫୮ | | | | | ୨୫୮ | ୦୫ |
| ୧୮. | ଶିଶୁଗୃହ | ୧୪ | | | | ୪ | ୧୦ | ୨+୨ |
| ୧୯. | ସି.ଆର୍.ଏସ୍ (ଓସିଏଫ) | ୧୦୦ | ଶିଶୁ ସଦନର ଛାତ୍ରଛାତ୍ରୀ ମାନେ | | | | | |
| ୨୦. | ହେଲପେଜ୍ ଇଣ୍ଡିଆ | ୬୦ | ୫୧ | ୦୯ | - | ୨୪ | ୩୬ | |

* * *

ପରିଶିଷ୍ଟ-୪

# ମୋ ଦୃଷ୍ଟିରେ ଆଞ୍ଚା

ମୁଁ ଯେତେବେଳେ ରାମଚନ୍ଦ୍ରପୁର ପୋଷ୍ଟ ବେସିକ ସ୍କୁଲରେ ପଢୁଥିଲି ସେ ସମୟରୁ ଆଞ୍ଚାଙ୍କୁ ଦେଖିଥିଲି, କିନ୍ତୁ ତାଙ୍କ ସହିତ ସମ୍ପର୍କ ନଥିଲା ।

୧୯୬୩ ମସିହାରୁ ଓଡ଼ିଶା ଖଦୀ ଗ୍ରାମୋଦ୍ୟୋଗ ବୋର୍ଡ ଅଧିନରେ ଗ୍ରାମ ସହାୟକ ଭାବେ ବନ୍ଧୁଗାଁ ଠାରେ କାର୍ଯ୍ୟରତ ଥିବା ସମୟରେ ବହୁବାର ଆଞ୍ଚାଙ୍କ ସାନିଧ ଲାଭ କରିଛି । ଗ୍ରାମ ସହାୟକ ତାଲିମ ଗୋପାଳ ବାଡ଼ି ଗ୍ରାମ-ସ୍ୱରାଜ୍ୟ ବିଦ୍ୟାଳୟରେ ୨ ବର୍ଷ ତାଲିମ ନେବା ସମୟରେ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଛି । ବନ୍ଧୁଗାଁର ସେତେବେଳେ ଯେଉଁ ପ୍ରକାର ଅଭାବ ଅସୁବିଧା ଭାଷାଗତ ସମସ୍ୟା ମୁଁ ଅନୁଭବ କରୁଥିଲି ସେ ସବୁ ସମସ୍ୟାର ସମାଧାନର ବାଟ ଥିଲେ ''ଆଞ୍ଚା'' । ବାସ୍ତବିକ୍ ସେ ସମୟରେ ବହୁତ କମ ବୟସରେ କୋରାପୁଟ ଜିଲ୍ଲାର ବନ୍ଧୁଗାଁ ଠାରେ ମୁଁ କାମ କରୁଥିଲି । ପରିବାରର ସ୍ନେହଶ୍ରଦ୍ଧା ସାଙ୍ଗସାଥୀ ମାନଙ୍କର କେତେକ ସ୍ୱପ୍ନିଳ ମୁହୂର୍ତ୍ତକୁ ମୁଁ ପରିତ୍ୟାଗ କରି ସେଠାରେ ପଡ଼ିଥିଲି । ମୋର କେବଳ ସାହା ଭରସା ମନୋବଳ ବଢ଼ାଇବାରେ ଏକମାତ୍ର ବ୍ୟକ୍ତିଥିଲେ ''ଆଞ୍ଚା'' । ଦୁଃଖ ସୁଖ, ସାନ୍ତ୍ୱନା, ଦିଗଦର୍ଶନ, ସାଂଗଠନିକ କାର୍ଯ୍ୟ ସମ୍ପର୍କରେ ସବୁ ପ୍ରକାର ଉତ୍ସାହ ଯୋଗାଉଥିଲେ ସେହି ଆଞ୍ଚା ।

୧୯୭୦ ମସିହାରେ କଲେଜ ପାଠପଢ଼ା ଶେଷ କରି ଉତ୍କଳ ଖଦୀ ମଣ୍ଡଳ ତରଫରୁ କ୍ଷେତ୍ର ସଂଗଠନ ତାଲିମ ପାଇଁ (Regional Planning Institute) ନାସିକ ଗଲି । ସେଠାରୁ ତାଲିମ ଶେଷ ପରେ ମୋତେ ମୟୁରଭଞ୍ଜରେ ପୋଷ୍ଟିଂ ହେବା କଥା ଜାଣିଲି । କିନ୍ତୁ କାର୍ଯ୍ୟରେ ଯୋଗଦେବା ପୂର୍ବରୁ ପୁଣି ଏକ ପରିବର୍ତ୍ତିତ ଆଦେଶନାମା ପାଇଲି । ଯେଉଁଥିରେ କି ମୟୂରଭଞ୍ଜ ବଦଳରେ ବାଲିଗୁଡ଼ାରେ ଯୋଗଦେବାକୁ ଆଦେଶ ହୋଇଛି, ଏବଂ ତାହା ଆଞ୍ଚାଙ୍କ ଆଦେଶକ୍ରମେ ହୋଇଛି ବୋଲି ଶୁଣିଲି । ଭୁବନେଶ୍ୱର ଖଦୀ ମଣ୍ଡଳ ଅଫିସରେ ଆଞ୍ଚାଙ୍କ ସହିତ ଦେଖାହେବା ପରେ ମୋତେ ବହୁ ଉତ୍ସାହ ପ୍ରଦାନ କଲେ ବାଲିଗୁଡ଼ାରେ ଯୋଗଦେବା ପାଇଁ ଏବଂ ସେୟା ହେଲା । ପରିବାର ଲୋକଙ୍କର ବାରଣ ସତ୍ତ୍ୱେ ହଳଦୀ କିଆରୀର ନରବଳି ଚାପ ଆଦି ସମସ୍ତ କଥାକୁ ପଛରେ ପକାଉ ୧୯୭୦ମସିହା ନଭେମ୍ବର ମାସ ୨୨ ତାରିଖରେ ବାଲିଗୁଡ଼ାରେ ପହଞ୍ଚିଲି ।

ଏଠାକୁ ଆସିବା ପରେ ଖଦୀ ଗ୍ରାମଦ୍ୟୋଗ କାମ ସହିତ ଜିଲ୍ଲାର ଭୂଦାନ ନିବେଦକ ଓ ଜିଲ୍ଲାର ସର୍ବୋଦୟ ମଣ୍ଡଳର ସଂପାଦକ ଦାୟିତ୍ୱ ମୋତେ ନେବାକୁ ପଡ଼ିଲା କେବଳ

ଆଜ୍ଞାଙ୍କ ପ୍ରେରଣାରେ । ଆଜ୍ଞାଙ୍କୁ ସେହି ଦିନଠାରୁ ମୁଁ କର୍ମଗୁରୁ ବୋଲି ମନ ଭିତରେ ପୂଜାକଲି । ଏ ଜିଲ୍ଲାରେ ଆଦିବାସୀ ହରିଜନଙ୍କ ଉପରେ ବିଭିନ୍ନ ପ୍ରକାର ଅନ୍ୟାୟ ଅତ୍ୟାଚାର ଶୋଷଣ ଜୁଲମ, କୁସଂସ୍କାର ଅନ୍ଧବିଶ୍ୱାସ ଆଦିକୁ ଆଖି ଆଗରେ ରଖି ନିଶାନିବାରଣ ଶିକ୍ଷା, ସ୍ୱାସ୍ଥ୍ୟ, ଜଙ୍ଗଲ ସୁରକ୍ଷା ଆଦି କାର୍ଯ୍ୟକ୍ରମ ହାତକୁ ନେଇ ଲୋକ ମାନଙ୍କର ଉପକାର ପାଇଁ କିଛି କଲ୍ୟାଣ ମୂଳକ କାର୍ଯ୍ୟକ୍ରମ ଏକ ଅନୁଷ୍ଠାନ ଜରିଆରେ କରିବା ନିମିତ୍ତ ଆଜ୍ଞାଙ୍କ ସହିତ ଆଲୋଚନା କରିବା ପରେ ସେ ଆଗ୍ରହ ପ୍ରକାଶ କଲେ ଓ ଏ ଦିଗରେ ଆଗେଇବା ପାଇଁ ମାର୍ଗଦର୍ଶନ ଦେଲେ । ଅନୁଷ୍ଠାନର ନାମ କରଣ ଓ ବାଇଲ ଆଦି ପ୍ରସ୍ତୁତ କରିବା ପାଇଁ ଆଜ୍ଞାଙ୍କ କହିବା ଅନୁଯାୟୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାରଣା ଓ ଶ୍ରୀଯୁକ୍ତ ମଧୁସୂଦନ ସାହୁଙ୍କର ପ୍ରତ୍ୟକ୍ଷ ସାହାଯ୍ୟ ନେଇ ବାଇଲ ଆଦି ପ୍ରସ୍ତୁତ କରାଗଲା ଓ ଅନୁଷ୍ଠାନର ନାମ ବନବାସୀ ସେବା ସମିତି ରଖିବା ପାଇଁ ସର୍ବସମ୍ମତି କ୍ରମେ ସମସ୍ତେ ଆଗ୍ରହପ୍ରକାଶ କଲେ ।

୧୯୭୨ ମସିହା ମଇମାସ ବୁଦ୍ଧପୂର୍ଣ୍ଣିମା ଗୋପବନ୍ଧୁ ଚୌଧୁରୀଙ୍କ ଜନ୍ମଦିନରେ ଉକ୍ତ ଅନୁଷ୍ଠାନର ଶୁଭାରମ୍ଭ କରାଯାଇଥିଲା । ସେହିଦିନଠାରୁ ଅନୁଷ୍ଠାନର ବାର୍ଷିକ ଜନ୍ମୋତ୍ସବ ପାଳନ ହୋଇ ଆସୁଛି ।

ଆଜ୍ଞାଙ୍କ ଆଚରଣ ବ୍ୟକ୍ତିତ୍ୱ ଓ ଚରିତ୍ର ସମ୍ପର୍କରେ ଆମେ କିଛି କହିବା ବା ଲେଖିଲା ଭଳି ଶକ୍ତି ନାହିଁ । ତଥାପି ଆପଣ ଜାଣିବାକୁ ଯେତେବେଳେ ଚାହୁଁଛନ୍ତି ମୋର ବ୍ୟକ୍ତିଗତ ମତାମତ ଦୁଇପଦ ଲେଖିବାକୁ ଉଚିତ ମନେକରେ । ଆଜ୍ଞାଙ୍କ ସହିତ ସମ୍ପର୍କ ବହୁ ପୂର୍ବରୁ ଥିଲେ ମଧ ୧୯୭୦ ମସିହା ଠାରୁ ତାଙ୍କ ଆଚରଣ ଓ ବ୍ୟକ୍ତିତ୍ୱର ମୂଲ୍ୟ ବୁଝିଲି । ତାଙ୍କର ଚିନ୍ତାଧାରା ଓ ଭାବନା ଅତି ପବିତ୍ର ଓ ନିର୍ମଳ । ସେ ନିଜ ପରିବାର ଓ ଆତ୍ମୀୟ ସ୍ୱଜନଙ୍କ ସ୍ନେହ ଶ୍ରଦ୍ଧା ଓ ସମ୍ପର୍କର ବହୁ ଦୂରରେ । ପଚାରିଲେ କୁହନ୍ତି, ପାରିବାରିକ ସମ୍ପର୍କକୁ ମୁଁ ଦୀର୍ଘ ୭୦ ବର୍ଷ ହେଲା ତ୍ୟାଗ କରିଛି, ପୁଣି ଯଦି· ସେ ସମ୍ପର୍କକୁ ମୁଁ ଯୋଡ଼ିବି ତାହେଲେମୋର ଯେଉଁ ଆଭିମୁଖ୍ୟ ରହିଛି ସେ ପଥରୁ ବିଚ୍ୟୁତ ହେବି । ତେଣୁ ସେ ''ବସୁଧୈବ କୁଟୁମ୍ବକମ୍''ର ମନ୍ତ୍ରରେ ଅଭିମନ୍ତ୍ରିତ ହୋଇଛନ୍ତି । ସମସ୍ତ ଆଦିବାସୀ, ହରିଜନ, ନିଃସ୍ୱ, ନିରାଶ୍ରୟ, ନିଃସହାୟ, ପଙ୍ଗୁ ଓ ବିକଳାଙ୍ଗ ମାନଙ୍କର ବନ୍ଧୁ, ସହୋଦର ଓ ଆତ୍ମୀୟସ୍ୱଜନ ପାଲଟି ଯାଇଛନ୍ତି । ସେଇମାନଙ୍କର ଦୁଃଖରେ ନିଜକୁ ସାମିଲ କରି ସେ ଜୀବନ ସଂଗ୍ରାମ କରି ଚାଲୁଛନ୍ତି । ତାଙ୍କର ନିଷ୍କଳଙ୍କ ବ୍ୟକ୍ତିତ୍ୱ ଓ ଭାବମୂର୍ତ୍ତିର ବହୁ ଦୃଷ୍ଟାନ୍ତ ରହିଛି । କାରାବରଣ ଠାରୁ ଆଜି ପର୍ଯ୍ୟନ୍ତ ସେ କାମିନୀ-କାଞ୍ଚନଠାରୁ ବହୁ ଦୂରରେ ।

ଆଜ୍ଞା କେବଳ କାମ ଉପରେ ବିଶ୍ୱାସ କରନ୍ତି । ସଭା ସମିତିରେ ଭାଷଣ ଦେବା ଓ କାମ ନକରି ଭଲ ବିବରଣୀ ଉପସ୍ଥାପନ କରିବା ସପକ୍ଷରେ ସେ ନୁହନ୍ତି । ଖାଦ୍ୟ-ପେୟ ଓ ପୋଷାକ ପରିଛେଦରେ ଏତେ ମିତ ବ୍ୟୟୀ ବୋଧହୁଏ ଆଉ କେହି ନଥିବେ । ତାଙ୍କର ଗୁରୁ ୰ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁପରେ ସେ ଲୁଣ ଛାଡ଼ିଥିଲେ । ଦିନରେ ଗୋଟିଏ ଥର ଖାଇବା ଓ ଯେଉଁଠାରେ କିଛି ନମିଳେ ସେ ଛତୁଆଟିକେ ଖାଇ ରହିଯାଆନ୍ତି ।

ତାଙ୍କୁ ବହୁ ସମୟରେ ବିଭିନ୍ନ ପୁରସ୍କାର ଓ ସମ୍ମାନ ଦିଆ ଯାଇଛି କିନ୍ତୁ ସେ ସେଥିରେ ଆନନ୍ଦ କିମ୍ବା ଗର୍ବ ଅନୁଭବ କରନ୍ତି ନାହିଁ । ବରଂ ଅନାଗ୍ରହ ପ୍ରକାଶ କରନ୍ତି ସେ ସବୁ ଗ୍ରହଣ କରିବା ପାଇଁ, ତାର କାରଣ ହେଉଛି ତାଙ୍କୁ ଲୋକମାନଙ୍କ ପାଖରୁ ଦୁରେଇ ଦିଆଯାଉଛି ବୋଲି ଭାବନ୍ତି । ୧୯୯୫ ମସିହାରେ ତାଙ୍କୁ ଭାରତୀୟ ଆଦିମଜାତି ସେବକ ସଂଘ ଦ୍ୱାରା ଶ୍ରେଷ୍ଠ ସମାଜ ସେବକ ଭାବେ ପୁରଷ୍କୃତ କରାଯାଇଥିଲା ।

୧୬-୧୨-୯୬ରେ ତାଙ୍କୁ ଜଷ୍ଟିସ୍ ରାଜକିଶୋର ଦାସ ସ୍ମାରକୀ ପୁରସ୍କାର ଦିଆଯାଇଥିଲା । ଉକ୍ତ ପୁରସ୍କାର ବାବଦରେ ଯେଉଁ ଟ୨୫.୦୦୦/- ତାଙ୍କୁ ଦିଆଯାଇଥିଲା ସେ ବାବଦ ସମସ୍ତ ଅର୍ଥକୁ ସେ ବନବାସୀ ବିକାଶ ଟ୍ରଷ୍ଟକୁ ଦାନ କରିଥିଲେ ।

ପିଲାମାନଙ୍କୁ ସେ ଯେଉଁ ସ୍ନେହ ଶ୍ରଦ୍ଧା ଦେଇଥିଲେ ସେଥିରେ କୃତ୍ରିମତା ନଥିଲା । ଅନାବିଳ ଓ ପ୍ରାକୃତିକ ଥିଲା । ଆଶ୍ରମର ଛୋଟ ପିଲାଠାରୁ ବଡ଼ପିଲା ପର୍ଯ୍ୟନ୍ତ ସମସ୍ତେ ସେମାନଙ୍କର ସୁବିଧା ଅସୁବିଧା, ଭଲ ମନ୍ଦ ଆଦି ଆଜ୍ଞାଙ୍କ ଆଗରେ ନିସଙ୍କୋଚରେ କହିପାରନ୍ତି । ଆଜ୍ଞା ଅବିଳମ୍ବେ ସେମାନଙ୍କର ସମସ୍ୟା ସମାଧାନ କରନ୍ତି ।

❋ ❋ ❋



ଶ୍ରୀ ସୁବାସ ଚନ୍ଦ୍ର ମିଶ୍ରଙ୍କ ଜନ୍ମ କୋରାପୁଟ ଜିଲ୍ଲାର କାମତା-କୁମୁଲି ନିକଟସ୍ଥ ବୋଡ଼ିଗାଁ ଗ୍ରାମରେ ତା ୦୧.୦୭.୧୯୫୦ରେ ।

ଶ୍ରୀ ସୁବାସ ଚନ୍ଦ୍ର ମିଶ୍ର ଏକାଧାରରେ ଜଣେ କବି, ପ୍ରାବନ୍ଧିକ, ସାହିତ୍ୟିକ, ସଂଗଠକ, ସ୍ତମ୍ଭଲେଖକ, ଆଦିବାସୀ ଭାଷା ଓ ସଂସ୍କୃତିର ଜଣେ ବିଶିଷ୍ଟ ଗବେଷକ, ଶ୍ରୀ ମିଶ୍ରଙ୍କ ଲିଖିତ ଜଣେ ସ୍ୱାଧୀନତା ସଂଗ୍ରାମୀର କାହାଣୀ ରବିସିଂ ମାଝି, ଶହୀଦ ଲକ୍ଷ୍ମଣ ନାୟକ, ଶହୀଦ ବଗାପୂଜାରୀ, ବିପ୍ଳବୀ ଲକ୍ଷ୍ମୀଚନ୍ଦ୍ର ଦାସ, କୋରାପୁଟର ଗାନ୍ଧୀ ରାଧାକୃଷ୍ଣ ବିଶ୍ୱାସରାୟ ଓ କୋରାପୁଟ ଲୋକଗୀତକୁ ନେଇ ତାଙ୍କ ଅନୁସୃଜନ 'ଚୈତ୍ରଗାନ' ତଥା ଭତରା ସଂସ୍କୃତି ଓ ଲୋକ ସାହିତ୍ୟ ବହୁ ପାଠକୀୟ ଶ୍ରଦ୍ଧା ଅର୍ଜନ କରିଛି ।

ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ପ୍ରସାର ଦିଗରେ ନିରବଚ୍ଛିନ୍ନ ଉଦ୍ୟମଯୋଗୁଁ ଶ୍ରୀ ମିଶ୍ର, ରାଜା ସୁଢ଼ଳ ଦେବ ସ୍ମାରକୀ ସମ୍ମାନର ଅଧିକାରୀ, ତା ଛଡ଼ା ନିଜ କୃତି ଓ କୃତିତ୍ୱ ଯୋଗୁଁ ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ ।

ଶ୍ରୀ ମିଶ୍ରଙ୍କ ଶତାଧିକ କବିତା, କେତେକ ଗଳ୍ପ ଓ ପ୍ରବନ୍ଧ ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ପତ୍ର ପତ୍ରିକାରେ ପ୍ରକାଶିତ ।

ପ୍ରସାର ଓ ପ୍ରଚାର ବିମୁଖ ଶ୍ରୀ ମିଶ୍ର ଜଣେ ନିରଳସ ସାଧକ ।

-ପ୍ରକାଶକ

ସଂପର୍କ :
ମୁକ୍ତା ନିଳୟ,
ଭାଲୁସାହି, ଜୟପୁର, ଜିଲ୍ଲା : କୋରାପୁଟ